# ବେଣୁଧର ପଦ୍ୟାବଳୀ

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨

କବିଚନ୍ଦ୍ର

ଶ୍ରୀ ବେଣୁଧର ପଟ୍ଟନାୟକଙ୍କ କୃତ

# ବେଣୁଧର ପଦ୍ୟାବଳୀ

ପ୍ରକାଶକ—ଧର୍ମଗ୍ରନ୍ଥ ଭଣ୍ଡାର

ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପ୍ରୋପ୍ରାଇଟର—ଶ୍ରୀ ଗଦାଧର ସାହୁ

ଅଲିଶାବଜାର, କଟକ-୨

ଫୋନ୍ ନଂ-୬୦୩୨୯୭

ମୂଲ୍ୟ –ଟ ୧୧୦-୦୦ ଏକଶହ ଦଶ ଟଙ୍କା ମାତ୍ର

( ବନ୍ଧାଇଖର୍ଚ୍ଚ ପନ୍ଦର ଟଙ୍କା )

# ମନ୍ତବ୍ୟ

—※—

ବେଣୁଧର ପଦ୍ୟାବଳୀର ସଙ୍ଗୀତମାନ ମୁଁ ଏଣୁତେଣୁ ପୃଷ୍ଠା ଓଲଟାଇ ପାଠକଲି । ବେଣୁଧରଙ୍କର ପଦ୍ୟାବଳୀଯାକ ସଙ୍ଗୀତରେ ଭରା, ଏଥିରେ ରାଧାକୃଷ୍ଣ ସଙ୍ଗୀତ, ମନ ସଙ୍ଗୀତ, ଗ୍ରାମ୍ୟରସ ସଙ୍ଗୀତ, ଲୋକ ଭାଷାରେ ମଧୁର ଭାବରେ ବର୍ଣ୍ଣିତ ହୋଇଅଛି । ବେଣୁଧରଙ୍କର ସଙ୍ଗୀତମାନ ତେଣୁକରି ଲୋକ ସାଧାରଣରେ ଆଦର ପାଇଅଛି । "ରେ ମନୁଆ କୁହ କି ହୋଇଲୁ ବାଇ, ନ ଚିହ୍ନିଲୁ ଯାହା ଶ୍ରୀହରି ନାମକୁ ବିଷୟା ଗଞ୍ଜାଇ ଖାଇ । ଆସିଛୁ ଏକା ଯିବୁ ପୁଣି ଏକା ତୋ ସଙ୍ଗେ ନ ଯିବେ କେହି ।" ହେଉଛି ବେଣୁଧରଙ୍କର ଭାଷା ନମୁନା ସ୍ୱରୂପ ମୁଁ ଏଠାରେ ଦେଲି । ଅର୍ଥାତ୍ ସରଳ, ସୁନ୍ଦର, ସ୍ୱଚ୍ଛନ୍ଦ ଭାଷା ବେଣୁଧରଙ୍କର ଭାଷା । ବେଣୁଧର ସଙ୍ଗୀତଜ୍ଞ ଅଟନ୍ତି । ଓଡ଼ିଆ ରାଗ ରାଗିଣୀ ଓ ତାଳମାନ ତାହାଙ୍କୁ ଜଣା ଅଛି ଅଳ୍ପକ୍ଷଣରେ ସେ କୌଣସି କବିତାକୁ ସଙ୍ଗୀତବଦ୍ଧ କରି ପାରନ୍ତି । ସେଥିରେ ରାଗରାଗିଣୀ ଓ ତାଳ ଯୋଗି ପାରନ୍ତି, ତାଙ୍କର ସମସ୍ତ ଜୀବନ ସଙ୍ଗୀତ ବ୍ୟବସାୟରେ କଟିଅଛି । ବେଣୁଧର ବର୍ତ୍ତମାନ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସ ନାମରେ ପରିଚିତ । ବୈଷ୍ଣବ ଧର୍ମର ଦୀକ୍ଷା ଗ୍ରହଣ କରିବାର ପୂର୍ବରୁ ତାଙ୍କ ହାତରେ ଯେଉଁ ବେଣୁ ଥିଲା, ସେହି ବେଣୁ ସନ୍ନ୍ୟାସୀ ହେବାପରେ ତାଙ୍କ ହାତରୁ ଖସି ଯାଇନାହିଁ । ସେ ତାଙ୍କର ସେ ବେଣୁକୁ ବୈଷ୍ଣବଙ୍କର ଚରଣ ତଳେ ଆପଣାକୁ ଦାସପରି ଆଜି ପର୍ଯ୍ୟନ୍ତ ବଜାଉଛନ୍ତି । କିନ୍ତୁ ଏହି ଗ୍ରନ୍ଥରେ ସେ ବେଣୁଧର ନାମରେ ଖ୍ୟାତ ହେବାର ସମୟରେ ଯେଉଁ ସବୁ ଗୀତ ଲେଖିଥିଲେ, ତାହା ଏକତ୍ର କରି ପ୍ରଥମ ଦ୍ୱିତୀୟ ଏହିପରି ଭାବରେ ପ୍ରକାଶ କରିବାରେ ପ୍ରୟାସୀ । ତାଙ୍କର ଏହି ପ୍ରଥମ ଖଣ୍ଡରେ ପ୍ରାୟ ୧୨୦୦ ପୃଷ୍ଠାରେ ପ୍ରାୟ ୨୦୦୦ ସଙ୍ଗୀତ ଅଛି । ସେ ସବୁ ଭିନ୍ନ ଭିନ୍ନ ରାଗ ରାଗିଣୀ ଓ ତାଳରେ ଖଞ୍ଜା । ଗୋଟି ଗୋଟି କରି ସବୁ ରାଗର ପରିଚୟ ଦେବା ଏଠାରେ ସମ୍ଭବପର ନୁହେଁ । କିନ୍ତୁ ସବୁ ରାଗ ଉତ୍କଳୀୟ କହିଲେ ଚଳେ । ରସ-କେଦାର, ଦେଶବରାଡ଼ି, ଲଳିତା କେଦାର, କଳସା, ଶଙ୍କରାଭରଣ, ବରାଡ଼ି ଆଷାଢ଼ଶୁକ୍ଳବାଣୀ, କେଦାରଗୌରୀ । ଇତ୍ୟାଦି ଉତ୍କଳୀୟ ରାଗରେ ଏହି ପୁସ୍ତକଟି ନିକୁଞ୍ଜ କାନନରେ ନାନାପୁଷ୍ପତରୁ ଥିଲାବେଳେ ଶୋଭା

ଯାଉଅଛି । ଏହାଛଡ଼ା ହିନ୍ଦୁସ୍ଥାନୀ ରାଗରାଗିଣୀ ସମ୍ବଳିତ ଅନେକ ପଦ୍ୟ ଗୀତ ଛନ୍ଦରେ ବଦ୍ଧ ହୋଇଅଛି । ବଙ୍ଗଳା ଶ୍ରୀ ଗୁଜରୀ, ଭଣ୍ଡିମରଜ, କେଦାର, ଗୁଜ୍ଜରୀ ଇତ୍ୟାଦି ରାଗ ଯାହାକ ଉଲ୍ଲିଖିତ ତଥା ହିନ୍ଦୁସ୍ଥାନୀ ଏଥିରେ ସନ୍ନିବେଷ୍ଟ ହୋଇଅଛି । ଲେଖନ ଭଙ୍ଗୀ ପ୍ରାଚୀନ ଅ, ଆ, ଇ, ଈ ପ୍ରଭୃତି ଆରମ୍ଭ ଦ୍ୱାରା ପୁଣି ଆଦ୍ୟ ଅକ୍ଷର ସମୂହ ସମ୍ବଳିତ କୌଣସି ନାମ ବା ବାକ୍ୟ ଦ୍ୱାରା ଅନେକଗୁଡ଼ିଏ ଗୀତ ରଚିତ ହୋଇଅଛି, ବୈଷ୍ଣବ ହେବା ପୂର୍ବରୁ ଭାରତର ଯେ କୌଣସି ଲୋକ ଏ ପ୍ରକାର ବୈଷ୍ଣବ ଭାବ ଅବଗତ ହୋଇ ଥାନ୍ତି । କାରଣ ରାଧାକୃଷ୍ଣ ସଙ୍ଗୀତ ମୁଖର ଏହି ଭାରତ ଉଦ୍ୟାନରେ ଏପରି କୌଣସି କୋକିଳ ନାହିଁ, ଯେ ସଙ୍ଗୀତ କରି ପାରିବ । ଏହିପରି କି ଏହି ହିନ୍ଦୁସ୍ଥାନରେ ମୁସଲମାନ ସଙ୍ଗୀତଜ୍ଞମାନେ ମଧ୍ୟ ରାଧାକୃଷ୍ଣ ଭାବରେ ଆତ୍ମ-ହସ୍ତ ହୋଇଅଛନ୍ତି । ପାରସ୍ୟର ସୁବିଓସଙ୍କ ଭାରତର ରାଧାକୃଷ୍ଣ ରୂପ ଧରିଅଛି । ଲୈଲା ଓ ମଜନୁ, ସୁବିଓସାଙ୍କ ପରି ପାର୍ଥିବ ଭାବରେ ପୂର୍ଣ୍ଣ । କିନ୍ତୁ ଭାରତୀୟ ଚିନ୍ତାର ଉତ୍କର୍ଷ ଏହି ଯେ ସେ ଆଧ୍ୟାତ୍ମିକ ଚରମ ଉତ୍କର୍ଷ ଏହି ରାଧାକୃଷ୍ଣ ଭାବକୁ ଭାରତର ଯେଉଁପରି ମାନସୀୟ ଲୀଳା ଖେଳାରେ ବ୍ୟକ୍ତ କରିଅଛି ତାହା ଅଦ୍ଭୁତ । ସେ ରାଧା କୃଷ୍ଣ ଭାବଦ୍ୱାରା ମାନବଚିତ୍ତକୁ ସ୍ୱର୍ଗରୁ ମର୍ତ୍ତ୍ୟକୁ ଏବଂ ମର୍ତ୍ତ୍ୟରୁ ସ୍ୱର୍ଗକୁ ଏକସାଙ୍ଗରେ ନେବା ଆଣିବା କରାଏ । ସୁତରାଂ ବେଣୁଧରଙ୍କର ପଦ୍ୟାବଳୀରେ ଏହି ରାଧାକୃଷ୍ଣଙ୍କ ସଙ୍ଗୀତ ଯେ ତାଙ୍କର ବୈଷ୍ଣବ ହେବାର ପୂର୍ବରୁ ଦେଖା ଦେଇଛି ସେଥିରେ କୌଣସି ଆଶ୍ଚର୍ଯ୍ୟ ନାହିଁ । ସେତ ପୁଣି ଆଦ୍ୟରୁ ବୈଷ୍ଣବ ଭାବାପନ୍ନ ଅତଏବ ବେଣୁଧର ପଦାବଳୀରେ ରାଧାକୃଷ୍ଣହିଁ ସର୍ବସ୍ୱ ବିଦ୍ୟମାନ । ପ୍ରାଚୀନ କବିମାନଙ୍କୁ ରାଧାକୃଷ୍ଣଙ୍କର ଅମୀୟ ଅମର ପ୍ରେମହିଁ ମୁଗ୍ଧକରି ରଖିଥିଲା । ଆଜି ମଧ୍ୟ ସେହି ଅନ୍ତରରେ ମିଳନ ପାଇଁ ଯେଉଁ ଉତ୍କଣ୍ଠା ତାହାହିଁ ସଙ୍ଗୀତ ସୃଷ୍ଟି କରେ । ବେଣୁଧରଙ୍କର ବାବାଜୀ ହେବା ପୂର୍ବରୁ ଏହି ଉତ୍କଣ୍ଠା ଯେ ପ୍ରବଳ ହେବ ଏଥିରେ ଆଉ ଭାବିବାର ଅବସର ନାହିଁ, ସେ ୨୯ ବର୍ଷ ବୟସରେ ବୈଷ୍ଣବଧର୍ମରେ ଦୀକ୍ଷିତ ହେଲେ । ସେହି ଦିନ ଠାରୁ ସେ ବାବାଜୀ ଶ୍ରୀବୈଷ୍ଣବଚରଣ ଦାସ ନାମରେ ଉତ୍କଳରେ ପରିଚିତ । ଭଦ୍ର ବେଣୁଧରଙ୍କୁ, ବେଣୁଧରଯେ ଶ୍ରୀ ବୈଷ୍ଣବଚରଣ ଏ କଥା ଅନେକଙ୍କୁ ଗୋଚର ନାହିଁ । ଏଣିକି ବାବାଜୀ ଶ୍ରୀ ବୈଷ୍ଣବଚରଣ, ବାବାଜୀ ଶ୍ରୀ ବୈଷ୍ଣବଚରଣ ନାମରେ ହିଁ ସୁପରିଚିତ ହେବେ । ବେଣୁଧର ନାମରେ ସେ ଆଗରୁ ଉତ୍କଳର ପୁର ପଲ୍ଲୀରେ ସୁପରିଚିତ ହୋଇ ସାରିଛନ୍ତି । ଆଜି ତାଙ୍କର ବେଣୁଧର

ପଦ୍ୟାବଳୀର ପ୍ରଥମଭାଗ ସମ୍ପନ୍ନ ହେଲା । ଦ୍ୱିତୀୟଭାଗ ଆହୁରି ସମ୍ପନ୍ନ ହୋଇ ନାହିଁ । ତାହାହେଲେ ବେଣୁଧରଙ୍କର ଖ୍ୟାତି ବେଣୁଧର ଭାବରେ ସମ୍ପୂର୍ଣ୍ଣ ହେବ । ଆହୁରି ରହିଯିବ ଶ୍ରୀ ବୈଷ୍ଣବଚରଣ ଦାସଙ୍କର ଗ୍ରନ୍ଥାବଳୀ । ତାହା ପୂର୍ଣ୍ଣ ହେଲେ ଉତ୍କଳରେ ସଙ୍ଗୀତ ବିଦ୍ୟାରେ ଅନେକ ଉପକାର ହେବ । ଏଥିରେ ସନ୍ଦେହ ନାହିଁ । ପ୍ରଚଳିତ ଗ୍ଲୋବ ବନ୍ତ ନାନା ସଙ୍ଗୀତ ପୁସ୍ତକରେ ଯେଉଁ ସବୁ ରାଗରାଗିଣୀ ଦିଆ ଯାଇଥାଏ ସେ ସବୁ ବହୁ ଭ୍ରମ ପ୍ରମାଦପୂର୍ଣ୍ଣ ଦେଖାଯାଏ । ଏହି ପୁସ୍ତକରେ ଭ୍ରମ ପ୍ରମାଦ ଯେ ଆଦୌ ନାହିଁ ଏହା କହି ହେବନାହିଁ । ମାତ୍ର ଏତିକି କହିହେବ ଯେ ଏହି ପୁସ୍ତକ ବହୁ ପରିଶ୍ରମ ପରେ ସଙ୍କଳିତ ହୋଇଛି । ସୁତରାଂ ଏଥିରେ ଦୋଷର ବହୁ ଅଳ୍ପତା ଲକ୍ଷିତ ହୋଇପାରେ । ମୁଁ ବେଣୁଧର ପଦ୍ୟାବଳୀ ପ୍ରଥମ ଖଣ୍ଡ ଉତ୍କଳର ସଙ୍ଗୀତସେବୀମାନଙ୍କୁ ପାଖରେ ରଖିବା ପାଇଁ ଅନୁରୋଧ କରେ । କିମଧିକଂ । ପ୍ରକାଶଥାଉ କି ଏହି ସବୁ ଗୀତ ଗାୟକ ସିଦ୍ଧ ହୋଇଅଛି ।

| | |
|---|---|
| ଇନ୍ଦଗାପଡ଼ଆ, | ଶ୍ରୀଲକ୍ଷ୍ମୀନାରାୟଣ ସାହୁ ଏମ୍. ଏ. |
| କଟକ | |
| ତା ୮।୧୦।୧୯୩୭ ମସୀହା | ଭାରତ ସେବକ ସମିତିର ସଭ୍ୟ |

# ମୁଖବନ୍ଧ

❋—

ଏହି ବେଣୁଧର ପଦ୍ୟାବଳୀର ସଙ୍ଗୀତମାନ ଯେ ସବୁ ଜାଗାରେ ଆଦୃତ
ଏହା ପ୍ରାୟ ସମସ୍ତ ଓଡ଼ିଆଭାଷିମାନଙ୍କୁ ଜଣା । ପ୍ରାୟ ଚଉଷଠିବର୍ଷ ପୂର୍ବରେ
ବେଣୁଧର ସଙ୍ଗୀତମାନ ଅନେକ ସଙ୍ଗୀତ ବ୍ୟବସାୟୀମାନଙ୍କ ନିକଟରେ
ଶୁଣାଯାଏ । ବେଣୁଧର ସଙ୍ଗୀତମାନଙ୍କରେ ଯେ ଆଦର ସେହି
ସଙ୍ଗୀତ ରସିକମାନେ ଅନୁଭବ କରନ୍ତି । ବେଣୁଧର ସଙ୍ଗୀତ
ମାନ ଅପ୍ରକାଶିତ ରହିଥିବାରୁ କେବଳ ଅଳ୍ପ ସଙ୍ଗୀତର
ପ୍ରଚାର ଥିଲା । ଆମ୍ଭେ ସେହି ଅଭାବ ଅନୁଭବ କରି
ଅନେକ ଅର୍ଥ ବ୍ୟୟରେ ଓ ଅନେକ ପରିଶ୍ରମରେ
ସେହି ଅପ୍ରକାଶିତ ସଙ୍ଗୀତମାନଙ୍କୁ ଏବେ ଜନ-
ସାଧାରଣରେ ପ୍ରକାଶ କରିବାକୁ ସକ୍ଷମ
ହୋଇଅଛୁ । ପ୍ରତି ସଙ୍ଗୀତମାନ ମଧୁର
ଭାବରେ ପୂର୍ଣ୍ଣ । ବିଶେଷତଃ ରାଧାକୃଷ୍ଣ
ବିଷୟକ ସଙ୍ଗୀତମାନ ଅତି
ମଧୁର ହୋଇଅଛି ।
ଆହୁରି ମଧ୍ୟ ପାଠକ-
ମାନଙ୍କ ସୁବିଧା
ନିମନ୍ତେ କ୍ରମରେ
ମଙ୍ଗଳାଚରଣ, ପ୍ରାର୍ଥନା,
ଭଜନ, ମନଃଶିକ୍ଷା ଓ
ଶ୍ରୀ ରାଧାକୃଷ୍ଣ ବିଷୟମାନ କ୍ରମାନ୍ୱୟ
ଲୀଳାଭାବରେ ସନ୍ନିବେଶିତ ହୋଇ
ରଖା ହୋଇଅଛି ପୂର୍ବାନୁରାଗ,
ଦର୍ଶନାନୁରାଗ, ବଂଶୀଅନୁରାଗ, ନିଦାନ
ରାଗ, ମାନଲୀଳା, ମାଥୁରଲୀଳାର ସଙ୍ଗୀତ
ମାନ କ୍ରମରେ ସଜା ହୋଇଅଛି । ରାଧାକୃଷ୍ଣ
ଲୀଳା ପରେ ଗ୍ରାମ୍ୟରସର ସଙ୍ଗୀତମାନ ଶୁଣି
ଅଛନ୍ତି । ସେମାନେ ସେହି ଗୀତର ମଧୁରତା ବୁଝି
ଅଛନ୍ତି । ପାଠକମାନଙ୍କଠାରୁ ଏହାର ଆଦରତା
ଦେଖିଲେ ଆମ୍ଭେ ଶ୍ରମ ସାର୍ଥକ ମନେ କରିବୁ । ସଙ୍ଗୀତ-
ଜ୍ଞଙ୍କ ଆଦରରେ ଗୀତର ପ୍ରଚାର ମଧ୍ୟ ବଢ଼ିବାର ଆଶାକରୁ । ଇତି ।

୨୮-୮-୧୯୭୦ ପ୍ରକାଶକ

# ବେଣୁଧର ପଦ୍ୟାବଳୀ

## ସୂଚି

( ଅ )

| ବିଷୟ | ପୃଷ୍ଠାଙ୍କ |
| --- | --- |

| ବିଷୟ | ପୃଷ୍ଠା |
|---|---|
| ଆଗୋ ସହଚରୀ ଜାଲି ବଂଶୀସ୍ୱର ( ରାଧାଉକ୍ତି-ବାସକସଜ୍ୟା ) | ୩୦୯ |
| ଆଜ୍ଞ ଜଦନା ଗୋ ସବୁ ଶଠକଥା ( ,, ବିଲବ୍ଧମାନ ) | ୩୧୭ |
| ଆଗୋ ସଖିଗଣ କୃଷ୍ଣଙ୍କୁ ମୋ ,, | ୩୧୭ |
| ଆଗୋ ପ୍ରିୟଆଳି ଦିନ ସରୁନାହିଁ ,, | ୩୧୮ |
| ଆହାରେ ମାରଦକେଶୀ ( ଦୂତୀର ସମ୍ବାଦ ) | ୩୩୪ |
| ଆହେ କିଶୋରବର ( କୃଷ୍ଣପ୍ରତି ସଖିର ଛନ୍ଦୋକ୍ତି ) | ୩୩୯ |
| ଆଗୋ ଶ୍ରୀମତୀ କେଦ୍ଧେ ( ମାନଭଙ୍ଗେ ସଖିର ବୋଧ ) | ୩୫୭ |
| ଆଗୋ ସଖିଗଣ, ଆଜ ସମାସ୍ୱର ,, | ୩୬୧ |
| ଆଗୋ କୁନ୍ଦନକାନ୍ତି ମୋତି ଦଶନା ,, | ୩୬୨ |
| ଆଗୋ ବୀଣାଭାଷି, ଶରଦିନ୍ଦୁ ମୁଖି ,, | ୩୬୪ |
| ଆହା ମୁଁ କି କଲି ବନ୍ଧୁରେ ( କୃଷ୍ଣ ଭାବନା ) | ୩୬୪ |
| ଆରେ ଜୀବନ ଈଶ୍ୱର ,, | ୩୬୫ |
| ଆରେ ଦୟାବନ୍ତ ଦଳା କଳା ( ମାନଭଙ୍ଗେ କୃଷ୍ଣଙ୍କ ସ୍ତୁତି ) | ୩୭୧ |
| ଆସ ଆସ ନାଗରୀବର ,, | ୩୭୩ |
| ଆରେ ପ୍ରେମ ସାମନ୍ତାଣି ,, | ୩୭୪ |
| ଆରେ ଆରେ ବନ୍ଧୁ ମୋର ( ସଖିପ୍ରତି ,, ) | ୩୮୦ |
| ଆରେ କୁନ୍ଦନଗୋରୀ ( ରାଧାପ୍ରତି କୃଷ୍ଣଙ୍କ ବିନୟ ) | ୩୮୩ |
| ଆଗୋ ସଖିଗଣ ମୋର ( ସଖୀଙ୍କ ପ୍ରତି ,, | ୩୮୭ |
| ଆହେ ବ୍ରଜପୁରନ୍ଦର ( ଅକ୍ରୂର ସମ୍ବାଦ ) | ୩୯୪ |
| ଆରେ ରସନିଧି ଆଣିକ ( ମଥୁରା ଗମନେ ରାଧାପ୍ରତି ସଖୀ ) | ୩୯୯ |
| ଆଉ କି ଜୀବନେ ଆଶା ( ,, ସଖୀପ୍ରତି ରାଧା ) | ୪୦୫ |
| ଆଜ ପରା ସତେ ଶ୍ୟାମ ( ,, ସଖୀଙ୍କ କଥା ) | ୪୦୭ |
| ଆହା କି କହିଲୁ ସଖୀ ( ,, ରାଧିକାଙ୍କ ଚିନ୍ତା ) | ୪୦୮ |
| ଆ ! ମୋ ଲାବଣ୍ୟନିଧି ,, ରାଧାପ୍ରତି ସଖୀଉକ୍ତି ) | ୪୦୯ |
| ଆହେ ପଦ୍ମ ମୁଖ ଆହେ ଚନ୍ଦ୍ରମୁଖ ( ,, କୃଷ୍ଣଙ୍କ ପ୍ରତି ରାଧା ) | ୪୧୧ |
| ଆହେ ଗିରିଧାରୀ ହେଳ ,, | ୪୧୮ |
| ଆଉ ନକର ଛଳେଣି ଗୋ ( ,, ସଖୀପ୍ରତି କୃଷ୍ଣ ) | ୪୨୭ |
| ଆଗୋ ସଜନୀ କି ନ କଲି ( ,, ସଖିଙ୍କ ଚିନ୍ତା ) | ୪୩୭ |
| ଆଉ କି ଆସିବେ ଫେରି ( ମଥୁରାଗମନେ ସଖିଙ୍କ ଚିନ୍ତା ) | ୪୪୪ |
| ଆହା ପ୍ରାଣନାଥ ମୋର ( ,, ରାଧାଙ୍କ ଚିନ୍ତା ) | ୪୪୭ |
| ଆଗୋ ସଖିଗଣ ଦେଖ ( ,, ,, | ୪୪୭ |

( ଇ )



( ଈ )



( ଉ )

**ବିଷୟ** | **ପୃଷ୍ଠା**

**ବିଷୟ** — **ପୃଷ୍ଠା**

ବିଷୟ ପୃଷ୍ଠା



( ଖ )

ବିଷୟ | ପୃଷ୍ଠା

( ଡ )

| ବିଷୟ | ପୃଷ୍ଠା |
|---|---|

ବିଷୟ ପୃଷ୍ଠା

( ଜ )

ବିଷୟ ପୃଷ୍ଠା

( ଢ )



( ଣ )



[ ତ ]



[ ଥ ]

ବିଷୟ ପୃଷ୍ଠା

( ଦ )

(ଧ)



(ପ)

( ପ )

( ବ )



( ଭ )

( ମ )

| ବିଷୟ | | ପୃଷ୍ଠା |
|---|---|---|

( ଶ )

ବିଷୟ ପୃଷ୍ଠା



( ଷ )



( ସ )

( ହ )

( ହ )



( କ୍ଷ )



——:୦:——

# ବେଣୁଧର ପଦ୍ୟାବଳୀ

## ପ୍ରଥମ ଭାଗ

### ଶ୍ରୀ ଶ୍ରୀ ଗୁରୁଗୌରାଙ୍ଗୌ ଜୟତଃ ।

### ମଙ୍ଗଳାଚରଣ ।

( ଶ୍ରୀରାଗ । ତାଳ— ଆଠତାଳୀ । )
ଜୟ ଶ୍ରୀରାଧାମୋହନାୟ ମଙ୍ଗଳଂ ।
ଦୁଃଖ ଦୁରନ୍ତ ଦହନାୟ ମଙ୍ଗଳଂ । ଘୋଷ ।

ନନ୍ଦନନ୍ଦନ ଜଗଦ୍ବନ୍ଦନ ଚରଣ ରକ୍ଷଣାୟ ମଙ୍ଗଳଂ ।
ଗୋପିକା ଧନ ଗୋକୁଳ ମୋହନ ଅନଳଭକ୍ଷଣାୟ ମଙ୍ଗଳଂ । ୧ ।
ଗୋପବାଳକ ଗୋଧନପାଳକ ଯାମଳାଭଞ୍ଜନାୟ ମଙ୍ଗଳଂ
ନିଖିଳ ଜନମନନୟନ ରଞ୍ଜନ ଗର୍ବଗଞ୍ଜନାୟ ମଙ୍ଗଳଂ । ।
ବଂଶୀବାଦନ ଆନନ୍ଦ-ଶୋକ ମନ୍ମଥ ଖଣ୍ଡନାୟ ମଙ୍ଗଳଂ
ହାସିତ ଭକ୍ତ ପ୍ରକାଶ ଶିଖୀ ଶିଖଣ୍ଡମଣ୍ଡନାୟ ମଙ୍ଗଳଂ । ୩ ।
ଚଳୀନାଗ ଶିର ନର୍ତ୍ତକ ଖଳ କେଶୀନାଶନାୟ ମଙ୍ଗଳଂ ।
ଅଳି ବେଷ୍ଟିତ ନାଗଲୀ-କୁଞ୍ଜ ବନମାଳୀ ଜୟ ଶୁଭ ମଙ୍ଗଳଂ । ୪ ।
ରାଜେନ୍ଦ୍ରମୂର୍ତ୍ତି ନଧୀନ ଜୟ କୃଷ୍ଣ କେଶବାୟ ମଙ୍ଗଳଂ ।
ପଦ ବକ୍ଷେ ବେଣୁ ଆଶ୍ରିତ ବେଣୁ ଧାମୃତ ଜୟ ଜଗନ୍ମଙ୍ଗଳଂ । ୫ ।
( ଛନ୍ଦ ଦେ, ଭୁବନାନନ୍ଦ ବର୍ଦ୍ଧନଂ —ବୃନ୍ଦେ । )

## ବନ୍ଦନା

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଳାକୟା ।
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ॥

## ଶ୍ରୀଗୁରୁ ବନ୍ଦନା ।

( ରାଗ ମଙ୍ଗଳ । ତାଳ—ତ୍ରିପଟା । )

ଜୟ ଜୟ ଶ୍ରୀଗୁରୁ ହେ କରୁଣାସାଗର ।
ଜ୍ଞାନାଞ୍ଜନ ଦାନେ ଚକ୍ଷୁ ଫିଟାଇଲ ମୋର ହେ । ୧ ।
ଅଜ୍ଞାନ-ତିମିର ମୋତେ ଘୋଟି ରହିଥିଲା ।
ତବ କୃପାବଳେ ସେହୁ ଦୂରେ ପଳାଇଲା ହେ । ୨ ।
ସ୍ୱୟଂ ବ୍ରହ୍ମ ବସ୍ତୁ ହରି ମୂରତି ଆପଣ ।
ସ୍ଥାବର ଜଙ୍ଗମ ଆଦି ପୂରିଛ ପ୍ରମାଣ ହେ । ୩ ।
ଦୀକ୍ଷାଗୁରୁ ରୂପେ କୃଷ୍ଣ ଶିକ୍ଷାଗୁରୁ ରାଧା ।
ବୈଷ୍ଣବ ସ୍ୱରୂପେ ସଖୀଗଣଙ୍କ ଶରଧା ହେ । ୪ ।
ଏମନ୍ତ ଶ୍ରୀଗୁରୁ କୃଷ୍ଣ ବୈଷ୍ଣବ ପଦ୍ମର ।
ନିରନ୍ତର ଚିନ୍ତା ଧ୍ୟାନ ଜ୍ଞାନ ବେଣୁଧର ହେ । ୫ ।
( ଅଜ୍ଞାନ ତିମିରେ ଚକ୍ଷୁ ଅନ୍ଧକାର ଥିଲା—ବୃତ୍ତେ )

## ଗୌର ବନ୍ଦନା ।

( ରାଗ—କେଦାର । ତାଳ—ଆଡ଼ି । )

ଲୁବ୍ଧା ଏ ରୂପମାଧୁରୀ ( ସଖୀ ! )
ଗୌରାଙ୍ଗ ସୁନ୍ଦର କୋଟି କାମଜିତାରୀ । ଘୋଷା ।
ସେ ବାଙ୍କ ଚୂଳ ଅତି ନିର୍ମଳ,
ଟାଳିବ ଯୁବତୀ ମାନସକୁ ଧରି । ୧ ।
କଜ୍ଜ୍ୱଳ କଳା ଏ ନନ୍ଦବଳା,
ହୋଇଛନ୍ତି ରାଧା ପ୍ରେମର ଭିକାରୀ । ୨ ।
କଳି କଲ୍ମଷ ହରଶେଷେ ନାଶ,—
କରି ହରି ନାମେ ପାପୀ ଦେଇନ୍ତି ତାରି । ୩ ।
ଏ ବେଣୁଧର— କରଯୋଡ଼ି କରି,
ହରିବେ ଦୁର୍ଗତି ନଦୀୟା-ବିହାରୀ । ୪ ।
( ଯାମା ଗାଉସାରସାନସାଗାର—ପ୍ରତି )

## ଶ୍ରୀ ଶ୍ରୀ ଯୁଗଳ ବନ୍ଦନା

( ରାଗ— ଖଣ୍ଡବଙ୍ଗଳାଶ୍ରୀ । ତାଳ—ପହଡ଼ଝେ । )

ଜୟ ହେ ଜୟ ରାଧା ଶ୍ୟାମସୁନ୍ଦର ମୂର୍ତ୍ତି ହେ ।
ଶ୍ରୀ ବୃନ୍ଦାକାନନ ପ୍ରେମ ଦମ୍ପତି । ଘୋଷା ।

କଷିତ ତପତ— କାଞ୍ଚନ ବରଣ,
ନବଜଳଧର ଶ୍ୟାମଳ କାନ୍ତି ।
ବ୍ରଜବାସୀଙ୍କର ନୟନ ରଞ୍ଜନ,
ଭକ୍ତମାନଙ୍କର ହୃଦ ସମ୍ପତ୍ତି ।
ଅଟନ୍ତି ଗତି ରାଇ ଶ୍ରୀପତି,
ଗୋଲକ ଶୋଭା ମଣ୍ଡିଲ ଧରଣୀ । ୧ ।
ଶିରେ ଶିଖୀପୁଚ୍ଛ ସୁମଞ୍ଜୁଳ ବେଣୀ,
ଗଳେ ବନମାଳ ଶ୍ରୀ ବୈଜୟନ୍ତି ।
ନୀଳ ପୀତପଟ ବସେ ଝଟ ଝଟ
ଅଧରେ ମୋହନ ମୁରଲୀ ଗୀତି
ଯୁଗଳ ମୂର୍ତ୍ତି ଦର୍ଶନେ ଯତି,
ଆନନ୍ଦସାଗରେ ନିମଜ୍ଜି ଥାନ୍ତି । ୨ ।
କାଳିନ୍ଦୀର କୂଳେ କେଳି ନୀପମୂଳେ
ବିଜୟେ ବେଷ୍ଟିତା ବ୍ରଜ-ଯୁବତୀ ।
ଯୁଗଳ ଚରଣ ଛନ୍ଦବା ମାଧୁରୀ
ଆହା କି ସୁନ୍ଦର ମଧୁର ଗତି ।
ସଖିଙ୍କ ପ୍ରତି ମଞ୍ଜୁ ଭାରତୀ,—
ଭାଷିବାର ଆହା କୋମଳ ଅତି । ୩ ।
ଯେ ପାଦ ର ସେବା ବିଧାନେ ଛଟିବା,
କି ଅପର୍ବ ଭାବ ହୃଦେ ଆଣନ୍ତି ।
ମଞ୍ଜରୀ ନିକର— ମଧ୍ୟେ ବେଣୁଧର,
ସେହିବ କି ପାଦ କର ବିନତି ।
ଶ୍ରୀଗୁରୁ ଭକ୍ତି ମାନସେ ଶାନ୍ତି,
ନଭିବ କି ଅନ୍ତେ ବ୍ରଜ ବସତି । ୪ ।

( କୃଷ୍ଣ ହେ, ଦିଅ କୃପା ବରଷି—ବୃନ୍ଦେ । )

## ଗଣେଶଙ୍କ ବନ୍ଦନା ।

( ରାଗ—ତୋଡ଼ି । ତାଳ—ଏକତାଳୀ । )

ନମସ୍ତେ ଗଜବଦନଂ ପ୍ରଭୁ ପାର୍ବତୀ ନେତ୍ର ନନ୍ଦନଂ ।
ଫଣୀନ୍ଦ୍ରଫଣିତ କଣ୍ଠେ ଶୋଭିତ କପାଳେ ଚନ୍ଦ୍ର ଚନ୍ଦନଂ । ୧ ।
ପୃଥୁଳୋଦରେ ତବ ଶ୍ରୀକର ଅମୃତ ଲଡ଼ୁ ଶୋଭନଂ ।
ଦୁଃଖ ମର୍ଦ୍ଦନଂ ସୁଖ ବର୍ଦ୍ଧନଂ ମୂର୍ଖାନ୍ଧ ଦୋଷ ଚ୍ଛେଦନଂ । ୨ ।
ପାଶ ଅଙ୍କୁଶ ଧାରଣଂ ପ୍ରଭୁ ନମଃ ବିପଦ ଭଞ୍ଜନଂ ।
ଶ୍ରୀଚରିତେ ତାଣ୍ଡବ ନୃତ୍ୟ ସ୍ୱରୂପ ମନୋରଞ୍ଜନଂ । ୩ ।
ସ୍ଥୂଳନୟନଂ ମୂଷିକାସନଂ ଏକଦନ୍ତ ଶୋଭନଂ ।
ଅଯୋନି ଜାତ ଶଙ୍କର ସୁତ ନମସ୍ତେ ନାଗମଣ୍ଡନଂ । ୪ ।
ଅଗ୍ରପୂଜନଂ ଗଣରାଜନଂ ତବ ପଦାବ୍ଜକୁ ବନ୍ଦନଂ ।
* ଶ୍ରୀକୃଷ୍ଣଚନ୍ଦ୍ର ମାନବ ଇନ୍ଦ୍ର ଦେବ ପାରୀନ୍ଦ୍ର ରଚନଂ । ୫
( ଆଜକ ଯୋଗ ଆସିବ—ପ୍ରଭୁ )

## ଶ୍ରୀଜଗନ୍ନାଥଙ୍କ ବନ୍ଦନା

( ରାଗ ଗୁର୍ଜ୍ଜରୀ ତାଳ—ଏକତାଳୀ । )

ଜୟ ଜଗନ୍ନାଥ ସ୍ୱାମୀ ( ହେ ପ୍ରଭୁ ! )
ଶ୍ରୀ ନୀଳାଚଳବିହାରୀ । ଘୋଷା ।
ଦୈତ୍ୟକୁଳ ବିନାଶକ ସ୍ୱାମୀ, ନାମ ବହିଅଛ ଦଇତ୍ୟାରି,
ଶଙ୍ଖାସୁରକୁ ନିଧନେ ସଂହାରି ( ହେ ପ୍ରଭୁ )
ବେଦ ଆଣିଲ ଉଦ୍ଧାରି । ୧ ।
ପୁଣି କଚ୍ଛପ ରୂପେ ଶ୍ରୀହରି ଚନ୍ଦ୍ରାକାରେ ଅବନୀକି ଧରି,
ହୋଇ ବରାହ ରୂପ ମୁରାରି ( ହେ ପ୍ରଭୁ )
ଦନ୍ତେ ମହୀ ରକ୍ଷାକରି । ୨ ।

---

* ରଣପୁରାଧୀଶ୍ୱର ଶ୍ରୀ ଶ୍ରୀ ବୀରବର ବଜ୍ରଧର କୃଷ୍ଣଚନ୍ଦ୍ର ସିଂହ ଦେଓ ନରେନ୍ଦ୍ର ମହାପାତ୍ରଙ୍କ ନାମରେ କବି ବେଣୁଧର ଉପରୋକ୍ତ ବନ୍ଦନା ଓ ଅନ୍ୟାନ୍ୟ ଗୀତମାନ ଭଣି ଅଛନ୍ତି ।

ନରସିଂହ ମୂର୍ତ୍ତି ହୋଇ ଜାତ, ଭକ୍ତ ଛଳେ ହିରଣ୍ୟ ବିଦାରି,
ପ୍ରହ୍ଲାଦଙ୍କୁ ସ୍ୱର୍ଗେ ଇନ୍ଦ୍ର କରି ( ହେ ପ୍ରଭୁ )
ଭୁଞ୍ଜାଇଲ ସୁଖ ଶିରୀ ।୩।
ଧନ୍ୟ ବାମନ ମୂରତି ଧରି, ବଳିଦ୍ୱାରେ ହୋଇଲ ଭିକାରୀ,
ତ୍ରିପାଦ ଦାନ ମାଗିକରି ( ହେ ପ୍ରଭୁ )
ଚାପିଲ ପାତାଳ ପୁରୀ ।୪।
ପର୍ଶୁରାମ ରୂପେ ପର୍ଶୁ ଧରି କ୍ଷତ୍ରିୟଙ୍କୁ ରଣେ ଜିଣି କରି,
ରାମ ରୂପେ ଲଙ୍କା ଧ୍ୱଂସ କରି ( ହେ ପ୍ରଭୁ )
ସୀତା ଆଣିଲ ଉଦ୍ଧାରି ।୫।
ଗୋପେ ନନ୍ଦଘରେ ଜନ୍ମି କରି, ହଳ ମୂଷଳ ଧାରଣକାରୀ,
ବୌଦ୍ଧରୂପେ ରହି ନୀଳଗିରି ( ହେ ପ୍ରଭୁ )
ମହିମା ଅଛ ବିସ୍ତାରି ।୬।
କଳି ଶେଷେ କଳ୍କି ଅବତରି, ମ୍ଳେଚ୍ଛ ସଂହାରିବ ଖଡ୍ଗ ଧରି
ବେଣୁଧର ଶ୍ରୀପଦେ ଭିକାରୀ ( ହେ ପ୍ରଭୁ )
ଭବାବ୍ଧିରୁ କର ପାରି ।୭।
( ଭଜ ରାଧାରମଣ ଗୋବିନ୍ଦ—ପ୍ରଭୁ )

## ପୌର୍ଣ୍ଣମାସୀଙ୍କ ବନ୍ଦନା

( ରାଗ—ମଙ୍ଗଳ । ତାଳ ଝିମ୍ପା )
ଈଶ୍ୱରଙ୍କ କଳ୍ୟାଣମୟୀ ଜଗତ ଜନନୀ ।
ଜୟ ଜୟ ଭଗବତୀ ଶ୍ରୀ ବ୍ରଜବାସିନୀ ମା ।୧।
କୃଷ୍ଣଲୀଳା ପ୍ରକାଶିନୀ ଅଭୟ ବରଦା ।
ପ୍ରେମଭକ୍ତି ପ୍ରଦାୟିନୀ ସୁପ୍ରସନ୍ନା ସଦା ମା ।୨।
ମହାଯୋଗିନୀ ମହେଶ ମୋହିନୀ ଅମ୍ବିକେ ।
ଯୋଗମାୟା ପୂର୍ଣ୍ଣମାସୀ ସର୍ବ ଆରାଧିକେ ମା ।୩।
ନମସ୍ତେ ମଙ୍ଗଳଦାୟୀ ଦେବୀ କାତ୍ୟାୟନୀ ।
ଘନ ଘନ ବେଣୁଧର ଡାକୁଛି ଦୟିନୀ ମା ।୪।
( ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି—ବୋଲ )

## ସରସ୍ୱତୀଙ୍କ ବନ୍ଦନା

( ଯଥାରାଗ । ତାଳ—ଏକତାଳୀ )

ନମସ୍ତେ ଶାରଦେ ନମୋ ଜଗତ ଜନନୀ ମାଁ ।।
ନମସ୍ତେ ଶମ୍ଭୁ ମୋହିନୀ ବିଦ୍ୟାପ୍ରଦାୟିନୀ ମାଁ ।। ଘୋଷା ।
ନମୋ ମଙ୍ଗଳ କାରିଣୀ, ବୀଣା ପୁସ୍ତକ ଧାରିଣୀ;
ନମୋ ତ୍ରିପୁର ବନ୍ଦିନୀ ବିରଞ୍ଚି ନନ୍ଦିନୀ ମା । ୧ ।
ନମୋ ସୁସ୍ମିତ ବଦନୀ, ବିଦ୍ୟୁଚ୍ଛଟକ ହାସିନୀ;
ନମୋ କମଳଲୋଚନୀ, ବିପଞ୍ଚିବାଦିନୀ ମାଁ ।। ୨ ।
ନମୋ ପଙ୍କଜଆସନୀ, ନମୋ ଶ୍ରୀମୁଖ ପ୍ରସନ୍ନୀ;
ନମୋ ଭଗବତୀ ଗୀତକଳା ବିନୋଦିନୀ ମାଁ ।। ୩ ।
ନମୋ ଗଉରବରଣୀ, ରମ୍ୟ ସୁରାଗ ରଙ୍ଗିଣୀ,
ଦାଅ ମାତ ବେଣୁଧର କରୁଛୁ ଦର୍ଶନ ମାଁ ।। ୪ ।
( ଜୟଜୟ ଗୁରୁଦେବ— ପ୍ରଭ )

## ବନ୍ଦନ ।

( ତାଳ—ରୂପକ )

ନନ୍ଦ-ନନ୍ଦନ ଗୋବିନ୍ଦ ଗୋପ-ନଟଂ ।
ନବ ନୀରଦ ସୁନ୍ଦର ପୀତ ପଟଂ ॥
କେକୀ କଳାପ ମୁକୁଟ ଝଟଝଟଂ ।
ଶୋଭିତ ମକର-କୁଣ୍ଡଳ ଶ୍ରୁତି-ତଟଂ । ୧ ।
ପୂର୍ଣ୍ଣଶରଦିନ୍ଦୁ ମୁଖ-ଅରବିନ୍ଦଂ ।
ପରମାନନ୍ଦ ଦାୟକ ଆଦ୍ୟକନ୍ଦଂ ॥
କେଳୀ-ନୀପ-ତରୁ-ତଳ ସଦାନନ୍ଦଂ ।
ରଦଚ୍ଛଦନ ହସନ ମନ୍ଦଂ ମନ୍ଦଂ । ୨ ।
ଇନ୍ଦ୍ର-ନୀଳମଣି କାନ୍ତି ଗର୍ବ ହରଂ ।
କମନୀୟ ସୁଲାବଣ୍ୟ କଳେବରଂ ॥
ବତ୍ସ-ପାଳକ ଗୋପାଳ-ବେଶଧରଂ ।
କୋଟି-କନ୍ଦର୍ପ ମୂରତି ମନୋହରଂ । ୩ ।

ଭ୍ରୂଭଙ୍ଗୁର ମନସିଜ -ଚାପ ଲକ୍ଷ ।
ଅରୁଣିତ ନେତ୍ର-କଞ୍ଜ ଦଳ ଅକ୍ଷ ॥
ମହା ମର୍କତ କପାଟ-ଯୁଗ-ବକ୍ଷ ।
ବନ୍ଦେ ବେଣୁଧର ଅଧମ ଅରକ୍ଷ । ୬ ।
( କଞ୍ଜ ବାନ୍ଧବ ନନ୍ଦମୀ ବାଣତଟଂ—ବୃତ୍ତେ । )

## ଗୋବିନ୍ଦଷଟ୍ପଦୀ ।

( ଅବନା ନୟୂମ )
( ଶ୍ରୀ ରାଗ—ଯତିତାଳ )

ଜୟ ଜୟ ନବ ଜଳଦ ବରନ ।
କଂସ ଚର ବକ ଅଘ ମରଦନ ॥
ଭକତଙ୍କ ମନ ନୟନ ରଞ୍ଜନ ।
ଭବଭୟହର ଶକଟ ଭଞ୍ଜନ । ୧ ।
ଅଶରଣ ଜନ ଶରଣ ରକ୍ଷଣ ।
ନବ ଯେସମସ୍ତ ସର୍ବସଲକ୍ଷଣ ॥
ପରବତ ଧର ଗରବ ଗଞ୍ଜନ ।
ଭବଭୟହର ଶକଟ ଭଞ୍ଜନ । ୨ ।
ଗିରଧରବର ମସ୍ତକ ମଣ୍ଡନ ।
ଅଜଭବ ବନ୍ଦ୍ୟ କଲୁଷ ଖଣ୍ଡନ ॥
ଅକଳଙ୍କ ଶରଦ ଚନ୍ଦ୍ରବଦନ ।
ଭବଭୟହର ଶକଟ ଭଞ୍ଜନ । ୩ ।
ବ୍ରଜବନଚନ୍ଦ୍ର ନନ୍ଦର ନନ୍ଦନ ।
ବସୁସ ପନ୍ଦର ଅମର ବନ୍ଦନ ॥
ରମ୍ୟ ନଟବର ବସନ୍ତ ବସନ ।
ଭବଭୟହର ଶକଟ ଭଞ୍ଜନ । ୪ ।
ପରଂବ୍ରହ୍ମମୟ ଅରକ୍ଷଙ୍କ ଧନ ।
ନରକ ଅନ୍ତକ ଅଲକ୍ଷ ମଦନ ॥
ବଳବନ୍ତ ବନ-ଅନଳ ଭକ୍ଷଣ ।
ଭବଭୟହର ଶକଟ ଭଞ୍ଜନ । ୫ ।

ଅମଳ ଭକତ କମଳ ଚରଣ ।
ସନ୍ଥୁଜନବକ୍ଷ ତଟର ଚନ୍ଦନ ॥
ବଂଶଧର ମନ୍ଦ ଅଧମ ରଚନ ।
ଭବଭୟହର ଶଙ୍କଟ ଭଞ୍ଜନ । ୬ ।
( କମଳ ନୟନା ବିଷ୍ଣୁଙ୍କ ଘରଣୀ—ବୃ-ଗୁ )

## ବନ୍ଦନା

( ରାଗ—କେଦାର । ତାଳ—ରୂପକ )

ଜୟ ଯାଦବ ମାଧବ କେଶବ ହେ ।
ଜୟ ଶ୍ରୀପତି ଶ୍ରୀନାଥ ଶ୍ରୀଦେବ ହେ । ୧ ।
ଜୟ ବ୍ରଜରାଜ ନନ୍ଦବାଳକ ହେ ।
ଜୟ ଗୋପୀ ଗୋପବୃନ୍ଦ ପାଳକ ହେ । ୨ ।
ଜୟ ଭୁବନ ପାବନ କାରଣ ହେ ।
ଜୟ ଦୀନବନ୍ଧୁ ଦୁଃଖ ତାରଣ ହେ । ୩ ।
ଜୟ ଛନ୍ଦା ଅରବିନ୍ଦ ଚରଣ ହେ ।
ଗତି ମାଗେ ବେଣୁଧର କରୁଣ ହେ । ୪ ।
( ବନ୍ଧୁବଦନ ପାଇଛୁ ହେ ମାଳମଣୀ— ଦୂତିଗୁ ।

## ନାମାବଳୀ ।

( ରାଗ—ଚନ୍ଦ୍ରାକେଦାର । ତାଳ—ଝୁଲ )

ଦୀନବାନ୍ଧବ ରାଧା ମାଧବ ଗୋବିନ୍ଦ ମଧୁସୂଦନ ।
ଯାମଳାର୍ଜ୍ଜୁନ ଭଞ୍ଜନ ଶ୍ୟାମ କେଶୀ କଂସନିସୂଦନ । ଘୋଷା ।
ଶ୍ରୀ ନନ୍ଦନନ୍ଦନ ମୁରଲୀଧାରୀ, ଗୁଞ୍ଜମାଳିଆ କୁଞ୍ଜବିହାରୀ,
ରହସରାଜ ରସ-ରସିକ ଶ୍ରୀହରି ଗୋପିକା ହୃଦଚନ୍ଦନ । ୧ ।
ଗୋଧନ ଚରଉତା ଗୋପ ସଙ୍ଗାଳି, ଚନ୍ଦ୍ରିକା ଚୂଳିଆ ଶ୍ରୀବନମାଳୀ,
ଯଶୋଦା ଜୀବନ ଶ୍ରୀବ୍ରଜମୋହନ ସୁନ୍ଦର ନୀଳରତନ । ୨ ।
ମହାମରକତ ଜିତବରନ, ବିଜୁଳି କାନ୍ତି ଝଟକେ ପଟନ
ଶ୍ରୀମୁଖାରବିନ୍ଦ ଅକଳଙ୍କ-ଇନ୍ଦୁ ଭକତ ମନରଞ୍ଜନ । ୩ ।
ଶରଣ ରକ୍ଷଣ ବିପତିହାରୀ, କରଣ ଏ ବେଣୁଧର ଗୁହାରି,
ମରଣ କାଳରେ ଚରଣ ଯୁଗଳ ସତେ କି ପାଇବି ଦର୍ଶନ । ୪ ।
( ରସମାନସ ରାଧାକେଶ—ପ୍ରଭୁ । )

## ଦର୍ଶନ ସୁଖ

( ରାଗ—ବଙ୍ଗଳାଶ୍ରୀ । ତାଳ—ଝମ୍ପା )

ଜୟ କାନନବିହାରୀ ହେ ! ଯାହା ଦେଖିଲି ନେତ୍ରେ ଏତିକ ।
ନବୀନ ଶାରଦ-ଶ୍ୟାମଳ-ତମାଳଜିତ ମୋହନ ମୂର୍ତ୍ତିକ । ଘୋଷା ।
ବାମ ପାର୍ଶ୍ୱରେ ଜନକ ନନ୍ଦିନୀ ଦକ୍ଷେ ସେବ ସୌମିତ୍ରିଙ୍କି ।
ସନ୍ନେ ରତ୍ନସିଂହାସନେ ବିଜେକରି ଢଳାଅ ଯଶ କୀର୍ତ୍ତିକ । ୧ ।
ସିଂହଦ୍ୱାର ବେନିପାଶେ ଜଗାଇଛ ହନୁ ବାଙ୍ଗା ସନ୍ତତିକ ।
ଶ୍ରୀକର ବେନି ପ୍ରସାରି ଭକ୍ତ ତାନ୍ତ୍ରି ଦେଇଛ ଚିତ୍ତ ମୁକ୍ତିକ । ୨ ।
ଆସିବାରୁ ପ୍ରଭୁ ତବ ଦରଶନେ ପ୍ରଫୁଲ୍ଲ କଲି ମନ୍ତିକ ।
ତେଣୁକରି ସିନା ଲଦିଦେଲ ମୋର ଶିରେ ଘୋର ବିପତ୍ତିକ । ୩
ଖାଷଣଶରମୂନ ଅକ୍ଷମ ହେଲିକ ଦେଖିଣ ମୋ ଅଗତିକ ।
ଦକ୍ଷକର ଅବା ପକ୍ଷପାତ ହେଲା ନଶୁଣ ମୋ ବିନତିକ । ୪ ।
ସାକ୍ଷ ଆନ କେହି ନାହିଁ ନଳିନାକ୍ଷ ହରିବାକୁ ମୋ ଖ୍ୟାତିକ ।
ଯେଣୁ ନ ଶୁଣୁଛ ଏଣୁ ବେଣୁଧର ମଣୁଛି ଜଡ଼ ଶ୍ରୁତିକ ? । ୫ ।
( ଜୟ ବିନୋଦବିହାରୀ ହେ—ବୃତ୍ତି । )

## ଭଜନ

### ସ୍ୱାଭୀଷ୍ଟ ଲାଳସା

( ରାଗ ବଙ୍ଗଳା ଶ୍ରୀ—ତାଳ ଏକତାଳ । )

ମୋ ଚିତ୍ତ ଏତିକ ସିନା ଭାବନା ।
ଯେ ସ୍ତ୍ରି ଶ୍ରୀ ପୁରୁଷ ବାଛ ନ ହୁଅନ୍ତି ମୋ ଇଷ୍ଟ ସେ କଳାମୁନା ।
କେବେ ଏ ଅଧମ ଅନୁକମ୍ପା ହେବ ଶମ୍ପାବରନାଗୋ ରାଇ !
ଗୁରୁରୂପା ସଖୀ ଶ୍ରୀପଦ ପଙ୍କଜ-ଯୁଗଳେ ଦେବେ ଭେଟାଇ ଗୋ ।୧।
ଭୃଙ୍ଗବିଦ୍ୟାଙ୍କର ଅନୁଗତ ରହି ମୁଁ ହେବି କି ନୂଆ ଦାସୀ ।
ଶ୍ରୀ ଲଳିତାଦେବୀ ସହାସ୍ୟ ବଦନେ ଆସ ବୋଲି ଦେବେ ଭାସି ଗୋ ।୨।
ଠାରି ନେତ୍ରକୋଣେ ବିଶାଖିକା ତେଣେ ଅଙ୍ଗୁଳି ଦେବେ ଦେଖାଇ ।
ବନଦେବୀଙ୍କ ସୁପ୍ରସନ୍ନେ ଧୀରେ ଗତି କରିବଇଁ ମୁହିଁ ଗୋ ।୩।
ସବୁ ସଖୀ ମଞ୍ଜରୀଙ୍କ ପଛେ ପଛେ ଅନୁସରି ଅନୁସରି ।
ଶ୍ରୀରୂପ, ଅନଙ୍ଗମଞ୍ଜରୀଙ୍କ ଆଜ୍ଞା ଥିବଇଁ ମସ୍ତକେ ଧରି ଗୋ ।୪।

କଳୁଷକୁ ଅପସାର କଲାବେଳେ କଣୋଷ୍ଟ—ମୁକୁଟମଣି ।
ସିଦ୍ଧ ଦେବଦେବ ସବେ ଦୁଃଖୀ ବେଣୁଧର ଧରିବ ଫୁଲ ବରଷଣୀ ଗୋ । ୫ ।
( ସଜନ ଗଲଣି ମୁଁ ଲାଜେ ସଡ଼ି—ବୃନ୍ଦେ । )

## ମନଶିକ୍ଷା

( ରାଗ—ମଙ୍ଗଳ । ତାଳ—ଝୁଲା । )

ଔଷଧି ଶ୍ରୀ ହରିନାମ ଭବ ବ୍ୟାଧି ପାଇଁ ।
ସେବନ କରରେ ମନ ଶ୍ରୀଗୁରୁଙ୍କୁ ଧ୍ୟାୟି ॥ ପଦ ।
ଅକାଳ ମୃତ୍ୟୁ ହରଣ ହୋଇବ ତୋହର ।
ଦୂରେଯିବ ମାୟା ମୋହ ତାପ ତ୍ରୟ ଜ୍ୱର । ୧ ।
ସାଧୁଶାସ୍ତ୍ରେ ଲେଖାଅଛି ଯେଉଁ ଉପଦେଶ ।
ପାଳନ କଲେ ସୁଖ୍ୟାତି ଲଭିବୁ ଅବଶ୍ୟ । ୨ ।
ବିଷୟ—ଗଞ୍ଜେଇ ନିଶା ଛାଡ଼ିବ ଯେପରି ।
ଖୋଜ ସାଧୁସଙ୍ଗ କର ବୋଲି ହରି । ୩ ।
ଧନ ଜନ ସବୁ ମିଥ୍ୟା ଏଥି ମୂଢ଼ ଭ୍ରମ ।
ବୋଲେ ବେଣୁଧର ହୁଅ ବୈଷ୍ଣବ ଗୋଲାମ । ୪ ।
( ଭଜ ମନ ରାଧେକୃଷ୍ଣ ବୋଲି—ବୃନ୍ଦେ । )

—୦—

[ ରାଗ ଖଣ୍ଡବଙ୍ଗଳାଶ୍ରୀ—ତାଳ ଝୁଲା । ]

ମନ କାହିଁକିରେ ଅପଥେ ହେଉଛୁ ବଣା ।
ସୁକର୍ମକୁ ଛାଡ଼ି କୁକର୍ମରେ ଜଡ଼ି ରହୁ ଏକ ବୁଝାମଣା । ଘୋଷା ।
ଶ୍ରୀଗୁରୁଙ୍କ ଦତ୍ତ— ଅମୂଲ୍ୟ ପଦାର୍ଥ,
ନ ସମ୍ଭାଳୁ ଦୃଢ଼ କରି ।
ଅସାଧୁଙ୍କ ମେଳେ କାଳ କାଟୁ ହେଲେ,
ଅଶାନ୍ତ ଆସ୍ତିର ଧରି । ୧ ।
ଦିନୁ ଦିନୁ ବଳ— ବୟସ ଯାଉଛି,
ମାୟା ମୋହେ ସଦା ମାତି ।
ଅନ୍ତିମରେ ତୋର କି ଦଶା ଘଟିବ,
ଏବେ ନ ପାଉଛୁ ଚେତ । ୨ ।

ଗଉର-ଗୋବିନ୍ଦ ପଦ-ମକରନ୍ଦ,
ମଧୁର ମଧୂକୁ ଗ୍ଲୁଡ଼ି ।
ବୃଥା ବିଷୟରେ ମାତୁ ନିରନ୍ତରେ,
ସାଧୂଶାସ୍ତ୍ର କଥା ଛାଡ଼ି । ୩ ।
ବୋଲେ ବେଣୁଧର ବେଳୁଁ ଅନୁସର,
ବୈଷ୍ଣବମାନଙ୍କ ସଙ୍ଗ ।
ସକଳ କଳୁଷ ହେବ ତୋର ନାଶ,
ପରିହର ମିଥ୍ୟା ରଙ୍ଗ । ୪ ।
( ମନ କଳ୍ପବୃକ୍ଷରେ ପାଇଲା ଧନ ନ ହଜା—ବୃତ୍ତେ । )

—❀—

( ତାଳ—ଝୁଲ । )

ଭ-ଜରେ ମନ ଉଜ୍ଜ୍ୱଳ କାନ୍ତି କଞ୍ଜ-ନୟନ ଶ୍ୟାମ ।
ଜ-ନମ ସଫଳ ହୋଇବ ତୋହର ରଟ ନିରନ୍ତରେ ନାମ । ପଦ ।
ରେ-ବାଉଳା ମୂଢ଼ ଏ ବିଭୁବ ଗ୍ଲୁଡ଼ି ବୃଥାଟାରେ ବୁଢ ଭ୍ରମ ।
ମ-ହା-ନିଦ୍ରାବେଳ ମାଡ଼ି ଆସୁଅଛି ଘୋଟିବ ତୋତେ ବିଷମ । ୧ ।
ତି-ଳେ ହେଲୁକରି ନ ପାରୁ ବିସ୍ମରି ବଢ଼ି ଅହଙ୍କାର ତମ ।
ନ-ରଣ ଲେଖୁଛି ମା କରୁଛୁ କହୁ ପାପ ଅବା ପୁଣ୍ୟକର୍ମ । ୨ ।
ଜ୍ୱ-ଳନ୍ତ-ଅନଳ ଜାଣି ତୁ ନ ପଶ ଜଳୁପଡ଼ ନୋହୁ ବାମ ।
ଲ-ସ୍ମୃକର ଛନ୍ଦାଚରଣ ପଙ୍କଜ ଭୟ ହୋଇଯିବ କମ । ୩ ।
କା-ଳନ୍ଦୀକୂଳଆ ସେ ଗିରଚୋଳଆ ନବାସ ବରଜଗ୍ରାମ ।
ଲ-ତାଏ ହେଲେ ତୁ ସେସ୍ଥଳରେ ଯାଇଁ କରଥା ସୁଖ ବିଶ୍ରାମ ।୪।
ଆ-ରତ ଧ୍ୱଂସନ ପତିତପାବନ ଘୋଷୁଥାଅଛି ଅବିରାମ ।
ନ-ରକ ପଙ୍କରେ ନ ପଶିବୁ ତୁରେ ଲଭିବୁ ଉତ୍ତମ ଧାମ । ୫ ।
ବ-ନ୍ଧୁ ପ୍ରାଣବନ୍ଧୁ କେବଳ ତୋହର ନାମ ଶ୍ରୀପୁରୁଷୋତ୍ତମ ।
ନ-ସୁନାନନ୍ଦ ମୂରତି ବିଶ୍ୱପତି ଅର୍ଜ୍ଜ ତାଙ୍କ ଭକ୍ତ ପ୍ରେମ । ୬ ।
ଚ-ଣାଟଣି ନ କରନ୍ତୁ କାଳଦୂତେ ବୋଲ ହରେକୃଷ୍ଣ ରାମ ।
ବ-ଶୀଭୂତ ହେବେ ସକଳ ଶତ୍ରୁ ଏ ଧମସ୍ତେ ନ ହେବୁ କ୍ଷାମ । ୭ ।
ର-ସନା ରସନା ବିଷୟ ରସରେ ଆରେ ମାନସ ଅଧମ ।
କୁ-ଞ୍ଜ-ଚାନ୍ଦ୍ରରେ ମଜ୍ଜ ଆଦ୍ୟବର୍ତ୍ତେ ବେଣୁଧର ମନସ୍କାମ । ୮ ।
( ଭବମାନସ ବିଧିବେଶ— ବୃତ୍ତେ । )

—o—

( ରାଗ—ସାରଙ୍ଗ । ତାଳ—ଝମ୍ପ । )

ଗାନ କର ତୁ ଯା ନବଘନ-କାନ୍ତି ତା ନାମରେ ।
ଆନ ପ୍ରସଙ୍ଗ ମାନସ ହଟ ଥା ବ୍ରଜଧାମରେ । ଘୋଷା ।
ସାନ ବୟସରୁ ଜ୍ଞାନ ଶୂନ୍ୟ ତୁ ହେଲୁ ପଥ ଭ୍ରମରେ ।
କାନରେ ଥରେ ପାନ ନ କଲୁ ହରିକଥା ପ୍ରେମରେ । ୧ ।
ଥାନ ଛାଡ଼ି ଅଥାନକୁ ଗଲୁ କେଡ଼େ ପରିଶ୍ରମରେ ।
ମାନ ମହତ୍ତ୍ୱ କିଛି ନ ରଖିଲୁ ପ୍ରତି ଯାମ ଯାମରେ । ୨ ।
ଧ୍ୟାନକେ ଅବଧାନରେ ଗୁରୁ ଦେଲେ ଯେଉଁ କାମରେ ।
ସାନନ୍ଦ ହୋଇ ତାହା ଯା ନ କଲୁ ଅଚିନ୍ତା ଆଶ୍ରମ ରେ । ୩ ।
ପାନକରି ତୁ ଯୁବତୀ ଅଧର ହେଲୁ ବାଇ ସମରେ ।
ତା ନ ବୁଝିଲୁ ଆରେ ବୃଦ୍ଧ ହେଲୁ ସେ ବିଷ ବିଷମରେ । ୪ ।
ମାନ ମୋ ବୋଲ ଏଣିକି ମନ କହୁଛି ଉତ୍ତମରେ ।
ଦାନବାରି ଶ୍ରୀହରି ଭଜ ଆଜ ନ ଛୁଇଁବ ଯମରେ । ୫ ।
ମାନବ ଜନ୍ମ ସଫଳ କର ତୁ ସଞ୍ଜମ ନିୟମରେ ।
ଧ୍ୟାନରେ ଭଗବାନଙ୍କୁ ଧର ବେଣୁଧର ଗ୍ରାମରେ । ୬ ।
[ ଆସ ଗୋ ହରି ପାଶକୁ ସଖି କସିଥିବେ କୁଞ୍ଜରେ—ବୃତ୍ତ ]

—o—

[ ରାଗ ଦେଶାକ୍ଷ—ତାଳ ଆଠତାଳି । ]

ରେ ଭୁଲ୍ ମନ !

ବୃଥା ମାୟା ମୋହେ ହେଉଛୁ ଅଜ୍ଞାନରେ । ଘୋଷା ।
ଶ୍ରୀ ଗୋବିନ୍ଦ ଗୋପୀନାଥ ମଦନ-ମୋହନ ।
ଦର୍ଶନ କରିବା ଏବେ ଚାଲ ବୃନ୍ଦାବନ ରେ । ୧ ।
ଶ୍ରୀ ବାଙ୍କବିହାରୀ ଶ୍ୟାମ-ସୁନ୍ଦର ଚରଣ ।
ସିଦ୍ଧ ଦେହ ସ୍ମରି ବେଗେ ମାଗିବା ଶରଣ ରେ । ୧ ।
ଶ୍ରୀରାଧା ମାଧବ ରାଧା-ବଲ୍ଲଭଙ୍କୁ ଜାଣ ।
ସ୍ପର୍ଶି ପବିତ୍ର କରିବା ଏ ପାପ-ନୟନ-ରେ । ୩ ।
ଶ୍ରୀ ଯମୁନାତଟ ବଂଶୀବଟ ରମ୍ୟସ୍ଥାନ ।
ଚହିଁ ରହି ସୁଖେ କଟାଇବା ନିଶି ଦିନରେ । ୪

ବୋଲେ ବେଣୁଧର ବୋଲଇବୁ ଭାଗ୍ୟବାନ ।
ଯତ୍ନ କର ଶ୍ରୀଗୁରୁ ଯା କରିଛନ୍ତି ଦାନ ରେ । ୫ ।
[ ପ୍ରିୟସଖି ! ଦେଖ ଶ୍ୟାମବନ୍ଧୁ ଆସିଲେ ତ ନାହିଁ—ବୃତ୍ତି ]

—o—

( ରାଗ ବଙ୍ଗଳାଶ୍ରୀ—ତାଳ ଏକତାଳୀ । )

ଅ-ଜଣା ରାଇଜେ ଯିବୁ ଯେତେବେଳେ
ତୁଣ୍ଡ ବାଜଣା ବଜାଇ ।
ବୋଧି ଶୋଧି କେତେ ଦେଖି ନ ପାରିବେ
ତୋ ପଡ଼ା ପଡ଼ୋଶୀ ଭାଇ ॥
ଧ-ନ ଯା ଥୋଇଛୁ ତୁ ଦୁଃଖ ପଡ଼ି
ମ-ଣାଣୀ ଭୂଇଁକି ନ ନେବୁ ଲୋଡ଼ି । ୧ ।
ନ-ପା ଶ୍ରୋତ ପରି ଆୟୁଷ ତୋହର
ବହିଯାଏ ଖରତରେ ।
ରେ-ଖା ତୋ ହାତରେ ଲେଖା କପାଳରେ
ପୁଣି ଜାତକ ପତରେ ॥
ଭ-ଲ ତହୁଁ କେତେ ଗଲଣି କଟି ?
ଲେ-ଶେ ତା ନ ବୁଝୁ ବଷୟେ ଖଟି । ୨ ।
କ-ଦର୍ଯ୍ୟ ଜଞ୍ଜାଳ— ପଙ୍କ ଘାଣ୍ଟି ହେଉ
ସାଧୁ ଉପଦେଶ ଛାଡ଼ି ।
ର-ମଣି ସ୍ନେହରେ ବୃଥା ତୁ ଭୁଲିଛୁ
ମୋର ବୋଲି ଘର ବାଡ଼ି ॥
ମୋ-ହ ଅନ୍ଧକାରେ ହୋଇଛୁ ଅନ୍ଧ ।
ବୋ-ଲ ନିଜ ଅଙ୍ଗେ କୁଟିଳ-ଗନ୍ଧ । ୩ ।
ଲ-ଙ୍ଗଳା ଆସିଛୁ ଲଙ୍ଗଳା ତୁ ଯିବୁ
ସଙ୍ଗରେ ନ ନେଇ କିଛି ।
ଟି-କାଏ ତୁ ଏବା ହେତୁ କରୁ ନାହୁଁ
କାଳ ତୋ ପଛେ ଲୁଚିଛି ॥
ଆଦ୍ୟ ଅକ୍ଷରକୁ ଚିତ୍ତରେ ବାନ୍ଧ ।
ବେଣୁଧର ବୋଲେ ଭଜ ତୋ ଅନ୍ଧ । ୪ ।
( ଦେଖ ଫୁଲବନ—ବୃତ୍ତି )

—o—

## ମନଃଶିକ୍ଷା

( ରାଗ ବଙ୍ଗଳା ଶ୍ରୀ—ତାଳ ଝୁଲା । )
( ରେ ମନ ! ) ଛାଡ଼ କୁଟନୀତି ।
କର ଶ୍ରୀଗୁରୁ ପଦେ ଭକତିରେ ମନ ; ॥ ଘୋଷା ।

ଅନ୍ୟ ଅଭିଳାଷ ଜ୍ଞାନକର୍ମାଭ୍ୟାସ
ଜାଣି ଦୂରେ ପରିହର ।
ସାଧୁ ସଙ୍ଗେ ରହି, କୃଷ୍ଣ ସେବାକର
ହେବୁ ଭବନଦୀ ପାରରେ । ୧ ।
ଦେଖାଦେବା ଯେତେ ଜନ୍ତୁ ଏ ଜଗତ
ସବୁର ସେତୁ କରତା ।
ତାହାଙ୍କୁ ଭଜିଲେ ସବୁ ସିଦ୍ଧି ହେବ
ବୁଡ଼େ ମ'ନଥା ମୋ କଥାରେ । ୨ ।
ମହାଜନ ପଥ— ଅନୁସରି ନିତ୍ୟ
ଗାଅ ଶ୍ରୀ ଗୋବିନ୍ଦ ଗୁଣ ।
ଅସତ ସଙ୍ଗରୁ କି ସୁଖ ପାଇ ତୁ
ବୁଡ଼ି ହେଉ ଅବୁଝାଣରେ । ୩ ।
ବସିଲା ଠାବରେ ହସି ହସି କୃଷ୍ଣ
ଆସି ଦେବେ ଦରଶନ ।
ନଯା ପଛେ କାଶୀ ମଥୁରା ପ୍ରୟାଗ
ନ ଯା ପଛେ ବୃନ୍ଦାବନରେ । ୪ ।
ଶ୍ରବଣ କୀର୍ତ୍ତନ ଅର୍ଚ୍ଚନ ବନ୍ଦନ
ଆଦ ଯେ ନବଧା ଭକ୍ତି ।
ତହିଁରୁ ଗୋଟିଏ ମୂଳକରି ଧର
ତେଜ ବିଷୟ ଆଶକ୍ତିରେ । ୫ ।
କାମ କ୍ରୋଧ ଲୋଭ ମୋହ ପରିହର
ସଦା ବୋଲ ହରି ହରି ।
କହେ ବେଣୁଧର ପରମାର୍ଥ ଧନ
ପରମ ସଞ୍ଚାଳ କରିରେ । ୬ ।
( ସଖି : ଆସ ଯିବା ଦେଖି—ବୃନ୍ଦେ )

—୦—

( ରାଗ ମଙ୍ଗଳ—ତାଳ ଝିମ୍ପୁଟା )

କଳିଯୁଗେ ନାମରୂପେ କୃଷ୍ଣ ଅବତୀର୍ଣ୍ଣ ।
ନାମବଳେ ଉଦ୍ଧରିଲେ ଏ ତିନିଭୁବନ ହେ । ୧ ।
ଜ୍ଞାନ, ଯୋଗ, କର୍ମ୍ମ, ତପ, ଆଦି ଯେ ପ୍ରଧାନ ।
ନାମର କଳାକୁ କେହି ନୁହନ୍ତି ସମାନ ହେ । ୨ ।
କଳ୍ପାନ୍ତ କୋଟି ଧେନୁ ଯଦି କର ଦାନ ।
ଯଦି ବାରଣସୀ କ୍ଷେତ୍ରେ କର ବାସସ୍ଥାନ ହେ । ୩ ।
ମକରେ ପ୍ରୟାଗେ କୋଟିକଲ୍ପ ସ୍ନାନ ।
ମେରୁତୁଲ୍ୟ ଯଦି ଦାନ କର ଶୁଦ୍ଧ ସ୍ୱର୍ଣ୍ଣ ହେ । ୪ ।
ଏତେ ଦାନ ପୁଣ୍ୟେ ଯେଉଁ ଫଳ ନ ମିଳଇ ।
ଥରେ ନାମ ଦୃଢ଼େ ନେଲେ ସେହି ଫଳ ପାଇ ହେ । ୫ ।
ଏଣୁକରି ଭଜ ଭାଇ ସଦା ଗୌରହରି ।
ବେଣୁ ବୋଲେ ଅନାୟାସେ ଭବୁ ଯିବ ତରି ହେ । ୬ ।
( ଅପ୍ରାକୃତ ପ୍ରେମମୂର୍ତ୍ତି—ବୃନ୍ଦ )

—୦—

( ରାଗ—ସିନ୍ଧୁକାମୋଦ ତାଳ—ଝୁଲା । )

ଖଣ୍ଡ ପାଇଁ କାହିଁ ଧାଇଁବୁ ?
ଅରେ ଭ୍ରମମନ ନ ବୁଝୁ ହେତୁ ? । ଘୋଷା ।
ପରମାତ୍ମା ଜନ୍ତୁ ତୋ ଦେହେ ତାଙ୍କୁ ଦୁଃଖ ଦେଇ ଦୁଃଖୀହେ,
ସଦା ମାଡ଼ିଅଛୁ ବିଷୟ ମୋହେ,
ଏଥୁଁ ଅବା କିସ ଦେଖିପିବୁ ତୁ ? । ୧ ।
ଦୁର୍ଲଭ ଜନ୍ମେ ତ ହେଲେ ନାମ ନ ଭଜିଲୁ ରେ ଭୋଳେ;
ଆଜ କାଲି ହୋଇ ଆୟୁ ସରିଲେ,
କି କରି ପାରିବୁ ସେଦିନ କାଳୁ । ୨ ।
ଜୀବନରେ ଅଦୃଷ୍ଟ ଥିବେ କାଳଦୂତେ ତୋ ପଛ ଠାବେ,
ତପି ରକ୍ତଜନ୍ତୁ ଦେହ ତ ପିବେ,
ରକ୍ଷାକର୍ତ୍ତା ଶ୍ରୀହରିଙ୍କି ନ ଚିନ୍ତୁ । ୩ ।

କଲି କଲମଷ ନାଶନ ଗୌରଚନ୍ଦ୍ରେ କର ପ୍ରସନ୍ନ

ଘୁଞ୍ଚିଯିବ ଅରି ହୋଇ ମଉନ,
କହେ ବେଣୁଧର ତୋ ନାମ ଗୀଉଁ । ୮ ।
( ନ ଚେତକ ମୁରଲୀଧର—ବୃତ୍ତେ)

—০—

( ରାଗ—ମଙ୍ଗଳଗୁର୍ଜ୍ଜରୀ । ତାଳ—ଏକତାଲୀ )

ଐଶ୍ୱର୍ଯ୍ୟ ମଦରେ ଭୋଳ ହୋଇ ଥିବା ଯାଏ ରେ ;
କ୍ଷଣେ ହେଲେ ନ ଚିନ୍ତିଲୁ ମୋହନ-ମୁରତି ରେ । ୧ ।
ମନେ କରିଅଛୁ କରେ ଥିବୁ ଏହିପରି ରେ ?
ଆସୁଛୁ ଖ୍ରୀଷଣ କାଳଦୁତ ନେବ ଧରି ରେ । ୨ ।
ଧନ ଜନ ବଡ଼ପଣ ନ ରହିବ ତୋର ରେ ।
ବନ୍ଧା ହୋଇ ରଜାଦ୍ୱାରେ ହେବୁ ତୁ ହାଜର ରେ । ୩ ।
ଏତିକ ବେଳରୁ ହରିନାମ ଆଶ୍ରେ କର ରେ ।
ଶେଷକାଳେ ନ ଛୁଇଁବେ ଶମନ କିଙ୍କର ରେ । ୪ ।
ଶ୍ରୀଗୁରୁ ଚରଣେ ମନ ! ରଖି ଥା ବିଶ୍ୱାସ ରେ ।
ସୁଗତି ଲଭିବୁ ଦଣ୍ଡେ ହୋଇ ତୁ ଖଲାସ ରେ । ୫ ।
ଛାଡ଼ ଦମ୍ଭ ଅଭିମାନ ଛାଡ଼ ମାୟା ମୋହରେ ।
ବୋଲେ ବେଣୁଧର ନାମ ରଟ ଅହରହ ରେ । ୬ ।
( ଅକ୍ଷୋଧ ପରମାନନ୍ଦ-ନିତ୍ୟାନନ୍ଦ ବପୁରେ—ବୃତ୍ତେ )

—০—

( ରାଗ ଦକ୍ଷିଣକାମୋଦୀ—ତାଳ ପହପଟ )

ଯାଉ ନ ବୁଝି କା'ର ବୋଲେ ତୁ
ଭାର ବହିବୁ ମଥାରେ ?
ବାର ବାର ତ ବୁଝାଇଲି ମନ
ନ ଶୁଣିଲୁ ମୋର କଥାରେ ।
ତୋର କର୍ଣ୍ଣେ ନ ଦେଲୁ ମୋ କଥାରେ । ଘୋଷା ।
ପାର ହେବୁ ତୁ ଯେଉଁ ଭବନଦୀ,
ତା'ର ଉପାୟ ନ ଖୋଜିବୁ ଯଦି;
ନାରଖାର କେତେ ହେବୁ ପାପ ବ୍ୟାଧି-
ଘୋଟିଯିବେ କାୟା-ପନ୍ଥାରେ । ୧ ।

ଖାର ନ ଦଅ କ୍ଷୀରେ ତୁ ମିଶାଇ,
ଛାର ଜୀବନଟା କେତେ ଦିନ ପାଇଁ ?
ଯା, ରଖିଛୁ ଶତ୍ତ ନ ପିଇ ନ ଖାଇ,
ଆଗକ ପାଇବ ସସ୍ତାରେ । ୨ ।
ଧାର କରଜ କରୁ କାହା ଲାଗି,
କାରଣ ବୁଝ ନ ଯାଅ ତୁ ରାଗି;
ଚାରଣ ମାର୍ଗ ଅନୁସର ବେଳି
ଦିବ୍ୟ ଗତି ହେବ ଯଥାରେ । ୩ ।
ନାଁ, ରହିବ ତୋ ଯେପରି କ୍ଷିତିରେ,
ଗାର କାଟି ଦେ ଜଞ୍ଜାଳ ଗୀତିରେ;
ହାରକର କୃଷ୍ଣ ନାମକୁ ଗୁପ୍ତରେ
ତୁଟ ବେଣୁଧର ବ୍ୟଥାରେ । ୪ ।
( ରସମାନସ ସାଧୁକେଶ—ପ୍ରନ୍ତ । )

—o—

( ରାଗ—ପୁନାଙ୍ଗ । ତାଳ—ଝମ୍ପା )

ମନ ନ ଚେତିଲୁରେ ମନ ! ନ ବୁଝିଲୁ ।
ମାୟାଜଞ୍ଜାଳେ ନିରତେ ମୋହ ହେଲୁ । ପଦ ।
ମାତା ଗର୍ଭେ ଥିବାକାଳେ, ଯାକୁ ଧ୍ୟାଉ ଥାଉ ହେଳେ
ଏବେ ପଡ଼ି ମହାଜାଲେ ସେ ନାମକୁ ପାଶୋରିଲୁ । ୧ ।
ସ୍ୱପନ ପ୍ରାୟ ସମସ୍ତ,— ଅଟଇ ରେ ମୂଢ଼ ଚିତ୍ତ,
ଏକା ହରିନାମକୁ ତ ଏ ଦିନୁ ଆଶ୍ରେ ନ କଲୁ । ୨ ।
ଖଳ ଗର୍ବ ଅହଙ୍କାର, ବହୁଅଛୁ ନିରନ୍ତର,
ସେ ବୈକୁଣ୍ଠନାଥଙ୍କର ନାମ ଶୀଳ ନ ଭଜିଲୁ । ୩ ।
ଦୀନ ବେଣୁଧର ବୋଲେ, ଭବ ତରିବାକୁ ଭଲେ
ଗୁରୁ ଯା ଆଦେଶ ଦେଲେ ସେ କଥାକୁ ଫିଙ୍ଗିଦେଲୁ । ୪ ।

( ଆରେ ବାଇବର—ବୃନ୍ଦ । )

—o—

( ରାଗ—ମାଳବ । ତାଳ—ଏକତାଳି )

ମୂଢ଼ମନ ଧୃତକର ଗୂଢ଼ ସଦାନନ୍ଦ ଘୋଷ ।
କୂଢ଼ ୨ ପାପ ଚୋର ଚୂଡ଼ପର ହେବ ନାଶ ॥ ଘୋଷା ।
ଚେଢ଼ନା କୃଷ୍ଣ କଥାରେ, ପଢ଼ନା ପାପ ପନ୍ଥାରେ,
ଧୃଢ଼ନା ନାମ ବୃଥାରେ ଛାଡ଼ ମାୟାମୋହ ଫାଶ ।୧।
ଲକ୍ଷ ଶମନ ସଙ୍ଗରେ, ବଢ଼ ସାଧୁ ସୁସଙ୍ଗରେ
ରାଢ଼ପଣ ଚାଡକର ନ ରଖ ନିଶି ଦିବସ ।୨।
ପଢ଼ ନିତି ଭାଗବତ, ମଢ଼ପର ଝିଙ୍କିବେ ତ,
କାଢ଼ ବୋଲିବେ ସମସ୍ତ ଦଢ଼ଖଣ୍ଡ ଥିଲେ ବାସ ।୩।
ନେଢ଼ ଦୁର୍ଜ୍ଞାନ ପଥକୁ, ଚଢ଼ ପୁଷ୍ପକ ରଥକୁ,
ଜଢ଼ ବୁଦ୍ଧିକ ଅଙ୍ଗରୁ ତଢ଼ ବେଣୁଧର ଭାଷ ।୪।
( ଥକା ମନ ଚାଲ ଯିବା—ବୃତ୍ତେ । )



[ ରାଗ—ଲଳିତକେଦାର । ତାଳ—ଝମ୍ପା ]

ଭଜରେ ମନ ରଜନୀ ଦିନ ରଘୁନାଥ ନାମ ।
ରଘୁନାଥ ନାମ, ସୀତାପତି ରାମ ଦୂର୍ବାଦଳ ଶ୍ୟାମ ॥ ପଦ ॥
ଯେଉଁ ନାମ ଧ୍ୟାନକରି, ତରିଲା ଅହଲ୍ୟା ନାରୀ,
ବୀର ହନୁମାନ ଲଙ୍କା ଜୟ କଲା ଧ୍ୟାଇ ଯେଉଁ ପରଂବ୍ରହ୍ମ ।୧।
ଯେ ନାମ କରି ଭଜନ, ସୁଗ୍ରୀ କିଷ୍କିନ୍ଧ୍ୟା ରାଜନ,
ବିଭୀଷଣ ଲଙ୍କାଗଡ଼େ ରାଜା ହେଲା ଯା ପାଦେ ପଶି ଶରଣ ।୨।
ଯାକୁ ଭଜି ପ୍ରହ୍ଲାଦ, ଲଭିଲେକ ଇନ୍ଦ୍ରପଦ,
ଧ୍ରୁବ ଚିନ୍ତାକରି ମୁକତି ଲଭିଲା ପାଇଲା ଦିବ୍ୟ ଆଶ୍ରମ ।୩।
ଗଜ ଆରତେ ଡାକିଲା, ଗ୍ରାହାମୁଖୁଁ ନିସ୍ତରିଲା
ମୃଗୁଣୀ ବ୍ୟାଧ ସଙ୍କଟୁ ପାରିହେଲା ସୁମରି ସେ ଅଭିଧାନ ।୪।
ଅଜାମିଳ ବିପ୍ର ପାପୀ ଯେଉଁ ନାମ ଗୋଟି ଜପି
ସଙ୍ଗାତୁ ଚଳିଲା ବୈକୁଣ୍ଠେ ବଳିଲା ଦଣ୍ଡି ନ ପାରିଲା ଯମ ।୫।
କହେ ହୀନ ବେଣୁଧର, ଯାହାକୁ ଚିନ୍ତନ୍ତି ହର,
ସେ ଚରଣ ଲଭିବ କଲେ ତୁ ନିର୍ଭୟେ ଯିବୁ ବଇକୁଣ୍ଠ ଧାମ ।୬।
( ଭଜରେ ଭାଇ ପ୍ରଭୁ ନିତାଇ ଗଉରଚନ୍ଦ୍ର—ବୃତ୍ତେ )



( ରାଗ—ଲଳିତ କେଦାର । ତାଳ—ଝଂଲ )

ମୂଢ ମନରେ ଚିନ୍ତ ଜଗନ୍ନାଥଙ୍କୁ ।
ଲଭିବୁ ସୁଗତି ମୁକ୍ତି ପଥକୁ । ପଦ ।
ଅଶେଷ ପାତକ କ୍ଷୟ ହୋଇଯିବ କେବଳ ଆଶ୍ରେ କଲେ ରମାକାନ୍ତଙ୍କୁ ।
ଏ ଭବ ସାଗରୁ ପାରହେବୁ ଯେବେ
ଡାକ କର୍ଣ୍ଣଧାର ଚକ୍ର ହାତଙ୍କୁ । ୧ ।
ଆଜନ୍ମର ପାପ ଯେଥିବ ଅମାପ, ଖଣ୍ଡିବେ ଦେଖି ତୋ ଭକ୍ତିମତକୁ ।
ନିଶ୍ଚିନ୍ତରେ ଦିବ୍ୟ ଧାମରେ ବସିବୁ
ପୂର୍ଣ୍ଣକର ତୋର ମନୋରଥକୁ ॥ ୨ ।
ସାଧୁସଙ୍ଗ ଲୋଡ଼, ମାୟାରେ ନ ପଡ଼ ଇଚ୍ଛା ନ କର କେବେ ଅନୃତକୁ ।
ଲୟ କରିଥାଅ ଥୟରେ ନିର୍ଭୟ—
ହୋଇ ଶ୍ରୀ ଅମଳ-ପଦ୍ମନେତ୍ରଙ୍କୁ । ୩ ।
ମାୟା ମୋହ ହିଂସା ରାଗ ଅହଙ୍କାର, ତେଜି ନିର୍ମଳ କର ଚିତ୍ତକୁ ।
କହେ ଦୀନ ବେଣୁ, କର୍ମ ଜାଣୁ ଜାଣୁ
ଅଜଣା ହେଉଛୁ ଲଙ୍ଘି ସତ୍ୟକୁ । ୪ ।
(ଭଜମନରେ ଭଜ କଳା କହ୍ନାଇ—ବୃତ୍ତ )

❋

ରାଗ—ପରଜ । ତାଳ—ଆଠତାଳି )

ଶ୍ରୀରାଧା ଗୋବିନ୍ଦ ନାମଁଭ୍ରବରେ ଦିବା ଶର୍ବରୀ ।
ତୁଟିବ ଦୁଃସହ ଦୁଃଖ ଅନ୍ତରେ ଜପିଲେ ହରି । ଘୋଷା ।
ଯେ ଜନ ଭଜେ ଶ୍ରୀକାନ୍ତେ, କି ଭୟ ତାର କୃତାନ୍ତେ
କଶୋରୀ ସହିତେ ଅନ୍ତେ ଦେଖାଦେବେ ବଂଶୀଧାରୀ । ୧ ।
ଯେଉଁ ପଦ କରି ଆଶ, ଗୁଡ଼ ଶୀବ କଇଳାସ ।
ଧରି ଦିଗାମ୍ବର ବେଶ ଶ୍ମଶାନ ଭ୍ରମଣକାରୀ । ୨ ।
ଯେଉଁ ନାମକୁ ହୃଦରେ ଜପି ଜପ ଯୋଗନରେ ।
ରହିଛନ୍ତି ଅନାହାରେ ହୋଇ ସୁଖେ ବନଚାରୀ । ୩ ।
ଭଣେ ବେଣୁଧର ହୀନ ସେ ପଦ ଚିନ୍ତାରେ ମନ ।
ଦୂଷିବ ପାଶୁଁ ଶମନ ହେବୁ ଭକ୍ତ ଅଧିକାରୀ । ୪ ।
( ଦେଖିଲେ ଦେଖିଲି ଚଉ—ପ୍ରତି )

—୦—

## ଭଜନ

( ରାଗ ବଙ୍ଗଳା ଶ୍ରୀ । ତାଳ ଝୁଲ୍ଲ

ମନ କହୁଛିରେ ହରେ କୃଷ୍ଣ ନାମ ଘୋଷ ।
ନାମଠାରୁ ବଳି ପରମପଦାର୍ଥ ଏ ସଂସାରେ ଅଛି କିସ । ପଦ ।
ପାନକର ମନ ମୁଖେ ନିତି ନିତି ଅମୂଲ୍ୟ ପୀୟୁଷ ରସ ।
ଅମରଙ୍କ ସଙ୍ଗେ ଅମର ହୋଇବୁ ଶ୍ରୀ ଗୋଲୋକେ ହେବ ବାସ ।୧।
ପୁତ୍ର ଦାରା ଧନ ମୋହର ମୋହର ବୋଲୁଛୁ ମୂଢ଼ ମାନସ ।
ସେ ନୋହେ ତୋହର ମିଛମାୟା ହରି କରି ଅଛନ୍ତି ପ୍ରକାଶ । ୨ ।
ବିଷୟ ବିଷରେ ଘାରି ହେଉଅଛୁ ବୃଥା ରଜନୀ ଦିବସ ।
କୁମ୍ଭୀପାକେ ପଡ଼ି ଘାଣ୍ଟି ହେଲାବେଳେ ଯମକୁ ହେବ କି ତୋଷ ।୩।
ନାମକୁ କର ତୁ ପଥର ସମ୍ବଳ ନିତ୍ୟ ସାଧୁସଙ୍ଗେ ବସ ।
ବେଣୁଧର ପଟ୍ଟନାୟକ କହଇ ଅଙ୍ଗରୁ କଳୁଷ ନାଶ । ୪ ।
( ମନ କହୁଛି ରେ ପାଇଲୁ ଧନ ନ ହଜା—ବୃତ୍ତେ )

## ନାମନିଷ୍ଠା

( ରାଗ—ଲଳିତ କେଦାର । ତାଳ ଝୁଲା । )

ଭଜମନ ଗୋବିନ୍ଦ ହରେ ।
ନ ପଡ଼ ଏ ମିଥ୍ୟା ମାୟା ମୋହରେ । ଘୋଷା ।
କ୍ଷୟ ହୋଇଯିବ ଯେତେ ପାପ କରି ଅଛୁ
ମୂଢ଼ମନ ତୋର ଦେହରେ ।
ସାଧୁସଙ୍ଗ କରି ଥାଅ ଯିବୁ ତରି ନ ପଡ଼ିବୁ ଯମଦଣ୍ଡ ଭୟରେ ।୧।
ନାମଠାରୁ ବଳି ପରମ ପଦାର୍ଥ
ଅଛି କି ସଂସାରେ କହ ଲୟରେ ।
ବୁଝାଇ କହୁଛି କାହିଁ ନାହିଁ କିଛି ରାମ ନାମ ରଖ ତୋ ହୃଦୟରେ ।୨।
ଯମଦୂତେ ଯେତେ- ବେଳେ ଘେନିଯିବେ
କରିବୁ କହ ତୁ କି ଉପାୟ ରେ ।
ଯେବେ ଏତେବେଳେ ଆଶ୍ରେ ନ କରିବୁ ଦୀନବନ୍ଧୁ କୃପାସିନ୍ଧୁ ପୟରେ ॥
ମାୟା ମୋହ ଅହଙ୍କାର ଛାଡ଼ି ହରେ କୃଷ୍ଣ ରାମ ନାମ
ଜପ ଥୟ ରେ ।
ବେଣୁଧର ପଟ୍ଟନାୟକ କହଇ ସ୍ୱର୍ଗେ ଚଳିଯିବୁ ତୁ ନିର୍ଭୟରେ । ୪ ।
( ଭଜମନ କଳାକହ୍ନାଇଁ—ବୃତ୍ତେ )

( ରାଗ ତୋଡ଼ି । ତାଳ— ଆଠତାଳି )

ମନରେ ! ଭାବଗ୍ରାହୀଙ୍କି ଭାବ ।
ଦୟାମୟ ପୂର୍ଣ୍ଣ ବ୍ରହ୍ମ ମାଧବ । ଘୋଷା ।
ହୋଇ ନିର୍ଗୁଣ ଅରୂପ ଗୁଣେ ପ୍ରକାଶେ ରୂପ
ଦାସ ବତ୍ସଳ ବୋଲନ୍ତି ଶ୍ରୀ ରଘୁନାଥ ରାଘବ । ୧ ।
ଭକତଙ୍କ ଭାବେ ଭୋଳ ବିଜୟ ଶ୍ରୀ ନୀଳାଚଳ ।
ଯାହାର-ମହିମା-ବଳେ ଦାରୁ ହୋଇଯାଏ ଦ୍ରବ ।୨।
ଅଶେଷ ବ୍ରହ୍ମାଣ୍ଡ ନାଥ, ପ୍ରଭୁ ଶଙ୍ଖଚକ୍ର ହାତ ।
ସେ ପଦ୍ମର ନର୍ତ୍ତ୍ୟ ଚିନ୍ତ ଗୁଡ଼ ତୋ ଜଡ଼ ସ୍ୱଭାବ । ୩ ।
କହେ ବେଣୁଧର ହୀନ, ଅଟେ ମୁଁ କରମ ହୀନ
ଧ୍ୟାନକରି ନ ପାରିଲି ଯେଣୁ ରାମ ନାମ ଲବ । ୪ ।
(ଝିଗଡ଼ମାଳ ହେଲ ନହ ଶ୍ୟାମ—ବୃତ୍ତେ )

—o—

[ ରାଗ—କାମୋଦୀ । ତାଳ—ଏକତାଳି ]

ଆରେ ମନ ବାଇ ।
କେତେ ଧନ ପାଇଁ କରୁ ଏ ବଡ଼ାଇ ! ଘୋଷା ।
ଚିନ୍ତ ନିରନ୍ତରେ ହରି ନାମ ପଶି ନ ପାରିବ କାଳଯମ ।
ବୃଥାରେ ମାୟା ଜଞ୍ଜାଳେ ପଡ଼ିକରି ଅଜ୍ଞାନ ପଥରେ ନୁହଁ ଭ୍ରମ
ଏ ଭବ ସାଗରୁ ତରିବାକୁ ଆଶ୍ରେ କର ନାମ-ନଉକାକୁ ।
ସେ ବିନା ଆଉତ ଆରେ ମୂଢ଼ ଚିତ୍ତ ଅଛି କେଉଁ ଗତି ଲଭିବାକୁ ।୨।
ବିଷୟୀ ବିଷରେ ନୁହ ଘାରି ମୁଖେ ବୋଲୁଥ ଅ ରାମ ହରି ।
ଅନ୍ତକାଳେ ଗତି ମୁକତି ପାଇବୁ ସୁଖେ ଚଳିଯିବୁ ସ୍ୱର୍ଗପୁରୀ । ୩ ।
କହେ କବଚନ୍ଦ୍ର ଘାନହୀନ ଭାଇ ବନ୍ଧୁ ପୁତ୍ର ଦାରା ଧନ ।
କାହିଁ କିଛି ନାହିଁ ମିଛ ମାୟା ସେହ୍ୱ ନାମାମୃତ ରସ କର ପାନ । ୪ ।
[ ଆରେ ଶ୍ୟାମ ସ୍ନେହ ପାଶୋରିବାକୁ ଉପାୟ ବୃତ୍ତେ ]

—o—

( ରାଗ—ତୋଡି ପରଜ । ତାଳ—ଆଠତାଳ )

ମୂଢ଼ ମାନସରେ, ତୁ କେଡ଼େ ଅବୁଝା ହେଲୁ ।
ବୁଝାଇ କହିଲି ଯେତେ ବାରବାର ଖେଳହେଲେ ନ ବୁଝିଲୁ । ପଦ ।
ଧନ ଚେହଉଅଛୁ ମାୟାବନ୍ଧରେ ତୁ
ଶ୍ରୀ ହରିଙ୍କି ନ ଚିହ୍ନିଲୁ ।

ବୃଥା ନେଲେ ପଢ଼ ମୁକ୍ତ ତାଙ୍କ ଧନ
ମୋହର ମୋହକ ହେବାକୁ । ୧ ।
ତୋ, ଶ୍ରୀ ଗୁରୁଦେବ ପରା ମହା ମନ୍ତ୍ର
କର୍ଣ୍ଣେ କହିଲେ ପହିଲୁ ।
ସେ ଆଜ୍ଞା ଅବଜ୍ଞା କରି କାହିଁ ପାଇଁ
ଏବେ ତା ପାଶୋରି ଦେଲୁ । ୨ ।
ମିଥ୍ୟାବାଞ୍ଛା ହୋଇ ରାଗ ହିଂସା ବନ୍ଧ
ନରକରେ ଘଣ୍ଟି ହେଲୁ ।
କହେ ବେଣୁଧର ଜନ୍ମକାଳେ ପରା
କାହାଁ ? ବୋଲି ବୋଲୁ ଥିଲୁ । ୩ ।
( ଉର ନାହିଁ କ ହେ ପର ତରୁଣୀ ହରଣୁ— ବୃତ୍ତେ )

— — —

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ । )
ରେ ମନ ! ଶୁଣ ଏ ବିଧାନ ।
ମହାଶୂନ୍ୟପୁରେ ଜ୍ୟୋତି ଜନ୍ମୁଅଛି ସତେ ତହିଁ ଭଗବାନ ରେ । ପଦ ॥
ହାଡ଼ ନାଡ଼ ସ୍ଥୂଳ ଶିରା ଚର୍ମ୍ମ ଦେଇ
ସପ୍ତଧାତୁ ଆବରଣ ।
ତହିଁ ମଧ୍ୟେ ବାତ କରେ ଗତାଗତ
ଯା ନାମ ଅଟେ ପବଣ ରେ । ୧ ।
ଉଜାଣି ବହୁଛି ବାର ନୁହେ କହୁ
ତହିଁରୁ ଜାତ ଜୀବନ ।
ନ ଗଲେ ସେ ପଥେ ହାକାରରେ ହତେ
ହେବ ଶରୀର ପତନ ରେ । ୨ ।
ବାୟୁ ମଣ୍ଡଳର ତେଜର ଉପର
ଶୂନ୍ୟ ପାଟଣା ମଣ୍ଡନ ।
ମୃଣାଳ ସୂତ୍ରର ଶତାଂଶ ସୂକ୍ଷ୍ମର
ବାଟେକ ବିରାଜମାନ ରେ । ୩ ।
ଅନ୍ଧକାର ପୁର ମହାଶୂନ୍ୟ ଘର
ଅଟେ ଅବ୍ୟକ୍ତ ସ୍ଥାନ ।
ତହିଁ ପରେ ଜ୍ୟୋତି ଅଜ୍ୟୋତିରେ ସ୍ଥିତ
ଥରେ ତୁ କର ଗମନ ରେ । ୪ ।

ଦେଖିବୁ ତୋକାନ୍ତ ଭଜସୁ ଏକାନ୍ତ
କାନ୍ତସଢ଼ ପରସନ୍ନ
କୃଷ୍ଣଚନ୍ଦ୍ର ଘନ ଯେବେ ଦରଶନ
ପାଏ ତେବେ ଜନ୍ମ ଧନ୍ୟରେ । ୫ ।
( ହଟି ବସିଛୁ କଣୋଷ୍ଣ — ବୃତ୍ତ )

❋

ରାଗ—ତୋଡ଼ି ପରଜ । ତାଳ—ଝୁଲ ।
ରେ ମନୁଆ, ତୁ କି ହୋଇଲୁ ବାଇ ।
ନ ଚିହ୍ନିଲୁ ଯାହା ଶ୍ରୀହରି ନାମକୁ
ବିଷୟ-ଚଞ୍ଚାଇ ଖାଇ । ପଦ ।
ଆସିଅଛୁ ଏକା ଯିବୁ ପୁଣି ଏକା,
ତୋ ସଙ୍ଗେ ନ ଯିବେ କେହି ।
ଏ ମାୟା ଜଞ୍ଜାଳ— ଜାଲେ ପଡ଼ି ଯାହା
ଛଟପଟ ହେଉ ତୁହି । ୧ ।
ମାଟି ଘଟ ଗୋଟି ମାଟିରେ ମିଶିବ,
ଅଗ୍ନିରେ ଦେବେ ତା ଦହି ।
କେତେ ଧନ ପାଇଁ ଏତେ ଲୋଭ କରୁ;
କସ ନେବୁ ବୋଲ ବହି । ୨ ।
ନ ଖାଇ ନ ପିଇ ଏ ପଦାର୍ଥ ସବୁ
ସଞ୍ଚିଅଛୁ କାହାପାଇଁ ।
କର ତୀର୍ଥ ବ୍ରତ ଅଭ୍ୟାଗତେ ଦଅ
ପିଣ୍ଡକୁ କାରଣ ସେହି ॥
ମିଛ ଅହଙ୍କାର କରି ମୂଢ଼ ମନ
ବୃଥା କରୁଛୁ ବଡ଼ାଇ ।
କହେ ବେଣୁଧର ଯମ-ଯାତନାରେ
ସାହା କେ ହୋଇବ ତହିଁ । ୪ ।
( ରେ ବନ୍ଧୁଆ ! ମହି ତମାମାଳ—ବୃତ୍ତ)

[ ରାଗ—ଶ୍ରୀରାଗ । ତାଳ—ଝୁଲ । ]
ରେ ଅବୁଝା ମନ ! ବୁଝୁନାହୁଁ ତୁ କାହିଁ ପାଇଁ ।
ଦେଖି ଦେଖି ଶୁଣି ଶୁଣି ମାୟା ମୋହେ—
ପଡ଼ି ହେଲୁ ଜଡ଼େ ବାଇ ରେ । ପଦ ।

—o—

ଏ ଅଟେ ମିଥ୍ୟା ସଂସାର  କେହ୍ନ ନୁହଇ କାହାର
ଏକା ହରିନାମ ସାର, ପଥକୁ ସଙ୍ଗାତ ନେବ ରେ । ୧ ।
ସ୍ୱପନ ସମ୍ପଦ ସବୁ  ଗଲାବେଳେ କିସ ନେବୁ
ଆସିଅଛୁ ଏକା ପୁଣି ଯିବୁ ଏକା ହୋଇ ରେ । ୨ ।
କେତେ ଧନକୁ ତୁ ଅର୍ଜ୍ଜ—  ପଣକର ଲଭ୍ୟ କଷ୍ଟ,
ଯମଯାତନାକୁ କି ତୋ, ତେବେ ଖଣ୍ଡ ନାହିଁ ରେ । ୩ ।
ପଦ୍ମପତ୍ରେ ଯେହ୍ନେ ନୀର  ଏ ଜୀବ ସେହ୍ନ ପ୍ରକାର,
ଘଟ ଛାଡ଼ି ଗଲାବେଳେ, ନ ଦେଖିବେ କେହ୍ନ ରେ । ୪ ।
କହେ ଦୀନ ବେଣୁଧର  ବେଳୁଁ ନାମ ଆଶ୍ରେ କର,
ବୈକୁଣ୍ଠ ପୁରେ ବସିବୁ, ନିଶ୍ଚିନ୍ତରେ ଯାଇ ରେ (ଅବୁଝାମନ) ।୫।
(ହେ କାଳିଆ କାହ୍ନୁ ଆଉ ବିଳମ୍ବ କର କାହିଁକି—ବୃତ୍ତ)

—o—

( ରାଗ—ରସକେଦାର । ତାଳ—ପହପଟ )

ରାମକୃଷ୍ଣ ରାମକୃଷ୍ଣ ରାମକୃଷ୍ଣ ଭଜରେ ।
ଦୀନବନ୍ଧୁ କୃପାସିନ୍ଧୁ ମୃଦୁ ପଦ କଞ୍ଜରେ । ପଦ ।
ହୃଷୀକେଶ ପୀତବାସ ଶ୍ୟାମନାମେ ମଜ୍ଜରେ ।
ଗୋପୀନାଥ ବାସୁଦେବ ଶନ୍ତ ବ୍ରଜରାଜ ରେ । ୧ ।
ବନମାଳୀ ଦଇତ୍ୟାରି ଧ୍ୟାୟୀ ସବୁ ତ୍ୟଜରେ ।
ଗିରିଧାରୀ ଶ୍ରୀମୁରାରି ହରିଙ୍କିତୁ ହେଜରେ । ୨ ।
ବଇକୁଣ୍ଠ ଭୁବନ ଶ୍ରୀପତି ଚତୁର୍ଭୁଜରେ ।
ମଧୁସୂଦନ ପଦ୍ମନାଭ ନରତେ ଧରଜ ରେ । ୩ ।
ପତିତପାବନ ନାମେ ନୀଳ ଚକ୍ରଧ୍ୱଜ ରେ ।
ରାମନାମ ବେଣୁ ନ ପାସୋରୁ ମାୟା ତେଜରେ । ୪ ।
ରାଧେକୃଷ୍ଣ ରାଧେକୃଷ୍ଣ ରାଧେକୃଷ୍ଣ ରଟରେ—ବୃତ୍ତେ )

—o—

## ସ୍ୱରବର୍ଣ୍ଣାବଳୀ

ରାଗ—ଦେଶାବରାଡ଼ି । ତାଳ—ପହପଟ )

ଅ-ଯତନ କରିନାମ ରତନକୁ ହରାଇ ବସନା ମନ ।
ଆ-ନନ୍ଦେ ବିହ୍ୱଳ ହୋଇ ଭଜୁଥାଉ ଏକା ଶ୍ରୀକୃଷ୍ଣ ଚୈତନ୍ୟ ।
ଇ-ଚ୍ଛ ସାଧୁସଙ୍ଗ ମନରେ । ଇଚ୍ଛ ସାଧୁସଙ୍ଗ ।
ଈ-ଷିତେ କଷଣ ହେବ ଭଙ୍ଗ । ୧ ।

ଙ- ଉସ୍ବରେ ଗାଅ ହରେକୃଷ୍ଣ ରାମ ଗୋବିନ୍ଦ ଶ୍ରୀବନମାଳୀ ।
ଊ-ର୍ଦ୍ଧରେଖାମାନେ ଯାହାଙ୍କୁ ନିରତେ କରିଛନ୍ତି ରେ ସଙ୍ଗାଳି ॥
ଋ-ଷି ମୁନିଗଣ, ମନରେ ଋଷି ମୁନିଗଣ ।
ଋ-ପ ଯା ଚିନ୍ତନ୍ତି ଅନୁକ୍ଷଣ । ୨ ।
ଌ-ପରି ଯାହାଙ୍କ—କଟି ମନୋହର ସେବ୍ୟ ଘାଣ୍ଟି ଘାଗୁଡ଼ିଆ ।
ୡ-ଦ୍ଧ ଚାହାଙ୍କୁ ହୃଦୟ ମଧ୍ୟରେ ଶ୍ରୀକୁଣ୍ଡମାରେ ବୁଡ଼ିଆ ।
ଏ-ଡ଼ିବିଅ ହେଲେ, ମନରେ ! ଏଡ଼ିବିଅ ହେଲେ ।
ଐ-ଶ୍ୱର୍ଯ୍ୟ ଆଶା ନ ରଖ ତିଳେ । ୩ ।
ଓ-ହ୍ଲାଇ ଦେବେ ସେ ମସ୍ତକରୁ ତୋର ଅଜ୍ଞ ଲ ପାତକ ବୋଝ ।
ଔ-ଦାର୍ଯ୍ୟ ଗାମ୍ଭିର୍ଯ୍ୟ ମାଧୁର୍ଯ୍ୟ ଗୁଣରେ ଅନବରତେ ତୁ ମଜ୍ଜ ॥
ଅଂ-ଗ ହେବ ଶୁଦ୍ଧ, ମନରେ ! ଅଙ୍ଗ ହେବ ଶୁଦ୍ଧ ।
ଅ-ଙ୍କ ବେଣୁଧର କହେ ଭେଦ । ୪ ।
( ଆଗୋ ସହଚରୀ କାଲି ବଂଶୀଧାରୀ—ବୃତ୍ତେ )

✻

( ରାଗ—ଲଳିତକେଦାର । ତାଳ—ପହପଟ )

ଘେନ ରେ ମୂଢ଼ମନ ! ମୋର ହିତ ବାଣୀକି ।
ଘନେ ତୁ ପାଗଳ ନୁହଁ ଏଣିକି । ଘୋଷା ।

ଘନଶ୍ୟାମ ସୁନ୍ଦର ଗୁଣ, ଘୋଷିହୁଅ ରଜନୀ ଦିନ
ଘୂମାଇ ପଡ଼ନା ଏ ମାୟା ମୋହରେ
ସତର୍କ ହୋଇଥା କାଳ ଫଣୀ କି । ୧ ।

ଘାଣ୍ଟି ନୁହଁ ଜଞ୍ଜାଳ ଜାଲେ ଭୁଲି ଗୃହ କୁଟମ୍ବ ପାଲେ
ଘୃଣି ମରା କାଠ ପରାୟେ ତୋ କାୟା
ତମ୍ଭ ହୀନ ହୁଏ ନାହଁ ଜାଣି କି ? ।

ଘୋର ପିଅ ନାମ ଔଷଧି, ଘୁଞ୍ଚିବ ଅକାଳ ବ୍ୟାଧି,
ଘଟଣ ଶ୍ରୀ ଛିଦା— ଚରଣେ ଶରଣ—
ପଶ ତୁ ତରିବୁ ଭବପାଣି କି । ୩ ।

ଘଚକର ଶ୍ରୀବୃନ୍ଦାବନେ, ହରି ହରି ବୋଲି ବଦନେ,
ଘୋର ଦୁଃଖ ବନ— ହୋଇବ ଦହନ
କହେ ବେଣୁଧର ଯୋଡ଼ି ପାଣିକି । ୪ ।
( କୃଷ୍ଣ ହେ, ଦିଅ କୃପା ବରଷି—ବୃତ୍ତ )



✻

[ ରାଗ—ସିନ୍ଧୁ କାମୋଦୀ । ତାଳ—ଝୁଲା । ]

ଭଜ ମନ ଆନନ୍ଦେ ବ୍ରଜମୋହନ ମୁରଲୀଧାରୀ ହରିଙ୍କି ।
ଭାଜ ଯିବ ତୋର ବୃଥା ଆଡ଼ମ୍ବର ତରିଯିବୁ ଭବସିନ୍ଧୁ ବାରିକି ॥ ଘୋଷା ॥
ଭଷା ମାଧୁକରୀ ଆଦରୁ, ଭିନ୍ନ ହେବ ଛଳ ଗୁଡର,
ଭୀଷଣ କାଳ କବଳୁଁ ମୁକୁଳିବୁ ଭ୍ରାନ୍ତି ନ ରହିବ ଦଣ୍ଡଧାରୀଙ୍କ । ୧ ।
ଭୁଲି ଯା ତୁ ମାୟା ମମତା, ଭୁଜ-ଠେକା ଟି ତୋ କରତା,
ଭୂମଣ୍ଡଳେ ଯଶ ଅରଜ ବିଶ୍ୱାସ କରି ଗୁରୁବାଣୀ ଆଶ୍ରେ କରିକ । ୨ ।
ଭେଳା କର ଶ୍ରୀକୃଷ୍ଣ ନାମ, ଭେଜ ପର ନୁହ ଅଧମ;
ଭେଖ ଶୋଷ ଦୂର ହେବାର ଉପାୟ ରହିଛି ତୋପାଇଁ ସାରସାରିକ । ୩ ।
ଭୌତିକ ଏ କାୟା ତୋହର, ଭାବ ଦେଖ ନୁହ ବର୍ବର;
ଭଙ୍ଗା ନାବେ ବସି ନଜ ତଳେ ଫାସି ନଲଗା ଚଲ ଗୋକୁଳପୁରୀକ । ୪ ।
ଭକ୍ତ ଭାବଗ୍ରାହୀ ମାଧବ, ଭଲେ ଦେବେ ଶ୍ରୀପଦେ ଠାବ;
ଭଣେ ବେଣୁଧର ଭଙ୍ଗିଆ ନାଗର ଭୁବନର ସାର ଶୋଭାଶିରିକ । ୫ ।

[ ନବଘନ କାଳିଆଗୁନ୍ଦ ଭୂଲତାନଣ୍ଡିର ଗୁହ୍ଣିଲଣିତ—ବୃନ୍ଦେ ]

—*—

( ରାଗ-ବଙ୍ଗଳାଶ୍ରୀ । ତାଳ—ପହପଠ । )

ଗୌ-ରଚନ୍ଦ୍ର ପଦ-ନଳିନେ ମଳିନ୍ଦ ହୁଅରେ ଅବୋଧ ମନ !
ର-ସମୟ କୃଷ୍ଣ ରସମୟୀ ରାଧି ମିଳିତସୁଅପଘନ ॥
ନି-ତ୍ୟଧନ ସେବ । ମନରେ ! ନିତ୍ୟଧନ ସେବ ।
ତ୍ୟା-ଗ ମାର୍ଗେ ଗଲେ ତ କୁଁ ପାଇ । ୧ ।
ନ-ଶ୍ୱର ଜଗତେ ତୋ ସାହା ଭରସା ଆଉ ନାହାନ୍ତରେ କେହୁ ।
ଦ-ଣ୍ଡଧର ଦଣ୍ଡ ଖଣ୍ଡନ କରତା ନାହିଁଆ ଉଦଣ୍ଡ ବାହୁ ॥
ଭ-ଜ ଦୃଢ଼କରି । ମନରେ । ଭଜ ଦୃଢ଼କରି ।
ଜ-ଗତ-ମୋହନ-ଗୌରହରି ॥ ୨ ॥
ମୂ-ଳଧନ ତୋର ଶ୍ରୀନାମ-କୀର୍ତ୍ତନ ହରାଇ ବସନା ତାହା ।
ଢ଼-ଙ୍ଗରଙ୍ଗରୁ ତୁ କି ସୁଖ ପାଇବୁ ଦମ୍ଭାରମ୍ଭ ଖାତ କୁହା ॥
ମ-ନ୍ତ୍ର-ଶକ୍ତିବଳେ । ମନରେ । ମନ୍ତ୍ର-ଶକ୍ତିବଳେ ।
ନ-ରହିବ କିଛି ବୃଥି ବେଳେ ॥ ୩ ॥

ପ୍ରଥମ ବର୍ଣ୍ଣକୁ ହେତୁକର ଥାଅ କ୍ଷଣେ ତୁ ନ ଯାଅ ଭୁଲି ।
ଗୌର ନିତ୍ୟାନନ୍ଦ ଭଜ ମୂଢ଼ମନ ଏ ଦ୍ୱାଦଶାକ୍ଷର ବୋଲି ।
ସଦା ନୃତ୍ୟକର । ମନରେ । ନୃତ୍ୟକର ।
କହେ କବିଚନ୍ଦ୍ର ବେଣୁଧର ॥ ୪ ॥
[ ନିତାଇ ନାଗର ପ୍ରେମର ସାଗର—ବୃତ୍ତି । ]

—o—

[ ରାଗ—ଝିଂଝୋଟ । ତାଳ—ଆଠତାଳୀ ]
ମନରେ ! ଏବେ ମୋ ବୋଲ ମାନ ।
ବନଜ ପଦରେ ଲଗା ତୁ ଧ୍ୟାନ । ଘୋଷା ॥
କନକ ବରନ ଗୌର-ମୋହନ ।
ଅନବରତରେ କରୁଥା ଗାନ । ୧ ।
ଜନମ ସାର୍ଥ କର ନୋହୁ ଆନ ।
ଘନଶ୍ୟାମ ଗ୍ରାମେ ଖୋଜି ତୁ ଥାନ ॥ ୨ ॥
ଧନ ଜନ ବଡ଼ପଣ ଗୁମାନ ।
ବନରେ ଭସାଇ ଦିଅ ବହନ ॥ ୩ ॥
ସନକାଦି ସେବନ୍ତି ଯା ଚରଣ ।
ଛନ୍ନ ନୋହି ଚିନ୍ତ ତା ଅପଘନ । ୪ ।
ତନମଧ୍ୟେ ବ୍ରଜ ଭାବ-ରତନ ।
ସନମାନେ ଘେନ କରି ଯତନ । ୫ ।
ଅନଳେ ଦହିଦେ କୁଳାଭିମାନ ।
ଖନଖନା ବେଣୁଧର ବଚନ । ୬ ।
[ ସଖି ଗୋ, ମୋର କୁଞ୍ଜକୁ ଆଜ— ବୃତ୍ତି । ]

—o—

( ରାଗ- ଲଳିତକେଦାର । ତାଳ ଝୁଲ । )
ଟାଣି ନେବେ ଯବେ, ଅଜଣା ଭୁବନେ
ଯମର ସିପାହୀମାନେ ।
ଟାକ ରହିଛନ୍ତି, ଆରେ ମୂଢ଼ ମତି,
ରହିଥା ତୁ ସାବଧାନେ । ୧ ।

ଠକ ଠକ ହେଉ, କାମିନୀ କାଞ୍ଚନେ
ମଦ ଗର୍ବ ଅହଂକାରେ ।
ଠକି ପଡ଼ିବୁ ତ, ନ ରହିବୁ ତୁ ତ,
ବେଶୀଦିନ ଏ ସଂସାରେ । ୨ ।
ଠାକର ବରଷ୍ଟୁ, ତୋ ବୁଦ୍ଧି ମୁଣ୍ଡରେ
ଛୁ ଛିରେ ନାଚିଜ ମନ ।
ଠାଣ ଦେଖାଉଛୁ ବାବୁ ବୋଲି ଯାହା,
ଧିକ ତୁ ଏତେ ଅଜ୍ଞାନ । ୩ ।
ଟିପି ରଖିଅଛୁ ତୋ ଚରିତ୍ର ବାଛି'
ପାଞ୍ଜିରେ ଯମ-କରଣ ।
ଠିକାଏ କେ ସାହା ନୋହିବେ ସେଠାରେ,
ହେବୁ ଯେତେ ହଇରାଣ । ୪ ।
ଠୋପେ ନ ପଡ଼ିବୁ ଯେପରି ମାନସ, ।
ସେ ପାଠ କର ଅଭ୍ୟାସ ।
ଠାପର ନମଣ ମୋ କୁହା ବଚନ,
କହେ ବେଣୁଧର ଦାସ । ୫ ।
( କ ନାମ ବୋଇଲୁ କୃଷ୍ଣ ଗୋ ଲଳିତେ—ବୃନ୍ଦେ )

❀

( ରାଗ—ଦେଶବରାଡ଼ି । ତାଳ—ପଦପଠ )

ଦାମିନୀ କାନ୍ତିଆ— ଶ୍ରୀ ଗୌରାଙ୍ଗ ନାମ
ଭଜରେ ଅବୋଧ ମନ ।
କାମିନୀ କାଞ୍ଚନ ଲୋଭ ପରିହରି
ଗୁରୁ ଉପଦେଶ ଘେନ ॥
ହୁଅ ତୁ ପାଗଳା । ମନରେ ! ହୁଅ ତୁ ପାଗଳା !
ସଙ୍କୀର୍ତ୍ତନ—ରସେ ହୁଅ ଭୋଳା । ୧ ।
ଜଳଧର ଦଳ— ନବୀନ ଶ୍ୟାମଳ —
ସୁନ୍ଦର ମୋହନ ମଣି ।
ବନ୍ଧ ହୋଇ ରାଧା— ପ୍ରେମ ଗୁଣେ ଏବେ—
କଳିଯୁଗେ ଗୌରଠାଣି ॥
ଭାବ କାନ୍ତି ଧର ; ମନରେ ; ଭାବ କାନ୍ତି ଧର
ଭକ୍ତ ଅବତାର ବଂଶୀଧାରୀ । । ୨ ।

ସଖୀ ଦଖା ଯେତେ ଜନମ ସମସ୍ତେ
ଯେବା ଗୌର ପରିକରେ ।
ଚାହିଁଲ ଗ୍ରାହକେ ଚନ୍ଦ୍ର ଛନ୍ତି ଥୋକେ
ଗୋସ୍ୱାମୀ ଗ୍ରନ୍ଥ ବସ୍ତ୍ରରେ ॥
ପରମାର୍ଥ ଧନ । ମନରେ ! ପରମାର୍ଥ ଧନ ।
ଯେ ଅର୍ଜିଛି ଧନ୍ୟ ସେହି ଜନ । ୩ ।

ଆଗ ଶ୍ରୀ ଗୌରଙ୍ଗ ତତ୍ତ୍ୱ ନ ଜାଣିଲେ
ବ୍ରଜ ଭାବ ନପାଇବୁ ।
ଖାଲି ବଧି କୃଷ୍ଣ— ରାଧାକୃଷ୍ଣ ହେଲେ
ବାହାରଙ୍ଗ ଭାବେ ଥିବୁ ॥
ପରକୀୟା ରସ । ମନରେ : ପରକୀୟା ରସ ।
ସ୍ୱାଦୁ କାହୁଁ ଜାଣିବୁ ମାନସ ! । ୪ ।

ଯୁଗଳ ପୀରତି— ସୁଧା ରଖିବାରେ
ଇଚ୍ଛା ଅଛି ଯଦି ତୋର ।
ଗୌର ମନ୍ତ୍ରସ୍ତ— କର ବ୍ରଜଭାବ—
ମନ୍ତ୍ର ରଜନୀ ବାସର ॥
କହେ ବେଣୁଧର । ମନରେ ! କହେ ବେଣୁଧର ।
ଭକ୍ତ ପାଦୋଦକ ପାନକର । ୫ ।
( ଏ ମାୟା ସଂସାରେ ଭବକାରାଗାରେ—ବୃତ୍ତେ )

—o—

( ରାଗ—ଝିଂଝିଟ୍ ତାଳ—ଝୁଲ )

କେତେ ଦିନ ପାଇଁ ଆସିଛୁ ରେ ମନ !
ଏତେ ତୋ ଗୃହର କଥା ?
ଏ ମିଥ୍ୟା ସଂସାରୁ ବିଦାୟ ବେଳେ ତୋ-
ମୁଖେ ମାଡ଼ିଦେବେ ନିଆଁ । ଘୋଷା ।
ଆରେ ଜଳଜଳା ବିଷୟ-ପାଗଲା ଦୁଣ୍ଡା ମୂର୍ଖ ଅମାନିଆଁ ।
କେତେ ସାହାସ ବାନ୍ଧିଛୁ ଗରବରେ ଏତେ ତୁ ହୀନମାନିଆଁ । ୧ ।
ଖଟମିଛ କହି ପ୍ରାଣୀଙ୍କି ଭୁଲାଇ ଠକୁଛୁ ଟଙ୍କା ସୁନିଆଁ ।
ଅସତ ପଥରେ ପଶି ନିରନ୍ତରେ ନିଃଶଙ୍କେ ମାରୁଛୁ ଡ଼ିଆଁ । ୨ ।
ତୋର ପଛେ ଲୁଚି ସବୁତ ଦେଖୁଛି (ତନୁ) ଶ୍ୟାମଳ ନବଘନିଆଁ
ଯେତେ ପାପ ପୁଣ୍ୟ କରୁଛୁ ଅର୍ଜନ ରେ ପର ବରତନିଆଁ । ୩ ।

ଶ୍ରୀଗୁରୁଚରଣ ତଳରେ ଶରଣ ନେଇ ଯା ନୋହିବ ଗୁନଅାଁ ।
ଗୌରଚନ୍ଦ୍ର ଭକ୍ତ ସାଧୁ ପଦରଜ ସେବାର୍ଥେ ତୋଳି ଘେନଅାଁ । ୪ ।
ବୈଷ୍ଣବମାନଙ୍କ ଅଇଁଠାକୁ ରଙ୍କ ହୋଇ ଗୃଖ ଗୁମାନଅାଁ ।
କହେ ବେଣୁଧର ପ୍ରିୟ ହେବେ ତୋର ନିଶ୍ଚୟେଁ ବୃନ୍ଦାବନଅାଁ । ୫ ।
( ବାରେ ବାରେ କହୁଛି ରେ ମନ ବ୍ରଜଧାମେ—ବୃତ୍ତେ )

—o—

( ରାଗ—ଚକ୍ରକେଳି । ତାଳ—ଝୁଲ । )

ଭ-ଣ୍ଡ ବୃତ୍ତି ଛାଡ଼ ଛାଡ଼ ରେ ମନ !
ଜ-ପ ହରେକୃଷ୍ଣ ନାମ ରତନ । ୧ ।
ଶ୍ରୀ ଗୁରୁ ଆଜ୍ଞା ନ କର ଅନ୍ୟଥା ।
ଗୌ-ରବ ରୌରବ ଏ ଶାସ୍ତ୍ର କଥା । ୨ ।
ର-ସନା ବିଷମ ବିଷୟ ବିଷେ ।
ମୋ-ହ ମାୟାଜାଲ କାଟ ହରଷେ । ୩ ।
ହ-ସି ବେଣୁଧର କହେ ବୁଝାଇ ।
ନ-ଭୁଲ ପ୍ରଥମ ବର୍ଣ୍ଣକୁ ଭୁଲିବ । ୪ ।
( କୃଷ୍ଣ କଥା ଶୁଣ ଗୋପୀ ସକଳ—ବୃତ୍ତେ )

—o—

( ରାଗ ତୋଡ଼ି—ତାଳ ଝମ୍ପା ଝୁଲ )

ମନୁଆ ! ହୁଅ ତୁ ସ୍ୱାଧୀନ ।
ଆଉ କେବେ ନୁହ ପରାଧୀନ ରେ ଘୋଷା ।

ପୂର୍ଣ୍ଣକୁଟିରଟି    କରିଥାଅ ଖଣ୍ଟି,
ନ ଖଟିଣ ପରପାଦେ ।
କର୍ଣ୍ଣ ରସାୟନ    ଶ୍ରୀରାଧା ମୋହନ—
ଚରିତ ଗାଅ ପ୍ରମୋଦେ ରେ । ୧ ।
ଏକାନ୍ତରେ ବସି    ଜପ ଅହର୍ନିଶି,
ଶ୍ରୀ ଗୌରଗୋବିନ୍ଦ ନାମ ।
ଏଥିରୁ ବଳି ତୁ    କି ସୁଖ ଲଭିବୁ ?
ବୁଝ କିନା ନୋହିବ ଭ୍ରମ ରେ । ୨ ।
ଶ୍ରୀଗୁରୁ ପ୍ରଦତ୍ତ    ବୀଜ ମନ୍ତ୍ର ତନ୍ତ୍ର,
କଢ଼ିଥାଅ ଗଣ୍ଠି ଧନ ।
ସାଧୁ ଶାସ୍ତ୍ର ଖୋଜ    ସେ ମରମ ବୁଝ,
ନିରତେ କର ପଠନ ରେ । ୩ ।

ବୈଷ୍ଣବମାନଙ୍କ— ପଦଧୂଳ ଭକ୍ତୁ
ହୋଇ ତୁ ମସ୍ତକେ ଲଦ
କହେ ବେଣୁଧର ସେହିଟି ତୋହର,
ଭବ ରୋଗକୁ ଔଷଧରେ । ୪ ।
[ ରେ ବନ୍ଧୁଆ ! ମଣ୍ଡି ଚମ୍ପାମାଳ—ବୃତ୍ତ ]

—o—

( ରାଗ—ଝିଂଝୋଟ । ତାଳ—ପହପଟ । )
କପଟା ଅସାଧୁ ସଙ୍ଗତେ ରେ ମନ !
ରସ ତୁ କୃଷ୍ଣ କଥାରେ ।
ରସ ନା କଷଣ— ବାସନାରେ ଲଟେ,
ଜଞ୍ଜାଳ କିବ ମଥାରେ ॥ ଘୋଷା ॥
ଘଣନା ତୁ ପାପ— କାନନେ ହିତାପ—
ଅନଳେ ଜଳ ବୃଥାରେ ।
ଖସନା ଏଥିରୁ ଗୁରୁଦତ୍ତ ମନ୍ତ୍ର,
ଚର୍ଣ୍ଣିଧନ କରିଥାରେ । ୧ ।
ଯଣ ନାହିଁ ଆନେ ସାଧୁଶାସ୍ତ୍ର ବଦେ,
ଚଳ ଉଜ୍ଜ୍ୱଳ ପନ୍ଥାରେ ।
କଷ ନାମାମୃତ କପଣ୍ଡ ମଧୁର,
ପିଇ କମ୍ବଳ କନ୍ଥାରେ । ୨ ।
ବ୍ୟାସ ନାରଦାଦି ଋଷିଙ୍କ ବଚନ,
କରନା ତୁ ଅନ୍ୟଥାରେ ।
ରସ ନାଚୁଆ— ପୀତବାସ ଚରିତ,
ହାସମୁଖେ ଗାଉଥାରେ । ୩ ।
ହାସ ନ ଦେବଟି ଅନ୍ତକାଳେ ଯମ,
ଘୁଞ୍ଚିବ ଭବ ବ୍ୟଥାରେ ।
ଭଷ ନନ୍ଦବାଳ ଗୋବନ୍ଦ ଗୋପାଳ,
ବେଣୁଧର ସୁକଥାରେ । ୪ ।
( କେତେ ଧନ ପାଇଁ ଆସିଛୁରେ ମନ—ବୃତ୍ତ )

—o—

[ ରାଗ—ଖଣ୍ଡ ବଙ୍ଗଳାଶ୍ରୀ । ତାଳ—ସଶମାନ । ]

ପଢ ମୁଁ ବୋଲ ଭୁ, ଅଭିମାନ କରୁ
ଶୁଣରେ ପାତକ ମନ ।
ଶ୍ରୀରାଧା ଗୋବିନ୍ଦ ଚରଣାର ବନ୍ଦ —
ଦାସୀ ବୋଲି ଦୃଢ଼େ ଘେନ ।
ଗୁରୁ ଉପଦେଶ ! ପାଳନେ ନ ରଖ ଭୁ ଅଳସ । ୧ ।
ସାଧୁ ସଙ୍ଗ ବୋଲି ଏ ଗୁରୁ ଅକ୍ଷର
ମରମକୁ ହେଜୁକର ।
ସତ କଥା ଜାହେ— ଶରଧା ବଳାଇ,
ହରିକଥା ଶାସ୍ତ୍ରଧର ।
ଆଉ ସବୁ ମିଛ ! କୃଷ୍ଣ ଭକତମାନଙ୍କୁ ପୂଛ । ୨ ।
କୃଷ୍ଣଲୀଳା ସ୍ଥାନ କର ଦରଶନ
କୃଷ୍ଣନାମେ ଦିଅ କାନ ।
କୃଷ୍ଣ କୃଷ୍ଣ ରଟି ଘରୁ ନିଅ ଛୁଟି
ଚଳିଯାଅ ବୃନ୍ଦାବନ ।
ବଂଶୀବଟ ମୂଳେ ! ଧ୍ୟାନ ରଖିଥାଅ ଭୁ ନିଷ୍ଠଳେ । ୩ ।
ଶ୍ରୀକୃଷ୍ଣ ଅଧର ଅମୃତେ ତୃପତ
ଲଭ ରଜନୀ ଦିବସେ ।
ରସ ସ୍ଥଳ ଧଳ ଅଙ୍ଗେ ଦିଅ ବୋଳ
ସଦା ଆନନ୍ଦ ମାନସେ !
ଛଅ ଶତ୍ରୁ ଜଣ ! ବେଣୁଧର କରେ ନିବେଦନ । ୪ ।
( ଆଗୋ ସହଚରୀ କାଲି ବଂଶୀଧାରୀ—ବୃତ୍ତ )

—○—

( ରାଗ—ମାୟାମାଳବ ଗୌଡ଼ା । ତାଳ—ଝୁଲା । )

ସୁମନ ବାଇ ! ଅଞ୍ଜନ ଦେଇ କାହିଁପାଇଁରେ । ଘୋଷା ।
ପିଆଦା ତୋ ଦୁଆରେ ଜଗିଛି ନିରନ୍ତରେ
ଏକଥା ତୋତେ ଜଣା ନାହିଁରେ । ୧ ।
ସେ ପୁରେ ଥିଲବେଳେ ଯାହା କହିଛୁ ଭଲେ,
ତାହା ପାଶୋରି ଦେଲୁ ଭୁଇଁରେ । ୨ ।
ଏ ଦେଶକୁ ଆସିଲୁ, କାହାକୁ ଆଣିଥିଲୁ ?
କାହାକୁ ଯିବୁ ସଙ୍ଗ ନେଇରେ । ୩ ।

ବୃଥାରେ ଖଳସଙ୍ଗ— ଲୋଡ଼ୁ ବନ୍ଧୁ ସଗର,
ଗୁଡ଼ ସ୍ପା ବେଣୁଧର କହୁରେ । ୪ ।
( ଉଠିଲୁ ଏତେ ବେଗି କାହିଁକି—ବୃତ୍ତେ )

—※—

( ରାଗ—ଚଣ୍ଡ କେଦାର । ତାଳ—ଝୂଲା । )

ନାମ ସମ୍ପଦ ନିତ୍ୟକର ଅର୍ଜ୍ଜନ ରେ-ପାଗଳ ମନ । ଘୋଷା ।
ଅନିତ୍ୟ ସଂସାର ଏ ଜେ, ବୁଝେ କାର ।
ଏକା ଶ୍ରୀହରି ନାମ ଅଟଇ ସାରରେ । ୧ ।
ଦେହ ଜୀବନ କେବେ ନୁହଇ ଥିର ।
ପାଣି ଫୋଟକା ପରି ହେବ ଅନ୍ତର ରେ । ୨ ।
ଲୋଭ ମୋହରେ ପଡ଼ି ନ ହୁଅ ଅନ୍ଧ ।
କେଳହୁଁ ଆଶ୍ରେକର ଗୁରୁ ଗୋବିନ୍ଦ ରେ । ୩ ।
କ୍ଷଣିକ ସୁଖେ ମାତି ହେଉଛୁ ଭୋଳ ।
ରହିବ ନାହିଁ ଏହା ବହୁତ କାଳରେ । ୪ ।
ଭଜନ ସାଧନରେ ନକର ହେଳା ।
ଭବସିନ୍ଧୁ ମଧ୍ୟରେ ନବୁଡ଼ା ଭେଳାରେ । ୫ ।
ଯେମନ୍ତେ ଏ ହସ୍ତରୁ ହେବୁ ଉଦ୍ଧାର ।
ବୋଲେ ବେଣୁଧର ସେ ଉପାୟ କରରେ । ୬ ।
( ଏ ଦେହ କଣ୍ଠା ହାଣ୍ଡି—ବୃନ୍ତ )

—୦—

## ସୁନାଶକ ।

( ରାଗ—ତୋଡ଼ି । ତାଳ—ଏକତାଳି )

ମାଟି ଘଟ ପଞ୍ଜରୀ ଗୁଡ଼ ( ହେଲେ ) ସୁନା ଶୁକପକ୍ଷୀ ଯିବଟି ଉଡ଼ି ।
ଆଉ କେବେଁ ସେତ ଧରା ଦେବନାହିଁ ନପାଇବୁ ଆଉ
ତୁ ଲୋଡ଼ ଲୋଡ଼ । ଘୋଷା ।
ଜଗିଅଛୁ ତାହାକୁ ପୁଣ ଗୁପତରେ କାଳ ସଞ୍ଚାଣ,
ଝାମ୍ପି ସେନପିବ ଜେତେ ନ ଗୁଡ଼ିବ,
ଧରି ରେବକମୁଣ୍ଡ ଦେବଟି ମୋଡ଼ି । ୧ ।
କରଅଛୁ କେତେ ଆଦର ଦେଇ ଭଲ ଭଲ ଆହାର,
ତାହା ସବୁ ତୋର ବିଫଳ ହୋଇବ,
କାନ୍ଦୁଥିବୁ ବସି ତୁ ମୁଣ୍ଡ କୋଡ଼ି । ୨ ।

ସେ ପକ୍ଷୀକି ବିଶ୍ୱାସ ନାହିଁ          ବଡ଼ ଅବିଶ୍ୱାସୀ ଅଟଇ,
ଖାଇ ପିଇ ଦେଇ ଛାଡ଼େ ପାଶୋରିବ,
ତୁ ତାକୁ ଚିନ୍ତିବୁ ଘଡ଼ିକି ଘଡ଼ି । ୩ ।
ଦୀନ ବେଣୁଧର ବଖାଣ          ସବୁ ହେବ ତୋ ଅକାରଣ,
ଆଖି ପାଣି ତୋର ଆଖିରେ ମରିବ,
ଶେଷକୁ ଖେଳିବୁ ଡାଲିମାକୁଡ଼ି । ୪ ।
( କାହିଁଗଲେ ମୁରଲି ଫୁଙ୍କା —ବୃତ୍ତ )



( ରାଗ— ମୋହନା । ତାଳ — ଖେମଟା )
ହରିନାମ ଭଜନ ବଡ଼ ସୁଖରେ ।
ଧରିଥାଅ ବେଳହୁଁ ମୁରୁଖରେ । ଘୋଷା ।
ନାଶମାୟାରେ ନ ଭୁଲ ଭୁଲି କଦାଚନ ।
ଭରି କଷଣ ଲଭିବୁ ହେଉ ଜାଣ ମନ । ୧ ।
ପାରି କରିବାକୁ ଜଣେ ଏ ଭବସାଗର ।
ଠାରି ହସ୍ତ ଡାକୁଅଛୁ ଥରେ ଲମ୍ବୁକର । ୨ ।
ଝୁରି ହେବୁଟି ଶେଷକୁ ହରାଇ ସକଳ ।
ଖରି ଏ ବିଳମ୍ବ ନ କର ତୁ ଧବ୍ୟକାଳ । ୩ ।
ହରି ପଦ ଦୀନବନ୍ଧୁ କୃପାସିନ୍ଧୁ ବୋଲି ।
ଚୂରି ହୋଇଯାଇ ପାପ—ଗିରି ହେବ ବାଲି । ୪ ।
ଢୋରି ଲଗା ବ୍ରଜମାଟି ଦ୍ୱାଦଶ ଅଙ୍ଗରେ ।
ଶୋରିଷେ ମଠ ନ କର ଏ ବୃଥା ଢଙ୍ଗରେ । ୫ ।
ମେଳ ନାଶ ମିଥ୍ୟାଗୁଡ଼ ହରି ଆଶ୍ରେ କର ।
ଗୌଣ ଶ୍ରୀ କଣୋଣ ଦାସୀ ଦୀନ ବେଣୁଧର । ୬ ।
( ଘର ପୀରତି ପାଶୋରି ଯାଇ କି—ବୃତ୍ତ )



( ରାଗ—ତୋଡ଼ି ପରଜ । ତାଳ—ଆଡ଼ତାଳୀ )
ଟାଳି ଦେ ତୋହର ଏ ଅଭିମାନରେ ।
ମାନସ ! ମାନ ମୋର ବଚନ । ଘୋଷା ।
ଟାଣ ଗର୍ବ—ଦମ୍ଭ-ଆମ୍ଭ—ବଡ଼ାଇ ।
ଜାଣୁ କିନା କାଳ ନେବ ଛଡ଼ାଇ ରେ । ୧ ।

ଟିକିଏ କି ଦେହକୁ ଏହା ନ ଚେତୁ ।
ରକ୍ଷା କାହିଁ ତୋର ସେ ଲୁହ—ବେଳୁଁ ରେ । ୨ ।
ଟେକ ପଣ ସମ୍ପିବ ନକର ।
ବେକ ଧରି ନେବେ ଯମ-କିଙ୍କର ରେ । ୩ ।
ଟାପରା ନ ମଣ ଏକଥା ଲବେ ।
ତମ୍ବା-ମୁଣ୍ଡ ବାନ୍ଧ ଥିବୁ କି ଭବେ ? ରେ । ୪ ।
ଟେସକର ଦୃଷ୍ଟି ଗୁଡ଼ ଏଣିକି ।
ବେଳହୁଁ ଚିନ୍ତୁଥା ଚିନ୍ତାମଣିକି ରେ । ୫ ।
ଟେକ ବରଜ ଦେ ବିଷୟ-ବନ୍ଧ ।
ଆଶ୍ରେକର ଗୁରୁ କରୁଣା-ସିନ୍ଧୁ ରେ । ୬ ।
ଟିଂଗାଅଛୁ ସାଧୁଶାସ୍ତ୍ର ଯେ ବିଧି ।
ବୋଲେ ବେଣୁଧର ଅର୍ପି ସେ ନିଧିରେ । ୭ ।
( ମୁଁ ଦେହକି ଶ୍ୟାମବନ୍ଧୁ ଭଳିକ—ବୃତ୍ତେ )

—o—

[ ରାଗ  ତୋଡ଼ି ପରଜ । ତାଳ—ଆଠତାଳୀ ]

ଅନ୍ୟ ଅଭିଳାଷ ଶୂନ୍ୟ ହୋଇ ମନ ! ଭଜରେ ଶ୍ରୀ ରାଧାକାନ୍ତେ ।
ଶ୍ରୀଗୁରୁ ପ୍ରଦତ୍ତ ଗାଜନନ୍ତ ଚକ୍ଷୁ ଦୋଷ ଭୁ ବସି ଏକାନ୍ତେ ରେ ॥
ମାନସ ! ନ ହୁଅ ସୁପଥ ବଣା ।
ପରମାର୍ଥ ଧନ କର ଉରଜନ ନରଦେହ ହୋଇ ପୂର୍ଣ୍ଣା ରେ । ୧ ।
ସନ୍ତଜନ ଚିତ୍ତ ଅନନ୍ତ ସେବିତ ସଂସାର—ସାର ମୋହନ ।
କରୁଣାବାରିଧି ପ୍ରେମସୁଧାନିଧି ଭକ୍ତଙ୍କ ହୃଦ ଚନ୍ଦନ ରେ ॥
ମାନସ ! ସେ ଶ୍ରୀ ବୃନ୍ଦାବନଚନ୍ଦ୍ର ।
ଅପୂର୍ବ ମୂରତି କୋଟି ଲକ୍ଷପତି-ବନ୍ଦନ ନାଗର ଇନ୍ଦ୍ର ରେ । ୨ ।
ଚତୁର୍ବର୍ଗ ଦାତା ଅସୀମ କ୍ଷମତା ଶେଷମୁଖେ ନୋହେ ଶେଷ ।
ଯାମଳାଭଞ୍ଜନ ଜଗତ ରଞ୍ଜନ ନବ ନଟବର ବେଶ ରେ ॥
ମାନସ ! ସେ ଶ୍ରୀରାଧା ପ୍ରାଣବନ୍ଧୁ ।
ଦେବେନ୍ଦ୍ର ବନ୍ଦନ ଶ୍ରୀ ନନ୍ଦନନ୍ଦନ ଭାବଗ୍ରାହୀ ରସସିନ୍ଧୁ ରେ ।୩।
ଅଜ ହରଙ୍କର ବନ୍ଦ୍ୟ ଯେ ନକର ଚରଣ ଭୂଷଣ ହରି ।
ଚରଣ ତଳରେ ଆଶ୍ରେ କରିଥିଲେ ହେବୁ ଭବାର୍ଣ୍ଣବୁଁ ପାରି ରେ ।
ମାନସ ! ଏ ସ୍ତବ ପାତକ—ଗିରି ।
ନିମିଷ ମାତ୍ରରେ ସେ ଦୃଷ୍ଟି ପାତରେ ହୋଇଯାଏ ପର୍ବ ଚୂରି ରେ ।୪।

ମାପ୍ବାର କଙ୍କର ନୋହି ବାରମ୍ବାର ବୋଲ ହରେକୃଷ୍ଣ ରାମ ।
କହେ ବେଣୁଧର ଅନ୍ତକାଳେ ତୋର ବଇରି ନୋହିବ ଯମ ରେ ॥
ମାନସ ! ଏ ବଚନ ଥାଉ ପାଳି ।
ପରମ ଶ୍ରଦ୍ଧାରେ ରଟ ନିରନ୍ତରେ ଶ୍ରୀ ଗୋବିନ୍ଦ ବନମାଳୀ ରେ ୫ ।
( ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର—ବୃତ୍ତ )

———

## ଅନିତ୍ୟ

( ରାଗ—କାନନ ଗୌଡ଼ା । ତାଳ—ଏକତାଳୀ । )
ଯିବରେ ଯିବରେ ଜୀବ ଦିନେ ଚାଲି ଯିବ ରେ ।
ଦିନେ ଏହି ମାଟିପିଣ୍ଡ ମାଟିରେ ମିଶିବରେ । ଘୋଷା ।
ଭାଇ ବନ୍ଧୁ ପରିବାର        କେହି ନୁହନ୍ତି କାହାର
ଯାକୁ ମଣୁ ଗଳାହାର ଦିନେ ସେ ଗ୍ରାସିବରେ । ୧ ।
ଏ ସଂସାରେ ଯେତେ ବିତ୍ତ        ନୁହଇ କାହା ଅୟତ୍ତ,
ସଙ୍ଗତେ ନ ଯିବ କାର ମହୀତଳେ ଥିବରେ । ୨ ।
ଏକା ମାତ୍ର ହରିନାମ        ଭଜ କରି ଗଣି ଧନ,
ନ ଲାଗିବ ଯମ ଦଣ୍ଡ ମୁକ୍ତି ହେବ ଠାବରେ । ୩ ।
ବହୁ ଜନ୍ମ ତପ ଫଳେ        ନରଦେହ ଲଭିତଳେ,
ବେଣୁ ବୋଲେ ସବୁ ଜନ୍ମଠାରୁ ଏ ଦୁର୍ଲ୍ଲଭ ରେ । ୪ ।
( ଏ କାଳରେ ଘନ ଯୋଡି କି ଅଛନ୍ତି କଲ—ବୃତ୍ତ )



( ରାଗ—ତୋଡ଼ି ପରଜ । ତାଳ—ଆଡ଼ତାଳ । )
ଏ ବଢ଼ାଇ କେତେଦିନ ? ହେ ସୋଦର ( ଏ ବଢ଼ାଇ କେତେଦିନ )
ସମନ ରାଜାର ଶୀଘ୍ର ଏଥର ଜାରି କରିବେ ସମନ । ଘୋଷା ।
ଜଟିଳ ଈଶ୍ବର ଅଦାଲତ ସେହି ଅଧର୍ମ ଶାସ୍ତ୍ରର ନାହିଁ ।
ସତ ସତ କଥା ଜମାନବନ୍ଦୀରେ ସାକ୍ଷୀ କେ ହୋଇବେ ତହିଁ । ୧ ।
ଯେତେ ପାପ ପୁଣ୍ୟ ସବୁ ଲେଖାଅଛୁ ତାଏରି କଚ୍ଛରେ ପରା ।
ଦିନେ ଏହିଘର ଛାଡ଼ି ବନ୍ଧାହୋଇ ସେଠାରେ ହେବ ହାଜର । ୨ ।

ଏତକ ବେଳରୁ ଉକଳ ପଦରେ ଗୁରୁଙ୍କୁ ଅଶ୍ରୟ କର ।
ମିଛ ମୋକଦମା ଉଡ଼ାଇ ଦେବେ ଯେ ଢକ୍କାଲଞ୍ଚରେ ଭୁମର । ୩ ।
ଖଲାସ ହୋଇବ ଯନ୍ଧ ବନ୍ଦୀଘରୁ ମାନଥାଅ ସାଧୁ ସାକ୍ଷୀ ।
ବୋଲେ*ଘନଶ୍ୟାମ ମମାଳ ସମୟେ ଉପାୟକୁ ଦେବେ ଯୋଖି । ୪ ।
( ଗଳ୍ପିତ ଗଳ୍ପ କଥାରେ ସଙ୍ଗୀତ—ବୃତ୍ତି )

*

## ଭବ ଅଭିନୟ

[ ରାଗ—ବସନ୍ତ । ତାଳ—ଝୁଲ ]

ଭବ ଅଭିନୟ ରଙ୍ଗମଞ୍ଚେ ସଦା ଲଗିଛୁ ପ୍ରବେଶ ପ୍ରସ୍ଥାନ ।
ହେ ଭାଇ ! ଲଗିଛୁ ପ୍ରବେଶ ପ୍ରସ୍ଥାନ ।
ଯାର କରୁଣାରୁ ରସେ ମଜ୍ଜି ମଜ୍ଜି ଶେଷକୁ ଦେଖିବା ସ୍ୱସ୍ଥାନ ।
ହେ ଭାଇ ! ଶେଷକୁ ଦେଖିବା ସ୍ୱସ୍ଥାନ । ଘୋଷା ।
ସତ ଯାଉଅଛୁ ଯାର ନୃତ୍ୟ ଗୀତ, ବଦାୟୁ ହେବା ସେ ଯାଉଛୁ ଭୁରତ,
ଭଲ ମନ୍ଦ ଦୁଇ ପଦକ ପାଇଣ ଭୋଗୁଅଛୁ କଲ୍ପ କରମ । ୧ ।
ପାଏ କେହ୍ବ ଅନ୍ତମରେ ପୁରସ୍କାର; ପାଏ କେହ୍ବ ଅପମାନ ତିରସ୍କାର,
ସୁକର୍ମ ଦୁଷ୍କର୍ମ ଦୁଇରୁ ଗୋଟିଏ ଫଳରେ ବୁଝାଏ ମରମ । ୨ ।
ଆଜକଥା ପୁଣି କାଲକ ଅନ୍ତ, ଏହିପରି ଲଗିଅଛୁ ନିରନ୍ତର,
ଧନ ଜନ ବିଦ୍ୟା ଯୌବନକି କଦା ଥିର ନୁହେ ଥିର ଧରମ । ୩ ।
ଦୁଇଦିନ ଲାଗି ଏତେ ଆଡ଼ମ୍ବର, ମିଛେ କାହିଁ ହେଉଥାଅ ମୋର ମୋର,
କହେ ବେଣୁଧର ଏ ବୃଥା ଚରିତ୍ର ଦେଖି ଶୁଣି ଲାଗେ ସରମ । ୪ ।
[ ବ୍ରଜରାଜପତ ପାଦେ ପଢ଼ ମିତ—ବୃତ୍ତି ]

*

( ରାଗ—ବଙ୍ଗଳାଶ୍ରୀ । ତାଳ ଷଟ୍ମାନ । )

ଏ ମାୟା ସଂସାରେ ଭବ କାରାଗାରେ
ପଡ଼ି ନ ଭୁଲ ହେ ଭାଇ !
ବିଷୟ ବାସନା ଛାଡ଼ନେ ହେବ ଚୂନା,
ଏ ଦମ୍ଭ ରହିବ ନାହିଁ ॥
ଇନ୍ଦ୍ର ଜାଲପରି, ବୋଲ ଭାଇବନ୍ଧୁ ଏ ମୋହର । ୧ ।

---

* ଘନଶ୍ୟାମ ନାମକ ଶିଷ୍ୟ ନାମରେ ଏ ଗୀତ ଭଣିତା ।

ଯମ ଯାତନାକୁ   ଭୟ ନ କରୁଛ
ମୂର୍ଖ ନ ବୋଲୁଛ ହରି ।
ଅମୂଲ୍ୟ ରତନ   ହରେକୃଷ୍ଣ ନାମ
ଏହି ମାତ୍ର ମୁକ୍ତିକାରୀ ॥
ବୃଥା ଆଡ଼ମ୍ବର,  କେତେ ଧନପାଇଁ ଏ ଗୁନ୍ତର । ୨ ।
କଫ ବାତ ପିତ —   ହୋଇ ଏକଷିତ
କଣ୍ଠ ଦେବ ଯୋକ ରୁନ୍ଧି ।
କେହି ନ ରଖିବେ   ଦାରସୁତ ସଙ୍ଗ
ଲୋଟୁଥିବେ କାନ୍ଦି କାନ୍ଦି ॥
ବଡପଣ ଛୋର । ରହିବ କି ଲେଶେ ମନେକର । ୩ ।
ବୋଲ ହରି ହରି   ଭବୁ ଯିବୁ ତରି
ଛାଡ଼ି ଅନ୍ୟ ଅଭିଳାଷ ।
ଦୟା ସତ ଶାନ୍ତ   କ୍ଷମ ଗୁରୁ-ଭକ୍ତି
ରହିବ ମାତ୍ର ଏ ଯଶ ॥
ବେଣୁଧର ମନ । ହରିପ୍ରଦେ ହୋଇବ କି ଲୀନ । ୪ ।
( ଆଗୋ ସହଚରୀ କାଳ ବଂଶୀଧାରୀ—ବୃତ୍ତେ

—o—

( ରାଗ—କେଦାର । ତାଳ—ଏକତାଳୀ ।)
ମୋର ମୋର ବୋଲି କଥାଁ କହୁଛ ହେ ପରକୁ । ଘୋଷା ।
କେହି ରହି ନାହିଁ ଭବେ   ରହିବେ ନାହିଁ କେ ଦମ୍ଭେ
କଦାପି ମାଗିଣ ଧନେ ଯିବେ ଆନ ପୁରକୁ ।୧।
ମନେ କରିଅଛ ଭାଇ !   ଚିରଧନ ଥିବାପାଇଁ
କ୍ଷଣ ଭଙ୍ଗୁର ଏ ଦେହ ମିଛ ମାୟା ଘରକୁ । ୨ ।
ସ୍ୱପନ ଦେଖିଲପରି   ଦେଖ ଏ ସଂସାର ଭରି
ନିଜକୁ ନିଜେ ଭଗାରି, ଅନ୍ତିମ ଜମରକୁ । ୩ ।
ହରିନାମ ଏକା ସତ୍ୟ,   ଆଉ ସକଳ ଅସତ୍ୟ
* ଘନଶ୍ୟାମ ଆଶ୍ରିତ ଯୁଗଳ ପଦୁରକୁ । ୪ ।
( ମନାଇ ପାରିଲୁ ନାହିଁ ସେ ନନ୍ଦ କହ୍ନାଇକି—ବୃତ୍ତେ )

*

* ଭଙ୍ଗାରପୁର ନିବାସୀ ଜନୈକ ଶିଷ୍ୟ ନାମରେ ଏ ଗୀତଟି ରଚନା ହୋଇଛି

[ ରାଗ—ଝିଂଝୋଟ । ତାଳ—ଝୁଲା ]

ଦୁର କର ତୃଷ୍ଣା ବିଷ୍ଣୁ ଭକ୍ତ ଅନୁରାଗ ଧାର୍ମିକ ।
ସୁରଙ୍ଗ-ଚରଣ କମଳେ ମିଳନ, ହୋଇ ସୁଖ ମଧୁପାନକ । ୦ ।
କୁରଙ୍ଗ ପରି ତୁ ମୁଦ୍ଧ ଚଞ୍ଚଳ, ଘୂରନା ବିଷୟ ବନ-ଅଞ୍ଚଳ ।
ଭରଗ-କାଳଟି ଫଣା ଟେକି ଅଛି ନ ପାରୁ ବୁଝି ବିସ୍ମର କ । ୧ ।
ସୁର ଅସିର ନାଗ ନରଙ୍କ, ଜୁଡ଼ନ୍ତି ଯେଉଁ କଳ୍ପଷ ଯାକ ।
ଦୂରରୁ ଶୁଣି ଆରତ ଡାକ, ଚୂରନ୍ତି ପାପ ଗିରକ । ୨ ।
ତୁ ରଙ୍ଗ ହୁଅ ସେ ନାମ ଗାନେ, ସୁରସ ସୁଧା ସଲିଳ ପାନେ ।
ତୁରନ୍ତ ବସ ଏକାନ୍ତ ସ୍ଥାନେ; ଭରସ୍ମର ତ୍ରସାର କ । ୩ ।
ମୁର ଅନ୍ତକ ମଧୁସୁଦନ, ପୂରଣ କରିବେ ତୋ ମନସ୍କାମ ।
ତୁରନ୍ତ ଏ ସଂସାର ବନ୍ଧନ, ଫେଡ଼ିବାରେ ଯିବେ ତାରକ ? । ୪ ।
କୁ ରଙ୍ଗ ରସକୁ ଦେହର, ସ୍ଫୁରନ୍ତୁ ମୁଖେ ଶ୍ୟାମସୁନ୍ଦର ।
ସୁରଜା ତୀରେ ଥାଇ ବେଣୁଧର, ଲଭୁ କିଶୋର କିଶୋରଙ୍କି । ୫ ।
( ଭଜରେ ମନ କାମ ମୋହନ ଶ୍ୟାମସୁନ୍ଦର ନାମ—ବୃନ୍ଦେ )

—*—

( ରାଗ—ଖମ୍ବାଜ । ତାଳ—ଏକତାଳ ଝୁଲା )

ଚିନ୍ତା ଥା ତୁ ନିଶ୍ଚିନ୍ତରେ ଶ୍ରୀ ଚିନ୍ତାମଣି କ ।
ନବୀନ ନାଟୁଆ ହାସ୍ୟ ମୁରଲୀ ପାଣି କ । ଘୋଷା
ଭୟ ଭଞ୍ଜନ ସେ ଯଶୋଦା ନନ୍ଦନ, ଅଭୟରେ ତୁ ଲୟ କର ମୂଢ଼ମନ ।
ଅଭୟ ଛନ୍ଦବା ସ୍ଥିରୁ ତ୍ରିଭଙ୍ଗ ଠାଣିକ । ୧ ।
କାଳୀୟ ମର୍ଦ୍ଦନ ଯାଦବ ଭଞ୍ଜନ, କାଳନ୍ଦୀ କୂଳିଆ ଗରବ ଗଞ୍ଜନ ।
ମାଳଧର ଜପ ମାନ ଶ୍ରୀଗୁରୁ ବାଣୀ କ । ୨
ଅଳସୁଆ ହୋଇ ତୁ ଦଣ୍ଡେ ନିମିଷେ ଚଳ ବ୍ରଜଧାମେ ପରମ ହରଷେ ।
ଖଳ ସୁ ଭାବକୁ ଟାଳ ହୃଦରେ ଏଣିକ । ୩ ।
ବେଣୁଧର ବୋଲେ ସାଧୁଙ୍କ ଚରଣ- ରେଣୁ ଶିରେ ବୋଳି ହୁଅ ଅନୁକ୍ଷଣ ।
ଯେଣୁ କରି ଲଭିବୁ ସୁଗତି ସରଣୀ କ । ୪ ।
( ମନ ରହ ରାଧାକୃଷ୍ଣ ଶ୍ରୀମୂର୍ତ୍ତିକି ଧ୍ୟାୟି—ବୃନ୍ଦେ )

—*—

[ ରାଗ—ପାନ୍ତୁବରାଡ଼ି । ତାଳ—ଆଡ଼ତାଳ ]

ବନ୍ଦ ରେ ମନ ନନ୍ଦସୁତ କୃଷ୍ଣଚନ୍ଦ୍ରଙ୍କୁ ।
କନ୍ଦର୍ପ ମୋହନ ରୂପ ଗୋବିନ୍ଦ ଆନନ୍ଦକନ୍ଦଙ୍କୁ । ପଦ ।
ସେ ସୁନ୍ଦର ପୁରନ୍ଦର— ଛନ୍ଦା ପଦାରବିନ୍ଦର—
ମରନ୍ଦ ପାନେ ମିଳିନ୍ଦ ହୋଇ ତୁ ବାର ସ୍ୱାନ୍ଦୁକୁ । ୧ ।
ବୃନ୍ଦାରକ ବୃନ୍ଦ ବନ୍ଦ— ମାଧୁ ଶ୍ରୀ ସଚ୍ଚିଦାନନ୍ଦ,
ମନ୍ଦାର ମାପମୂଳଆ ଗୋପୀ ନୟନାନନ୍ଦଙ୍କୁ ।
କୁନ୍ଦ-ସୂନ ହାସ୍ୟାମୃତ ବୃନ୍ଦାଏ ବୃଷ୍ଟି ଦେଖତ,
ହୃଦାନନ୍ଦ ବୃଦ୍ଧି ହେବ ହଠାଇ କୂଟହୃନ୍ଦକୁ । ୩ ।
କୁନ୍ଦନ ନନ୍ଦନ ପୀତ— ବହନ କନ୍ଦର ହାତ,
ଗନ୍ଧ ଚନ୍ଦନ ଚର୍ଚ୍ଚିତ ଶ୍ରୀ ଅପଘନାମୋଦକୁ । ୪ ।
ବୃନ୍ଦାବନ ସୁଧାକର ଧନ୍ଦା ହରିବେ ତୋହର
ଫନ୍ଦାକର ବୋଲେ ବେଣୁଧର ବାଳମୁକୁନ୍ଦଙ୍କୁ । ୫ ।
( ଭଜ ରେ ନମ ବ୍ରଜବନ ଦ୍ୱିଜଖଗଙ୍କୁ—ବୃତ୍ତି )

—୦—

[ ରାଗ—ଦେଶମହ୍ଲାର । ତାଳ—ଝୁଲ ]

ନୀରଜବନ୍ଧୁଜା ତୀର ବିହାରୀ କ୍ଷୀରଚୋରଙ୍କୁ ଚିନ୍ତ ରେ ।
ମନ ! କ୍ଷୀରଚୋରଙ୍କୁ ଚିନ୍ତ ରେ ।
ଶ୍ରୀ ରସରାଜ ମୂରତି ଶ୍ରୀପତି ମହିମା ଅଟେ ଅନନ୍ତ ରେ । ଘୋଷା ।
ବିରସ ଭାବ ମୁଞ୍ଚି ମୁଞ୍ଚି ନୀରସ ଜନ ସଙ୍ଗରୁ ଘୁଞ୍ଚି
ଗିରି ସାଧୁଙ୍କ ମଧୁରତା ଦେଖି ବେଳକୁ ହୋଇବ ହିତ ରେ । ୧ ।
ଥିର ବିଜୁଳି ନୀରଦ କାନ୍ତି କୀରତି ଗଣ କରିଥା ପୋଥି,
ଚିର ନୁହେଟି ଧନ ଯଉବନ କ୍ଷଣକେ ହେବ ରହିତ ରେ । ୨ ।
ଧୀର ସମୀରେ କୁଟିର କରି ନିରତେ ତଟ ଗଉରହରି,
ଶିରରେ ବ୍ରଜ-ରଜ ଆଦରି ଗାଅ ତୁ ଯୁଗଳ ଗୀତରେ । ୩ ।
ପୀରତି ଲଗାଅ ଭକତିପ୍ରେମ ହୀରକ ଅକ୍ଷର ରହିବ ନାମେ,
ଛି, ରସନା ତୁ ବିଷୟ ଗ୍ରାମେ ବେଣୁଧର ବିରତ ରେ । ୪ ।
[ କା, ରି ବୋଲେ ତୁ ପାର କରିବୁ—ବୃତ୍ତି ]



( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ୍ଲ ଆଠତାଳି )

ମୂଢ଼ମନ ବଇଆ ହୋଇଲୁ ରେ, ଧନ ଅରଜନେ ମାତି ।
ତୋର ଅନ୍ତେ ସବୁ ଉଜୁଡ଼ାଇ ହେଣ୍ଡି ମାରୁଥିବେ ପୁତ୍ରନାତି । ଘୋଷା ।

ବିଧାତା ଲେଖିବା — ଆୟୁଷ ପଞ୍ଚାଶ—
ହଜାର ଦିବସ ଥାଇ ।
ନିଜ ପାପ ଫଳେ — ତାହା ଛୁଟେ ବଳେ
ତୋତେ ତ ଭୁଦ୍ଧି ଅଗତି । ୧ ।
ଯଥା ଘଟେ ବନ — ଏ ଘଟେ ଜୀବନ
ତଥାରେ ପାଗଳା ହାତୀ ।
ସାଇତି ପାରିଲେ — ଅମରଙ୍କ ଭୁଲେ
ଜଣେ ନୁହନ୍ତି କି ସାଥି ? । ୨ ।
ପୋଡ଼ି ଯାଉ ତୋର — ଦମ୍ଭ ଅଭିମାନ
ଗରବ ଗୁମାନ ଜାତି ।
ଧିକ ଧିକ ଧିକ — ଯଦି ତୋ ଅଙ୍ଗରୁ—
ନ ଘୁଞ୍ଚିଲା କାମ ତାତି । ୩ ।
ଯେଉଁ ଦ୍ରବ୍ୟ ତାକୁ — ନରକ ଗର୍ତ୍ତରେ
ଜାଣି ଶୁଣି ଦିନ ରାତି ।
ସେ ଜୀବ ପରମ — ବ୍ରହ୍ମକୁ ହରାଇ
ହୋଇଛୁ କି ତୁ ବ୍ରହ୍ମଘାତି ? । ୪ ।
ମାୟା କୁହୁକିନୀ — ତୋ ନିଜ ଘରଣୀ—
ରୂପେ ଅଛି କୋଳ ପାତି ।
ଦୁଃଖକୁ ତୁ ମହା- — ସୁଖ ମଣିଅଛୁ
ସେହିଟି ବିଷମ ଭ୍ରାନ୍ତି । ୫ ।
ଲୋଭ ମୋହେ ପଡ଼ି — ତୁ ଯେ ଘଡ଼ି ଘଡ଼ି
ଫୁଲାଇ ହେଉଛୁ ଛାତି ।
କ୍ଷୋଭ ଜାତ ହେବା— ବେଳକୁ ତ କାଳ
ରଖି ନ ଦେବ ନିହାତି । ୬ ।

ଏବେ ମୂଳଧନ　　କର ଉପାର୍ଜ୍ଜନ
ହରିନାମ ଯାହା ଖ୍ୟାତ ।
ବୋଲେ ବେଣୁଧର　　ପାପ ହେବ ଦୂର
ଗୁଡ଼ ଗନ୍ଧପରି କାତ ।୭।
( ମନ ଭୋଳେ ଭୁଲାଇ କହୁଛରେ ହରେ କୃଷ୍ଣ ନାମ ଘୋଷ---ବୃନ୍ଦେ )

*

( ରାଗ—ତୋଡ଼ିପରଜ । ତାଳ—ତ୍ରିପୁଟା ଆଠତାଳୀ )

ଚ-ଚତୁର ନିରନ୍ତର ହରି କଥାରେ ମାନସ !
ସ-ଙ୍ଗଲୋଡ଼ ସାଧୁଙ୍କର ନିଶ୍ଚିନ୍ତେ ମଠରେ ବସ । ଘୋଷା ।
ମା-ଗିଖାଅ ମାଧୁକରୀ ଦ୍ୱାରେ ଦ୍ୱାରେ ଫେରି ଫେରି,
ନ-ମୁଞ୍ଚ ଏ ହରିବାଣୀ ଅପୂର୍ବ ପୀୟୂଷ ରସ ।୧।
ଦ-ଇ୍ୟ ଶାନ୍ତ ଦୟା କ୍ଷମା—ଏ ଗୁରି କୃଷ୍ଣ ମହିମା,
ଗ-ଗ ମାର୍ଗ ଅନୁସରି ହୁଅ ବୈଷ୍ଣବଙ୍କ ଦାସ ।୨।
ଧି-କ ଏ ମାୟା ଜଞ୍ଜାଳ ବୋଲି ତୁ ବଦନ ଟାଳ,
କେ-ହି ନୁହେଁଟି କାହାର ପୁତ୍ର ଦାରା ବନ୍ଧୁ ବଂଶ ।୩।
ଦ-ରଣ ରକ୍ଷଣ ହରି କରତା ପିତା ସବୁରି,
ଯା-ମହିମା ଅଛୁ ପୂରି ପାତାଳ ମର୍ତ୍ତ୍ୟ ତ୍ରିଦଶ ।୪।
ର-ଙ୍ଗ ଚରଣ ନଳିନ ଭୃଙ୍ଗ ହୋଇ କର ପାନ,
ର-ହିବ ନାହିଁ କଷଣ ହଟିଯିବ କ୍ଷୁଧା ତ୍ରାସ ।୫।
ସ-ମସ୍ତ ଯାଉଛି ସ୍ଥୂଳ ପିଣ୍ଡ ହେବ ଧୂଳି ବାଲି,
କ-ରେ ଧରି ମାଳା ଫୁଲ ହରେକୃଷ୍ଣ ରାମ-ଘୋଷ ।୬।
ଥା-ଉ ବୃଥା ଆଡ଼ମ୍ବର ଭଜନେ ହେଳା ନ କର,
ରେ-ବାଉଳା ଆଦ୍ୟାକ୍ଷର ହେଜ ବେଣୁଧର ଭାଷ ।୭।

[ ଦେଖିଲେ ଦେଖିଲୁ ପରି—ବୃନ୍ଦେ ]

*

ରାଗ—ଜଙ୍ଗଲାଶ୍ରୀ । ତାଳ—ଝୁଲ )

ଜୀବେ କି ନିମିଷେ ହରି ନାମ ରସେ,
ନ ମଜ୍ଜିଲୁ ମୂଢ଼ମତି ରେ ।
ଭବେ ଥାଇ ଆଉ କି ସୁଖ ଲଭୁଛୁ,
ସଦା ତୁ ଫୁଲାଇ ଛାତି ରେ । ଘୋଷା ।
ଅବେଖିଆଳ କର୍ମ କରୁ କାହିଁପାଇଁ ?
ଦମ୍ଭ ଅହଙ୍କାର ଗଉରବକୁ ବହି,
ଲୋଭ ମୋହେ ପଡ଼ି ପ୍ରତି ଘଡ଼ି ଘଡ଼ି
ବୃଥା ରସେ ଅଛୁ ମାତି ରେ । ୧ ।
ଜୀବେ ଦୟା ନାମେ ଶ୍ରଦ୍ଧା ନ ବହିଲୁ,
କି ଦେଶରେ ନିଜ କର୍ତ୍ତବ୍ୟ ଭୁଲିଲୁ,
ବିବେକ ଶୂନ୍ୟ ତୁ— ହୋଇ ସବୁ ଗଲୁ
ହିତକୁ କର୍ଣ୍ଣ ନ ପାତି ରେ । ୨ ।
ଛି ବେଉସା ଚୋରି ଧିକ ରେ ବାଇଆ,
ନବେଶିଲୁ ଲମ୍ପ ଦାଗ ଧୂତେ ଯାହା
ଯିବେ କି ସଙ୍ଗରେ ହେଉ କର ଥରେ
ବନ୍ଧୁ ପରିବାର ଜାତି ରେ । ୩ ।
ଏବେ ମୁଁ କହୁଛି ଭଲେ ଏହା ମାନ,
ଦେବେ ଯେ ସୁଗତି ତାଙ୍କୁ କର ଧ୍ୟାନ,
ତେବେ ଭବାବ୍ଧିରୁ ତରିଯିବୁ ଜାଣ
ଏ ବେଣୁଧର ଉକତି ରେ । ୪ ।
( ବ୍ରଜରାଜ ସୁତେ ଫାନ୍ଦେ ପଡ଼ି ମିତ—ବୃତ୍ତେ )

———

( ରାଗ—ଦକ୍ଷିଣକାମୋଦ । ତାଳ—ଝୁଲ )

ଭଜ ରେ ମନ ଶ୍ୟାମସୁନ୍ଦର ନାମକୁ ବାରମ୍ବାର ।
ବ୍ରଜରାଜ ଶିରେ ବୋଲି ହେଉଥାଅ ଅଜ ଶିବ ଭୃତ୍ୟ ଯାର । ୦ ।
ସଜ ସରସିଜ ପଦଯୁଗଳ ଅରଜ ସେ ଧନ ବଂଶୀ ବାସର
ମଜ୍ଜ ହରି କଥା ଶ୍ରବଣେ କେବଳ ହେବୁ ଭବସିନ୍ଧୁ ପାର ।୧।
ଲାଜ ଭୟ ଅଭିମାନ ବରଜ ପାପ ଧନକୁ ନ କର କରଜ
ହାକିମ ହୁଅ ତୁ ଶ୍ରୀଗୁରୁ ହଜୁରେ ମନେ ନ ଧର ତୁ ଆର । ୨ ।

ବ୍ୟାଜ ମୋହ ମାୟାଜାଲେ ନ ପଡ଼ି    ସାଜ ସଖି ବେଶ କରଣ ଦୃଢ଼
ମାନ ଅଙ୍ଗ ଅଳଙ୍କାରକୁ ଯତନେ ବହନା ବେଷଧୁ ଭାର ।୩।
ନଜର ବୋଲି ତୁ କିଛି ନ ଭାବ    ସାଜ ମହାମନ୍ତ୍ରେ ଅଛିଟି ଭାବ,
ଭଜନେ ଶ୍ରୀ ବୃନ୍ଦାବନେ ଯାଇ ତୁ ମାନପାଅ ନଜ ଦ୍ୱାର ।୪।
କହେ ବେଣୁଧର ଆରେ ମାନସ    ଦାସବନ୍ଧେ ସୁଚେତନ ରଖ ଅଣ
ବର୍ଜନ କର ତୁ ଅନ୍ୟ ଅଭିଳାଷ ସାଧୁସେବା କର ସର ।୫।
( ଭଜ ରେ ମନ ରାମନାମ—ବୃତ୍ତେ)

—❀—

( ରାଗ—ଅଷ୍ଟାଡ଼ଶୁକ୍ଳ । ତାଳ—ଝୁଲ )

ଶ୍ରୀରାଧା ଗୋବିନ୍ଦ ପଦାରବିନ୍ଦେ । ମଜ୍ଜ ରହ ମନ ସଦା ଆନନ୍ଦେ ।
ରାସ ବିଳାସରେ ଲଗାଅ ଲୟ । ନାଶହେବ କାଳ ଶମନ ଭୟ ।
ଧାଇଁ ଗୁରୁପଦେ । ପାଇବ ପ୍ରେମ ଧନକୁ ତୁ ସ୍ୱଚ୍ଛେ ।୧।
ମାନ ସାଧୁଜନେ କହିବା କଥା । ଆନ ସଙ୍ଗତିକ ପୋଡିଣ ମଥା ।
ଧର ସିଧା ମାର୍ଗ ନ ହୁଅ ବଣା । ଅବାଟରେ ଅଛି ଅନେକ ଖଣା ।
ବସି ଘୋଷ ନାମ । ଖସି ଯିବ ତୋ ପାପ ବିଷମ । ୨ ।
ହୁଡ଼ ନ ପା ପୂର୍ବ ଶାସ୍ତ୍ର ମରମ । ବୁଡ଼ ନ ଯାଅ ତୋ ଭକତି ପ୍ରେମ ।
ଅବିଶ୍ୱାସୀ କାଳ ଯିବ ହାଟେବାଟ । ରହିତଲେ ଯଶ ରହୁ ତୋ ପଡ଼ ।
ସତ ଶାନ୍ତ କ୍ଷମା । ନିତ୍ୟ ନୂତନ ମୂର୍ତ୍ତିଙ୍କ ମହିମା । ୩ ।
ଦସ୍ୟୁଙ୍କୁ ସାମନ୍ତ ଜଣେକ ଥାଉ । ଭସ୍ମାନ୍ତୁ କାନ୍ଦିକ ଦେଉଛୁ ଆଉ ।
ଏ ଦେହରୁ ରୋଗ ଯିବ ଯେମନ୍ତ । ସେ ଔଷଧି ପାନକର ନିରନ୍ତେ ।
ହେଜ ହିତବାଣୀ । ଏ ଯଶ ରହୁ ବେଣୁଧର ଭଣି । ୪ ।
( ଗୋବିନ୍ଦ ହିନ୍ଦୋଳେ ବରଜନାରୀ—ବୃନ୍ଦେ )

— ୦ —

## ପ୍ରାର୍ଥନା

( ରାଗ—ମଙ୍ଗଳ । ତାଳ—ତ୍ରିପୁଟା )

✽ କେଶବ ପରମାନନ୍ଦ ମାଧବ ମୁକୁନ୍ଦ ।
ବେଣୁ ବଂଶୀଧାରୀ ଶ୍ରୀ ଗୋବିନ୍ଦ ଆନନ୍ଦକନ୍ଦ ହେ । ୧ ।
ଏ ଦେହ ଜୀବନ ସବୁ ତୁମ୍ଭଙ୍କୁ ଦେଇଛି ?
ଦପିନବହାରୀ ହରି ଶ୍ରୀପତି ଶ୍ରୀବତ୍ସ ହେ । ୨ ।

---

✽ଏହି ଗୀତର ପ୍ରତିଧାଡ଼ି ପ୍ରଥମ ଅକ୍ଷର ପାଠ କଲେ ପ୍ରାର୍ଥନାର— ସାରମର୍ମ ଅର୍ଥାତ ପଦ କର୍ତ୍ତାଙ୍କ ସ୍ୱାଭିଷ୍ଟ ଲାଳସା ପ୍ରକାଶ ପାଏ ।

ତବୁ ପଲ୍ଲବ-ନୟନ ଛଳବୁ କାହିଁପାଇଁ ?
ଦୟାମୟ ଦୀନବନ୍ଧୁ ବ୍ରହ୍ମାଣ୍ଡ ଗୋସାଇଁ ହେ । ୩ ।
ବୋଳାଅ ମୋ ଶିରେ ତବ ଭକ୍ତ ପଦଧୂଳି ।
ଝରାଅ ନୟନୁ ମୋର ପ୍ରେମାଶ୍ରୁ ଯୁଗଳ ହେ । ୪ ।
ମୋହ ଅନ୍ଧକାରେ ଭ୍ରମି ହେଉଛି ମୁଁ ଛନ୍ନ ।
ରସରାଜ ବିଗ୍ରହ ତା ଘୁଞ୍ଚାଅ ବନ୍ଧନ ହେ । ୫ ।
ହେବ କେସନ୍ଧେ ଶ୍ରୀ ଛନ୍ଦା-ଚରଣ ସେବାକାଂକ୍ଷା ।
ବଢ଼ାଅ ସେ ପ୍ରେମଭକ୍ତି ଅନୁରାଗ ବାରି ହେ । ୬ ।
ଖାଦ ଶୂନ୍ୟ ହେଉ ମୋର ହୃଦୟ ମନ୍ଦିର ।
ଲଭାଅ ସନ୍ତାପ-ବହ୍ନି ସିଞ୍ଚି କୃପାନୀର ହେ । ୭ ।
ହଳାହଳ ଠାରୁ ବଳି ଜଞ୍ଜାଳ-ଜହର ।
ସିଦ୍ଧ-ସାଧକେ ବଖାଣିଛନ୍ତି ବାରମ୍ବାର ହେ । ୮ ।
ହର ବ୍ରହ୍ମା ବନ୍ଦନ ହେ ଶ୍ରୀ ନନ୍ଦନନ୍ଦନ ।
ସିଧା—ମାର୍ଗ ଦେଖାଅ ଯେଣେ ମୋ ନବବଦନ ହେ । ୯ ।
ବ୍ରତ ଭ୍ରଷ୍ଟ ନୋହୁ ଶିରେ କରୁଛୁ ପ୍ରାର୍ଥନା ।
ଜୟ ରାଧେ ଶ୍ୟାମ ରଟି ଥାଉ ମୋ ରସନା ହେ । ୧୦ ।
ଧାରଣ କରି ତୁଳସୀ ଦ୍ୱାଦଶ ତିଳକ ।
ମେଲାଣି ନେବ ସଂସାରୁ ଛଡ଼ାଇଣ ଢକ ହେ । ୧୧ ।
ସୁନ୍ଦର ଶ୍ୟାମଳ କାନ୍ତ ନଟବର ଠାଣି ।
ନେତ୍ରେ ଦେଖିବା ମୂରତି ମୋହନ ବଂଶୀପାଣି ହେ ! ୧୨ ।
ଯିବ ସତେ ମୋ କଳୁଷ ଥିବ ପୂର୍ବଭାଗ୍ୟ ।
ବିଷୟବନ୍ଧୁ ନିବୃତ୍ତି ଅର୍ଜିବ ବୈରାଗ୍ୟ ହେ । ୧୩ ।
ରକ୍ଷିବାକୁ ବୈଷ୍ଣବଙ୍କ ଭକ୍ତି-ଅବଶେଷ ।
ଲଭସୁ ବେଣୁଧର ମାଗେ ଧରି ଦୀନବେଶ ହେ । ୧୪ ।
( ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି—ବୋଲ )

❋

( ରାଗ—ଚାଉଡ଼ପରଜ । ତାଳ—ଝୁମ୍ପା )

ଶ୍ରୀରାଧା ଗୋବିନ୍ଦ ଏହି ସୁଦୟା କର ।
ଜନ୍ମେ ଜନ୍ମେ ସେବାଦାସୀ ହେବି ତୁମ୍ଭର । ଘୋଷା ।
ତୁଚ୍ଛ ନିତ୍ୟ ଧାମେ ନେଇ ରଖାଅ ଆଶ୍ରୟ ଦେଇ;
ଚରଣ ସେବିବ ତବ ଭକତଙ୍କର । ୧ ।

ମାଗିଭିକ୍ଷା ମାଧୁକର    ଆନନ୍ଦେ ଉଦର ଭରି,
ନାଚୁଥିବ ପ୍ରେମ ଡଗରେ ବାଳ ନକର । ୨ ।
ରାଧାକୁଣ୍ଡ ଶ୍ୟାମକୁଣ୍ଡ—    ଜଳେ ବୁଡ଼ାଇବ ମୁଣ୍ଡ,
ବ୍ରଜଧୂଳିରେ ସର୍ବାଙ୍ଗ ହେବ ଧୂସର । ୩ ।
ବୁଲିବ ଦ୍ୱାଦଶ ବନ    ତୁମ୍ଭ କ୍ରୀଡ଼ାସ୍ଥାନ ମାନ,
ଦରଶନ କରି ଯିବ ହେବ ବଟେଶ୍ୱର । ୪ ।
ବସିବ ସାଧୁଙ୍କ ସଙ୍ଗେ    ନାମ ସଂକୀର୍ତ୍ତନ ରଙ୍ଗେ,
ଶ୍ରୀଗୁରୁ ଆଶ୍ର ଯୁମାଗେ ଏ ବେଣୁଧର । ୫ ।
( ମନାଇ ପାରିଲୁ ନାହିଁ—ବୃତ୍ତେ )

—o—

( ରାଗ—କେଲବଳୀ । ତାଳ ଝୁଲ )

ଦୀନବାନ୍ଧବ ହରି ହେ କର କାରଣ ।
ଏ ଅଧମଜନେ ପ୍ରଭୁ ନୁହ କୃପଣ । ଘୋଷା ।
ହେନ ଭକତ ମୋହନ    ଆହେ ବୈକୁଣ୍ଠ-କେତନ,
ବିଦାରଣ କର ମୋ ବିପତ୍ତି—ବାରଣ । ୧ ।
ହେ ନୀଳାଚଳ-ବିହାରୀ !    ନ ରଖିଲେ ଗଳ ସରି,
ତୁମ୍ଭ ବିନା କେହି ନାହିଁ ରମାରମଣ । ୨ ।
ଆହେ ପ୍ରଭୁ ମହାବାହୁ !    ଘୋଟିଛି ବିପଦ ରାହୁ,
ଗ୍ରାସୁଅଛି ରହୁଁ ରହୁଁ ଦେନ ଶରଣ । ୩ ।
ଭକ୍ତ କହେ ବେଣୁଧର    ଶ୍ରୀଛାମୁରେ ଯୋଡ଼କର
ଚକ୍ଷୁ ପେଷି ଦୁଃଖ ହର ଆରତତ୍ରାଣ । ୪ ।
( ଆଜ କାର୍ତ୍ତିକ ରେ ମନ ଭଜ ଏଣିକ—ବୃତ୍ତେ )

—o—

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ )

ସତେ ନନ୍ଦଦୁଲାଳ—    ହୋଇ ବନମାଳୀ
ଗୋଧନ ରଖିବ ତୁଣ୍ଡ ।
ସତେ ସାଧୁଙ୍କର    ବୋଲବ କଙ୍କର
ପଦେ ଲୁଟାଇବ ମୁଣ୍ଡ । ୧ ।

ସତେ ବ୍ରଜଧାମେ— ଶ୍ରୀବୃନ୍ଦା କାନନେ
ପାପ ପ୍ରାଣ ଯିବ ଛୁଡ଼ି ;
ସତେ କି ଏ ପିଣ୍ଡ ହେବ ଖଣ୍ଡ ଖଣ୍ଡ
ଯମୁନା ପୁଲିନେ ପଡ଼ି । ୨ ।
ସତେ କେଶୀ ଘାଟ ଗୁରୁ ବଂଶୀ ବଟ —
ଠାରେ କରିବ ବିଶ୍ରାମ ।
ସତେ ପ୍ରେମ ନୀର ନେତ୍ରୁ ଝର ଝର
ଝରିବ କି ଅବିରାମ । ୩ ।
ସତେ ଶ୍ରୀଗୁରୁଙ୍କ ଅଙ୍ଘ୍ରି ମୋ ମସ୍ତକ---
ମୁଣ୍ଡାଇ ହୋଇବ ଶାନ୍ତ ।
ସତେ ବେଣୁଧର ଅଧମ ପାମର
ଭଜିବ ଶ୍ରୀରାଧାକାନ୍ତ । ୪ ।
( ଓଡ଼ଶୀ କୀର୍ତ୍ତନ—ବୃନ୍ଦେ )



( ରାଗ---କଳସୀ । ତାଳ---ଝୁଲ ଏକତାଳି )
ହ-ରହେ କେବେ ମୁଁ ବୋଲାଇବି ବ୍ରଜବାସୀ ?
ର-ସି ଆଳୀ ସଙ୍ଗେ ହେବି ଶ୍ରୀ କିଶୋରୀ ଦାସୀ । ୧ ।
ମୋ-କ୍ଷପଦେ ଇଚ୍ଛାନାହିଁ ଗଜେନ୍ଦ୍ର ମୋକ୍ଷଣ ।
ଆ-ଖଣ୍ଡଳ ପଦେ ମୋର ନାହିଁ ପ୍ରୟୋଜନ । ୨ ।
ଟ-ଙ୍କ ଡ଼ଙ୍କ ବଡ଼ପଣ ହେଉ ଛାରଖାର ।
ଚ-ବ ନାମାମୃତ ସଦା କରଇ ଆହାର । ୩ ।
ପ୍ର-ଭାତ ମଧ୍ୟାହ୍ନ ସନ୍ଧ୍ୟା ତ୍ରିକାଳ ଆରତି ।
ଭୁ-ଲିବ ନାହିଁ ଯେପରି ମୋହନ ମୂରତି । ୪ ।
ଗୋ-ଷ୍ଠଲୀଳା ରାସଲୀଳା ଆଦି ଯେ ବିଧାନ ।
ପୀ-ତ ଦୁକୂଳଆ ସେହି ରସ କର ଦାନ । ୫ ।
ନା-ହିଁ ମୋର ଏହା ବିନା ଅନ୍ୟ ଅଭିଳାଷ ।
ଥ-ସ୍ତୁ ହେଉ ବେଣୁଧର ଅବୋଧ ମାନସ । ୬ ।
( ହରି ହରି କି ମୋର କରମ ଅଭମନ୍ଦ---ବୃନ୍ଦେ )



( ରାଗ—ଲଳିତ କାମୋଦୀ । ତାଳ—ଆଠତାଳୀ )

ରାଧା ଗୋବିନ୍ଦ ହେ ଏହି ମୋର ନିବେଦନ ।
ଏ ଜୀବନ ଗଲାବେଳେ ମୁଁ ଯୁଗଳ ରୂପ କରିବି ଦର୍ଶନ । ଘୋଷା ।
ସେହି ସମୟରେ ଜିହ୍ୱା ଉଚ୍ଚାରିବ ଜୟ ହରେକୃଷ୍ଣ ରାମ ।
ନ ଆସିଲା ବେଳେ କହି ଦେଉଥିବେ କୃଷ୍ଣ ଭଜ ବୋଲି ଜନ । ୧ ।
ଅତି ଧନହୀନ ମୁଁ ମୂଢ଼ ପାମର ଅତି ଅଧମ ଅଜ୍ଞାନ ।
ଅତି ପାପାଚାରୀ ଦରିଦ୍ର ଭିକାରୀ ଭକ୍ତିଶୂନ୍ୟ ଅକିଞ୍ଚନ । ୨ ।
ନ ଜାଣେ ପ୍ରଭୁ ସ୍ତବ ସ୍ତୋତ୍ର ଧ୍ୟାନ ପୁରାଣାଦି ଶାସ୍ତ୍ରମାନ ।
କେଉଁ ପ୍ରକାରେ ଯୁଗଳ ଚରଣ ପଦେ କରିବି ବନ୍ଦନ । ୩ ।
ଦିଅ ଏହି ବର ତବ ନାମ ଛଡ଼ା ନୋହୁ ମୋ ଅନ୍ୟ ସ୍ମରଣ ।
ଶ୍ରୀ ଗୁରୁ ଆଶ୍ରୟ କରି ବେଣୁଧର ନ ହେଉ ଭବ ବନ୍ଧନ । ୪ ।

( ମନ କହୁଛିରେ ପାଇଲି ଧନ—ବୃତ୍ତି )

—୦—

( ରାଗ—ମାଳଶ୍ରୀ । ତାଳ—ଝମ୍ପା )

ବୃନ୍ଦାବନ ଲୀଳା କଉତୁକିଆ ହେ ଆଉ ନୋହିବକି ସାକ୍ଷୀ ? । ପଦ ।
ସତ୍ୟବାଦୀ ଗୋପୀନାଥ ନାମ ଗୋଟି ବ୍ୟର୍ଥ ହୋଇଯିବକି ହେ ? ।
ମିଥ୍ୟାବାଦୀ ଗୋପୀନାଥ, ଏହି ନୂଆ ନାମ ଶୋଭା ପାଇବକି ହେ । ୧ ।
ତୁମ୍ଭ ନିକଟରେ ନ ରଖୁଛ କମ୍ପା ମନରେ ଭାବୁଛ କି କି ହେ ।
ସଂସାର ଭିତରେ ମୁହିଁ ପରା ହରି ଅଟଇ ମହାପାତକୀ ହେ । ୨ ।
ତେଣୁ ଅବା ପାପିଠାକୁ ତଡ଼ୁଅଛ ଯେତେ ମୁଁ ରହୁଛି ଡାକି ହେ ।
ପତିତପାବନ ପତାକା ଦେଉଳ ପରେ ଉଡ଼ାଅ କାହିଁକି ହେ । ୩ ।
ଯେବେ କ୍ଷମାନିଧି ଏ ଭାବ ବହିବ ଆଉ ପଣ ରହିବକି ହେ
ମୋହପରି କେତେ ଅଧମ ପାତକୀ ଆସିଲେ ନ ତାରିବକି ହେ । ୪ ।
ଭାବ ବିନୋଦିଆ ଅଭାବରେ ବସି ହେଲଣି କି ବଙ୍କା ଆଖି ? ।
ବୋଲେ ବେଣୁଧର ତେଣୁକରି ଅବା ନ ଶୁଣୁଛ ଡାକ ଡାକି ହେ । ୫ ।

( ଆରେ ଯଶୋମତି ତୁମ୍ଭ ପୁଅ ନଟ—ବୃତ୍ତି )



## ଅବନା ନୟୂମ

( ରାଗ—ବଙ୍ଗଳାଶ୍ରୀ । ତାଳ—ଆଠତାଳୀ )

ଅଶରଣ ଜନ ଶରଣ ରକ୍ଷଣ ଜଗତ ଜନରଞ୍ଜନ ।
ଅମଳ କମଳ ନୟନ ତ ମମ କଣ୍ଠ ମର୍କତ-ରତନ । ୧ ।
ଅଭଜନ ଧନ ନନ୍ଦନ ବ୍ରଜର ନବ-ମଦନ ।
ଅମର ବନ୍ଦର ନନ୍ଦନ ଶକଟ ଭଞ୍ଜନ ବକତ ଦର୍ପଗଞ୍ଜନ ।୨।
ଅନଳ ଭକ୍ଷକ ରଜକ ଅନ୍ତକ ଭକ୍ତଙ୍କ ବକ୍ଷ-ଚନ୍ଦନ ।
ଅଭୟ ବରଦ ଅକଳଙ୍କ ଚନ୍ଦ୍ର ବଦନ ହର୍ଷ ବର୍ଦ୍ଧନ । ୩ ।
ଅଜ ଭବବନ୍ଦ୍ୟ ଅକ୍ଷୟ ସମ୍ପଦ ଦତ୍ତକର ଦରଶନ ।
ଅଶନ ବସନ କଷ୍ଟ ଲଭ୍ୟ ଜନ * ବଂଶଧର ସରଜନ ।୪।
( ମୋହ ସମ ଜଣେ ଦୁଃଖୀ ନାହିଁ ପ୍ରଭୁ—ବୃନ୍ଦେ)

—୦

( ରାଗ  କୁମ୍ଭ କେଦାର । ତାଳ—ଆଠତାଳ )

ଏମନ୍ତ ବେଳେ ଏ ଆବ ଯିବ ।
କେମନ୍ତ ସୁନ୍ଦର ହେବ ବଶୀବ (ପ୍ରଭୁ)
ଯେମନ୍ତ ଦେଖିବ ପଦ ରାଜୀବ । ଘୋଷା ।
ମୁଣ୍ଡେ ଥିବ ହରି ମନ୍ଦିର-ଚିତା ।
ତୁଣ୍ଡେ ଉଚାରୁ ଥିବ କୃଷ୍ଣ ଗୀତା । ୧ ।
କଣ୍ଠରେ ଥିବ ମୋର ତୁଳସୀ ମାଳ ।
(ଥରେ) ହରେ କୃଷ୍ଣ ରାମ ନାମକୁ ଭଳ । ୨ ।
ଥରୁଥିବ ନେତ୍ର ପ୍ରେମାଶ୍ରୁ-ଧାର ।
ଥରୁଥିବ ଅଙ୍ଗ ବାରିକୁ ବାର । ୩ ।
ଗୁରୁ ଆଜ୍ଞା ଧନ ଗୁପତ ମନ୍ତ୍ର ।
ସ୍ଫୁରୁଥିବ ମୋ ଜିହ୍ୱାରେ ସ୍ୱତନ୍ତ୍ର । ୪ ।
ବେଣୁଧର ଏହି ପ୍ରାର୍ଥନା କରେ ।
ଏଣୁ ପ୍ରୟୋଜନ ନାହିଁ ନାକରେ । ୫ ।
[ ସଖି ଗୋ, ମୋର କୁଞ୍ଜକୁ ଆଜ—ବୃନ୍ଦେ ]

—୦—

---

* ବଂଶ—ବେଣୁ ।

( ରାଗ—ତୋଡ଼ିପଞ୍ଚମ । ତାଳ—ଆଡ଼ତାଳୀ ।

ଉଜଳ ଠଣ ସୁନ୍ଦର ଆଖି !
ଉଞ୍ଜଳ କି ଏ ମୋ ଦୁର୍ଦ୍ଦଶା ଦେଖି ହେ ? ଘୋଷା ।
ଉକା ପକାଇଲ ଯେତେ ଆକୁଳେ ।
ଉଠିଲ ନାହିଁ ତ ଶ୍ରବଣ ବେଳେ ହେ । ୧ ।
ଡୋଳାରେ ତ ମୋର କଣ୍ଠ ଘର ।
ଉମ୍ବରୁ କଟିଆ ମୁରଲୀ ଧର ହେ । ୨ ।
ଉବାଳି ଉବାଳି ନୟନୁ ଲୁହ ।
ଉଙ୍କ ମୋଡ଼ା ହେଲାଣି ଅଙ୍ଗ ରହ ହେ । ୩ ।
ଉଭ ଗଲାଣି କି ମହିମା ଧନ ? ।
ଡ଼ଙ୍ଗା ମଙ୍ଗିଆ ଭଙ୍ଗିଆ ମୋହନ ହେ । ୪ ।
ଉକି ହାକ ବୁଲି ବ୍ରହ୍ମାଣ୍ଡ ସିନା ।
ଡ଼ବ ଡ଼ବ ବଜାଇବ ବାଜଣା ହେ । ୫ ।
ଉକାଇଛ ହରି ନ ଭଜ କେହି ।
ଡ଼ଗର ଏ ବେଣୁଧର କହଇ ହେ । ୬ ।

( ଝଟଡ଼ ମାଝ ହେଲ ହେ ଶ୍ୟାମ—ପ୍ରଭୃ )

—*—

( ରାଗ—ତୋଡ଼ି ପଞ୍ଚମ । ତାଳ—ଆଡ଼ତାଳୀ )

ତୋ କଳା ଶ୍ରୀମୁଖ ବୁହ୍ନି ଶ୍ୟାମବନ୍ଧୁ ! ( ତୋ କଳା ଶ୍ରୀମୁଖ ଗୁହ୍ନି ) ।
ହଜଯାଉ ପ୍ରାଣ ଏ ସ୍ଥୁଳ ପିଣ୍ଡରୁ ଅନ କଛୁ ଲୋଡ଼ା ନାହିଁ ।
ପ୍ରୀତ୍ୟା ଶ୍ରୀପୂ-ଦେବୀ ଦୟା ଦୋଷୁ ଯନ୍ତ୍ର ଐଶ୍ବର୍ଯ୍ୟରେ ନାହିଁ ଆଶା ।
ତିଳେ ତୋର ନାମ ନେନ୍ତୁ ବିସ୍ମରଣ କଣ୍ଠେ କରିଥ ଉ ବସା । ୧ ।
ଲବଣ୍ୟ ପଞ୍ଜର ଦୁଃଖୀ ଦୁଃଖ ହର ଚଉ ବଉ ବେଷ୍ଟ ହର ।
ଗିରିବର ଧର ନବ ନଟବର ମୋ ନେନ୍ତ୍ର ଥା ଘର କରି । ୨ ।
ହୃଦୁପାଦ ତଳେ ଏତିକ ଗୁହାରି ଛଡ଼ୁ ନ ମଣିବୁ କହ୍ନା ।
ରାଗ ମାର୍ଗ ଅନୁସରି ଭଜନ ନେବ ତୋ ରୂପ କରି ଭାବନା । ୩ ।
ହରି ହରି ବୋଲି ଦାଣ୍ଡେ ହାଟେ ବୁଲି ପ୍ରେମର ନେହବ ଖେଳ ।
ରାଧା ପ୍ରାଣବନ୍ଧୁ ମୋ ପରାଣ କାନ୍ଦୁ ତୋ ଗୁଣ ଗାଇ କେବଳ । ୪ ।
ଇଚ୍ଛା ନାହିଁ ମୋର ଧର୍ମ ନ ମାଙ୍କର ସଙ୍ଗରେ ନେବାକୁ ଧନ ।
ଛୁ ଛୁ କରି ପିଙ୍ଗିଦେଇ ଅସିଛୁ ମୁଁ ଗୃହ ବାଡ଼ ବୃତ୍ତିମାନ । ୫ ।

ପୁରୁଷ ଉତ୍ତମ ବୋଲାଉ ତୁ ଯେଣୁ ଅଶ୍ରୟ କଲି ତୋ ନାମ ।
ନପାରୋଇବଟି ତାହାକୁ ମୋଠାରେ ତୁ ଯେବେ ହୋଇବୁ ବାମ । ୬ ।
ଦାସ ବେଣୁଧର ଭାଷଇ ମୁଁ ବାସ ଛଡ଼ା ଅରକ୍ଷିତ ଜନେ ।
ରସ ରସିକା ନାଗର ପୀତବାସ ଦାସୀଙ୍କର ଦାସୀ ପଣେ । ୭ ।

( ଗନ୍ଧଣିତ ଗଳ୍ପ କଥାରେ ସଙ୍ଗୀତ—ଶ୍ରୁତ )

—୦—

( ରାଗ—ଖଣ୍ଡକାମୋଦୀ । ତାଳ— ଆଠତାଳି । )

ଉଦ୍ଭେଦ ଗଳକ ତୁମ୍ଭ ମହିମା ହେ ।
ଚଉର-ନବଦ୍ୱୀପ ଚନ୍ଦ୍ରମା ॥ ଘୋଷା ॥
ଅନେକ ବଦନରୁ ଭରସା କରି ।
ବେଳକୁ ଏ ଭୃତ୍ୟ ଯାଉଛୁ ସରି ହେ । ୧ ।
ତାରିଛ ବ କେତେ ପାପୀ ପାଷଣ୍ଡୀ ।
କସ ପାଞ୍ଚ ମୋତେ ଦେଉଛ ଭଣ୍ଡି ହେ । ୨ ।
ନ ଶୁଣିବ ଯେବେ ଅରେ ମୋ ଡାକ ।
ଉଡ଼ିବ ମିନା ଅକୀର୍ତ୍ତି-ପତାକା ହେ । ୩ ।
ଆହେ ଭାବଗ୍ରାହୀ କରୁଣା ସିନ୍ଧୁ !
ତୁମ୍ଭେ ପରା ଅଟ ଅନାଥ ବନ୍ଧୁ ହେ । ୪ ।
ସାହା ନ ହେଉଛ କାହିଁକି ମୋତେ ?
ଭାସେ ବେଣୁଧର ଦୁଃଖ ସରିତେ ହେ । ୫ ।

( ମୂରଲି ଚୋର ଗଢଣ ଗଳ—ବୃନ୍ଦ । )

( ରାଗ —ଲଳିତା କାମୋଦୀ ତାଳ— ଝୁଲା । )

ହରି ପତିଗଳି ପାରି କରି ଦିଅ ଏଥର ।
ମୋ ଆଇତ ଶୁଣି ଗୁପ୍ତ କଲଣି କ ପଥର ? । ଘୋଷା ।
ଆହେ ଶଙ୍ଖ ଚକ୍ରଧାରୀ ଶୁଣିନାହିଁ କା ଗୁହାରି,
ମୋ ବେଳକୁ ମାଇଗିର,-ବାସୀ କଥା କାତର । ୧ ।
ହରିଣୀ ଆବର କଷ୍ଟ ପାଣ୍ଡବଙ୍କ ମନୋହାରି,—
ସହିତେ ତାହାକୁ ତାରି ନାହିଁ ଶ୍ରୀଧର । ୨ ।
ମହିମା ଭଣ୍ଡାର ଏବେ ଖାଲି ହୋଇଲାଣି ଯେବେ,
କହ ହେଲେ ପ୍ରଭୁ ତେବେ, ନାମୁଁ ହେବ ଅନ୍ତର । ୩ ।

କଟଚନ୍ଦ୍ର ଲଣ୍ଡ କଣ୍ଠ ବନ ବନେଲ ଆଜ୍ଞ ନେନ୍ଦ୍ର,
ତାରିବାକୁ ଥିଲେ ଜଣା, କରନ୍ତ ମୁଁ ଖାଲର ।୪।
( ମାନସୀ ରଚନ ଧନ ମାନ ଚେଞ୍ଜ ଏଣିକ—ବୃତ୍ତ )

—୦—

( ରାଗ—ସାବେରୀ । ଆଠତାଳୀ )
ହର ମୋ ଆରତ ହେ ରଘୁନାଥ ସୀତାକାନ୍ତ !
ନବ ଦୁର୍ବାଦଳ ବରନ ଶୋଭିତ
ଶରଣ ରକ୍ଷଣ ଦଶରଥ ସୁତ ହେ । ହର ।
ନମସ୍ତେ ଦାଶରଥି, ନବ ଲାବଣ୍ୟ ମୂର୍ତ୍ତି,
ହେରନ ମୋର ଶରଣ୍ଟି, ଆହେ ରଘୁପତି,
ଆହେ ଦଶକନ୍ଧରଅରି, କୋଦଣ୍ଡଧାରୀ,
ଜଗତ-ଜୀବନ ଭକତଙ୍କ ତ୍ରାଣ ହେ । ୧ ।
ଶତଦଳ-ଲୋଚନ, ଭବଭୟ ମୋଚନ—
ତାରକ ଜନାର୍ଦ୍ଦନ, ଦୁଃଖ ଶମର୍ଦ୍ଦନ,
ଅର୍କବଂଶ ମଣ୍ଡନ, ତାପ ଖଣ୍ଡନ,
ଜନକନନ୍ଦିନୀ ଚିତ୍ତ ବିମୋହନ ହେ । ୨ ।
ସୌମିତ୍ରେୟ ଅଗ୍ରଜ, ଅଯୋଧ୍ୟା ଯୁବରାଜ,
ଦଶାନନ ଦର୍ପଗଞ୍ଜନ,— ଧାମି ମଧ୍ୟ ବିରାଜ,
ଓଡ୍ର ଗ୍ରାମ ବିଖ୍ୟାତ, ଶ୍ରୀ ରଘୁନାଥ,
ତବ ଶ୍ରୀଚରଣେ ବୈଷ୍ଣବର ଚିତ୍ତ ହେ । ୩ ।
ଆସିବେ କି ନାହିଁ ଗୋ ପ୍ରିୟସଖି !—ବୃତ୍ତ)

—୦—

ରାଗ—ଚୋଖି ପରଜ । ତାଳ—ଝୁଲା ଆଦି )
ଜଳା ଶ୍ରୀମୁଖ ହେ ! ଟଳାଇ କହୁଛି ଯତେ ।
ଧଳା ପତ୍ର ଦୋଳା ତଳେ ବାହିଁଛି,
ବଳାଗର୍ତ୍ତ - ମିଶ ଦାଢେ । ଦୋଷା ।
ଶଳା ଲୁଣ୍ଠି ଯାଉ ସାଗର୍ଭ ତାହାର
ଢୋଇଲ ଲଭ ଶବାଦେ ।
ହଳାଯୁଧ ଯାନ ମୋତେ ଅବଧାନ;
ନୋହିବାରୁ ମର୍ମେ ବାଧେ । ୧ ।

ଗଲା ଧରି ଥିଲି କୁମ୍ଭୀର କୁମ୍ଭୀର,
ଚକ୍ରକୁ ବୋଇଲି ଛେଦେ ।
ଝଟାଇଲ ନାହିଁ ମୋ ଦଶା କି ପାଇଁ ?
ଭଲ ବସିଛ ନିର୍ବେଦେ । ୨ ।
ଝଟାଇ ଦେଲ ସେ— ଗର୍ଭାଏଣୀ ଛନ୍ଦା,
ପଡ଼ିଥିଲା ଯା ବିପଦେ ।
ଉଳାଇଲ କଆଁ ମୋ ନେତ୍ର ଲୋତକ
ଭସିଗଲା ଶୋକ-ନଦେ । ୩ ।
ପଳାଇଲା ଦୁଃଖ— ଲଜ୍ଜା ଦ୍ରୌପଦୀର
କୁରୁ ସଭାତଳ ଦ୍ୱନ୍ଦେ ।
ଦଳାଉଛ କେଉଣ ଏ ବେଣୁ ଧରକୁ,
ମହା ଦୁଃଖ—ଗଜ ପାଦେ । ୪ ।
[ ଡର ନାହିଁ କହେ ମର ତରୁଣୀ— ଦୂତେ ]



( ରାଗ—ତୋଡ଼ିପରଜ । ତାଳ—ଏକତାଳି )

❊ ଅ-ରକ୍ଷିତ ବନ୍ଧୁ ଆହେ କୃପାସିନ୍ଧୁ, ଅମଳ-କମଳ-ଡୋଳା ।
ଉ-ଠେ ମୋହ ପ୍ରତି ଅକରୁଣ ନୁହ ପ୍ରଭୁ ଭକ୍ତ ଭାବଭୋଳା ହେ ।
ଦୁ-ଶର । ଦାଟନ ରଥାଙ୍ଗ ପାଣି ।
ଗା-ସ ରସକ ଶ୍ରୀହରଙ୍କି ବା କିମ୍ବ ଅଜଣା ମୋ ଦୁଃଖ ଶ୍ରେଣୀ ହେ ।୧।
ଗୁ-ଣବର୍ଗଧାମ ହେଲି ମୁଁ ଅଥାମ କାହିଁ ନ ମିଳଇ ବାଟ ।
ଘା ତ ମାତ ମୋତ ସଂସାରୁ ବାହାର କୁଳମୂଳ କଲି ନାଶ ହେ ॥
ମୂ-ର୍ତ୍ତିନି । ଭୁମରି ତରର ଗାଇ ।
ତ-ନୁ ଜାଳିଆ ହେ ଏଣେ ତେଣେ ବୁଲେ ପିତୃ ଅପରାଧ ହୋଇ ।୨।
କ-ଷ୍ଟ ଘର ଖୋଜ ଖୋଜ ଏବେ ଆଜ ପାଇଛୁ ତନ୍ଦ୍ରବନ୍ଧୁ ।
ଭ-ନ୍ନ କରି ହୃଦ ଅଟେ ତୁମ୍ଭ ମୋତେ ମାନସ୍କୁ ଗୋକୁଳଇନ୍ଦୁ ହେ ।
ଖା-ତର । ନାହିଁ ମୋ ଏଥିକି ଲବେ ।
ଶି-ବ ବନ୍ଦିଲେ ତହ ଏ ଘାଟରେ ରେଖ ଚରଣ ପଲ୍ଲବେ ହେ ।୩।

---

❊ କବିଙ୍କର ପିତା ହୋଧବଟେଃ ଗୃହରୁ ବିତାଡ଼ିତ କରି ଦେବାରୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ଏହି ଗୀତର ଆଦ୍ୟ ଅକ୍ଷରେ କବି କାନ୍ଦି କାନ୍ଦି ନିଜ ଦୁଃଖ ଜଣାଇ ଥିଲେ । ୧୯୧୫ ମସିହା ରଚନା । ମୁଁ । ପୃଷ୍ଠ

ଆ-ଜନ୍ମରୁ କ୍ଲେଶ ଲଭୁଛୁ ଅଶେଷ କର୍ମେ ଯା ଦେଇଛ ଯାତ ।
ହେ-ତା ମାଗୁନାହିଁ ବାଡ଼ ମାଗୁନାହିଁ ମାତ୍ର ଏତିକ ମାଗୁଛୁ ହେ ॥
ହ-ରଷେ । ଆଜ୍ଞା ଦେଇ ତବ ସେବା ।
ଶ-କ୍ତ ହସ୍ତେ ବେଣୁଧର ଭେଟିବାର ଦୋଷ ଲେଶ ନ ଧରବା ହେବା ହେ ॥
( ଫାଟି ପଡ଼ିବାର ନକୁଞ୍ଜ ସଙ୍ଘାତ—ପ୍ରତି )

—୦—

## ଜଣାଣ

( ଶ୍ରୀ ଶ୍ରୀ ଗୌର ଜଣାଣ—ଚଞ୍ଚଳ । )
( ରାଗ—ଭୂପାଳ ତଣ୍ଡକ—ତାଳ—ଆଠତାଳ । )

ଆହେ ଶ୍ରୀକୃଷ୍ଣ ଚୈତନ୍ୟ ବିଶ୍ୱମ୍ଭର ।
ଆହେ ଶଚୀସୁତ ଲକ୍ଷ୍ମୀ ପ୍ରାଣେଶ୍ୱର ॥
ଆହେ, ବିଷ୍ଣୁପ୍ରିୟା ନାଥ ଶ୍ରୀଗଉର ।
ଆହେ, ଜଗନ୍ନାଥ ମିଶ୍ରଙ୍କ କୁମର ॥
ଆହେ ତପତ-କାଞ୍ଚନ କାନ୍ତି ଗୋର ।
ଆହେ ନଦୀଆ ନାଗରୀ-ଚିତଚୋର ॥
ଆହେ, ରସରାଜ ମୂର୍ତ୍ତି ପାପହର ।
ଆହେ ଶଭୂ ଦଣ୍ଡ-କମଣ୍ଡଳ ଧର ॥ ୨ ॥
ଆହେ ରାଧା ଭାବ ଆସ୍ୱାଦନକାରୀ ।
ଆହେ ସର୍ବ ଅବତାର ଅବତରି ॥
ଆହେ ଗୋପୀ-ପ୍ରେମ-ଧନକଣ ପ୍ରଚୁରି ।
ଆହେ ନାଥ ଡୋର-କଉପୀନଧାରୀ । ୩ ।
ଆହେ ନିମାଇଁ ସୁନ୍ଦର ଜଗତ ଗୁରୁ ।
ଆହେ ଭକ୍ତଜନ ବାଞ୍ଛା କଳ୍ପତରୁ ॥
ଆହେ ଗତି ଦାୟକ ମହିମା ମେରୁ ।
ଆହେ ନଟବର ବେଶ ଗୁରୁ ॥ ୪ ॥
ଆହେ ଗଙ୍ଗାତଟବାସୀ ଗୌର-ହରେ ।
ଆହେ କୃପାସୁଧା ଦାନ ପତିତରେ ॥
ମହା ପାତକ ମୁଣ୍ଡାଇ ମସ୍ତକରେ ।
ଦୁଃଖୀ ବେଣୁଧର ଦୁଃଖ ଜଣାକରେ ॥ ୫ ॥
( ଜୟ ପତିତପାବନ କୃପାସିନ୍ଧୁ—ବୃତ୍ତ । )



( ବଟିଣୀ ଭୈରବୀ— ତାଳ ଝୁଲା । )

ଦୀନବାନ୍ଧବ ହରି ହେ କର କରୁଣା
ଦୁରିତ ନାଶନ ନାମ ନ ହେଉ ଊଣା ॥ ଘୋଷା ॥
ଦୟାଳୁ କୁନ୍ଦମାଳିଆ                    ନବ ଜଳଦ କାଳିଆ
ଦୟାଳୁ ସାମନ୍ତ ପ୍ରଭୁ ! ହେ ଜଗଜ୍ଜନା । ୧ ।
ଦମ୍ଭ ଅଭିମାନ ଟଳା                    ବ୍ରଜରାଜ ନନ୍ଦବଳା
ଦଶବିଧ ରୂପଧାରୀ ମୁଁ ତୁମ୍ଭ ଜଣା । ୨ ।
ଦର ସୁଦର୍ଶନ ପାଣି                    ଭୁବନମୋହନ ଠାଣି,
ଦାସରେ କୃପଣ ନୁହ କରୁଛି ଜଣା । ୩ ।
ଦାନବାରି ହେ ଶ୍ରୀହରି                    ମୋ ଦୁଃଖ ଦିଅ ନିବାରି,
ଦୀନ ବେଣୁଧର ତବ ପଦ ରଙ୍କଣା । ୪ ।

( ଫେରିଯା ଫେରିଯା କାହ୍ନୁ କୁଞ୍ଜକୁ ନ ଯା—ବୃତ୍ତି । )

—*—

( ରାଗ—ତୋଡ଼ି ପରଜ—ତାଳ ଆଡ଼ତାଳୀ )

କେତେ କହିବି ହେ ମେ ଦୁଃଖ କାହାଣୀ ଆଉ
ଶୁଣି ନ ଶୁଣିଲ ପରି ହେଉଛ ମୋ କର୍ମକୁ ମହାବାହୁ ॥
ଅନ୍ତର୍ଯ୍ୟାମୀ ନାଥ ଆହେ ଜଗନ୍ନାଥ ପତିତପାବନ ହରି ।
ଧରାମଧ୍ୟେ ରହି ଏତେ କଷ୍ଟ ସହି ନ ପାରେ ମୁଁ ପ୍ରାଣ ଧରି । ୧ ।
ଶୁଣିଥିଲି କାନେ ଗୀତାଦି ପୁରାଣେ ତୁମ୍ଭେ ଦୁଃଖହର ବୋଲି ।
ହେଉଁ ଭଲ ଜାଣି ଏବେ ମୁଁ ତୁମ୍ଭଙ୍କୁ ସୁଝିହବା ନାମ ଦେଲି । ୨ ।
ନନ୍ଦା ଅକ୍ଷୟାନ୍ତ ଅସଂଖ୍ୟ ସମ୍ପତ୍ତି ଭୋଗାଇଲ ବାଳକାଳୁଁ ।
ଭକ୍ତଙ୍କୁ ସୁଖ ଦେଇ ବୋଲାଇଛ ତୁମ୍ଭେ ପରମ ଦୟାଳୁ । ୩ ।
ବୋଲେ ବେଣୁଧର ଆହେ ବିଶ୍ୱମ୍ଭର ତୁମ୍ଭଙ୍କୁ ନାହିଁକି ଜଣା ।
ମୁଁ ପାତକୀ ବର ବୋଲି ନିରନ୍ତର ସଂସାରେ ବାଜେ ବାଜଣା । ୪ ।

( ଡର ନାହିଁକି ହେ ପର ତରୁଣୀ ହରଣୁ—ବୃତ୍ତି )

—○—

( ରାଗ—ଲଳିତା । ତାଳ—ଝୁଲା )

ଅପରାଧୀ ଡାକ କେ ଆଉ ଶୁଣିବ ତୋ ପରି ମୋ ପ୍ରଭୁ ଥାଇଁ ।
ଅଶରଣ ଜନ ଶରଣ ରକ୍ଷଣ କେତେ କଷଣ ଦିଆଉ ? । ୧ ।
ଅରଣ୍ୟେ ହରିଣୀ ଆର୍ତ୍ତ ନାଦ ଶୁଣି ହୋଇଥିଲୁ ସାହାପକ୍ଷ ।
ଅଖିଳ ନାଥ ତୁ ମୋ ବେଳକୁ କମ୍ପା ହୋଇଲୁ ପାଷାଣ ବକ୍ଷ । ୨ ।

ଅନ୍ତ ଆରତରେ ଗଜ ଡାକଦେଲା ଗ୍ରାହା ନାଶିଥିଲୁ ହେଳେ ।
ଉନ୍ମୁକ୍ତ ନୟନ ଯୁଗଳ ମୁଦ୍ରିତ ହେଲା କିମ୍ପା ଏତେବେଳେ ? । ୩
ଅଜାମିଳ ମହା ପାପୀକି ନିସ୍ତାରି ମହୀରେ ଥୋଇଛ ଯଶ ।
ଅମ୍ବର କୋଟି ଦେଲୁ ଦ୍ରୁପଦୀଙ୍କି କୁରୁସଭାରେ ରମେଶ । ୪ ।
ଅନ୍ନ ବିଜେ ଦେଲୁ ବିବ୍ୟଞ୍ଜନ ଘର ଧୂଳିଖେଳେ କରି ପଣ ।
ଅରକ୍ଷିତ ବେଣୁଧର ଠାରେ କାହିଁପାଇଁ କି ଏତେ କୃପଣ ? । ୫ ।
( କି ନାମ ବୋଇଲୁ ତୁହି ଗୋ ଲଳିତେ — ବୃତ୍ତେ । )

—❋—

( ରାଗ—ଧନାଶ୍ରୀ । ତାଳ—ଝୁଲ )
ଥକି ଗଲିଣି ଡାକି ହେ, ଚକାଆଖି !
ବାଙ୍କା ବଇରୀଙ୍କି ମୋର ବିପତ୍ତି ଗରୁ ହେଲକି । ଘୋଷା ।
ଚଳିତ ମଣୁଛ ଆଜ ଫକାଅ ବେଟିକୁ ସାଜ,
ଅକିଞ୍ଚନେ ହୋଇଥିଲ ସଖୀ ।
ବଳ ବଳ ଥୋକାଏତ ଥାଆନ୍ତି ସୁଖୀ,
ଠକ ଦେଲ କାହିଁପାଇଁ ଏବେ ଆଜନ୍ମ ଦୁଃଖି କି ? । ୧ ।
ଉଙ୍କି ଯିନା ମୁଁ ସର୍ବଦା ଶଙ୍କିଛ ନ ଥିଲ କଦା,
ଚଙ୍କିଲ ନୟନ କା'ର ଦେଖି ।
ଠଙ୍କି ନାହିଁ କର ଜେନ୍ତ ଶିରେ ସଳଖି,
ମୁଁ କି ଅପବାଧ୍ୟଂ ହବା ରଜନୀ ଲୋଚକ ଆଖି ? । ୨ ।
ଲୁକ ଗଳକ ଭୁମ୍ବର ମହିମ-ଧନ-ଭଣ୍ଡାର,
ଶିଖି ଚୂଳଆ ରହସ୍ୟ ଏ କି ?
ଲେଖି ଭକ୍ତି ତମସୁକ ସ୍ୱହସ୍ତେ ଟେକ ,
ବିକଛୁ ପରା ଏ ଦେହ ଜୀବନ ଭୁମ୍ଭ ଚହିଁ କି ? । ୩ ।
ବାଙ୍କା ବାଙ୍କ ଅଛୁ ମୋର କହ ହେ କଣୋଷ୍ଣ ବର,
ଟିକଛୁ ତା ଶୁଣିବା ପାଇଁ କି ।
ଡାଙ୍କି ନ ରଖ ଗୁପତେ ଅଙ୍ଗ ଛଇକ,
ଅକାରି ନୋହୁ ଜଗତେ ବେଣୁଧର ଭକ୍ତେ ଯ, କି । ୪ ।
( ଅଘ ନାଶନ ବାନା ଧରି ହେ, ଘନବନ୍ଧୁ —ପ୍ରଭୃ )

❋

[ ରାଗ--ଭଟିଆଶା । ତାଳ ଏକତାଳୀ ]

ଆହେ ରଘୁନାଥ !
ମୁହିଁ ଜାଣିବାରେ ତୁମ୍ଭେ ଦାରୁ ବର । ଘୋଷା ।
ବାଲ୍ୟରୁ ତୁମ୍ଭଙ୍କୁ ଆଶ୍ରେ କରି    ହାଲକୁ ହୋଇଲି ଏତେ ସରି
ଜାଲୁ ହୋଇଲିଣି ବୋଲି ଜାଣିଥିଲେ,
କିମ୍ପା ଥାନ୍ତି ତବ ନାମ ଧରି । ୧ ।
ଆରେ ନାହିଁ କି କୋଦଣ୍ଡ ଧରି    ଥରେ ନ ଶୁଣିଲ ମୋ ଗୁହାରି
ଉରେ ମହାପ୍ରଭୁ, ବନ୍ଧ ପାପୁ ରକ୍ଷ—
ଅଛୁ ଘୁର ଦୃଷ୍ଟି-ଯନ୍ତ୍ର ପୁଣି । ୨ ।
ବନାବୋଷେ ଦାସ ଦୋଷ ଯିବ,    ଦୀନାର୍ତ୍ତି ଭଞ୍ଜନ କେ ହୋଇବ ?
ପିନାକୀ ଭଗ୍ନ କାରିଙ୍କି ଏ କଥା,
କେମନ୍ତ ସୁନ୍ଦର ଦେଖା ଯିବ । ୩ ।
ଯେବେ ନ ଶୁଣିବ ମୋ ଗୁହାରି    ଆହେ ପ୍ରଭୁ ଦଶକନ୍ଧ ଅରି
ସୀତାପତି ମୋ ବିପତ୍ତି-ବାତାଘାତେ,—
ମହିମା ପତାକା ଯିବ ଚିରି । ୪ ।
ମାନ ସ୍ୱପନ ପ୍ରସଙ୍ଗ ଚିନ୍ତି,    ମାନସରେ ରଖି ନାହିଁ ଭ୍ରାନ୍ତି
ଧ୍ୟାନକରି ଅନାହାରେ ପଡ଼ିଅଛୁ,
ଶ୍ରୀ ପଦ୍ମରେ ଦେଇ ଚିତ୍ତ ବୃତ୍ତି । ୫ ।
ଆହେ ପ୍ରଭୁ ବୃଥାରେ ବାଧା    ତୁମ୍ଭ ବିନୁ କେ ମୋ ନାହିଁ ସାହା,
ଦୀନ ବଂଶୀଧର ପଟ୍ଟନାୟକର,
କଷ୍ଟ ଦେଖି କରିବାକୁ ଆହା । ୬ ।
( ଆହେ ଚକା ଡୋଳା—ବୃତ୍ତ )

✽

( ରାଗ—ଚନ୍ଦ୍ରକେଦାର । ତାଳ ଝମ୍ପ )

ଅପୂର୍ଣ୍ଣ ରହିଯିବ କି ମୋର ବାସନା ?
ଅଛି ଯାହା ଭାବ ଆହେ କାଳିଆସୁନା । ଘୋଷା ।
ଅମ୍ବୁଜଚରଣେ ନାଥ    ଅଳ ଭଳ ମୋ ଅଳ ତ,
ଅନ୍ତର୍ଯାମୀ ମନ କଥା ଜାଣୁଛ କିନା ? । ୧ ।
ଅଭାବେ ପଡ଼ି ଡାକୁଛି    ସ୍ୱଭାବେ ନ ଜାଣେ କହି,
ଧବଳର ସୁତା ଛାର ବୃନ୍ଦ ଭାବନା । ୨ ।

ଉଘିର ତେଜକ୍ଷ ମତ                    ଆହ୍ଲାଦ ଜନ୍ମ ଉନ୍ମତ୍ତ,
କାହିଁରେ ମୋ ଲୋଭ ନାହିଁ ହେ ନନ୍ଦକନ୍ଦା । ୩ ।
ଉଙ୍କାରିଲ ଏକା ତର                    ଅପର ଦଣ୍ଡୀ ବାସନ,
ଅଦ୍ୟାପୁ ବେଷ୍ଟରେ କାନ୍ତି ନ ପଜା ଚନ୍ଦ୍ରା । ୪ ।
ଅନୁସର ରାଗ ମାର୍ଗ                    ଚନ୍ଦ୍ର ମୋ କରବ ତ୍ୟାଗ,
ଅପରାଧି ବେଣୁଧର କରଇ ଜଣା । ୫ ।

( ଆଉ ଏଣିକ ରେ ମନ ଭଜୁ କାହିଁକ—ବୁଝେ )

—o—

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ )

ଅହଲ୍ୟା-ତାରଣ                    ବିପଦ ବାରଣ
ରଖ ବା ନରଖ ମୋତେ ।
ଅପରାଧ ଯାକ                    ତୋତେ ସମର୍ପିଛି
ଯାହା ଦେଉଛୁ ଭୁ ଯେତେ । ୧ ।
ଆଜ୍ଞାନ ପଥରେ—                    ଗତି କରିବାର
ଶିକ୍ଷା ଦେଲ ଯେଉଁ ଗୁରୁ ।
ଅଟୁ ସେ ଭୁ ପରା                    ମାପ ବୋଝ ଧରା
ଭକ୍ତ ବାଞ୍ଛା କଳ୍ପତରୁ । ୨ ।
ଅଲ୍ପ ଚରଣ—                    ତଳରେ ଶରଣ
କାହିଁକ ଦେନ୍ତେ ନରେ ।
ଅନୁଭବ ନାହିଁ                    ସେ କଥା ତ ମୁହିଁ
ଜଣାଇଲି ତୋ ଆଗରେ । ୩ ।
ଅତି ପାପୀଙ୍କର—                    ଜଗତେ ମୁଁ ବଡ଼—
ବୋଲି କରେ ଅଭିମାନ ।
ଅବଶ୍ୟ ତୋହର—                    ମୋହର ମିଳତା—
ଥିବା ହୁଏ ଅନୁମାନ । ୪ ।
ଅଗତିଙ୍କ ଗତି                    ଅଚ୍ୟୁତ ମୂରତି
ଅମଳ କମଳ ଆଖି ।
ଅନାଳଗିଲା ତୁ—                    ସୁଖ ଦୁଃଖ ହେତୁ
ସବୁଥିରେ ମୋର ସାକ୍ଷୀ । ୫ ।
ଅବିଦ୍ୟା ମୋହରେ—                    ପଡ଼ି ଦିନ ହରେ
ଅସାର ସଂସାରେ ଥାଇ ।

ଅନ୍ତେମ କି ହେବ            କାହିଁ ଦେବୁ ଠାବ ?
ତାହା ତୁ ଜାଣୁ ଗୋସାଇଁ । ୬ ।
ଅଧିକ ଆଉ କି            ଗୋଚର କରିବ ?
ଏଥିଁ ବୁଝିବୁ କାଳିଆ ।
ଅରକ୍ଷିତ ଦୀନ—            ହୀନ ବେଣୁଧର
ତୋ ନାମ ଜପାମାଳିଆ । ୭ ।

—o—

(କି ନାମ ବୋଇଲୁ ତୁହି ଗୋ ଲଳିତେ—ବୃନ୍ଦେ )

( ରାଗ—ଶ୍ଳାସାରଙ୍ଗ । ତାଳ—ଝୁଲ )

ଜଗନ୍ନାଥ - ମା ଆରତ କାହିଁପାଇଁ କି ନ ଶୁଣ ?
କାହାକୁ ନ ତାରିଅଛ ମୋ ବେଳକୁ ନିଦାରୁଣ । ଘୋଷା ।
ଲକ୍ଷେ ଯୋଜନରେ ଜଳେ ଡାକ ଦେଲା ସେ ବାରଣ ।
ତୁରିତରେ ଚକ୍ର ପେଷି ପ୍ରଭୁ ନେଲ ନକ୍ର ପ୍ରାଣ । ୧ ।
ବନେ ଚଣ୍ଡାଳ ମୃଗୁଣୀ ତା ଜାଣିଲ ଆର୍ତ୍ତବାଣ ।
ଘେନ ଘୋର ସଙ୍କଟରୁ ତାକୁ କଲ ପରିତ୍ରାଣ । ୨ ।
ଆର୍ତ୍ତେ ଡାକିଲ ଦ୍ରୌପଦୀ କୁରୁସଭାର ତେଜଣ ।
କୋଟି ବସ୍ତ୍ର ଦେଇ କଲ ତାଙ୍କ ଲଜ୍ଜା ନିବାରଣ । ୩ ।
ପ୍ରହଲ୍ଲାଦ ଛଳେ ହିରଣ୍ୟକୁ କଲ ବିଦାରଣ ।
ସ୍ୱର୍ଗେ ଇନ୍ଦ୍ରପଦ ଦେଇ ଫେଡ଼ିଅଛ ତା କଷଣ । ୪ ।
ବାଳକ ଜନମୀ ଛଳେ ଧ୍ରୁବ ଚିନ୍ତା କରନ୍ତେଣ ।
ଶୂନ୍ୟ ମଣ୍ଡଳରେ ପ୍ରଭୁ ତାକୁ ଦେଲ ଉଚ୍ଚସ୍ଥାନ । ୫ ।
ଅଜାମିଳ ନାମେ ଥିଲା ମହାପାତକୀ ବ୍ରାହ୍ମଣ ।
ଅନ୍ତଃକାଳେ ଭବନାମ ଧରି ଗଲା ସ୍ୱର୍ଗସ୍ଥାନ । ୬ ।
ସୁଦାମା ଦାରିଦ୍ର୍ୟ ଦ୍ୱିଜ ଚିନ୍ତିଲ ହେ ନାରାୟଣ ।
ଐଶ୍ୱର୍ଯ୍ୟ ସମ୍ପଦ ତାକୁ କରିଦେଲ ପରିପୂର୍ଣ୍ଣ । ୭ ।
ସୁଗ୍ରୀ ସଙ୍ଗେ ମିତ୍ର ହୋଇ ବାଳୀ ବଧିଲ ଆପଣ ।
କିଷ୍କିନ୍ଧ୍ୟାରେ ରାଜା ତାକୁ କରାଇଲ ତତକ୍ଷଣ । ୮ ।

ଲଙ୍କାଗଡ଼ରେ ଶରଣ ପଶିଲେକ ବିଭୀଷଣ ।
ଭୁଞ୍ଜିଲେ ଲଙ୍କା ବିଭୂତି ପ୍ରଭୁ ତବ ପ୍ରସାଦେଣ । ୯
ମୁଁ ଅଧମ ମୂଢ଼ମତି ପ୍ରଭୁ ତୁମ୍ଭେ କି ନ ଜାଣ ?
ଡରୁନାହିଁ ଯେଣୁ ସରୁଅଛୁ ବୈଣୁଧର ଠାଣ । ୧୦ ।
( ଗଣନାଥ ମନୋରଥ ପୂର୍ଣ୍ଣକର—ବୃତ୍ତ )

❀

[ ରାଗ—ତୋଡ଼ିପରଜ । ତାଳ—ଏକତାଳି ]

ଗୁରୁ ହେ ବାରେ ଯେନ ଜଣାଣ ।
ତୁମ୍ଭବିନୁ ନାହିଁ ଅନ୍ୟ ଶରଣ । ଘୋଷା ।
ଶ୍ରୀ ପାଦପଦ୍ମ ସେବାରେ ମାନସ,
ନିତ୍ୟ ରହୁଥିବ କରି ଦିବସ । ୧ ।
ଯେବେ ମୁଁ କରିବି ତୁମ୍ଭଙ୍କୁ ଧ୍ୟାନ,
କୃପାକରି ଦେଉଥିବ ଦର୍ଶନ । ୨ ।
ଜାଣି ନ ଜାଣି ଦୋଷ ଯେବେ ହେବ,
କ୍ଷମାସାଗର ହେ କ୍ଷମା କରିବ । ୩ ।
ଏତିକି ମାତ୍ର ଆଜ୍ଞା ହେଉ ମୋରେ,
ବୈଣୁଧର ଅଛି ପାଦପଦ୍ମରେ । ୪ ।
( ଯେନ ରେ ମାଳଧନକୁ ଲଳା—ବୃତ୍ତେ )

## ଛଳୋକ୍ତି

( ରାଗ—ଦେଶାକ୍ଷ । ତାଳ—ଝୁଲ )

(ତୁ ତ) ଜଗତ ଯାକର ଶନ୍ତା ବସିଲୁ ଧରି ।
କାହିଁକି ଶୁଣିବୁ ଏ ଅକିଞ୍ଚ ଗୁହାରି ? । ପଦ ।
ମୋହର ପରି ତ ଜନ୍ତୁ ତୋର କୋଟିଏ ।
ତୋହ ପରି ପ୍ରଭୁ ସିନା ମୋର ଗୋଟିଏ । ୧ ।
ବୁଲି ବୁଲି ଦେଖିଲି ମୁଁ ଘରଆଡ଼ରେ ।
ତୋହରି ମାୟା ଲଗିଛି ସାନ ବଡ଼ରେ । ୨ ।
କାହାକୁ ତୁ କେତେବେଳେ ନ କରୁ କଥ ।
କାହାକୁ ଇନ୍ଦ୍ର କାହାକୁ ଦ ମିଳେ ବାସ । ୩ ।

ସବୁ ତ ତୋହରି ଖେଳ ରେ ଚନ୍ଦ୍ରାମଣି !
ମୋ ଉପରେ ଏଡ଼େ ଚିନ୍ତା ଏତେ ତାଡ଼ୁ ନ ଯେନ ? । ୪ ।
କିଛି ବୁଝି ପାରୁନାହିଁ ଏଥିର ମର୍ମ ।
ବେଣୁଧର ତୋର ସିନା ନିତ୍ୟ ଗୋଲାମ । ୫ ।
( ଶୁଣ ଶୁଣ ଶୁଣ ଆଗୋ ବ୍ରଜଯୁବତୀ—ବୃତ୍ତ )

—o—

( ରାଗ—ତୋଡ଼ପଟଜ । ତାଳ—ଆଠତାଳୀ )

ଆଉ କେତେ ଯାଣ୍ଡି—ହେବ ଆହେ ପ୍ରଭୁ ଏ ମାୟା ଜଞ୍ଜାଳେ ପଡ଼ି ।
ଯାଉ ଏ ଜୀବନ ବୃନ୍ଦାବନ ଧନ ତୁମ୍ଭର ନାମ ନ ଛୁଡ଼ି । ପଦ ।
ରହୁ ନିସ୍ତର ଦେବଗୁରୁଙ୍କର ଦାଉ ବଳେ ଘଡ଼ି ଘଡ଼ି ।
କାହିଁ କେତେ ଦୁଃଖ ଆହେ ପଦ୍ମମୁଖ ଦିଆଉଛ ଲେଡ଼ି ଲେଡ଼ି । ୧ ।
ଗୃହ୍ଣି ଗୃହ୍ଣି କରି ଆସି ଗ୍ରହରାଶି ଯାଉଛନ୍ତି ମୋତେ ବେଢ଼ି ।
ଥାଉଁ ଥାଉଁ ତୁମ୍ଭ—ପରି ମହାବାହୁ ଅଙ୍ଗୁ ବଳ ଗଲା ଝଡ଼ି । ୨ ।
ଅଉଷଧି ଛଳ ତବ ନଖ କୋଣେ ଛନ୍ତି ଯେଣୁ ଧାଡ଼ି ଧାଡ଼ି ।
ବହୁ ଭରସା—କରିଛୁ ସେହି ଜଳ ପାନେ ଯିବ ରୋଗ ଗୁଡ଼ି । ୩ ।
ନୋହୁ ପଛେ ତୁମ୍ଭ ଅନୁଗ୍ରହ ମୋରେ ଧରିଥିବ ପଦଯୋଡ଼ି ।
ଧୋଉଥିବ ଅଶ୍ରୁ—ଜଳେ ଶ୍ରୀଚରଣ ଗଲେ ଶିର ଛିଡ଼ି । ୪ ।
ରହୁ ନ ରହୁ ତୁମ୍ଭର ବଡ଼ପଣ ଯଶ ଶାରଦର ପେଡ଼ି ।
ସହୁଥିବ ନିତି ନିନ୍ଦକ ବଚନ ବାଧା ଖଣ୍ଡା ଠେଙ୍ଗା ବାଡ଼ି । ୫ ।
କହୁଣିଖିଆ ବୋଲାଉ ଥିବ ପଛେ ନାମେ ଥାଉ ଚିତ୍ତ ଜଡ଼ି ।
ହୀନ ଦୀନ ଅତି ଅଜ୍ଞନ ବେଣୁଧର କହୁଛି ହୃଦୟ ଫେଡ଼ି । ୬ ।
( ପରସ୍ପର କେଣେ ମନରେ କଶୋର—ବୃତ୍ତେ )

❀

( ରାଗ—ସାରଙ୍ଗ । ତାଳ ଆଠତାଳୀ )

ତବ ପଦଚିନ୍ତ ଧନ ନେବ ବୋଲି
କରିଥିଲି ପ୍ରତିଆଶା ।
କେଉଁ ଅପରାଧ ଦେଖି ଦୟାମୟ
କରି ଦେଉଛ ନିରାଶା ॥
ମହାପ୍ରଭୁ ! କିଛି ଜାଣିପାରୁ ନାହିଁ ।
ଭକ୍ତ ଭବଗ୍ରାହୀ— ନାମଟି ତୁମର
ଏବେ ଲୁଚାଉଛ କାହିଁ ? । ୧ ।

ଖୋଜ ଖୋଜ ପ୍ରଭୁ ପାଉଛୁ ତୁମ୍ଭଙ୍କୁ
ରଙ୍କଧନ ପ୍ରାପ୍ତି ପରି ।
ଭଜିବାକୁ ନାମ ବାଉଳା ହେଉଛୁ
ଏ କି ଆଚମ୍ବିତ ପରି ॥
ମହାପ୍ରଭୁ ! ଏ କପଟ କାହିଁପାଇଁ ?
ଶରଣ ରକ୍ଷଣ— ବାନାଟି ତୁମ୍ଭର
ଅଛି କି ଉଦ୍ଭବ ନାହିଁ । ୨ ।
ସାଧୁ ସଙ୍ଗ ଧନ ଯିବ ବୋଲି ମନ
ବଳାଉଛୁ ଅନ୍ତରରେ ।
ବାଧୁଛି କି ଏହି— ସମର୍ପି ଦେବାକୁ
କହୁନାହଁ କିଆଁ ମୋତେ ?
ମହାପ୍ରଭୁ ! ଜଗତର ନାଥ ହୋଇ ।
ଜଗତରୁ ମୁଁ କି ବାହାର ହୋଇଛି
ନ ଶୁଣୁଛ ଏଥିପାଇଁ ? । ୩ ।
ବ୍ରଜଧାମେ ବାସ କରିବାକୁ ଆଶ
କରୁଛି ରଜନୀ ଦିନ
ସଞ୍ଚ କଞ୍ଚନେନ ଅକିଞ୍ଚନ ପ୍ରତି
କମ୍ପା ଏତେ ଅପ୍ରସନ୍ନ ॥
ମହାପ୍ରଭୁ । ଯୁଗଳଚରଣ ଧ୍ୟାୟି ।
ଦୀନ ବେଣୁଧର ଜୀବ ପାଉ ଅଛି
ଅନ୍ୟ ଅଭିଳାଷ ନାହିଁ । ୪ ।

( କହଲେ ବନ୍ଧୁ ସେଷ ବୃତ୍ତେ )
( ରାଗ—ପରଜ । ତାଳ—ତ୍ରିପୁଟା )

କେ ଜାଣେ ତୁମ୍ଭର ମାୟା ଅଟେ ପ୍ରଭୁ ! ମାୟାମୟ ।
ପରମ ପୁରୁଷ ତୁମ୍ଭେ ଅଟ ଚିଦାନନ୍ଦମୟ । ଘୋଷା ।
ସର୍ବ ମିଥ୍ୟା ତୁମ୍ଭେ ସତ୍ୟ କେ ବୁଝିବ ତବ ତତ୍ତ୍ୱ
ତବ ଦେହେ ଏ ସଂସାର ମିଶଇ ହୋଇ ପ୍ରଳୟ । ୧ ।
ତବ ପ୍ରେମେ ଯେ ମଜ୍ଜିଛି ଧର୍ମଜ୍ଞାନ ହରାଇଛି,
(ତବ) ପଦେ ସବୁ ସମର୍ପିଛି ମନ ପ୍ରାଣ ସହ ଦେହ । ୨ ।

ନ ଜାଣେ ମୁଁ ଧର୍ମାଧର୍ମ   ନ ଜାଣେ ମୁଁ ନିତ୍ୟକର୍ମ
ଏକା ଜାଣେ ତବ ନାମ ଅଟେ ଅବ୍ୟୟ ଅକ୍ଷୟ । ୩ ।
ହେ ପ୍ରଭୁ ଛନ୍ଦାଚରଣ   ଯେତେ ଦୀନର ଶରଣ,
ଏ ବେଣୁଧର କ ଋଣ ହେବାକୁ ମାଗେ ଆଶ୍ରୟ । ୪ ।
( ଯାଅ ହେ ବିଦେଶୀ ବନ୍ଧୁ — ବୃତ୍ତ )

—o—

( ରାଗ—ମଧୁଶ୍ରୀ । ତାଳ – ଏକତାଳୀ )
ଆହେ ଦୀନବନ୍ଧୁ !
ଧନ ସରୁନାହିଁ ମୋର କାନ୍ଦୁ କାନ୍ଦୁ । ଘୋଷା ।
ଦୟାମୟ ବୋଲି ଜଗତରେ   ନାମ ଅଛି ସବୁଠାରେ,
ଦୁରିତ ନାଶନ   ପତିତପାବନ
ବାନା ଲୁଚୁଛି କେଉଁପୁରେ ? । ୧ ।
ଦୁଃଖିସୋଦର ବୋଲାଅ ପରା   ଦୁଃଖ ମୋର ଦେଖି ବଂଶୀଧର,
ଦୁଇ ନୟନକୁ   ବୁଜିଦେଲ କାହେ
ଦେଖି ଶିଖଣ୍ଡମୁକୁଟ ଧର । ୨ ।
ଦାମୋଦର ଦ୍ୱିଜ ସଙ୍ଗେ ମିତ୍ର   ପୂର୍ବରୁ ଥିବାରୁ ପଦ୍ମନେତ୍ର
କୋଟି ନିଧି ଗଣି   ଦେଲ ସେହିକ୍ଷଣି
ମୋ ବେଳକୁ ହେଲ ଶୂନ୍ୟ ହସ୍ତ । ୩ ।
ଦରିଦ୍ର କଙ୍ଗାଳ ହେ ମୋହନ !   ଦୁର୍ଦ୍ଦଶା ମୋହର ଅକଥନ,
ଦୀନ ହୀନ ସ୍ଥିର   ଦୋଷୀ ବେଣୁଧର
ଦୁଃସହ କଷଣେ ହରେ ଧନ । ୪ ।
( ଆହେ ଚକାଡୋଳା ଭକ୍ତ ଜୀବକୁ ବାନ୍ଧିଛ ଶୂନ୍ୟଭେଳା, ବୃତ୍ତ )

—o—

( ରାଗ—ଭୂପକାମୋଦୀ । ତାଳ – ଝୁଲ )
ଶ୍ରୀପତି ମୋ ବିପତ୍ତିକି ପାରିବ କି ହାରିବ ହେ ?
ଆଶ୍ରିତ କଲ ଜନକୁ ତାରିବ କି ମାରିବ ହେ ? । ଘୋଷା ।
କଷ୍ଟ ତରିବାରୁ ହରି   କରିଛୁ ଭରସା ଥରି,
ନ ଶୁଣିଲେ ମୋ ଗୁହାରି ଗରିବ କି କରିବ ହେ ? । ୧ ।
ହରିଣୀ ଘୋର ବିପଦୁଁ   ତରିଲା ତବ ପ୍ରସାଦୁଁ
ଦରିଦ୍ରଜନର ବନ୍ଧୁ କିବା ତାପ ହରିବ ହେ । ୨ ।

ବାଳୀ ମାରିଛ ଆପଣ		ବାଳୀ ତାରିଅଛ ପୁଣ
ବାଳୀଅରି ଏ ଜଣାଣ ଧରିବ କି ଫେରିବ ହେ ।୩।
ପତିତପାବନ ହରି		ଗତି ଯେ ଅଛୁ ମୋହରି
ଛିତିରେ ନତ ଅରଣ ବେଣୁଧର ତରିବ ହେ । ୪ ।
( ନିଷେଧ କରୁଛୁ ଧନ ମନ ତହିଁ ମାର୍ଜନା ଦେଇ—ବୃତ୍ତେ)

*

( ରାଗ—ଶୋକକାମୋଦୀ । ତାଳ—ଆଠତାଳୀ )

ରମାରମଣ ହେ ! କ୍ଷମାକର ମୋ ବିପତ୍ତି—ଭାର ।
ତୁମ୍ଭେ ନ ରଖିଲେ ଆହେ ଦୀନବନ୍ଧୁ ଏ ଭୃତ୍ୟ ହୋଇବଟି କାହାର । ଘୋଷା
ଆଉ କେ ମୋ ସାହା ଅଛି ଚକ୍ରବାହା ଏ କଷ୍ଟରୁ କରିବ ଉଦ୍ଧାର ?
ସଙ୍କଟ-ଭଞ୍ଜନ ଗରବ-ଗଞ୍ଜନ ଏ ଭବାର୍ଣ୍ଣବରୁ କର ପାର । ୧ ।
ସୁଦର୍ଶନ ଚକ୍ର ଘୋଡ଼ାଇ ରଖିଲେ କି କରି ପାରିବ ଗ୍ରହ ଘୂର ?
ତବ ବିନା ଦୁଃଖ ହରିବାକୁ ଏ ସଂସାରେ କାହାକୁ ନ କରେ ଗାର ।୨।
ଆରତେ ଡାକୁଛୁ ଅଘଧ୍ୱଂସନକୁ କପାଇଁ କଷଣ ନ ନିବାର ?
ଯେବେ କିଛି ଅପରାଧ ଅଛି ପ୍ରଭୁ ନିଜ କରସୁଧରେ ସଂହାର । ୩ ।
ଏ ଦୁଇ କଥାରୁ କଥାଏ କି ହେତୁ ନ କରୁଛ କଞ୍ଜମୁଖ ହାର ! ।
କହେ ବେଣୁଧର ମୋହପରି ଜଣେ ଖୋଜିଲେ ନଥିବ ଦୁରାଚାର । ୪ ।
( ଦୀନବାନ୍ଧବ ହେ ଶରଣାଗତ ରକ୍ଷଣ ଜାଣି—ବୃତ୍ତେ )

— * —

( ରାଗ—ଶୋକ କାମୋଦ । ତାଳ—ଆଠତାଳୀ )

ରାଧାମୋହନ ହେ ! ବାଧା ମୋ ନ ହର କିମ୍ପା ଭଲ ?
ଉଦ୍ଧର ନାହିଁ ବା କେତେ ଅରକ୍ଷକୁ
ମୋ ବେଳକୁ ନ ରହୁଁଛ ଢାଳ । ପଦ ।
ଭୃତ୍ୟଠାରେ ମନ୍ଦ କୃତ୍ୟ କଲ ପ୍ରଭୁ !
ନୃତ୍ୟ ବିନୋଦିଆ ବନମାଳୀ ।
ନିତ୍ୟ ବୃନ୍ଦାବନ ସତ୍ୟବାଦୀ ନାମ
କେ କମା କରିବ କୃପାମାଳ ? । ୧ ।
ନଟବର ଠାଣି କେ ମୁରଲୀପାଣି
ଗୋପୀନାଥ ଯଶୋଦା ଦୁଲାଳ ।
ଅଟ ପର ତୁମ୍ଭେ ଦୀନବନ୍ଧୁ ଏବେ
ମୋ ଅଗାତ ହେଉଅଛ ଟାଳ । ୨ ।

ନାଗଣରକ୍ଷଣ ଚରଣ ତଳକୁ
ନରତେ ହେଉଛୁ ନଉଗ୍ଗଳ ।
ହରଣ ନ କର ମୋର ଦୁଃଖଭର
କାହା ଜପଟକୁ ପ୍ରତିପାଳ ? । ୩ ।
ନମିଷେ ମୋ ଦୁଃଖ ନ ଗଲା ଶ୍ରୀମୁଖ !
ହିତାପାନଳ ହେଉଛୁ ଜାଳ ।
ଆଶ୍ରିତ ଜନ ପ୍ରାଣୀଙ୍କି ଏହା କଲେ
ଜଗତେ ମାନିବେ ସିନା ତାଳ ? । ୪ ।
ଯାହା କଲେ କର ହେ ବ୍ରଜନାଗର
ତୁମ୍ଭ ନାମ ମୋ ପିୟୁଷ-ଥାଳ
ବେଣୁଧର ଫନ୍ଦା ଅଶ୍ରୁମାନର ଛନ୍ଦା—
ପଦ ତେଜିଥିବ ମୁଁ ଝଖାଳ । ୫ ।
( ଘନସୁନ୍ଦର ହେ ! ଯମୁନା ଯିବାକୁ ଡରଡର—ପ୍ରଭ )

❋

( ରାଗ—କୁସୁମକେଦାର । ତାଳ—ଝୂଳା )

ଆହେ ପ୍ରଭୁ ! ପଙ୍କଜମୁଖ, କହେତୁରୁ ମୋର ନ ହର ଦୁଃଖ ?
କେଉଁ ଦୋଷ ଅବା କଲି ବୋଲି ମୋହଠାରେ ଏ ନିର୍ଦ୍ଦୟ ସ୍ୱଭାବକୁ ରଖ ?
। ଘୋଷା ।
ଏ ଭବମଣ୍ଡଳେ ମୋହ ସମାନରେ ନ ଥିବ ଜଣେ ନରେଖ ।
ଚକ୍ର ଦାଢ଼ ଅବା ବଜ୍ର ହୋଇବାରୁ ମୋର ବାଙ୍କ କର୍ମ, ତୁହେ ସଲଖ ।
ମାୟା ଜଞ୍ଜାଳରେ ନିତ୍ୟ ଘାଣ୍ଟି ହେଲି ହାନେ ନ ପାଇଲି ସୁଖ ।
ତୁମ୍ଭ ପଦ ପ୍ରଭୁ ଥାଉଁ ଥାଉଁ ଏବେ ଭାସି ଯାଉଅଛୁ ଘାନ ଅରକ୍ଷ । ୨ ।
ବକାର ବା ଚକାନେଇ ବନ୍ଧିବାରୁ ମୋ କଷ୍ଟ ଥିଲେ ନ ଦେଖ ।
ବଳ ପଡ଼ୁଅଛୁ ବେତୁ ବେଳ ଘୋର ବପଦର ଦାଉ ହେ ନଳିନାକ୍ଷ ॥
ଘେନ ମୋ ଜଣାଣ ଆନେହ ନାରପୂଣ କେତେ ନାହିଁ ଆଉ ସାକ୍ଷ ।
ହନ ହୀନ ବେଣୁଧର ଅଧମକୁ ସୁଦର୍ଶନ ଚକ୍ରତଳରେ ରଖ । ୪ ।
( ଉଜମନ କଳାକନ୍ଥାଇଁ—ବୃନ୍ତ )

—○—

( ରାଗ—ଭୂଟିଆରୀ । ତାଳ—ଏକତାଳୀ )

ଆହେ ଚକାଆଖି !

ଶଙ୍କାକଲ କି ଏ ମୋ ବିପତ୍ତି ଦେଖି ? । ପଦ ।

ଚକାଇ ଘୁମୁରେ ନିଶିଦିନ ଥକା ହୋଇଲିଣି କରି ଧ୍ୟାନ,
ଓକାଇଛ ଏବେ ବୋଲି ଜାଣିଥିଲେ
ଆଶ୍ରେ କରିଥାନ୍ତି ମୁଁ କାହିଁକି ? । ୧ ।

ଦକା ମାନସରୁ ନ ହରିଲ ପକାଇ ବିପଦେ ପାରିଦେଲ,
ଉକ୍ତ ବାଜ ଅଛି ବ୍ରହ୍ମାଣ୍ଡଯାକରେ
ଏକା ଆରତ ହାଣ ବୋଲିକି ? । ୨ ।

ବକାର ଟିକାଏ ନ ଶୁଣୁଛ ଓକା ପକାଉଛ ହେ ଶ୍ରୀବତ୍ସ,
ବଙ୍କା ହେଲଣି କି ଚକ୍ରାୟୁଧ ଖାଷ୍ଣ
ଦତ୍ତ ନ ରଖିଛ କି ସଲଖି ? । ୩ ।

କି କାରଣେ ହରି ନ ଶୁଣିଲ ଫିକା ସୁଦାମାକୁ କରି ଦେଲ,
ବକା ହୋଇବାରୁ ଶ୍ରୀଚରଣ ତଳେ
ନକାଶିବା ପାଇଁ ପାଞ୍ଚିଛ କି ? । ୪ ।

ଠକା ଠକ ପଣ ଦଗ ଟି ଘୁଡ଼ ଧକା ଦେଇ ବିପତ୍ତିକି ତଡ଼,
ଅକାରଣ ନୋହୁ ଟୋକା ବେଣୁଧର
ଜଣାଣ ମାଗୁଛି ମୁଁ ଏତିକି । ୫ ।

(ଆରେ ଭଜମନ, ଭଜ ପାଖିଲେ ପାଇବୁ ଦରଶନ—ବୁଝରେ)

—o—

( ରାଗ—ଭୂଟିଆରୀ । ତାଳ—ପଞ୍ଚତାଳୀ )

ଆହେ ମହାବାହୁ !

ଭୁଲିଗଲ ଭକତଜନେ କାହୁଁ କାହୁଁ । ଘୋଷା ।

ଭକତବତ୍ସଳ ଭବତ୍ରାତା ପାରକର କୃପା ନାବ ଦେଇ,
ଏ ଘୋର ସଙ୍କଟ ଘୋର ସାଗରୁ
କେ ରକ୍ଷା କରିବ ତୁମ୍ଭେ ଥାଉଁ । ୧ ।

ଶରଣ ରକ୍ଷଣ ଦୀନବନ୍ଧୁ, ଆରତଭଞ୍ଜନ କୃପାସିନ୍ଧୁ,
ତୁମ୍ଭ ଅକଳଙ୍କ ମହିମା ଚନ୍ଦ୍ରକୁ
ଗ୍ରାସୁଛି ଏବେ ବିପଦ ରାହୁ । ୨ ।

ତନ୍ତ ଦାଡ଼ ଜକା ବନ୍ଧ ହେଲା ଅରି ହେତବଳକୁ ନ ଦେଖିଲ,
ଗରିଷ୍ଟ ଗ୍ରହକ ବଳିଷ୍ଟ ହେବାରୁ
ହାରିଗଲ ଦେଖି ତାର ଦାଉ ।୩।
ଆହେ ପ୍ରଭୁ ଶଙ୍ଖ ଚକ୍ରଧାରୀ ନ ରକ୍ଷିଲେ ନଷ୍ଟ ଗଲି ସରି,
ବୋଲେ ବେଣୁଧର ଏ ଦୁର୍ଦ୍ଦଶା ହର,
ତବ ପାଦେ ସଦା ଧ୍ୟାନ ଥାଉ । ୪ ।
[ ଆରେ ବାଇବର ବାଟବସା ଖଣ୍ଡି ଚୋର ଦମ୍ଭକର—ବୃତ୍ତେ ]

—※—

( ରାଗ—ପୂରବୀ । ତାଳ—ଆଠତାଳୀ )
ହେ ତଇତାରି ଘୋର ଭବାର୍ଣ୍ଣବୁ କର ମୋତେ ପାରି ହେ । ଘୋଷା ।
ମାୟାମୋହ ଜଡ଼ ପାଶ ଜ୍ଞାନ ଖଡ଼ଗରେ ନାଶ,
ଶ୍ରୀପଦେ କରଛୁ ଆଶ ଏ ଅଧମ ଦୀନ ଦାସ,
ଏ ଫାଶରୁ କେବେ ଯିବ ତରି ହେ ? ୧ ।
ଖଳଜନ ସଙ୍ଗ ମୋର ଛଡ଼ାଅ ହେ ଚକ୍ରଧର,
ସନ୍ଥଜନେ ବାରବାର କରି ଯାଉ ପ୍ରାଣକର—
ଯୋଡ଼ ମାଗେ ଗୋଲକ ବେହାରୀ ହେ । ୨ ।
ତବ ନାମ ମନ୍ତ୍ର ବଳେ ପାପଶୋର ନ ହେଉ ହେଲେ
ତବ ରୂପ ସଦାକାଳେ ଦେଖଥିବ ନେତ୍ର ଡୋଳେ,
ଦୀନ ଯାଉ ତବ ନାମ ଧରି ହେ । ୩ ।
କର ଏହି ଅନୁଗ୍ରହ ଏ ଭୃତ୍ୟ ନୁହେ ନର୍ଦ୍ଦୟ,
ତବ ଶ୍ରୀପଦ୍ମରେ ଲୟ ଥାଉ ହେ କରୁଣାମୟ,
ବେଣୁଧର କରୁଛି ଗୁହାରି ହେ । ୪ ।
[ ବଂଶୀଧାରି ! ସରି ଯିବନଟି ଜୀବନେ କଶୋରୀ—ବୃତ୍ତେ ]

—※—

( ରାଗ—ଶୋକ କାମୋଦୀ । ତାଳ—ଆଠତାଳୀ । )
ରଘୁନନ୍ଦନ ହେ ! ଏହି ଫଳଙ୍କ କର୍ମେ ଥିଲା ?
ତବ ଦରଶନ ଆଶେ ଆଗମନ କରି ଅଦୋଷେ ଏ ଦାସ ମଲା । ଘୋଷା ।
ଭୂଲୋକ ପରି ପ୍ରଭୁ ଆରତ ଭଞ୍ଜନ, ଏ ଦୀନ ଆରତ ନ ଶୁଭିଲ ?
ଦୂଷଣ ବଚନ ଭୂଷଣ ହେବାକୁ ଲୋକମୁଖେ ପୁଣି ସମ୍ଭବିଲା । ୧ ।
ଯେବେ ଏହା ଚିତ୍ତେ ଥିଲା ପ୍ରଭୁ ମୋତେ କପାଇଁ ଅଣାଇଥିଲ ଭଲା ।
ବିନା ଅପରାଧେ ଦୀନଦାସ ବଧେ କେଉଁ ଯଶପଣ ଜଣାଗଲା । ୨ ।

ତବ ଶ୍ରୀଚରଣ ବିନା ମୁଁ ଶରଣ କାହାକୁ ମାଗିବି ଏହା ହେଲା ?
ତବ ମହିମା ଅଟଇ ଯେତେବେ ସତ୍ୟ ତରିବାକୁ ଦିଅ କୃପା ଭେଳା । ୩ ।
ଯେଉଁ ପରି ଦୀନକୃଷ୍ଣ ଦାସ ଭକ୍ତ ବନ୍ଧନ ଶୃଙ୍ଖଳ ଛିଣ୍ଡିଗଲା ।
ତହୁଁ ବଳବତ୍ତର ଦୁର୍ଦ୍ଦଶା ମୋହର ହର ପ୍ରଭୁ ଶ୍ବେତ ପଦ୍ମହୋଳା । ୪ ।
ଯଶ ରଖାଅ ଅଯଶ ପୁଣି ଦିଅ ଏହା କି ସୁନ୍ଦର ଦେଖାଗଲା ?
ଦୀନ ବେଣୁଧର ଅଧମ ନିଷ୍ଠୁର ତବ ପଦ ଆଶ୍ରେ କରି ମଲା । ୫ ।
( ଦୀନବାନ୍ଧବ ହେ ଶରଣାଗତ ରକ୍ଷଣ ଜାଣି—ବୃତ୍ତେ )

*

[ ରାଗ—କେଦାର ତାଳ—ଆଠତାଳୀ ]

ହରି ହେ ! ଏ କି ନିଷ୍ଠୁର ପଣ ?
ଦୟାନିଧି ହୋଇ ହୁଅ କୃପଣ । ପଦ ।
ଦୀନବନ୍ଧୁ ଭାବଗ୍ରାହୀ ନାମ ପରା
ପୁଣି ବୋଲାଉଛ ଦୁଃଖନାଶନ ।
କେତେ କେତେ ଲୋକ ମୁଖରୁ ଶୁଣିଛୁ
ତୁମ୍ଭେ ପରା ଅଟ ଆରତ ତ୍ରାଣ ? । ୧ ।
ଭବପଦଅର୍ଣ୍ଣବେ ଭାସି ଯାଉଅଛୁ
କାହିଁପାଇଁ ମୋତେ ଏତେ ଦାରୁଣ ?
ଶ୍ରୀପଦ୍ମରେ ଆଶ୍ରେ କରି ମରିଗଲେ
କେଉଁ ଯଶ ଲଭିବଟି ଆପଣ ? । ୨ ।
ଗରବ ଗଞ୍ଜନ ବୋଲାଇଣ ଯେବେ
ଭାଙ୍ଗି ନ ପାରିବ ଗ୍ରହର ଟାଣ ।
କାହିଁପାଇଁ ଆଉ ଦୀନ ଜନମାନେ
ପଦାରବିନ୍ଦରେ ପଶିବେ ଶରଣ ? । ୩ ।
ହେଲା ମୋ ଆରତ ଆହେ ପୀତାକାନ୍ତ
ଫେଡ଼ ମୋର ଏ ଦୁର୍ଦ୍ଦଶା କଷଣ ।
କହେ ବେଣୁଧର ଯୋଡ଼ି ବେନିକର
ଆଶ୍ରିତ ଜନକୁ କର କାରଣ ? । ୪ ।
( କୃଷ୍ଣ ହେ ଦିଅ କୃପା ବରଷି---ବୃତ୍ତେ । )

—*---

( ରାଗ—ଶୋକ କେଦାର । ତାଳ—ଅଠତାଳୀ । )

ଅଟଳ ଦୁଃଖସାଗରେ ବୁଡିଗଲା ପଥକଣା ହୋଇକର ହେ ।
ରଥ ବାହକ ଗ୍ରାହକ ଶିରୋମଣି ଅନାଥ ନା ଶ୍ରୀଧର ହେ ॥
ବ୍ୟର୍ଥ ନୋହୁ ମୋ ଜଣାଣ ।
ସନ୍ଥ ପାଳକ ଆରତତ୍ରାଣ ହେ । ୧ ।
କେତାଏ ହେଳା ନ କର ଚକ୍ରାମଣି ସୀତାବଲ୍ଲଭ ରାଘବ ହେ ।
ଅଚାନ୍ତ ଅକ୍ଷମ ଅରକ୍ଷ ଅଧମ ପୀତାମ୍ବର ଜାଣ ସବୁ ହେ ॥
ଗୀତ ରୂପୀ ଜନାର୍ଦ୍ଦନ ।
ବଡାଉଛୁ କଷ୍ଟେ ଏ ଜୀବନ ହେ । ୨ ।
ଶରଣ ସୋଦର ଚରଣ ତଳକୁ ଲୁଚ୍ୟପଣେ ଅସମର୍ଥ । ହେ ।
ଭରଣ ଭରଣ ପାତକ ଅର୍ଜିଛୁ ଗୁରୁ ଏ ଜୀବନ ବ୍ୟର୍ଥ ହେ ॥
କରଣ ଯେ ଶମନର ।
ମରଣାନ୍ତେ ନ ଦଆଜ ଡର ହେ । ୩ ।
ଏହୁ ମୋ ଗୁହାରି ଅଟେ ବଂଶୀଧାରୀ ଅହ୍ନିଶିର ନୃତ୍ୟକାରୀ ହେ ।
ବହୁ କୃପାଲେଶ ହର ମୋ କଲୁଷ ନୋହୁଲେ ଗଳିଛି ସରି ହେ ।
କେହୁ ନାହିଁ ଆନ ସାହା ।
କହୁଅଛି ମୋ କହ୍ନାର ଗହା ହେ । ୪ ।
ମଣୁଛୁ କି ଥଟ୍ଟା ହେ ଅଘଟ ଘଟା ଲଟାବୃନ୍ଦ ପୀତପଟ ହେ ।
ଅଣୁଏଟି ମିଛ ନୋହେ ଶିଖିପୁଚ୍ଛ ଚୂଳଆ ଯଶୋଦା ସୁତ ହେ ।
ଏଣୁ କରୁଛୁ ଖନନ ।
ଯେଣୁ ବେଣୁଧର ମୃଡ଼ମତ ହେ । ୫ ।
[ କୃଷ୍ଣ ନାମ ଆଜଠାରୁ ମୋ ଶ୍ରବଣେ—ବୃନ୍ଦେ ]

—❀—

[ରାଗ—ତୋଡ଼ିପରଜ । ତାଳ—ଆଦତାଳ ]

ଅଳ ପାଦ ପଦ୍ମ ତଳେ ହେ ଶ୍ରୀଧର ! ଅଳ ପାଦ ପଦ୍ମ ତଳେ ।
ଯେଉଁପରି ଦବ୍ୟ ଗଣକ ଲଭିବ ଜୀବନ ଅନ୍ତିମ କାଳେ ହେ । ପଦ ।
ଏ ପାପ ନୟନେ ଦେଖୁଥିବ ସଦା କୃଷ୍ଣ ନବଙ୍ଗ ମୂରତି ।
ଦିଅ ଶୁଦ୍ଧପ୍ରେମ ହେ ପୁରୁଷୋତ୍ତମ ଦିଅ ମୋତେ ଶୁଦ୍ଧ ଭକ୍ତି ହେ । ୧ ।
ନ ଜାଣେ ଭଜନ ନ ଜାଣେ ପୂଜନ ନ ଜାଣେ ସ୍ତୁତି ବନ୍ଦନ ।
ନ ଜାଣେ ଅର୍ଚ୍ଚନ ଆନେ ଜନାର୍ଦ୍ଦନ ପ୍ରଭୁ ଶ୍ରୀଜଗନ୍ମୋହନ ହେ । ୨ ।

ନିଦାନ ବେଳରେ ଡାକନ୍ତି ଯେପରି ହରେକୃଷ୍ଣ ରାମ ବୋଲି ।
ଏନ୍ତ କୃପାକର ଆନନ୍ଦ ବଂଶୀଧର ମନକଥା ଜଣାଇଲି ହେ । ୩ ।
ଚରମ ଯାଚନା ତଥାସ୍ତୁ ଦିନା ଅସାର ସଂସାର ସୁଖ ।
ନୋହୁ ଅଗ୍ରସର ଚହିଁ ବେଣୁଧର ଅବୋଧ ମନ-ମୂରୁଖ ହେ । ୪ ।
( ଗଳ୍ପିତ ଗଳ୍ପ କଥାରେ, ସଙ୍ଗୀତ—ବୃତ୍ତେ )



[ ରାଗ-ପୂରବୀ । ତାଳ—ଆଠତାଳୀ ]

ଥରେ ନ ଶୁଣିଲ ଅଧମ ଗୁହାରି ହେ, ପାପହାରୀ । ଘୋଷା ।
କରେ ଧରିଥିବା ଆୟୁଧ ଭୁମ୍ବର,
ଡରେ କି ଦେଖି ଏ ମୋ ବିପତ୍ତି ଘୋର ?
ଖରେ ନ ଭେଦଇ ଅବା କାହିଁ ପାଇଁ,
ନ ପାରେ ବୁଝି ବିଗ୍ରହ ହେ । ୧ ।
ନରେ କହୁଥାନ୍ତି ମୁଖେରଟି ଯାହା,
ହରେକଙ୍କ ଠାରୁ ଶୁଣି ଚଉବାହା,
ସୁରେ ଏଣୁ ତବ ଯଶକୀର୍ତ୍ତି ଗାହା,
ନିକୁଞ୍ଜ-କାନନ ବୃନ୍ଦ ହେ । ୨ ।
ମରେ ବା ମୁଁ ଘରେ କେବେ ନ ଛାଡ଼ିବ,
ହରେକୃଷ୍ଣ ରାମ ବୋଲି ଡାକୁଥିବି,
କରେ ଏନ୍ତ ଆଣ୍ଠେ ହଣ୍ଡ ପଛେ କଷ୍ଟ,
ସୁନ୍ଦର ବ୍ରଜ-ବିହାରୀ ହେ । ୩ ।
ସ୍ୱରେ ଯେଉଁ ପଦ-ପଙ୍କଜରୁ ମଧୁ,
ନିତ୍ୟରେ ରସନା ଆସ୍ୱାଦୁ ଆସ୍ୱାଦୁ,
ଘରେ ଥାଇ ବେଣୁଧର ବାନ୍ଧୁ ସ୍ୱାଦୁ,
ନ ହୋଇ ଦାଣ୍ଡ ଭିକାରୀ ହେ । ୪ ।
( ସହିପିବନ୍ତି ଶ୍ରାବଣେ କଶୋସା—ବୃତ୍ତେ )



[ ରାଗ—ଧନାଶ୍ରୀ—। ତାଳ—ଝୁଲା ]

ଖଳନାଶନ ବଂଶୀଧର ହେ, ଖେଦହର ।
ଖଗପତି-ପତି ନତିରେ କାହିଁକି ନଶୁଣ ।ଘୋଷା ।
ଖରେ ମୃଗଣୀ ଆରତ ସେହିଥିଲ ରମାକାନ୍ତ
ଖ୍ୟାତ ହୋଇଛୁ ଏ ଜନପୁର ।
ଖିଆଲେ ଖେଳିଲ ଗଜ ନାଶି କୁମ୍ଭୀର ।
ଖଣ୍ଡିଛ ଦ୍ରୁପଦସୁତାଙ୍କର ଗୁରୁଲଜ୍ଜା ଭାର ।୧।
ଖୁଲୁ ଖେଳୁ ଥିଲ ଖେଳ ଅନ୍ଧକୁ ନୟନ ଦେଲ,
ଖୋପା ହୋଇ ସେ କୁମ୍ଭ ଉପର ।
ଖଳଏ ବଳମ୍ବ କରନାହିଁ ତାହାର ।
ଖୁଦ ମୁଠାକରେ ସୁଦାମକୁ କଲ ଧନେଶ୍ୱର । ୨ ।
ଖମ୍ଭରୁ ହୋଇ ବାହାର ହିରଣ୍ୟକୁ ବଦାରିଲ,
ଖସ୍ତିଁ ନେତ୍ର ଅଶ୍ରୁ ପ୍ରହ୍ଲାଦର ।
ଖଟନ୍ତେ ଧ୍ରୁବ ବାଳକ ପଦେ ତୁମର ।
ଖଞ୍ଜିଣ ଦିବ୍ୟ ମଣ୍ଡଳ ତାହାଙ୍କୁ କଲ ନିସ୍ତାର । ୩ ।
ଖଡ଼ ପତ୍ରରେ ପତର ଲେଖି କହିଲେ କେତେ,
ଖୋଜ ତବ ମହିମା ନକର ।
ଖୋଟିଆ ପଣ ମୋ ପ୍ରତି କମ୍ପା ଆଦର ?
ଖଣ୍ଡ ତାପତ୍ରୟାଗ୍ନି ଦୁଃଖଜଳେ ରକ୍ଷ ବେଣୁଧର ।
( ଦାସ ବଦ୍ରଳନାମ କହ୍ନ ହେ, ଦୟାନିଧି—ବୃନ୍ଦା )

—o—

( ରାଗ—ଲଳିତ । ତାଳ ଝୁଲା । )

ଅକାଳିଆ ବନ୍ଧୁ କହେଣ ମୁଁ ତୋହର
ଡକା ପକାଉଛୁ ଅଛି ।
ବଳା ପାଟିଗିରି ଶୁଭଇ କାହିଁକି ?
ମଲା ଗରଜ ଗରଜ । ୧ ।
ତନ୍ଦ୍ରାନାଶନ କାହାଟି ପରି ବନ୍ଧୁ ?
ତଉଦ ବ୍ରହ୍ମାଣ୍ଡପତିକେ ।
ବଳା ଠକ ବୋଲି ଶୁଣିଲେ ସଂସାରେ
ଆଉ ତୋତେ ଭଜିବ କେ ? । ୨ ।

ଚକାଇ ଆଖିକୁ ଏତେ ଦିନ ଗଲା
ନୋହିଲା ତିଳେ କରୁଣା ।
ଡକାଇଚ ଭବ ମୋଠାରେ କାହିଁକି ?
ମହିମା ହେଲାକି ଊଣା ? । ୩ ।
ଥକାଇ ନୟନ ଲୋତକ-ସଲିଳ
ଅନୁସରିଲେଣି ଯେତେ !
ଶକାନ୍ତା ନାହିଁ ମୋ ପରି ଆନ ପ୍ରାଣୀ
ବକା ଦିଅନ୍ତାଣି କେତେ । ୪ ।
କଳା ରଥ ଚଢ଼ା କୂଳ ମୂଳ ଚଢ଼ା
ହେବୁ ଯେବେ ନନ୍ଦ'ରୁଣ ।
ଟକ୍‌କା ବଜାଇ— ଦେବଟି ଏ ଭୁବନେ
ଗାଇ ତୋହର ଅବଗୁଣ । ୫ ।
ସକାଳରେ ଏବେ ଜଣାଉଛୁ ଶୁଣି-
ଥାଅ ଟକ୍‌କଣ କାଳିଆ ।
ପକାଇ ଦେବ ଚିହ୍ନା ତୋତେ ଏଥର
ହେ ବନ ଫୁଲମାଳିଆ । ୬ ।
ଧକା ବାଜେ ପ୍ରାଣେ ଦୁଷ୍ଟଙ୍କର ଦାଉ
ସାହା ତୋ ବିନା କେ ନାହିଁ ।
ଚକା ନୟନ କି ମୁଦ ହୋଇଗଲା ?
ବେଣୁଧର ଦଶା ଚାହିଁ । ୭ ।
( କି ନାମ ବୋଇଲୁ ଲୁହ ଗୋ ଲଳିତେ—ବୃତ୍ତେ )

— ❋ —

( ରାଗ—ଶୋକ କେଦାର । ତାଳ—ଆଠତାଳୀ )

❋ ଏହିପରି ଅନୁ— ତାପ କରି କରି
କାନ୍ଦି କାନ୍ଦି ଦିନ ଯାଉ ହେ ।
ସେବକ ଲଙ୍ଘିନାଟି ଆହେ ବାଞ୍ଛାନିଧି
ଏ ଅଧମ ପାଇଁ ଥାଉ ହେ ॥
ନନ୍ଦବାଣୀ ଫନ୍ଦା ମୋର ।
ଛନ୍ଦାଚରଣ ମୁରଲୀଧର ହେ । ୧ ।

❋ କୃଷ୍ଣମନ୍ତ୍ର ଉପଦେଶ ଗ୍ରହଣ ପରେ ଏ ଗୀତରେ ଜପ ଜଣାଇ ଅଛନ୍ତି ।

କୁଳ ଅଭିମାନ ମହତ୍ତ୍ୱ ଗୁମାନ
ନେତ୍ରାନାହିଁ ମୋ ଏମାନ ହେ ।
ମୂଳ ତବ ନାମ ନବଘନ ଶ୍ୟାମ
ପ୍ରେମ ଭକ୍ତି କର ଦାନ ହେ ॥
ଧନ ଜନ ବଡପଣେ ।
ମୋର ଆଶା ନାହିଁ ମାତ୍ର କ୍ଷଣେ ହେ । ୨ ।
କ୍ଷୋଭ ପଳାଉଛି ଲୋଭ ବଳାଉଛି
ଯେତେବେଳେ ତୁମ୍ଭ ଗୁଣେ ।
ଅଭୟ ପଙ୍କଜ— ପଯ୍ୟରୁ ମଧୁର—
ମଧୁ ରସ ଆସ୍ୱାଦନେ ହେ ॥
ମୋ ଭୟ ଯାଉଛି ଘୁଞ୍ଚି
ଶୁଦ୍ଧ କାମନା ମାନସେ ପାଞ୍ଚି ହେ । ୩ ।
ଶ୍ରୀଗୁରୁ ସ୍ୱରୂପେ କୃପାକର ଆପେ
ଦେଲ ସାଧୁ ଉପଦେଶ ।
ଅଙ୍ଗରୁ ମୋହର ଅଶେଷ କଳୁଷ
ଦେଖ ବନ୍ଧୁ ହୋଇଛି ନାଶ ହେ ॥
ସଂସାର ସୁଖ ନ ଭଲ ।
ଖସ ଭଳି ପରାଧୀନ ଥାଳ ହେ । ୪ ।
ଜଗନ କୋଟି ପ୍ରାଣୀଙ୍କ ପଡ଼ିଦାତା
ଲପନକୁ ଗୃହିଁ ଗୃହିଁ ।
କଣ୍ଠା ଅଶ୍ରୁ ଫୁଲ— କରେ ନମସ୍କ‌ାର
ଆନ ଅଭିଳାଷ ନାହିଁ ହେ ॥
ଦୁଃଖୀ ବେଣୁଧର ଭଣି ।
ସାକ୍ଷୀ ମୋ ତ୍ରୈଲୋକ୍ୟ ଚିନ୍ତାମଣି ହେ । ୫ ।
( କୃଷ୍ଣନାମ ଆଜଠାରୁ ମୋ ଶ୍ରବଣେ—ବୃତ୍ତେ )

❋

( ରାଗ - ପୂର୍ବୀ । ତାଳ—ଆଠତାଳୀ )

କ୍ଷମାବନ୍ତ ! କ୍ଷମାକର ପ୍ରଭୁ ମୋହର ଦୁଷ୍କୃତ ହେ । ଘୋଷା ।
କ୍ଷିତିରେ ମୋ ସମ ଅରକ୍ଷିତ ଜଣେ, ଖୋଜିଲେ ନଥିବେ ଏ ମାନବଗଣେ ।
କ୍ଷମତା ନାହିଁ ମୋ ଭଜିବାକୁ କ୍ଷଣେ, ତୁମ୍ଭର ନାମ ଯାଚତ ହେ ।୧।

କ୍ଷୀରସିନ୍ଧୁ-ମୋ ପରାଣ-ବଲ୍ଲଭ,—ମହିମା କେବଳ ମୋତେତ ଦୁର୍ଲ୍ଲଭ,
କ୍ଷାଳିବାକୁ ତବ ଶ୍ରୀପଦ ପଲ୍ଲଭ, ନୁହଇ ମୁଁ ସମରଥ ହେ । ୨ ।
କ୍ଷଣିକ ସୁଖରେ ବଳାଇ ମାନସ, ଶେଷକଲି ଏକା ରଜନୀ ଦିବସ,
କ୍ଷୋଭମନରେ ଭାସି ଯାଏ ଏ ସକାଶ, ନିତି ହୋଇ ହନ୍ତସନ୍ତ ହେ ।୩।
କ୍ଷୁଦ୍ରମତି ବେଣୁଧର ଗୁହାରିକି, ଶୁଣ ଗୁଣନିଧି ଜଣାଏ ଏତିକି ।
କ୍ଷିପ୍ରେ ଭବାର୍ଣ୍ଣବୁଁ ଯିବ ନିସ୍ତରିକି ? ଦିଶିବ ନିର୍ମଳ ପଥ ହେ । ୪ ।
(ବଂଶୀଧାରୀ, ହରିଯିବନି ଜୀବନେ କେଦୋଷ—ବୃତ୍ତେ )



( ରାଗ—ଦେଶାକ୍ଷ । ତାଳ— ଝୁଲ )

କରମ ହୀନ ଜନରେ କରୁଣା କର ।
କରଯୋଡ଼ି ନିବେଦନ କରେ ନିକର ॥ ୧ ॥
କର ଅବା ଯାହା ତାହା ସାରଙ୍ଗ କର ।
କରଙ୍କ ଏକା ମୁଁ ସିନା ତବ ସ୍ୱକର ॥ ୨ ॥
କରଇଁ ଏ ଅଳି ହେ ଗୋପ-କଳାକର ।
କର କଦନ ମୋ ପାପ କାଳପାକର ॥ ୩ ॥
କରକ ବଦ ବର ବଦନ ଶ୍ରୀକର ।
କରଣିମଧ୍ୟ ହେ କୃପା ଊଣା ନ କର ॥ ୪ ॥
କର ମାଳା ଦେଇ ମୋର ନାମ ନିକର ।
କରଣୀୟ ଜଗତକୁ ଯେ ସୁଖକର ॥ ୫ ॥
କରଣ ବେଣୁଧର ପଟ୍ଟନାୟକର ।
କରଡ଼ା ଗାଳି ତୁମ୍ଭଙ୍କୁ ପରା ଶାକର ? ॥ ୬ ॥
( ଶୁଣ ଶୁଣ ଶୁଣ ଆଗୋ ବ୍ରଜଯୁବତୀ— ବୃତ୍ତେ )



( ରାଗ—ଶ୍ରେଣୀ । ତାଳ ଝୁଲ )

ହେ ପ୍ରଭୁ ରାଧାରମଣ ମୋ କଥା ଅଟା ନ ମଣ,
ଯେବେ ତୁମ୍ଭ ପ୍ରଭୁପଣ, ସଂସାରେ ସତ ।
ଶୁଣିବ ନିଷ୍ଠେ ଗୁହାରି ଶ୍ରୀ ବୃନ୍ଦାବନ ବିହାରୀ,
ସ୍ଥିର ଚପଦକୁ ହାରି ନ ଯାଇ ମାତ ॥
ଭବଗ୍ରାହୀ ଭକତ ସଖା ।
ଏ କାରଣେ କଲି ଆଜ ତ୍ରିମୂର୍ତ୍ତିର ଦେଖା ॥ ୧ ॥

ଶୁଣିଛ ଶ୍ରବଣେ ମୁହିଁ ଅଖିଳ ବ୍ରହ୍ମାଣ୍ଡ ସାଇଁ
କେତେ କେତେ ସଙ୍କଟରୁ ତାରିଛ ବୋଲି ।
କହଇ ଛନ୍ଦ ବଖାଣି ମୋହନ ସାରଙ୍ଗପାଣି,
ଦାସ୍ୟାକୁ ସାମନ୍ତ ଜାଣି ଶରଣ ଗଲି ॥
ରଖ ଅବା ନରଖ ମୋତେ ।
ନ ଛାଡ଼ିବ ତୁମ୍ଭନାମ ତୁଣ୍ଡୁ କଖ୍ୟତେ ॥ ୨ ॥
ପତିତପାବନ ବାନା— ଫଉଦର ଉଡ଼େ ସିନା,
ଅଣ୍ଟିତ ମୋର ବେଦନା ବୃଦ୍ଧି କେବଳ ।
ରହିଏ ନୋହିଲି ଜଣା ଚଣ୍ଡଦାତା ବୁଝାମଣା,
ବଡ଼ପଣତ କାହିଁପାଇଁ ଯଶୋଦାବାଳ ? ॥
କହୁ ଜାଣି ପାରୁତ ନାହିଁ ।
ପୁଚ୍ଛିବି କାହାକୁ ତୁମ୍ଭ ଛାମୁରୁ ଯାଇଁ ॥ ୩ ॥
କପଟ କଲେ ମୋଠାରେ ନନ୍ଦା ଡ଼କ୍‌କା ତୁମ୍ଭନାରେ,
ବାଜିବ ତ୍ରିଭୁବନରେ ନାହିଁ ସଂଶୟ ।
ମୃତତେ ବସ୍ଥିର କର ମୁଁ ତର କଷ୍ଟୀ ପାମର,
ଘୁଞ୍ଚିଲେ ଦୁର୍ଦ୍ଦଶା ବାର ଭଜିବି ଅସ୍ଥ ॥
କୃପା କଟାକ୍ଷରେ ଅନାଅ ।
ଅନାଥ-ବାନ୍ଧବ ବୋଲେ କୃପଣ ନୃହ ॥ ୪ ॥
ଅଧିକ କହିବି କବା ? କରୁଣା ଥିବା ନ ଥିବା,
ଜଣାଯିବ ଏହିଠାରେ ଏ ମୋ ପରୀକ୍ଷା ।
ଏତିକ କଲି ଜଣାଣ କଲବଲ ହେଉ ପ୍ରାଣ,
ହୃଦରେ କରି ଧାରଣ ନନ୍ଦଙ୍କ ଦୀକ୍ଷା
ମାର ଅବା ତାର ଗୋସାଇଁ !
ଦୁଃଖି ବେଣୁଧର ସାହା ଆଉ କେ ନାହିଁ ।୫।
( ଏଥିଅନ୍ତେ ଶୁଣ ରସ ଗ୍ରୀଷ୍ମେ ନଶୀ ପ୍ରବେଶ—ବୃତ୍ତେ )

—❋—

( ରାଗ—ବଡ଼ ଆଷାଢ଼ଶୁକ୍ଳ । ତାଳ—ଝୁଲ )
ତୁମ୍ଭ ଇଚ୍ଛା ସିନା ?
ହର ବା ନ ହର ମୋର ବେଦନା । ଘୋଷା ।
ଭକତବତ୍ସଳ ଜଗତନାଥ । କରୁଣାବାରିଧି ଦୁଃଖିଙ୍କ ଭ୍ରାତ ॥
ଆରତ ଭଞ୍ଜନ ମହିମାମେରୁ । ଚିନ୍ତାମଣି ବାଞ୍ଛାକଳପତରୁ ॥ ୧ ॥

ଗୋବିନ୍ଦ ଗୋପାଳ ମୁକୁନ୍ଦ ହରି । ବୃନ୍ଦାବନଚନ୍ଦ୍ର କୁଞ୍ଜବିହାରୀ ॥
ଶ୍ରୀ ନନ୍ଦାଚରଣ ମୁରଲୀପାଣି । ଶ୍ୟାମଳ ସୁନ୍ଦର ନବଘନଠାଣି ॥ ୨ ॥
ରସରାଜମୂର୍ତ୍ତି କାମମୋହନ । ନଟବର ସୁଖ-ସଦନ ॥
ଗୋବର୍ଦ୍ଧନୋଦ୍ଧାରୀ ଗୋପ ରଖାଳ । ପ୍ରେମାନନ୍ଦମୟ ଶ୍ରୀବନମାଳୀ ॥ ୩ ॥
କୌସ୍ତୁଭ ନେତ୍ରପୂର ପିନ୍ଧିଲ । ଗୋପାଙ୍ଗନା ହୃଦୟ ମଙ୍ଗଳମାଳ ॥
ଶ୍ରୀ ବୃଷଭାନୁଜମା ପ୍ରାଣବନ୍ଧୁ । ସକଳ ଗୋକୁଳ ପୂର୍ଣ୍ଣିମାଚନ୍ଦ୍ର ॥ ୪ ॥
ରମା ବାଣୀ ମୁନିମାନସ ହଂସ । ଅଭୟ ବରଦ ଜଗନ୍ନିବାସ ॥
ଶରଣ ରକ୍ଷଣ ହେ ଜନାର୍ଦ୍ଦନ । ବିଶ୍ୱବିମୋହନ ମଧୁସୂଦନ ॥ ୫ ॥
ଗର୍ବଭଞ୍ଜନ କାଳୀୟମର୍ଦ୍ଦନ । ସନ୍ତାପହାରୀ ଆନନ୍ଦବର୍ଦ୍ଧନ ॥
ଅଧମ ବେଣୁଧର ଅକିଞ୍ଚନ । ଶ୍ରୀମୁଖେ କରୁଅଛି ନିବେଦନ ॥ ୬ ॥
ତୁମ୍ଭ ଇଚ୍ଛା ବିନା ? ହର ବା ନହର ମୋର ବେଦନା ॥
( ଶିଖଣ୍ଡ ମୁକୁଟ ଶିଖିଛ ଭଲ ଅଜନମ୍ଭ କୂଟ — ପ୍ରଭୃ )

—o—

## ସ୍ୱାଭିଷ୍ଟ ଲାଳସା

( ରାଗ—ବରାଡ଼ି ଆଷାଢ଼ ଶୁକ୍ଳ । ତାଳ—ଝଲ )

ଏହି କୃପା ଥାଉ ।
ଆଉ କଉପଣ ଚାଲିବ ଯାଉ । ଘୋଷା ।

ଆହେ ବନମାଳୀ ଘନକାଳିଆ । ବୃନ୍ଦାବନ-କ୍ଷେତ୍ରାଧିକ ମଳିଆ ॥
ନନ୍ଦକୁଳ ଅକଳଙ୍କ-ଚନ୍ଦ୍ରମା । ଗୋପ ଗୋପୀ ସୁଖ-ଆନନ୍ଦ-ସୀମ ॥ ୧ ॥
ନିତ୍ୟ ଦେଖିଥିବି ସୁନ୍ଦରଠାଣି । ମଦନମୋହନ ମୂରତିମଣି ॥
ବାମେ ବାମାବର ଶ୍ରୀରାଧାରାଣୀ । ତରହସା ମୁଖ ବାଙ୍କ ଚାହାଣି ॥ ୨ ॥
ସଖୀଙ୍କ ଚଙ୍ଗିମା ରୂପ ଅତର । ସୁରସିକା ସମସ୍ତ ଆନନ୍ଦ ଆଦର ॥
ନିକୁଞ୍ଜବିଳାସ କେଳି ବିଭବ । ଖଟିବ ହୋଇ ନୂଆ ମହୋତ୍ସବ ॥ ୩ ॥
ଧନ ମାନ ଦମ୍ଭ ନ ହେଉ ମୋର । ତୁମ୍ଭ ଭକ୍ତଙ୍କର ହୋଇ କିଙ୍କର ॥
ଶ୍ରବଣେ ତବନାମ ଗୁଣାବଳୀ । ମୋ ପାଷାଣ ହୃଦ ଯାଉ ତରଳି ॥ ୪ ॥
ଦାମ୍ଭିକ ନାସ୍ତିକ ତାର୍କିକ ନର । ଏ ସଙ୍ଗ ମୋତେ ନ ଦିଅ ଶ୍ରୀଧର ॥
ଅହଙ୍କାର ମତ୍ତ ଯେଉଁ ପ୍ରାଣୀ । ସେ ଦୂରେ ରହନ୍ତୁ ଏ ମୋ ମାଗୁଣି ॥
ମାୟା ମୋହ ତମ ଘୋଟିଛି ଯାକୁ । ସବୁ ଫମ୍ପା ମଣୁଛି ନିଜ ଧନକୁ ॥
କଢ଼ମା ଦଣେ ସେ ଦେଖାଏ ହାଣ । ନୋହୁ ତା ସଙ୍ଗ ଥିବାଯାଏ ପ୍ରାଣ ॥
ହୋଇଥିଲେହେଁ ନିଷ୍କଳିତବଂଶ । ନାହିଁ ଯେବେ ଶ୍ରଦ୍ଧା ନାମେ ତାହାର ॥
ଶ୍ରୀଗୁରୁ କୃଷ୍ଣେ ନାହିଁ ଯା ବିଶ୍ୱାସ । ମୋତେ ନ ମଣାଉ ସେ ଜନ ପାଶ ॥

ନାହିଁ ଯାର ଗୌରକୀର୍ତ୍ତି ସମ୍ବନ୍ଧ । ପରମାର୍ଥ ପ୍ରଣାଳୀରେ ଯେ ଅନ୍ଧ ॥
ନ ପଢେ ଯେ ହରି କଥା ପ୍ରବନ୍ଧ । ମୁଖରେ ନ ଆସୁ ତା ନାମ ଗନ୍ଧ ॥ ୮ ॥
କୃଷ୍ଣ ପ୍ରସାଦେ ଯାର ଅନାଦର । * ଅଭକ୍ଷ ଭକ୍ଷଣେ କରେ ଆଦର ॥
ମାଳା ତିଳକ ବିବର୍ଜିତ ପ୍ରାଣୀ । ନୋହୁ ମୋର ସଙ୍ଗୀ ହେ ବଂଶପାଣି ॥୯॥
କୁଟିଳ ମତ୍ତ ଅତି ଦୁରାଚାର । ଶଠ ଅବିଶ୍ୱାସୀ କପଟି ନର ॥
ଅମ୍ବାଦ୍ଧମାୟା ଖଳ ଦୁର୍ଜନ । ଏହାଙ୍କ ସଙ୍ଗରୁ କରାଅ ଭିନ୍ନ ॥ ୧୦ ॥
ଠକ ଉଚକାଇତମାନଙ୍କ ଗୁରୁ । କୋଟିଏ ଲଜାର ଏହାଙ୍କୁ ଦୂରୁ ॥
ସାଧୁ ସନ୍ଥ ସଙ୍ଗେ ଯାଉ ମୋ କାଳ । ଦୁଃଖି ବେଣୁଧର କଲେ ଜଞ୍ଜାଳ ॥
ଏତିକି କୃପା ଥାଉ । ଆଉ ବଡ଼ ପଣ ଚୂଲକୁ ଯାଉ ॥
( ଭାବାକୁ କହିବା—ବୃତ୍ତ )

—o—

( ରାଗ—ମଙ୍ଗଳ । ତାଳ—ଷଟମାନ )
କେବେ ବ୍ରଜଧାମେ ମୁହିଁ ହେବି ନବଦାସୀ ?
କେବେ ହେବ ହେ ଶ୍ରୀହରି ରାଧାକୁଣ୍ଡବାସୀ ? । ୧ ।
କେବେ ବା ବୈଷ୍ଣବଗଣ କରିବେ କରୁଣା ? ।
କେବେ ମୋ ଶ୍ରୀଗୁରୁଦେବ ହେବେ ସ୍ନେହ ମନା । ୨ ।
କେବେ ମୋତେ କୃଷ୍ଣଭକ୍ତେ ଘେନିଯିବେ ବ୍ରଜେ ?
କେବେ ନିରେଖିବି ପାପନେତ୍ରେ ରସରାଜେ । ୩ ।
କେବେ ଏ ଦୁର୍ଦ୍ଦଶା ମେଣ୍ଟି ହୋଇବ ସୁଦଶା ?
କେବେ ମାଧୁକରୀ ମାଗି ଖାଇବି ଏ ଆଶା । ୪ ।
କେବେ ସମ୍ପୂର୍ଣ୍ଣ ହୋଇବ ଅଭିଷ୍ଟ ମୋହର ?
ଶ୍ରୀଗୁରୁ ସ୍ମରି କହେ ଦୁଃଖି ବେଣୁଧର । ୫ ।
( ଗୌରାଙ୍ଗ ବଳାଙ୍କ ଦେବ ସ୍ୱଳକ ଶରୀର—ବୃ-ତ୍ତ )

( ରାଗ—ଚୋଡ଼ପରଜ । ତାଳ ଆଠତାଳୀ )
ମହାବାହୁ ! କେବେ ହେବ ଦରଶନ ?
ଭବନାମ ଭଜେ, ନ ଛାଡ଼ିବ ହେଲେ ଏ ପାମର ଘନଘାନ ହେ । ପଦ ।
ଏ ବିଷୟ ବିଷ, ଭଜନ ବିବଶ, ଘ ରୁଅଛୁ ମୋର ମନ ।
ଦୟା ସଦବୁଦ୍ଧି, ଅହେ ଦୟାନିଧି, ନାହିଁ ମୋ ଭୂଷଣ ହେ । ୧ ।

* ଅଭକ୍ଷ—( ଅସୁର ଖାଦ୍ୟ) ମତ୍ସ୍ୟ, ମାଂସ, ମଦ୍ୟ ପ୍ରଭୃତି ।

ସାଧୁସଙ୍ଗ ବଳେ କଲନାହିଁ ପ୍ରଭୁ, ନ କଲି ନାମ ଭଜନ ।
ମାୟାମୋହେ ପଡ଼ି, ଧନ୍ଦ ହେଉଅଛି, ଲୋଭଗ୍ରସ୍ତେ ଗଲା ଦିନ ହେ ।୨।
ଜପ ତପ ଦାନ, ଧ୍ୟାନ କରିବାକୁ ଅଟଇ ମୁଁ କର୍ମହୀନ ।
ଏ ଭବାର୍ଣ୍ଣବରୁ, କପରି ତରିବି, କହ ଆରତ ଭଞ୍ଜନ ହେ ।୩।
ମାଗୁଅଛି ଏତେ, ଶ୍ରୀପଦ ପଙ୍କଜେ, ତବପଦେ ରହୁ ଧ୍ୟାନ ।
ବୋଲେ ବେଣୁଧର, ତବନାମ ଧରି, ଯାଉ ଏ ଛାର ଜୀବନ ହେ ।୪।
( ମହାପ୍ରଭୁ ! ଯାଜନରେ ପରି ଦୟା—ବୃନ୍ଦ )

—❀—

ରାଗ—ଖଣ୍ଡକାମୋଦ । ତାଳ—ଆଠତାଳି )

ଅରୁଣକୁଞ୍ଜ ସେବା ବିଧାନେ ।
କେବେ ଖଟିବି ସଖୀ ସନ୍ନିଧାନେ ଯେ ? । ଘୋଷା ।
ଶିଖିବି କେବେ ସେ ଗୁପତ ଭାବ ?
ଶ୍ରୀଗୁରୁ-ରୂପାଙ୍କ ଆଜ୍ଞା ହୋଇବ ଯେ ।୧।
ଶିକ୍ଷାଗୁରୁ-କୃପାମୟୀ-କଣୋସ୍ମି ।
କେବେ ଅକର୍ଷିବେ ନୟନଠାରି ଯେ ? ।୨।
ଆସ ନୂଆଦାସୀ ବୋଲିଣ ଧୀରେ ।
ଡାକିବେ ଲଳିତା କେବେ କୁଞ୍ଜରେ ଯେ ? ।୩।
ଯୁଗଳ ମୂର୍ତ୍ତିଙ୍କ ଶୋଭାକୁ ଚାହିଁ ।
କେବେ ପ୍ରେମଅଶ୍ରୁ ପଡ଼ିବ ବହି ଯେ ? ।୪।
ମଣ୍ଡିସି ଦେହରେ ଶ୍ରୀ ବ୍ରଜଧୂଳି ।
କେବେ ବେଣୁଧର ହୋଇବ ବୋଲି ଯେ ? ।୫।
( ସଜନୀ ! ଶ୍ୟାମ ଶ୍ରୀଅଙ୍ଗଠାଣି—ବୃନ୍ଦେ )

—❀—

[ ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲା )

ଶରଧା ବଳଇ ବୃନ୍ଦାବନେ ଯାଇଁ
ହୋଇବି ମୁଁ ଧନବାନ ।
ଅନୁକ୍ଷଣେ ମୋତେ କୃତାର୍ଥ କରିବେ
ବ୍ରଜବାସୀମାନେ ସ୍ୱଳ୍ପ ।୧।
ଶରଧା ବଢ଼ୁଛି ସାଧୁବେଶ ବାଛି
ଦେବ ଶ୍ରୀ ଗୌରାଙ୍ଗଦାସ ।
ତୁଳସୀ ମାଳଆ ଭଜନ ‌ଲଆ
ନାମ ହୋଇବ-ପ୍ରକାଶ ।୨।

ଶରଧା ହେଜନ୍ତୁ ପ୍ରମୋହ୍ଲାଦେ ନାଚ
ଗାଇବ ଶ୍ରୀକୃଷ୍ଣ ଗୁଣ ।
ଘୁଞ୍ଚୁ ଘରଦ୍ୱାର ହୋଇବ ବାହାର
ଯହିଁ କୃଷ୍ଣଭକ୍ତ ଗଣ । ୩ ।
ଶ୍ରଦ୍ଧାବଳେ ଆଜ ବୋଲଇ ବାବାଙ୍କ
କୂଳେ ଦେବ ଜଳାଞ୍ଜଳି ।
ବୋଲେ ବେଣୁଧର ନାମୋପାଧିଗ୍ରସ୍ତ
ପ୍ରତିଷ୍ଠା ମୋ ଯାଉ ଜଳି ।
( ନଚାଇ ନାଗର ରସେର ସାଗର—ଢୁଙ୍ଗେ )

—*—

# କୀର୍ତ୍ତନ

## ଗୌର ରସ ।

ଶ୍ଳୋକଃ

ବନ୍ଦେଽହଂ ଶ୍ରୀଗୁରୋଃ ଶ୍ରୀଯୁତ ପଦକମଳଂ ଶ୍ରୀଗୁରୂନ୍ ବୈଷ୍ଣବାଂଶ୍ଚ ।
ଶ୍ରୀରୂପଂ ସାଗ୍ରଜାତଂ ସହଗଣରଘୁନାଥାନ୍ୱିତଂ ସଜୀବଂ ।
ସାଦ୍ୱୈତଂ ସାବଧୂତଂ ପରିଜନସହିତଂ କୃଷ୍ଣ ଚୈତନ୍ୟଦେବଂ ।
ଶ୍ରୀରାଧାକୃଷ୍ଣପାଦାନ୍ ସହଗଣଲଳିତାନ୍ ଶ୍ରୀବିଶାଖାନ୍ୱିତାଂଶ୍ଚ ।

## ଗୀତ ।

( ରାଗ—ଲଳିତକାମୋଦ । ତାଳ—ଝୁଲ )

ବନ୍ଦଇଁ ଶ୍ରୀଗୁରୁ ଚରଣ କମଳ ବନ୍ଦୁ ଶ୍ରୀ ବୈଷ୍ଣବବୃନ୍ଦ ।
ବନ୍ଦଇଁ ଶ୍ରୀରୂପ ସନାତନ ସହିତରେ ରଘୁନାଥ ପଦ । ୧ ।
ବନ୍ଦୁ ଶ୍ରୀ ଅଦ୍ୱୈତ ପ୍ରଭୁ ଅବଧୂତ ପ୍ରେମମୟ ନିତ୍ୟାନନ୍ଦ ।
ବନ୍ଦୁ ପରିଜନ ସହ ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟଚନ୍ଦ୍ର । ୨ ।
ବନ୍ଦଇ ଶ୍ରୀରାଧା ଗୋବିନ୍ଦମୂରତି ଶ୍ରୀ ଲଳିତେ ବିଶାଖିକେ ।
ବନ୍ଦୁ ଇନ୍ଦୁଲେଖେ ସଖି ସୁଦେବିକେ ତୁଙ୍ଗ ଚମ୍ପକଲତିକେ । ୩ ।
ବନ୍ଦଇଁ ଶ୍ରୀ ରଙ୍ଗଦେବ୍ୟ ଶ୍ରୀ ଶ୍ୟାମଳେ ମଧୁମତୀ ସହିତରେ ।
ବନ୍ଦୁ ଶ୍ରୀ ବିମଳେ ଶ୍ରୀ ଭଙ୍ଗଦେବିକେ ପାଳୀ ଅନଙ୍ଗମଞ୍ଜରୀ । ୪ ।

ବନ୍ଦଇ ଲବଙ୍ଗ ଶ୍ରୀରୂପମଞ୍ଜରୀ ଦେବୀ ମଙ୍ଗଳାସୁନ୍ଦରୀ ।
ଅଧମ ପାମର ଦୁଃଖୀ ବେଣୁଧର ଲଭୁ ତବ କୃପା ବାରି । ୫ ।
( କରକାଦ୍ଭୁତ ରାଧାଙ୍କୁ—ପ୍ରଶ୍ତ )

❊

ରାଗ—ଆନନ୍ଦ କେଦାର । ପଟ—ତାଳ )

ଜୟ ଜୟ ଶ୍ରୀ ଚୈତନ୍ୟ ବିଶ୍ୱମ୍ଭର । ଜୟ ଜୟ ନବଦ୍ୱୀପ ସୁଧାକର । ୧ ।
ଜୟ ଜୟ ଶଚୀ ସୁତ ଗୌରହରି । ଜୟ ଜୟ ହେ ପଣ୍ଡିତହୀଣକାରୀ । ୨ ।
ଜୟ ଜୟ ଭବଭୟ ଭଞ୍ଜନ ହେ । ଜୟ ଜୟ ଭକ୍ତମନ ରଞ୍ଜନ ହେ । ୩ ।
ଜୟ ଜୟ ଅରୁଣ ଅମ୍ବରଧାରୀ । ଜୟ ଜୟ ମହାପାପ ତାପହାରୀ । ୪ ।
ଜୟ ଜୟ କପଟ ସନ୍ନ୍ୟାସ ମଣି । ଜୟ ଜୟ ଦଣ୍ଡ କମଣ୍ଡଳ ପାଣି । ୫ ।
ଜୟ ଜୟ ବିଷ୍ଣୁ ପ୍ରିୟା ଗଳାହାର । ଜୟ ଜୟ ଲକ୍ଷ୍ମୀଦେବୀ ପ୍ରାଣେଶ୍ୱର । ୬ ।
ଜୟ ଜୟ ଦୁର୍ଲଭ ନିତ୍ୟାନନ୍ଦ ସଖା । ଜୟ ଜୟ କୃଷ୍ଣେଶ୍ୱରୀ ଭାବଚଖା । ୭ ।
ଜୟ ଜୟ ସନାତନ ଗଣ୍ଡିତାଚା । ଜୟ ପାଷାଣ୍ଡଦଳନ ବଳବନ୍ତା । ୮ ।
ଜୟ ଜୟ କୃପା ସୁଧା ସରିତପତି । ଜୟ ଜୟ କୋଟି ମନମଥ ମୁରତି । ୯ ।
ଜୟ ଜୟ ନାମ ପ୍ରେମଧନ ଦୟା । ଜୟ ଜୟ ମହାଭାବ ବିନୋଦିୟା । ୧୦ ।
ଜୟ ଜୟ ବିଶ୍ୱଜନ ବିମୋହନ । ଜୟ ଜୟ ଦୁଃଖୀ ଦୁଃଖ ବିମର୍ଦ୍ଦନ । ୧୧ ।
ଜୟ ଜୟ ଜମ୍ବୁନଦ କଳେବର । ଜୟ ଜୟ ଗୀତ ଗାଏ ବେଣୁଧର । ୧୨ ।
( ନବ ନିରଦ ନିନ୍ଦିତ କାନ୍ତି ଧରଂ—କୃଷ୍ଣେ )

—❊—

# ଯୋଗପୀଠ

ଶ୍ଳୋକଃ ।

ପଦ୍ମମଧ୍ୟେ ସିଂହାସନେ ଗୌରସୁନ୍ଦର ବିଗ୍ରହମ୍ ।
ତଦକ୍ଷିଣେ ନିତ୍ୟାନନ୍ଦଂ ପ୍ରେମାନନ୍ଦ କଳେବରମ୍ ॥
ବାମେ ଗଦାଧରଂ ଦେବଂ ଭୂଦେବ ଶକ୍ତି ବିଗ୍ରହମ୍ ।
ଦେବସ୍ୟାଗ୍ରେ କର୍ଣ୍ଣିକାୟାଂ ଦୈତାଦ୍ୱୈତମୀଶ୍ୱରମ୍ ॥
ତଦକ୍ଷିଣେ ଭକ୍ତବର୍ଯ୍ୟଂଶ୍ରୀବାସଂ ଛତ୍ରଧାରକମ୍ ।
ଚତୁର୍ଦ୍ଦିକ୍ଷୁ ମହାନନ୍ଦମୟଂ ଭକ୍ତଗଣଂ ତଥା ॥

( ପୟାର )

( ରାଗ—ମଙ୍ଗଳ କେଦାର । ତାଳ—ଝିପଟ୍ଟା ]

ପଦ୍ମମଧ୍ୟେ ସିଂହାସନେ ଶ୍ରୀ ଗଉରଚନ୍ଦ୍ର ।
ତାହାଙ୍କ ଦକ୍ଷିଣ ପାଶେ ପ୍ରଭୁ ନିତ୍ୟାନନ୍ଦ । ୧ ।
ବାମେ ତାମ୍ବୁଳ—ବଟିକା ହସ୍ତେ ଗଦାଧର ।
ସମ୍ମୁଖରେ ଯୋଡ଼ ହସ୍ତେ ଅଦ୍ୱୈତ ଈଶ୍ୱର । ୨ ।
ସେ ପ୍ରଭୁ ଦକ୍ଷିଣେ ଭକ୍ତ ଶ୍ରେଷ୍ଠ ଯେ ଶ୍ରୀବାସ ।
ମଞ୍ଜୁଳ ଶ୍ୱେତଛତ୍ରମର ଚୌକରେ ପ୍ରକାଶ । ୩ ।
ଚତୁର୍ଦ୍ଦିଗେ ମହାନନ୍ଦ ମଗ୍ନ ଭକ୍ତଗଣ ।
ଶ୍ରୀ ରୂପଗୋସ୍ୱାମୀ ରାମାନନ୍ଦ ସହ୍ୱରେଣ । ୪ ।
ପ୍ରଭୁ ମହାପ୍ରଭୁଙ୍କର ପଙ୍କଜ ପୟର ।
ଚନ୍ତଇ ଅଧମ ଘାନ ସ୍ୱାନ ବେଣୁଧର । ୫ ।
( ଅପ୍ରାକୃତ ପ୍ରେମମୂର୍ତ୍ତିଜୟ ରାଧେ ହରି ବୃନ୍ଦେ )

❀

## ଯୋଗପୀଠ

ଶ୍ଳୋକଃ ।

ଯଥା ବୃନ୍ଦାବନେ ଯୋଗପୀଠ ସ୍ତଥା ନବଦ୍ୱୀପେ ।
ବୃନ୍ଦାବନେ ରାଧାକୃଷ୍ଣ ଗୌରାଙ୍ଗଃପ୍ରଭୁ ନବଦ୍ୱୀପେ ।

## ଗୀତ

( ରାଗ—ଭଳସା । ତାଳ—ପହପଟ )

ବୃନ୍ଦାବନେ ରାଧା କୃଷ୍ଣ ନବଦ୍ୱୀପେ ଗୋରା ।
ଦୁଇ ତନୁ ମିଳି ଏକ ଭକ୍ତ ଚିତ୍ତ ଚୋରା । ୧ ।
ସହସ୍ରଦଳ-କମଳ କର୍ଣ୍ଣିକାରେ ସ୍ଥିତ ।
ବ୍ରଜେ ରାଧାକୃଷ୍ଣ ନବଦ୍ୱୀପେ ଶଚୀସୁତ । ୨ ।
ପ୍ରଧାନ ଅଷ୍ଟଦଳରେ ଯେ ସଖି ମଞ୍ଜରୀ ।
ଗୌର ଅବତାରେ ସର୍ବେ ଥିଲେ ଅବତରି । ୩ ।
ପ୍ରଥମ ଦଳ ଉତ୍ତର ହରେ ଶ୍ରୀ ଲଳିତା ।
ସ୍ୱରୂପ ଗୋସ୍ୱାମୀ ନାମେ ସେ ଯେ ପରଚିତା । ୪ ।
ଦ୍ୱିତୀୟ ଦଳ ଇଶାନ କୋଣେ ଶ୍ରୀ ବିଶାଖା ।
ରାୟ ରାମାନନ୍ଦ ବୋଲି ତାଙ୍କ ନାମ ଲେଖା । ୫ ।

ତୃତୀୟ ଦଳ ଯେ ପୂର୍ବେ ଶଶୀ ସଦାଶିବ ।
ଶ୍ରୀ ଗୋବିନ୍ଦାନନ୍ଦଘୋଷ ନାମ ତାହାଙ୍କର । ୬ ।
ଚତୁର୍ଥଦଳ ଯେ ଅଗ୍ନି କୋଣେ ଇନ୍ଦୁରେଖା ।
ବସୁରାମାନନ୍ଦ ରୂପେ ସେବନ୍ତି ସେ ଏକା । ୭ ।
ପଞ୍ଚମଦଳ ଦକ୍ଷିଣେ ଶ୍ରୀଚମ୍ପକ ବଲ୍ଲି ।
ନବଦ୍ୱୀପେ ଖ୍ୟାତ ଶିବାନନ୍ଦସେନ ବୋଲି । ୮ ।
ଷଷ୍ଠଦଳ ନୈଋତରେ ରଙ୍ଗଦେବୀ ସଖୀ ।
ଶ୍ରୀଗୋବିନ୍ଦଘୋଷ ନବଦ୍ୱୀପେ ଜନ୍ମ ରହି । ୯ ।
ସପ୍ତମଦଳ ପଶ୍ଚିମେ ତୁଙ୍ଗବିଦ୍ୟାଙ୍କର ।
ନବଦ୍ୱୀପେ ପ୍ରକଟ ପଣ୍ଡିତ ବକ୍ରେଶ୍ୱର ।   ।
ଅଷ୍ଟମଦଳ ଯେ ବାୟୁକୋଣରେ ପ୍ରକାଶ ।
ବ୍ରଜେ ଶ୍ରୀ ସୁଦେବୀ ନବଦ୍ୱୀପେ ବାସୁଘୋଷ । ୧୧ ।
ପ୍ରଥମ ଉପଦଳରେ ଶ୍ରୀରୂପମଞ୍ଜରୀ
ଶ୍ରୀରୂପ ଗୋସ୍ୱାମୀ ନାମ ଯେତୁ ଜନ୍ମ ଧରି । ୧୨ ।
ଦ୍ୱିତୀୟେ ଶ୍ରୀ ମଞ୍ଜୁଲାଲି ଈଶାନ କୋଣେରେ ।
ଶ୍ରୀଲୋକନାଥ ଗୋସ୍ୱାମୀ ନାମ ଗୋଟି ଧରେ । ୧୩ ।
ତୃତୀୟେ ରତି ମଞ୍ଜରୀ ପୂର୍ବଦଳେ ଜାଣ !
ଗୋସ୍ୱାମୀ ଶ୍ରୀ ରଘୁନାଥ ଦାସଟି ପ୍ରମାଣ ୧୪ ।
ଚତୁର୍ଥେ ରସମଞ୍ଜରୀ ଅଗ୍ନିକୋଣେ ସ୍ଥିତ ।
ଗୋସ୍ୱାମୀ ଶ୍ରୀ ରଘୁନାଥ ଭଟ୍ଟ ଯେ ଅଦ୍ଭୁତ । ୧୫ ।
ପଞ୍ଚମେ ଗୁଣମଞ୍ଜରୀ ଦକ୍ଷିଣେ ଆବର ।
ଗୋସ୍ୱାମୀ ଗୋପାଳଭଟ୍ଟ ନାମ ଯାହାଙ୍କର । ୧୬ ।
ଷଷ୍ଠେ ବିଳାସ ମଞ୍ଜରୀ ନୈଋତେ ବସତ ।
ଶ୍ରୀଜୀବ ଗୋସ୍ୱାମୀ ନାମ ଯାହାଙ୍କର ଖ୍ୟାତ । ୧୭ ।
ସପ୍ତମେ ପଶ୍ଚିମ ଦିଗେ ଲବଙ୍ଗ ମଞ୍ଜରୀ ।
ଶ୍ରୀ ସନାତନ ଗୋସ୍ୱାମୀ ଭକ୍ତି-ଅଧିକାରୀ । ୧୮
ଅଷ୍ଟମରେ ବାୟୁକୋଣେ କସ୍ତୁରୀ ପ୍ରକାଶ ।
ନବଦ୍ୱୀପେ ଖ୍ୟାତ କବିରାଜ କୃଷ୍ଣଦାସ । ୧୯ ।
ଗୌରତତ୍ତ୍ୱ ବୁଝି ଭାଇ କୃଷ୍ଣ ରସେ ମଜ୍ଜ ।
ବୋଲେ ବେଣୁଧର ପ୍ରେମ ଭକତି ଅରଜ । ୨୦ ।
(ନିତ୍ୟ ଜପ ଶ୍ରୀଗୁରୁ ଶ୍ରୀ ଚରଣାରବିନ୍ଦ—ବୃନ୍ଦ]

---

( ରାଗିଣୀ—ଭୈରବୀ । ତାଳ—ଏକତାଳି )

ଉଠ ହେ ନିମାଇଁ ନଦୀୟାଚାନ୍ଦ
ରଜନୀ ହୋଇଲାଣି ଶେଷ ।
ଉଠ ନିତ୍ୟାନନ୍ଦ ଅବଧୂତ ରାୟ
ଶ୍ରୀ ବଳରାମ ଅବେଶ । ୧ ।
ରଡ଼ିଲେଣି କାକ କୁକ୍କୁଟ ସମୂହ
ଦିନମଣି ଉଦ୍ଦେଶ ।
ମଧୁପ ନିକର ଗୁଞ୍ଜିଲେଣି ଆସି
କମଳିନୀ—ପ୍ରାଣେଶ । ୨ ।
ବାଜିଲାଣି ଶଙ୍ଖ — ଆଳୟରେ କମ୍ବୁ
ସଭିଙ୍କ ମନ ଉଲ୍ଲାସ ।
ତବ ପଦ ତଳ — ମାଗେ ଶଚୀନନ୍ଦନ
ଦ୍ୱାରେ ହେଲେଣି ପ୍ରବେଶ । ୩ ।
ମୁଖ ପ୍ରକ୍ଷାଳନ — କରି ସଂକୀର୍ତ୍ତନ
ଶ୍ରୀ ବ୍ରଜଚରିତେ ସୁମଧୁର ଗୀତେ
ଝଳୁକୁ ଗଉଡ଼ ଦେଶ । ୪ ।
ହରି ନାମାମୃତ ଧରି ହେ ଦୁଷ୍କୃତ
ଜୀବ ଉଦ୍ଧାରଣ ବେଶ !
ଡାକେ ବେଣୁଧର ଅଧମ ପାମର
ବିଷ୍ଣୁପ୍ରିୟା ପ୍ରାଣେଶ । ୫ ।
( ସୁନ୍ଦର ନବ ଗଉରଚନ୍ଦ୍ର ନାଗର ବନଓ୍ୱାର – ବୃନ୍ଦେ )

— * —

( ରାଗ – ମଙ୍ଗଳ । ତାଳ – ସମମାନ )

ଉଦ୍ଧାରଣ-ନ ହୁଆ ତୋର ଶ୍ରୀନାମ-ନାହୁଆ ।
ଭକତି-ବାହୁଆ ବ୍ରଜଚରିତ ପାହୁଆ । ୧ ।
ଜାତି ବଟାଳିଆ ତୋର ମଦନ ଟାଳିଆ ।
କୁଳାଙ୍ଗମାନ ପାଟୋର ତୁଳସୀମାଳିଆ । ୨ ।

ପଞ୍ଚତଂଜାଳିଆ ଗୋରା ଭବ ଢଗ୍ରେକିଆ ।
ଶ୍ରୀବାସ୍ତୁ ତୋଳିଆ ପ୍ରୀତି-ଚନ୍ଦନ ବୋଳିଆ । ୩ ।
ଜାହ୍ନବୀକୂଳିଆ ଗୋରା ଗାନ ବାଉଳିଆ ।
ମାନ ଭିଖାରିଆ ସୁନା ଗୁଣ୍ଡ ବଣାଳିଆ । ୪ ।
ଶଚୀ ଶଙ୍ଖାଳିଆ ଗୋରା ବୈଷ୍ଣବମେଳିଆ ।
ତନୁ ଯୁଗଳିଆ ମାପନକୁଞ୍ଜ ମାଳିଆ । ୫ ।
ପୀତ ବକୁଳିଆ ଗୋରା ନାଗ ଜାଙ୍ଗଳିଆ ।
କୁସୁମ-ଦୋଳିଆ ରାଧା ପ୍ରେମପାଗଳିଆ । ୬ ।
ନେତ୍ରାନ୍ତ ଢ଼ାଳିଆ-ଗୋରା ଶ୍ରୀକର ତାଳିଆ ।
ତା ପାଦ ତଳିଆ ବେଣୁଧର କାଙ୍ଗାଳିଆ । ୭ ।
( ହରି ହେ ମୁଁ କେବେ ହେବି ବୃନ୍ଦାବନ ବାସୀ—ବୃତ୍ତେ )

—o—

( ରାଗ—ମଙ୍ଗଳ ଗୁର୍ଜ୍ଜରୀ । ତାଳ—ପହପଞ୍ଚ )

ଘୋର କଳିକାଳ ଦେଖି ବ୍ରହ୍ମାଣ୍ଡଠାକୁର ।
ପାତକୀ ତାରଣେ ହେଲେ ଗୌର ଅବତାର ହେ । ୧ ।
ସାଙ୍ଗୋପାଙ୍ଗ ସହିତରେ ଲୀଳା ବିସ୍ତାରିଲେ ।
ନିଜ ନାମ ନିଜେ ଗାଇ ପ୍ରାଣୀ ନିସ୍ତାରିଲେ ହେ । ୨ ।
ପାଷଣ୍ଡଦଳନ ନାମେ ପତାକା ଉଡ଼ାଇ ।
ଜୟଯୁକ୍ତ ହେଲେ ଗୋରା କଳୁଷ ଛଡ଼ାଇ ହେ । ୩ ।
ଭସାଇଲେ ପ୍ରେମନୀରେ ଅବନୀ-ମଣ୍ଡଳ ।
ପଶୁ ପକ୍ଷୀ ଆଦି ସର୍ବେ ନାମ ପ୍ରେମେ ଭୋଳ ହେ । ୪ ।
ଅନର୍ପିତ ଗୁପ୍ତଧନ ଯାଚି ବାଣ୍ଟି ଦେଲେ ।
ସ୍ଥାବର ଜଙ୍ଗମ ଯେତେ ବାଛା ନ ରଖିଲେ ହେ । ୫ ।
ନାମାମୃତେ ପଲ୍ଲବ ଉଠିଲେ ଶୁଷ୍କ ତରୁ ।
ଲୁଟିଗଲା ଭବଭୟ ସବୁରି ହୃଦରୁ ହେ । ୬ ।
ଦୟାଳୁ ସାମନ୍ତ ହିଁ ଜଗତ ଚିନ୍ତାମଣି ।
ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣ ମୂର୍ତ୍ତି ସୁଲାବଣ୍ୟ ଠାଣି ହେ । ୭ ।

ଅଗଣନ୍କ ଗଣ ଯାହା କମାଇଁ ସୁନ୍ଦର ।
ରାଧାଭାବେ ନରନ୍ତର ତନୁ ଜର ଜର ହେ । ୮ ।
ନିତ୍ୟାନନ୍ଦ ସଙ୍ଗେ ରଙ୍ଗେ ମଧୁର-ନର୍ତ୍ତନେ ।
ଅପୂର୍ବ ଆହ୍ଲାଦ ଦେଲେ ପାନ ଅକଞ୍ଚନେ ହେ । ୯ ।
ନିନ୍ଦୁକ ତାର୍କିକ ଯେ ନାସ୍ତିକ ଦୁରାଚାର ।
ଗୌରପ୍ରେମ-ବନ୍ୟାରେ ମଜ୍ଜି ହୋଇଲେ ନସ୍ତାର ହେ । ୧୦ ।
ଅପ୍ରାକୃତ ବ୍ରଜ-ପ୍ରେମ-ଲହଦଣ ଖେଳଲ ।
ନଦୀୟା ନଗରେ ଭାବ-ସିନ୍ଧୁ ଉଚ୍ଛୁଳଲ ହେ । ୧୧ ।
ଗୌର ସଂକୀର୍ତ୍ତନ-ଲୀଳା ନର୍ତ୍ତନ ବଧାନ ।
ଧନ୍ୟ ଧନ୍ୟ ତା ଜୀବନ ଯେ କଲା ଦର୍ଶନ ହେ । ୧୨ ।
ବନାମୂଲ୍ୟେ ନାମ-ଧନ ସମ୍ପାଦଲ ସେବା ।
ସାକ୍ଷାତେ କରନ୍ତି ଯେହୁ ଗୌର-ପଦ ସେବା ହେ । ୧୩ ।
ସେହୁ ସିନା ବୋଲାଇଛୁ ମହାଭାଗ୍ୟବନ୍ତ ।
( ଦୁଃଖୀ ) ବେଣୁଧର ଗୌର କୃପା ବନେ ହନ୍ତ ସନ୍ତ ହେ ।୧୪
( ଜୟ ରେ ଜୟ ରେ ଗୋରା ଶ୍ରୀ ଶଚୀ ନନ୍ଦନ—ବୃନ୍ଦ )



( ରାଗ—ତୋଡ଼ି । ତାଳ—ଅଠତାଳୀ )

ଗୋରା ମୋର ଚନ୍ଦ୍ରନ୍ଦ୍ରର ଲୋ ସଜନ !
( ଗୋରା ମୋର ଚନ୍ଦ୍ରନ୍ଦ୍ରବ )
ଧୋରାମୃଗମଦ ଚନ୍ଦନ କର୍ପୂର—
ଆମୋଦଆ ଦମ୍ଭହରା ଲୋ । ୧ ।
ଗୋରା ମୋର ନେତ୍ର ଢନ୍ତ ଲୋ ସଜନ !
ଗୋରା ମୋର ନେତ୍ର ଢନ୍ତ ।
ତୋ ବାଣ ପକାଇ କହୁଛୁ ଝଟେ ମୁଁ—
ନ ପାରଇ ମୁରୁଛୁ ତ ଲୋ । ୨ ।
ଗୋରା ମୋର ଅଳଙ୍କାର ଲୋ ସଜନ !
ଗୋରା ମୋର ଅଳଙ୍କାର ।
କୋରା କନ୍ଦୁ ବଳ ଅତ ସୁମଧୁର
ମୃଦୁମନ୍ଦ ବାଣୀ ତାର ଲୋ । ୩ ।

ଗୋରା ମୋର ମଥାମଣି ଜଗ ସଜନ !
ଗୋରା ମୋର ମଥାମଣି ।
ସୁରାପଧନଆଁ ଦୁଃଖେ ଢାଙ୍କିନିଆ
ଦୁଃଖୀ ବେଣୁଧର ଭଣି ଲୋ । ୪ ।
( କେତେ ଜଣଙ୍କ ଜନ୍ମାନ୍ତର ଲୋ—ଧ୍ରୁବେ )

—୦—

( ରାଗ— ବଙ୍ଗଳାଶ୍ରୀ । ତାଳ—ଝୁଲ )
ପ୍ରଭୁ ନିତ୍ୟାନନ୍ଦ ସଙ୍ଗେ ଗୌରଚନ୍ଦ୍ର
ପରମ ଆନନ୍ଦ ମନେ ।
କରନ୍ତି ଭୋଜନ ଅନ୍ନାଦି ଶୋଭନ
ଅଦ୍ୱୈତଙ୍କ ସନ୍ନିଧାନେ ॥
ଶଚୀମାତା ତୋଷେ । ପରଶନ୍ତି ଅନ୍ନ ଷଡରସେ । ୧ ।
ଖେଚଡ଼ି ପାଏସ ମିଠାଇ ସନ୍ଦେଶ—
ଆଦି ବିବିଧ ବ୍ୟଞ୍ଜନ ।
ବସ୍ତୁ ପ୍ରିୟ ସଖା ବଢ଼ାଇ ଦିଅନ୍ତି
ଦଧି ଦୁଗ୍ଧ ସହିତେଣ ॥
ଘୃତ ନବନୀତ । ଛେନା କ୍ଷୀରିଣି ଘନାବର୍ତ୍ତି । ୨ ।
ପୂରି ମାଲପୂଆ ଲୁଚି ସର ଖୁଆ
ସର ପୁଳି ମାଠ ପୁଳି ।
ଲଡୁକା ଶାକର ଚଟଣି ଆଚାର
ନାନାବିଧ ରସାବଳି ॥
ସେ ମନୋହର ଦ୍ରବ୍ୟ । ଅଶେଷ ପ୍ରକାରେ କେ ବର୍ଣ୍ଣିବ ? । ୩ ।
ବାତ୍ସଲ୍ୟ ଜନନୀ— ଶଚୀଦେବୀ ଭଣି
ସୁମଧୁରେ ମୃଦୁ ସ୍ୱରେ ।
କମ୍ପାରେ ନିମାଇଁ ? ଲୁଚି ପେଟ ପୂରାଇ
ନ ଖାଇଲୁ ମୋ ଆଗରେ ॥
ଏ କି ତୋ ବିଚାର । କହ କହ ନିଧନ ମୋର । ୪ ।
ଏହିପରି କହି ମଥାକୁ ଆଉଁଷି
ସ୍ୱହସ୍ତେ ଭୁଞ୍ଜାଇ ଦିଅନ୍ତି ।

ଆଜ ନ ଖାଇବ— ବୋଲ ଶୁଣା ଛଳ
ଶ୍ରୀମୁଖ ଗୋଟି ବୁଲାନ୍ତ ।
ଭାଇ ନିତ୍ୟାନନ୍ଦ । ହସି ହୃହିଁଦ୍ୟନ୍ତ ମନ୍ଦ ମନ୍ଦ । ୫ ।
ବୋଲନ୍ତ ଅଦ୍ୱୈତ ଜନନୀଙ୍କ ହସ୍ତ—
ଦ୍ରବ୍ୟ କପଟ ତା ବୁଝ ।
ହେ ଜଗନ୍ମୋହନ ! ଭକ୍ତ ପ୍ରାଣଧନ
କପାଇଁ ମୋଡ଼ ଶ୍ରୀମୁଖ ।
ଭୁଞ୍ଜକନା ଥରେ । ବାତ୍ସଲ୍ୟମୟୀ ମାତାଙ୍କ କରେ । ୬ ।
ତାଙ୍କ ବାକ୍ୟ ମାନି ଦକ୍ଷେ ଜନନୀ
ହସ୍ତେ ଭୁଞ୍ଜିଲେ ଗଉର ।
ସେ ଉଚ୍ଛିଷ୍ଟ ପାଇଁ ରହିଛୁ ଅନାଇଁ
ଭାଗ୍ୟହୀନ ବେଣୁଧର ।
ଘଟେ ହେବ ପ୍ରାପ୍ତ । ସେହି ତନଙ୍କ ଅଧରାମୃତ । ୭ ।



( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲା )

ପ୍ରେମାନନ୍ଦ ଭରେ ନଦୀୟା ନଗରେ
ନିତ୍ୟାନନ୍ଦ ଢଳ ଢଳ ।
ମଧୁର କୀର୍ତ୍ତନେ ଥାଆନ୍ତି ବଦନେ
ଶ୍ରୀ ଗୌରାଙ୍ଗ ଗୁଣାବଳୀ । ୧ ।
କି ମଧୁର ସ୍ୱର ଅତି ମନୋହର
ଶୁଣି ନବଦ୍ୱୀପବାସୀ ।
ବାଳ ବୃଦ୍ଧ ନାରୀ— ନର ଆଦି କରି
ପ୍ରେମନୀରେ ଯାନ୍ତି ଭାସି । ୨ ।
କେତେ ଦେଖୁଥାନ୍ତି କେ ସଙ୍ଗେ ନାଚନ୍ତି
କହି ଗୌରଚନ୍ଦ୍ର ବୋଲି ।
କରେ ତାଳି ଦେଇ ମସ୍ତକ ଝୁଲାଇ
ପ୍ରେମୋନ୍ମାଦେ ଯାନ୍ତି ଫୁଲି । ୩ ।



ସେ ନାମ କୀର୍ତ୍ତନ କରନ୍ତି ଶ୍ରବଣ
ଯେଉଁ ଭାଗ୍ୟବନ୍ତ ପ୍ରାଣୀ ।
ଧନ୍ୟ ତା ଜୀବନ ଧନ୍ୟ ତାର ପୁଣ୍ୟ
ଦୁଃଖୀ ବେଣୁଧର ଭଣି । ୪ ।

( ଶ୍ରୀକୃଷ୍ଣ ଚରିତ ପ୍ରେମ ସୁଧା.କର—ବୃତ୍ତେ )

—*—

( ରାଗ—ମଙ୍ଗଳ । ତାଳ—ତ୍ରିପୁଟା )

ଅବତାର ଶିରୋମଣି ପ୍ରଭୁ ଗୌରଚନ୍ଦ୍ର ।
ଅନାଥର ନାଥ ହରି ଶ୍ରୀ ସଚ୍ଚିଦାନନ୍ଦ । ୧ ।
ଦୁରିତ ନାଶନ ଦୁଃଖିଜନ ପ୍ରାଣବନ୍ଧୁ ।
ପତିତ ପାବନ ସେବ୍ୟ ରସମୟ ସିନ୍ଧୁ । ୨ ।
ଭବଭୟ ଭଞ୍ଜନ ଜଗତ ଚିନ୍ତାମଣି ।
ଭକତ ବତ୍ସଳ ଦଣ୍ଡ କମଣ୍ଡଳ ପାଣି । ୩ ।
ଶ୍ରୀ ଶଚୀ ନନ୍ଦନ ବିଷ୍ଣୁପ୍ରିୟା ଗଳାହାର ।
ତପତ-କାଞ୍ଚନ ଦ୍ୟୁତି ଲାବଣ୍ୟ ପସରା । ୪ ।
ନବଦ୍ୱୀପ ସୁଧାକର ଉଦଣ୍ଡ-ନର୍ତ୍ତକ ।
ପାଷଣ୍ଡ ଦଳନ ସଂକୀର୍ତ୍ତନ-ପ୍ରବର୍ତ୍ତକ । ୫ ।
ଶ୍ରୀରୂପ ହୃଦସମ୍ପତ୍ତି ସନାତନ ଧନ ।
ନିତ୍ୟାନନ୍ଦ ସଖା ନବ କିଶୋର ମୂରତି ୬ ।
ଗଦାଧର ଚିତ୍ତଚୋର ଅଦ୍ୱୈତ ସଙ୍ଗୀତ ।
ଶ୍ରୀବାସ ସର୍ବସ୍ୱ ହରିଦାସ ଜପାମାଳ । ୭ ।
ରାମାନନ୍ଦ ପ୍ରିୟ ମହାଭାବ ପ୍ରକଟିଆ ।
ଷଡ଼ୁ ଚନ୍ଦନ ପାଟିଆ ଜାହ୍ନବୀ ତଟିଆ । ୮ ।
ବାସୁଦେବ ସାର୍ବଭୌମ ସ୍ୱଗତ ଦାୟକ ।
ଶ୍ରୀକୃଷ୍ଣ ଚୈତନ୍ୟ କଳି-ଜୀବ ଉଦ୍ଧାରକ । ୯ ।
ଜଗାଇ ମାଧାଇ ତ୍ରାତା କାଶୀବର୍ଣ୍ଣ ଦାସ ।
ବଲ୍ଲଭ ଭଟ୍ଟଙ୍କ ଚିତ୍ତ ଗର୍ବ ଖର୍ବ ଭାସ । ୧୦ ।
ପ୍ରତାପ ରୁଦ୍ରଙ୍କ ପ୍ରେମ ଭକ୍ତି କଳ୍ପତରୁ ।
ତ୍ରିଭୁବନ ମୋହନ ମନ୍ମଥ-ମହାମେରୁ । ୧୧ ।
ଉତ୍କଳରସବର୍ଦ୍ଧନ ମୋହ-ତମ ଭାନୁ ।
ଶ୍ରୀରାଧା କୃଷ୍ଣ ଯୁଗଳ-ମିଳନ ସୁତନୁ । ୧୨ ।

ଭବ ବନ୍ଦୋବସ୍ତ ଶ୍ରୀ ନାଗର-ଚକ୍ରବର୍ତ୍ତୀ ।
ନଦୀୟା-ନାଗରୀ-ଗଳାମାଳ ସୁନାହାରୀ । ୧୩ ।
ସ୍ତ୍ରୀ ଶ୍ରୀହରି-ନାମାମୃତ-ସିନ୍ଧୁ କଲ୍ଲୋଳିଆ ।
ବୈଷ୍ଣବଧର୍ମ ସ୍ଥାପକ ତୁଳସୀ ମାଳିଆ । ୧୪ ।
ମୁକୁନ୍ଦ ଶ୍ରୀ ନରହରି ହୃଦୟ ବିହାରୀ ।
ଗୋବିନ୍ଦ ଆରାଧ ଜଗନ୍ନାଥ ହିତକାରୀ । ୧୫ ।
ନମାଇଁ ସୁନ୍ଦର ଗୌର ପଙ୍କଜ-ପଯୂର ।
ଅଧମ ସେବକ ଯାନ ଧ୍ୟାନ ବେଣୁଧର । ୧୬ ।
( ଜୟ ଜୟ ଶ୍ରୀଗୁରୁ ଶ୍ରୀ ଚରଣାରବିନ୍ଦ—ବୃନ୍ଦେ )

—*—

( ରାଗ — ତୋଡ଼ି । ତାଳ—ଆଡ଼ତାଳୀ )

ଚିନ୍ତ ତ, ମୋର ପଣ୍ଡିତ ବନ୍ଧୁ ।
ଯନ୍ତ ଶିରୋମଣି ନଦୀୟାଇନ୍ଦୁ । ଘୋଷା ।
ନୟନ ନାଚୁଆ ଲାବଣ୍ୟ ଠାଣି, ତ୍ରିବ ହି ଭଙ୍ଗ ଆ ବଂଶୁ ବଜାଣି । ୧ ।
ରସରାଜ ମୂର୍ତ୍ତି ଶ୍ରୀ ଗୌରଚନ୍ଦ୍ର, ସୁପ୍ରେମ-ସାଗର ନାଗର ଇନ୍ଦ୍ର । ୨ ।
ଶ୍ରୀରାଧା ଗୋବିନ୍ଦ ମିଳନ ତନୁ, ଅପୂର୍ବ ସୁନ୍ଦର କୋଟିଅତନୁ । ୩ ।
ପାପ ତାପ ହର୍ତ୍ତା ଶଚୀ ନନ୍ଦନ, ବିଷ୍ଣୁ ପ୍ରିୟା ସତୀ ହୃଦଚନ୍ଦନ । ୪ ।
ଭକ୍ତ ଭବଗ୍ରାହୀ କରୁଣାସିନ୍ଧୁ, ଦୁଃଖୀ ବେଣୁଧର ନିରତେ ବନ୍ଦୁ । ୫ ।
[ କାହିଁକି ରୁହିଁଦେଲ ଶ୍ୟାମକୁ—ପ୍ରଭୃ ]

—*—

## ଶ୍ଲୋକ

ଧିଗସ୍ତୁ କୁଳମୁଜ୍ଜ୍ୱଳଂ ଧିଗପିବାଗ୍ମିତାଧିଗ୍ ଯଶୋ
ଧିଗଧ୍ୟୟନ ମାକୃତଂ ନବବୟଃ ଶ୍ରିୟୋଽପ୍ୟସ୍ତୁଧିକ୍ ।
ଦ୍ୱିଜତ୍ୱମପଧିକ୍ ପରଂ ବିମଳମାଶ୍ରମାଦ୍ୟଂଅଧିକ
ନଚେତ୍ ପରିଚିତଃ କଳୌ ପ୍ରକଟଗୌରଗୋପୀପତିଃ ॥

## ଗୀତ

କଳିଯୁଗେ ଗୋପୀନାଥ ଗୌର ଅବତାର ।
ନ ଜାଣିଲ ଯେ ତାହାଙ୍କ ରସ ତତ୍ତ୍ୱସାର । ୧ ।
ଧିକ ତା ଉଜ୍ଜ୍ୱଳ କୁଳ ଧିକ ତା ପାଣ୍ଡିତ୍ୟ ।
ଧିକ ତାର ଯଶ ଧିକ ତା ପାଠ ମହତ୍ତ୍ୱ । ୨ ।

ଧିକ ତା କର ଚରଣ ଆଦି ଅବୟବ ।
ଧିକ ତା ଆକୃତି ନବ ବୟସ ବିଭବ ।୩।
ଧିକ ତା ଦ୍ୱିଜତ୍ୱ ଧିକ ସୁନ୍ଦର ଶରୀର ।
ବ୍ରହ୍ମଚର୍ଯ୍ୟ ଆଦି ଆଶ୍ରମକୁ ଧିକ ତାର ।୪।
ଶ୍ରୀଗୁରୁ ମୋହନ ଦାସ ଗୋସ୍ୱାମୀଙ୍କୁ ଧ୍ୟାଇ ।
କରୁଣ ବୈଷ୍ଣବ ବେଣୁଧର ବିରଚଇ ।୫।
( ଅଜ୍ଞାନ ତିମିରେ ଚକ୍ଷୁ ଅନ୍ଧକାର ଥିଲା—ବୃତ୍ତ )



( ରାଗ—ରସକେଦାର । ତାଳ—ରୂପକ )

ଜୟ ଜୟ ଜଗଜ୍ଜନ ପାଳକ ହେ ।
ଜୟ ଜୟ ବ୍ରଜନନ୍ଦ—ବାଳକ ହେ ॥
ଜୟ ଜୟ ବତ୍ସା-ଧେନୁ-ରକ୍ଷକ ହେ ।
ଦୁଃଖ ନ ଗଣ ମୋହର ଜାଳକ ହେ ।୧।
ଜୟ ଜୟ ତ୍ରିଜଗତକାରଣ ହେ ।
ଜୟ ମୋହନମୁରଲୀ ଧାରଣ ହେ ॥
ଜୟ ଜୟ ଶ୍ରୀ ନିକୁଞ୍ଜ ଚାରଣ ହେ ।
ଜୟ ଜୟ ଶ୍ରୀ ଅହଲ୍ୟାତାରଣ ହେ ।୨।
ଜୟ ଅକଳଙ୍କ-ଚନ୍ଦ୍ରବଦନ ହେ ।
ଜୟ ଜୟ ବୃନ୍ଦାବନମଦନ ହେ ॥
ଜୟ ପକ୍ୱବିମ୍ବ ରଦଚ୍ଛଦନ ହେ ।
ଜୟ ଦୁଃଖହାରି ସୁଖ ସଦନ ହେ ।୩।
ଜୟ ଯଶୋବନ୍ତୀ ଶଚୀନନ୍ଦନ ହେ ।
ଜୟ ବ୍ରହ୍ମା ହର ଶେଷ ବନ୍ଦନ ହେ ।
ଜୟ ରାଧା-ହୃଦୟ-ଚନ୍ଦନ ହେ ।
ସେବ ବେଣୁଧର ଅଭିନନ୍ଦନ ହେ ।୪।
( ବହୁଦିନେ ପାଇଛୁ ହେ ନୀଳମଣି—ବୃତ୍ତ )



## ଶ୍ଳୋକଃ

"ଯଦ୍ଦି ଭବତି ମୁକୁନ୍ଦେ, ଭକ୍ତିରାନନ୍ଦ ସାନ୍ଦ୍ରା ।
ବିଲୁଠତି ଚରଣାବ୍ଜେ, ମୋକ୍ଷ ସାମ୍ରାଜ୍ୟ ଲକ୍ଷ୍ମୀଃ ।"

## ଗୀତ

ଯା'ର କୃଷ୍ଣପଦେ ଶୁଦ୍ଧଭକ୍ତି ଉପୁଜଇ ।
ମୋକ୍ଷ ସାମ୍ରାଜ୍ୟ ଲକ୍ଷ୍ମୀ ତା ଚରଣେ ଲୋଟଇ ହେ । ୧ ।
କୃଷ୍ଣଭକ୍ତ ନୁହେ ମୁକ୍ତି ପାଇଁ ଲାଳାୟିତ ।
ମୁକ୍ତି ଭକ୍ତ ପଦାଶ୍ରୟେ ଲାଳାୟିତ ମାତ୍ର ହେ । ୨ ।
କୃଷ୍ଣ ପଦରେଣୁଟି ଭକ୍ତର ମହାଧନ ।
ଇନ୍ଦ୍ରପଦ ବ୍ରହ୍ମାପଦ କରେ ତୁଚ୍ଛଜ୍ଞାନ ହେ । ୩ ।
ସଦା କୃଷ୍ଣ କୃଷ୍ଣ ବୋଲି ହୁଅଇ ପାଗଳ ।
କୃଷ୍ଣ ପ୍ରେମେ ନିରବଧି ନେତ୍ରୁ ଝରେ ଜଳ ହେ । ୪ ।
କୃଷ୍ଣ ଭକ୍ତର ମହିମା କେ ବର୍ଣ୍ଣି ପାରିବ ?
ଏଣୁ ଭକ୍ତନାମ ଆଗେ ରଖିଲେ ମାଧବ । ୫ ।
ଭକ୍ତ ଅଧିକାଶ ଭକ୍ତଭୂନ୍ତ ଅବଶେଷ ।
ଲଭିବାକୁ ବେଣୁଧର ଚିତ୍ୟ କରେ ଆଶ ହେ । ୬ ।
( କଳିଯୁଗେ ନାମ ରୂପେ କୃଷ୍ଣ ଅବତୀର୍ଣ୍ଣ—ବୃତ୍ତେ )

—*—

[ ରାଗ—ଆନନ୍ଦଭୈରବୀ । ତାଳ—ଝୁଲା ]
ଗୌରମୋହନ ! ଆହେ ଗୌରମୋହନ ! !
ନଦୀୟା ଗଗନର ପୂନିଅଁ ଚନ୍ଦ୍ର ହେ । ପଦ ।
ଶଚୀ ଜନନୀଙ୍କର ନେତ୍ର ଅଞ୍ଜନ ।
ଭକ୍ତଜନମାନଙ୍କ ମନରଞ୍ଜନ ହେ । ୧ ।
ଶ୍ରୀ ବିଷ୍ଣୁପ୍ରିୟା-ସଦାହୃଦ-ଚନ୍ଦନ ।
ଦୟାକୃତି ଶିରୋମଣି ଜଗଦ୍‌ବନ୍ଦନ ହେ । ୨ ।
ଦୁଃଖମର୍ଦ୍ଦନ ହରି ସୁଖବର୍ଦ୍ଧନ ।
ପ୍ରସନ୍ନ-ମୁଖ ପ୍ରେମାନନ୍ଦ-ସଦନ ହେ । ୩ ।
ଯୁଗଧର୍ମପାଳକ କୃଷ୍ଣ ଚୈତନ୍ୟ ।
କମଳନେତ୍ର କଳିମଳ-ମଥନ ହେ । ୪ ।

ନବ-ନର୍ତ୍ତକ-ବର ତାପଖଣ୍ଡନ ।
ବେଣୁଧର ଦୁଃଖୀର ଶିର ମଣ୍ଡନ ହେ । ୫ ।
( ରାଧାଗୋବିନ୍ଦ, କେବେ ଦେଖାଇବ ଶ୍ରୀଚରଣ ଦ୍ୱନ୍ଦ—ବୃତ୍ତେ )

—୦—

( ରାଗ—କାମୋଦୀ । ତାଳ—ଆଠତାଳୀ )

ହରିକଥା, ଗୌରହରି କଥା
ମୂଢ଼ ମନରେ ! ସଙ୍ଗୀନ ତୁ କରଥା । ଘୋଷା ।
ପୂର୍ବ ମହାଜନମାନେ ଯାହା ଲେଖିଯାଇଛନ୍ତି ଭୁଆ ଭୁଆ
ସେହି ଗୁଣାମୃତ— ଆସ୍ୱାଦନେ ତୃପ୍ତ—
ହୁଅ ସାଧୁ ସଙ୍ଗେ ଟେକ ବାହା । ୧ ।
ନେହ ଯୁଗୁଁ ପ୍ରେମ-ଅଶ୍ରୁ ଢାଳ, ଶ୍ରୀଗୁରୁ ବଚନ ପ୍ରତିପାଳ,
କୃଷ୍ଣ ଲୀଳା ଖେଳା— ଅପୂର୍ବ ମାଧୁର୍ଯ୍ୟ—
ନବରତ୍ନ କର ଗଳା-ମାଳ । ୨ ।
ବୈଷ୍ଣବ ଗୋଷ୍ଠିରେ ମହାନନ୍ଦେ, ରାଗେ ସୁଲଳିତ ଗୀତ ଛନ୍ଦେ,
ହା ହା ପ୍ରାଣବନ୍ଧୁ ବୋଲି ପ୍ରତି ପଦେ
ଅନୁରାଗ ରଖ ପଦ-ଦ୍ୱନ୍ଦେ । ୩ ।
କହେ ଦୀନ ହୀନ ବେଣୁଧର, ପରମାର୍ଥ ଧନ କର ସାର,
ଏ ଭବସାଗର ହେବୁ ଯେବେ ପାର
ନାମ ନଉକାଟି ଆଶ୍ରା କର । ୪ ।
(ଶ୍ୟାମ ଅପବାଦ ମୋତେ ଲଗିଥାଉ—ପ୍ରତି)

—❀—

[ ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ ]

କହ ହେ ନମାଇଁ କୃଷ୍ଣ ପ୍ରିୟା ସାଇଁ ! ଏକ ବଚନଟି ଆଜ ?
କ ଲଗି ଏ ଦୀକ୍ଷା କାହୁଁ କଲ ଶିକ୍ଷା, କେ ଦେଲା ଭିଖାରୀ ସାଜ । ୧ ।
କାହିଁ ଗଲା ତୁମ୍ଭ କନ୍ଦର ପଇତା, କାହିଁଗଲା ତୁମ୍ଭ କେଶ ।
କାହିଁ ଗଲା ତୁମ୍ଭ ପାଟ ପୀତାମ୍ବର ରତ୍ନ ଅଳଙ୍କାର ବେଶ । ୨ ।
ଡୋର କଉପୀନ-କଟିରେ ବନ୍ଧନ, ଅରୁଣିତ ବହିର୍ବାସ ।
କ ମନ୍ତ୍ର କାହାରୁ ପାଇ କଲ ଗୁରୁ, କର ଏବେ ତା ପ୍ରକାଶ । ୩ ।
ଶୋକେ ଭସାଇଲ ନଦୀୟା ନଗରୀ, ଲୋକେ ହୋଇନ୍ତି ହାହାକାର ।
ଶଚୀ ମାତାଙ୍କର ଦଶା ଗୁ ରୁଚର, ଅଙ୍ଗନରେ ପିଟି ଶିର । ୪ ।

ସରବେ ଚଉଦ-ବରଷ ବୟସ, ନୁହେଁ ତ ସନ୍ନ୍ୟାସ ବେଳା ।
କାହା ବୋଲ ମାନ କାହିଁକି କ ନେଲ, ତେଜଲ ସଂସାର ଖେଳା ।୫।
କାହିଁବେ କ ନାହିଁ ବସ୍ତ୍ର ପ୍ରିୟାତେଣ୍ଡ, ଭ୍ରମୁଛ ବଇଦ ଜ୍ୱରେ ।
ଅଶନ ବସନ ରତନ ଭୂଷଣ, ଶରଧା ନାହିଁ କାହିଁ ରେ । ୬ ।
ହୋଇ ବାଇ ମତ ମହୀରେ ଗଡନ୍ତୁ, ହା, ହା, ନାଥ ନାଥ ବୋଲ !
କାନ୍ଦି କାନ୍ଦ ସେହୁ ମୁଣ୍ଡ କୋଡ଼ ହୋଇ, କପାଳ ଗଲାଣି ଫୁଲ । ୭ ।
ଅର୍ପିଲ କ ସୁଖ ଦେଇ ଏତେ ଦୁଃଖ, ଆହେ ଗୌର ବଂଶୀଧର ।
ଅଶ୍ରୁ-ନୀରେ ବୁଡ଼ି ପଦତଳେ ପଡ଼ି, ଭାଷେ ଦୁଃଖୀ ବେଣୁଧର । ୮ ।
( ବସିଲେ କଣୋଣ ଉଠିଲେ କଣୋଣ – ପ୍ରଭ )

—o—

( ରାଗ—ଲଳିତକାମୋଦୀ । ତାଳ—ଯଠତାଳ )
ଶ୍ରୀ ଗୌରାଙ୍ଗ ତତ୍ତ୍ୱ, ପରମ ମହତ୍ତ୍ୱ, ଜାଣି ନ ଜାଣିଲ ଯେହୁ ।
କୋଟିକଳ୍ପ ବଞ୍ଚିଥିଲେ ବା କ ହେବ ସେ ଦୁର୍ମତି ଦୂରେ ରହୁ । ୧ ।
ଗୌର ପ୍ରେମନୀରେ ଧୂରଧାମଣରେ ମଜ୍ଜି ନାହିଁ ଯେଉଁ ପ୍ରାଣୀ ।
ତା ମୁଖ ଦର୍ଶନ ମାତ୍ରେ କୋଟିପୁଣ୍ୟ ଅପସରି ଯାଏ ଜାଣି । ୨ ।
ଗୌର ବହିର୍ମୁଖ ଯେବଣ ମୂରୁଖ ବେଳେ କଲେ ତାର ସଙ୍ଗ ।
ପ୍ରେମ ଭକ୍ତିଧନ ହୋଇଯାଏ ମ୍ଳାନ ଅପବିତ୍ର ହୁଏ ଅଙ୍ଗ । ୩ ।
ଗୌର ନିନ୍ଦକର ମୁଖାବଲୋକନ କରିବାର ମହାପାପ ।
ସାଧୁ ସାବଧାନ ବୋଲି ମହାଜନ କହୁଛନ୍ତି ସ୍ୱରୂପ । ୪ ।
ଗୌରଚନ୍ଦ୍ର ଭାବ ଯାହାକୁ ଦୁର୍ଲ୍ଲଭ ସେ ପାଷଣ୍ଡ ଦୁରାଚ୍ଚାର ।
ବୋଲେ ବେଣୁଧର ସଙ୍ଗ ନୋହୁ ମୋର ଏମନ୍ତ ଅଭକ୍ତ ନର । ୫ ।
( ନୀଳାଚଳପୁରେ ଯାତାପୂର୍ବକରେ—ପ୍ରଭ )

—❋—

( ରାଗ—ଚକ୍ରକେଳି । ତାଳ—ଯଠତାଳ )
ଶ୍ରୀ ଗୌରାଙ୍ଗ ନବଦ୍ୱୀପ ଚନ୍ଦ୍ରମା, ଭକତ ଚକୋର ଆନନ୍ଦ ସୀମା ।୧।
ପୂର୍ଣ୍ଣକଳାଧର ଉଦୟ ଯେଣୁ, ପାପ-ଅନ୍ଧକାର ପଳାଏ ତେଣୁ । ୨ ।
ହରିନାମ ସଙ୍କୀର୍ତ୍ତନ ଶବଦେ, କମ୍ପେ ଦଶଦିଗ ପ୍ରେମ ଆହ୍ଲାଦେ । ୩ ।
ନାଗ ନର ସୁରାସୁର ଯେତେକ, ଛଡ଼ାଇ ଦେଲେ ସବୁର ପାତକ । ୪ ।

ଦୟାଳୁ ସାମନ୍ତ ଏମନ୍ତ କାହିଁ ? କେଉଁଠାରେ କେ ଦେଖିଛ କ ଭାଇ ! ।୫।
ଭବବ୍ୟାଧି ଯିବା ନାମ ଔଷଧି, ପାନ କରାଇଲେ ଯେ ଗୁଣନିଧି ।୬।
ସେହ୍ନ ଗୋରାପଦ ହଙ୍କାଳ କର, ଯାଉ ବେଣୁଧର ଯନ୍ତ୍ର ବାହାର ।୭।
( ବହୁଦିନ ପରେ ବନ୍ଧୁଆ ଏଲ—ପ୍ରତି )

—o—

( ଯଥା ରାଗ । ତାଳ—ତ୍ରିପଟା )

ମହାପ୍ରଭୁ ଶଚୀସୁତ ଅଶେଷ ବ୍ରହ୍ମାଣ୍ଡ ନାଥ
ନଟବର ଗଉର ସୁନ୍ଦର ।
ଭକ୍ତଗଣ ଘେନି ସଙ୍ଗେ ନାମ ସଂକୀର୍ତ୍ତନ ରଙ୍ଗେ,
ଉଛୁଳାନ୍ତ ନଦୀୟା ନଗରେ ।୧।
ଅନାମୂଲ୍ୟ ପ୍ରେମଧନ ଦେଖି ଦୀନ ହୀନ ଜନ
ଯାଚଦ୍ୟନ୍ତ ପରମ ଆଦରେ ।
ସର୍ବ ଅବତାର ସାର ସୁନାକାନ୍ତି ଚମତ୍କାର,
ଅରୁଣ ନୟନୁ ଅଶ୍ରୁ ଝରେ ।୨।
ବୃନ୍ଦାବନ ଗୁଣ ଗାନେ ପୁଲକ ଶ୍ରୀ ଅପଘନେ,
ବିନ୍ଦୁ ବିନ୍ଦୁ ସ୍ୱେଦ-ନୀର ବହେ ।
ରାଧାଭାବେ ବିଭ୍ରତ ଆନନ୍ଦ ଗଦ୍‌ଗଦ ଚିତ୍ତ,
ନୃତ୍ୟ-ରସେ ଜନ ମନ ମୋହେ ।୩।
ବାଜେ ଖୋଳ କରତାଳ ଶ୍ରୀବାସ ଅଙ୍ଗଣସ୍ଥଳ,
ଚମକଇ ଗହ ଗହ ନାଦେ ।
ନାମ ପ୍ରେମ-ମହାଧନ ଲଭି ସର୍ବେ ହୃଷ୍ଟମନ,
ବେଣୁଧର ରହିଛି ବିଷାଦେ ।୪।
( ଏ ତିନିଭୁବନ ମାଝେ ଅବନୀମଣ୍ଡଳ ସାଜେ—ପ୍ରତି )

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲା )

ସ୍ମିତ ଚନ୍ଦ୍ରାନନେ— ହରେ କୃଷ୍ଣ ନାମ,
ଉଚ୍ଚାରି ମଧୁରସ୍ୱରେ ।
ଜଗଜ୍ଜନ ମନ— ବାଞ୍ଛାକଲେ ପୂର୍ଣ୍ଣ,
ଭସାଇ ଯେ ପ୍ରେମନୀରେ ।୧।

ପ୍ରଭୁ ଅବଧୂତ ନିତାଇ ଅଦ୍ୱୈତ,
ଶ୍ରୀନିବାସ ଗଦାଧର ।
ବାସୁଦେବ ଘୋଷ ରାମାଇ ସହିତେ,
ସାଙ୍ଗୋପାଙ୍ଗ ସଙ୍ଗତର । ୨ ।
ସଂକୀର୍ତ୍ତନ ରଙ୍ଗ— ଆରମ୍ଭେ ଗୌରାଙ୍ଗ,
ଘୁଞ୍ଚାଇଲେ ପାପତାପ ।
ଧନ୍ୟ କଳିଯୁଗେ, ଭକ୍ତ ଅବତାର,
ଜାଣି ଦ୍ୱନ୍ଦ୍ୱେ କାଳ କୋପ । ୩ ।
ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣ— କଳା ଭଗବାନ,
ବ୍ରଜଭାବେ ସଦା ଖେଳ ।
ଅନର୍ପିତ ଧନ କଲେ ବିତରଣ,
ଆଚଣ୍ଡାଳେ କରି କୋଳ । ୪ ।
ଫେରି ଦ୍ୱାରେ ଦ୍ୱାରେ ନଅରେ ନଅରେ
ବୋଲି ଯାଚିଦେଲେ ନାମ ।
ଯେତୁ ଭାଗ୍ୟବନ୍ତ ତାହାଙ୍କୁ ପ୍ରାପତ,
ସେ ଅମୂଲ୍ୟ ରତ୍ନ-ଦାମ । ୫ ।
କରୁଣାଜଳଧି ଶ୍ରୀ ଗୌରାଙ୍ଗ-ନିଧି,
ନ ପାଇ ଏ ବେଣୁଧର ।
ଅଧମ ଦୁର୍ମ୍ମତି ମାଗୁଅଛୁ ଗତି,
ଧରି ଶ୍ରୀଗୁରୁ ପୟର । ୬ ।
( ନଦୀୟା ନଗରେ ଶଚୀର ଉଦରେ ଜନମ ଗଉରରାୟ, ପ୍ରଭୃ )

—※—

## ଗୌର ନାମାବଳୀ

( ରାଗ—ଭୂପାଳ, ପୋଇବାଣୀ । ତାଳ—ଆଠତାଳୀ )

ଶ୍ରୀ ଗୌରସୁନ୍ଦର ନବ ନଟବର ତପତକାଞ୍ଚନ କାନ୍ତିଗୋରା ।
ନଦୀୟାବିହାରୀ ପାତକୀଉଦ୍ଧାରୀ ଭକ୍ତଜନ ଚିତ୍ତ-ଚୋରା । ୧ ।
ପରମ ଦୟାଳୁ ଶିରୋମଣି ରସରାଜ ପ୍ରେମମୟ କଳେବର ।
ଜାତି ବିଚାରଶୂନ୍ୟ ଧୈର୍ଯ୍ୟଚାରୀ ସର୍ବଭକ୍ତ ପ୍ରିୟ ପ୍ରାଣେଶ୍ୱର । ୨ ।
ଦୁଃଖୀ ଦୁଃଖ ଶୋକ ସନ୍ତାପହାରକ କୋଟି ମନ୍ମଥ ମନ୍ମଥ ମୂର୍ତ୍ତି ।
ତ୍ରିଜଗନ୍ମୋହନ କଳୁଷଦହନକାରୀ ଶ୍ରୀ ନାଗର ଚକ୍ରବର୍ତ୍ତୀ । ୩ ।

ପତିତପାବନ ଶ୍ରୀ ଶ୍ରୀ ବୃନ୍ଦାବନ ଈଶ୍ୱରୀ ଈଶ୍ୱର ଚୌସ୍ଥିତ ।
ଗତିହୀନ ବେଣୁଧର ଅକିଞ୍ଚନ ପ୍ରାର୍ଥୀ ଲଭିବାକୁ କୃପାମୃତ । ୮ ।
( ଏହି ବନେ ହରି ଚରନ୍ତି ବାଜୁଛି—ବୃତ୍ତେ )

---*---

( ରାଗ—ଶଙ୍କରାଭରଣ । ତାଳ—ଝୂଲା )
ଦୟାମୟ ଗୌରହରି ।
ଦୀନଜନ ପ୍ରାଣବନ୍ଧୁ ନଦୀୟାବିହାରୀ । ଘୋଷା ।
ଏ ମୋର ହୃଦମନ୍ଦିର ହେଉଅଛି ଶୂନ୍ୟ ।
ଆସି ବିରାଜ ହେ ମହାପ୍ରଭୁ ଶ୍ରୀଚୈତନ୍ୟ । ୧ ।
ପତିତଙ୍କ ଗତି କାମ ମୋହନ ମୂରତି ।
ଅକରୁଣ ନୁହ ଭଲେ ଅକିଞ୍ଚନ ପ୍ରତି । ।
ଶରଣାଗତ ପାଳକ ନିମାଇଁ ସୁନ୍ଦର ।
ଅଖିଳବଲ୍ଲଭ ଶଚୀସୁତ ବିଶ୍ୱମ୍ଭର । ୩ ।
ଭକତ-ବତ୍ସଳ ହରି ହୁଅ ସୁପ୍ରସନ୍ନ ।
କାତରେ ଡାକୁଛି ଦୁଃଖୀ ବେଣୁଧର ହୀନ । ୪ ।
[ କୁଞ୍ଜେ ଶ୍ରୀରାଧା ଗୋବିନ୍ଦ—ବୃତ୍ତ ]

—*—

# ବାତ୍ସଲ୍ୟ

## ଯଶୋଦା ଉକ୍ତି ।

( ରାଗ—ଜୟନ୍ତ । ତାଳ—ଝୁଲା, ଆଡ଼ ଖେମଟା )
ଉଠ ମୋ କଳାମାଣିକ ପାହିଲାଣି ନିଶି ।
ସଙ୍ଗ ସଖାମାନେ ତୋର ଡାକିଲେଣି ଆସି, ଯାବ ଯାବନରେ । ୧ ।
ସୁବାସିତ ଜଳେ ମୁଖ ପଖାଳ ବଦନ ।
ହସି ଖେଳ-ଯିବୁ ପଟ୍ଟ କରି ଗୋହନ—ବ୍ରଜମୋହନ ରେ । ୨ ।
ଧବଳୀ ଶ୍ୟାମଳୀ ଧେନୁ ହମ୍ବାରବ କରି ।
ଡାକୁଛନ୍ତି ନ ଶୁଭେ କି କର୍ଣ୍ଣକୁ ତୋହରି, ନେହ ଅଞ୍ଜନରେ । ୩ ।
ଭାଇ ବଳରାମ ଭୁଲେ ଭୁଞ୍ଜାଇବ ସର ।
ବେଳ ଉଛୁର ହେଉଛି ନନ୍ଦାପରିହର, ଦୁଃଖୀ ଭଜନରେ । ୪ ।

ଜନନୀ ଯଶୋଦାଙ୍କର ବାତ୍ସଲ୍ୟ ବଚନେ ।
ଉଠିଲେ ବ୍ରହ୍ମାଣ୍ଡନାଥ ବେଣୁଧର ଭଣେ, ସୁଖ ସଦନରେ । ୫ ।
( ଧୀରେ ଯେନ କାନନରେ କୃଷ୍ଣ ବଳମ୍ବିତ—ବୃତ୍ତେ )

—❀—

( ରାଗ—ଇମନ୍ କଲ୍ୟାଣ । ତାଳ—ଆଠତାଳୀ )
ଉଠ ଉଠ ଡାକଲେଣି ଶୁକ ପିକ କାକ ରେ ।
କେତେ ନିଦ୍ରା ଯାଉ ଧନ ମୋ କଳାମାଣିକ ରେ । ପଦ ।
ଉତ୍ସୁକେ ଶ୍ରୀ ପୌର୍ଣ୍ଣମାସୀ ପରବେଶିଲେଣି ଆସି,
ଦେଖିବା ପାଇଁକ ତୋର ହସ ହସ ମୁଖରେ । ୧ ।
ତେଜ ଏ ଅଳସ କାହ୍ନୁ ଉଦେ ହୋଇଲେଣି ଭାନୁ,
ନିତ୍ତ ତ ବୁଲିଲୁ ବନେ ପାଇ କେଉଁ ସୁଖରେ । ୨ ।
କଳଶାମ ମାଳ ପାଟ, କମ୍ପା ତୋ ଅଙ୍ଗେ ପାଲଟ,
ଅଶଙ୍କରେ ପଢ଼ୁଅଛୁ କାହିଁକି ପଲଙ୍କରେ । ୩ ।
ବନକଣ୍ଟା ଲାଗି ଅଙ୍ଗ ଦିଶୁଛୁ କେଡ଼େ ବିଭଙ୍ଗ,
ନ ଯେନି ମୋ ମନା ବନେ ଗଲୁ ହୋଇ ରଙ୍ଗରେ । ୪ ।
ସୁକୁମାର ନୀଳମଣି ଆହାରେ ମୋ ବେଣୁପାଣି,
ତୋ ନିମନ୍ତେ ଜନ ହେଲ ଚକ୍ଷୁ ଦକ ଦକ ରେ । ୫ ।
ବରଜ-ଶିଶୁ ମଣ୍ଡଳୀ ପୁର ପ୍ରାଙ୍ଗଣରେ ମିଳି,
ଡାକୁଛନ୍ତି କରିବାକୁ ଖେଳ କଉତୁକ ରେ । ୬ ।
ରଖିଛୁ ସୁବାସ ଜଳ ହରଷେ ମୁଖ ପଖାଳ,
ତୋ ସେବାରେ ବେଣୁଧର ଥାଉ କାଳପାକରେ । ୭ ।
( କାଳିନ୍ଦୀ କୂଳକୁ ମୋ ସଙ୍ଗାଳ ନଯାରେ—ବୃତ୍ତେ )

—❀—

(ରାଗ—କେଦାର । ଚକ୍ରକେଳି ତାଳ—ଝୁମ୍ପା ]
କେତେ ଶ୍ରୁ ମାଗୁଥାଉ ଲବଣୀ ଲଞ୍ଚରେ, କଳାକାହ୍ନୁ । ଘୋଷା ।
ଉଠି ଆସନ୍ତେ ଧନ ପୁର ପାହାଚ ।
ତ୍ରିଭଙ୍ଗି ଠାଣିଟି ତୋ କେଡ଼େ ସୁସଞ୍ଚରେ । ୧ ।
ଯାଇ ଯୁଣ୍ଟ ସେବତୀ କୁସୁମ ଗୁଚ୍ଛ ।
କି ମାନଇ ଚୂଳକୁ ମୟୂର ପୁଚ୍ଛରେ । ୨ ।
କଟୀକି ରଞ୍ଜେ ପୀତ କାଚ୍ଛେଣି କାଛ ।
ଘଣ୍ଟି ଘାଗୁଡ଼ି ମାଳ ତହିଁକି ସ୍ୱଚ୍ଛରେ । ୩ ।

ରୁଣୁ ଝୁଣୁ ନୂପୁର ତୋ ପାଦେ କସ୍ର ।
ବାଜବାର ମାଧୁସ୍ୱ ନାହିଁ ତ ମଞ୍ଜରେ । ୪ ।
କେ ଗୋପଶିଶୁ ହେବେ ତୋ ସମ କଛ ।
ସଭିଙ୍କଠାରୁ ସିନା ତୋ ବୁଦ୍ଧି ଉଚ୍ଚରେ । ୫ ।
ବସିଯିବ ବୋଲଣ୍ଟି ତୋ ଅଙ୍ଗେ ଗୁଞ୍ଜ ।
ନ ହଏ ଘଣ୍ଣ ଅଳଙ୍କାରକୁ ଘଞ୍ଚରେ । ୬ ।
ଡାକିନୀଙ୍କ ଭୟରେ ହଣ କବଚ ।
ପଡିଦେଲ ତୋ କରେ ବସନ୍ତ କାଚରେ । ୭ ।
ଛଥି ପାରୁଣେ କମ ସୁନା ପଇଞ୍ଚ ।
ଝିକେ ନବରତ୍ନ କଙ୍କଣ ପାଞ୍ଚରେ । ୮ ।
ନାସା ପୁଟେ ବସଣୀ ମଣି ମଣ୍ଡଚ ।
କର୍ଣ୍ଣକୁ ଶୋଭସାର କୁଣ୍ଡଳ ମସ୍ତରେ । ୯ ।
ଏ ମାନ ହୁଏ କମା ତୋତେ ଅରୁଚ ।
ଇଚ୍ଛିଲୁ ଖାଲି ଫୁଲ ମାଳ କାଇଞ୍ଚ ରେ । ୧୦ ।
ଆସ ମୋ ବାପ ଆଉ ଭ୍ରଷି ନ ଘୁଞ୍ଚ ।
ଘୁଞ୍ଚ ଏ ଖ ମାଣିଆ ପଣ ପ୍ରପଞ୍ଚରେ । ୧୧ ।
ଦେଇ ମୁଁ ଶବସ୍ୱକ ଚଣ୍ଡୁ ଳ କଞ୍ଚ ।
ତୋପାଇଁ କଣିଦେବ କୋଳ ଭଇଞ୍ଚ ରେ । ୧୨ ।
କୋଳ ଆସିବା ବେଳ ହେଲା ପହ୍ନଞ୍ଚ ।
ନାଶସାଣ ଅଶନ କରଣ ଲୁଚ ରେ । ୧୩ ।
ମୋ କରତାଳ ତୁଲେ ତଳ ଭୁ ନାଚ ।
କହଇ ବେଣୁଧର ଜଞ୍ଜାଳ ମୁଞ୍ଚ ରେ । ୧୪ ।
( ଆଜତ ବଣ୍ଣନାହିଁ କାଲ ପତନ ରେ—ବୃତ୍ତେ )

—o—

( ରାଗ—ଢିପା । ତାଳ—ଝୁଲା )

କଳାକାହ୍ନୁ ବନମାଳୀ ।
ଜୀବଧନ ମୋର ନେହ ସଙ୍ଗାଳ ।
ଧନମାଳ ରେ । ମୋ ସୁଖ-ରଚନ-ଥାଳ । ୧ ।
ଯାଉଛୁ ତ ବାପ ବନେ । କେତେ ଦୁଃଖ ବଳ ଦେଇ ମୋ ମନେ ।
ପାଳମଣି ରେ ! କେତ୍ହେ ରହିବ ସଦନେ ? । ୨ ।

ତୁ ମୋର ସର୍ବସ୍ୱ ପିନା । ଶତ ସ୍ୱର୍ଗ ନୁହେ ସେଣେ ତୋ ବିନା ।
ବେଣୁପାଣି ରେ ! ମୋ ଜଣୁ-ରତନ-ମୀନା । ୩ ।
ଧନ ତୋତେ ମୋ ସ୍ୱଣଟି । ଆସିବୁ ବଦନ ବନ୍ଧୁ ଲେଉଟି ।
ଚନ୍ଦ୍ରାମଣି ରେ ! ଅଞ୍ଚଳେ ଦେଇଥା ଗଣ୍ଠି । ୪ ।
ଏମନ୍ତେ ଶ୍ରୀ ବ୍ରଜେଶ୍ୱରୀ । ଚୁମ୍ବି କୃଷ୍ଣମୁଖ କହୁଁ ଝୁଆରି ।
ସେହି କାଳେ ଯେ । ବେଣୁ ପଡ଼େ ଶ୍ରବଣ ଦ୍ୱାରି । ୫ ।
( କହ ମୋ ସାକ୍ଷୀଗୋପାଳ—ବୃତ୍ତେ )

—✲—

( ରାଗ—ବଙ୍ଗଳାଶ୍ରୀ । ତାଳ—ଏକତାଳୀ )

ଗ୍ରାମ ପାଶେ ଥିବୁ ଦୂରକୁ ନଯିବୁ
ଆହା ମୋ କଳାକହ୍ନାଇଁ ।
ଦାମ ସୁଦାମ ସୁବଳ ମଧୁ ସଙ୍ଗ—
ଖଣେ ନ ଛାଡ଼ିବୁ ଭୁଲି ॥
ବାପ ମାଳମଣି, (ତୋତେ) ମୋ ଗଣଟି ବେଣୁପାଣି,
(ମୋର) ଦୁଃଖିଧନ ଚନ୍ଦ୍ରାମଣି । ୧ ।
କେତେ ଦେବାଦେବୀ— ମାନଙ୍କୁ ମୁଁ ସେବି
ପାଇଛୁ ରେ ତୋତେ ବାପ ।
ଏକୋଇର ବଳା ମୋ ନେତ୍ର ପିତୁଳା,
ଲାଗିଛୁ ହୃଦତାପ ।
ବାପ ମାଳମଣିରେ (ତୋତେ) ମୋ ଗଣଟି ବେଣୁପାଣି । ୨ ।
ଏ ବୃଦ୍ଧ କାଳରେ ତୋ ପିତାଙ୍କ ମନେ,
ଦିଆଇଛୁ କେତେ ସୁଖ ।
ସେହି ସୁଖ ସିନ୍ଧୁ ଉଚ୍ଛୁଳୁଛି ମୋର,
ଚୁମ୍ବିଁ ତୋ କଳା ଶ୍ରୀମୁଖ ବାପ ମାଳମଣିରେ । ୩ ।
ଭାଇ ବଳରାମ କଥା ମାନି ଧନ,
ବନେ ଚରାଇବୁ ଗାଈ ।
ଗଣ୍ଠି ସଙ୍ଗାଳ ମୋ କଳା ମାଣିକରେ,
ବାଇବୁଦ୍ଧି ଛାଡ଼ ଭୁଲି ।
ବାପ ମାଳମଣିରେ (ତୋତେ) ମୋ ଗଣଟି ବେଣୁପାଣି ।
ଦୁଃଖି ବେଣୁଧର ଭଣି । ୪ ।
[ ଆଗୋ ଚନ୍ଦ୍ରାବଳୀ କସ ମନେ ଭାଳ—ବୃତ୍ତେ ]

—✲—

( ରାଗ—ଲଳିତ କାମୋଦୀ । ତାଳ—ଆଠତାଳି । )

ରେ ଶ୍ୟାମଘନ ! ଧନ ମାନ ମାନ ମୋ କୁହା ବଚନରେ । ଘୋଷା ।
ଦୁଃଖୀନୀ ସଙ୍ଗାଳି ଆରେ ନୀଳମଣି ମୋର ।
ଏ ଦଧିମନ୍ଥନ ବେଳେ ଜଞ୍ଜାଳ ନ କର ରେ । ୧ ।
ଭୁଆକୁ ଭୁଆ ତ ଖୁଆ ବୁଝାଇ ନ ଦେଲୁ ।
କପର ମନ୍ଥିବ ଦଧି ଅବୁଝା ତୁ ହେଲୁ ରେ । ୨ ।
ନିଦ ଅଳସ ବାପରେ ଭାଙ୍ଗିନାହିଁ ଚକ୍ଷୁ ।
ଘନ ଘନ ହାଇମାରୁ ମୋ ନୟନ—ତାରା ରେ । ୩ ।
ଘୁମିତେ ଭୁଲାଇ ଅନ କରୁ କାହିଁପାଇଁ ?
ଶୁଅ ଯା ନିକଏ ଆଉ ପଲଙ୍କରେ ଯାଇଁ ରେ । ୪ ।
ଉଠିନାହିଁ ଚକ୍ଷୁ ଶେଯୁଁ ତୋର ବଡ଼ଭାଇ ।
ତା ତୁଳେ ଦଣ୍ଡେ ଶୟନ କରଥା କହ୍ନାଇ ରେ । ୫ ।
ବାତ୍ସଲ୍ୟ ଜନନୀ ଯେତେ ରୂପେ ବୁଝାଇଲେ ।
ନ ବୁଝନ୍ତି ମାୟାମୟ ବେଣୁଧର ବୋଲେ ରେ । ୬ ।
[ସଖିଗଣ ଦେଖ ଶ୍ୟାମବନ୍ଧୁ କେଡ଼େ ନଦାରୁଣ—ବୃତ୍ତେ ]

—✱—

( ରାଗ—କୋଳାହଳ । ତାଳ—ଆଠତାଳି )

ଆହା ମୋର ସୁକୁମାର କାଳିଆ କହ୍ନାଇ ।
ଏଡ଼େ ସାହସ କେ ଦେଲା ହୋଇଲୁ କ ବାଇ ?
ବନମାଳି ରେ ! ଜୀବଧନ ନୟନ ସଙ୍ଗାଳି ରେ । ୧ ।
ସାତଦିନ ସାତରାତି ହୋଇଲାଣି ଆସି ।
ଧଇଲୁ ଏ ଗୋବର୍ଦ୍ଧନ ଗିରିକ ଭରସି ।
ବନମାଳି ରେ ! ଜୀବଧନ ନୟନ ସଙ୍ଗାଳି ରେ । ୨ ।
ଅଖିଆ ଅପିଆ ହୋଇ କଲୁ ଏ ଜଗର ।
ଶୁଖି ତ ଗଲାଣି ବାପ ଚନ୍ଦ୍ରମୁଖ ତୋର ।
ବନମାଳି ରେ ! ଜୀବଧନ ନୟନ ସଙ୍ଗାଳି ରେ । ୩ ।
ସଞ୍ଜ ହେଲେ ଚକ୍ଷୁ ମୋର କୋଳେ ତୁ ଘୁମାଉ ?
ଅନଦ୍ରାରେ କେଡ଼େ ଶ୍ରମେ ଏ କଷଣ ସହୁ ।
ବନମାଳି ରେ ! ଜୀବଧନ ନୟନ ସଙ୍ଗାଳି ରେ । ୪ ।

କାହିଁରେ ବଂଶୀ ଖଣ୍ଡ ଅବା କେତେ ଗ୍ରାସ ?
ଏ ହାତ ସେ ହାତ କରୁଥାଉ ତାଙ୍କୁ ଧର !
ବନମାଳରେ ! ଗୀବଧନ ନସ୍ତନ ସଙ୍ଗାଳ ରେ । ୫ ।
ସାତ ବରଷର ପୁଅ ନୋହୁ ତ ବଳସ୍ତୁ ।
ଗୋପୀ ଗୋପାଳଙ୍କ ଲାଗି ସହିଲୁ ଏ କଷ୍ଟ ।
ବନମାଳ ରେ ! ଗୀବଧନ ନସ୍ତନ ସଙ୍ଗାଳ ରେ । ୬ ।
ଲଉଡ଼ରେ ଗୋପପୁଏ ନେଉଥାନ୍ତୁ ଗିର ।
ଆସ କ ନା ମୁଁ ଭୁଞ୍ଜାଇ ଦଧି ଖଣ୍ଡଶିଖ ।
ବନମାଳ ରେ ! ଗୀବଧନ ନସ୍ତନ ସଙ୍ଗାଳ ରେ । ୭ ।
ଦୁଃଖିମା-ସର୍ବସ୍ୱ ଆହା ର ଲାବଣ୍ୟ-ପସର ।
କୋମଳ କରକୁ ସ୍ଥାଣ୍ଣ ଲାଗୁଥିବ ପର ।
ବନମାଳ ରେ ! ଗୀବଧନ ନସ୍ତନ ସଙ୍ଗାଳ ରେ । ୮ ।
ଇନ୍ଦ୍ରଭୂଲେ ଏବାଦା ହୋଇଲ କାହିଁପାଇଁ ?
କୋପେ କ ନ କଲେ ବୁଝି ପଲେ ସତୀଖାଇଁ ।
ବନମାଳ ରେ ! ଗୀବଧନ ନସ୍ତନ ସଙ୍ଗାଳ ରେ । ୯ ।
ବାତ୍ସଲ୍ୟମୟୀ ଯଶୋଦା ରାଣୀ ଦୁଃଖ ଶବଉ ।
ଭଆଣ କହନ୍ତ ଏତେ ବେଣୁ ବୋଲେ ଗୀତେ ।
ବନମାଳ ରେ ! ଜୀବଧନ ନସ୍ତନ ସଙ୍ଗାଳ ରେ । ୧୦ ।
( କରଯୋଡ଼ ପାର୍ଥ କହେ ଶ୍ରୀକୃଷ୍ଣ ସ୍ତମ୍ଭିତ—ପଥ )

—୦—

( ରାଗ—ଛଟିଆଣ । ତାଳ—ଏକତାଳ )

ଆହେ ବନମାଳ । ଆଉ ଜଞ୍ଜାଳ ନକର ମୋ ସଙ୍ଗାଳ । ଘୋଷା ।

ଅବୁଝା ଲୁହ ଅଞ୍ଜଳ-ନଧି, ଚଞ୍ଚଳ ମନ୍ଦିକ ପଗ ଦଧି,
ନ ଧର ଲୁ ଏତେ, ପରପଞ୍ଚ ବୁଝି,
ଟିକେ ଶୋଇଥା ମୋ କଥା ପାଳ । ୧ ।

ଏକ୍ଷଣି ଉଡ଼ିଗଲେ ଖଗ, ଲବଣୀ ତରଳ ପିବ ପଗ,
ନ ପାଣବ ତୋଳ, ହୋଇଯିବ ଗୋଳ,
ଚଳ ପଶ୍ଚଲେ ଖାଇକଣ ବଳ । ୨ ।

ଘୁଡ଼ ଘୁଡ଼ ବାଗ ଖ ଆଦଣ୍ଡ, ପଜ୍ଜ ମୁଁ ଦେବ ଶାକରଖଣ୍ଡ
ଫଳଙ୍କ ଉପ ଭୂଳ ଚଳପରେ-
ସ୍ୱେନ କର ଯା ମଥା ତାଳ । ୩ ।

ଏ ଦଧି ସର ପୁଳକ ଖାଇ, ଯାଅ କି ନା ଏବେ ରେ କହ୍ନାଇ,
ନଶୀ ହେଲେ ଭୋର, ମୁଖ ଧୋଇ ତୋର,
କାଖେଇବ ରେ ମର୍କଟ ମାଳ । ୪ ।
ଜନନୀଙ୍କ ବୋଧ ବାଣୀ ଶୁଣି, ହେଉ କୋଳ ଶ୍ରୀ ଲବଣ୍ୟଠାଣି
ସୁମଧୁର ହାସ,— କଲେ ପରକାଶ ।
ବେଣୁଧର ସେ ପଦାବ୍ଜେ ଅଳି । ୫ ।
( ଶ୍ୟାମବନ୍ଧୁ ପର କେହ୍ୱ ବନ୍ଧୁନାହିଁ— ପ୍ରତି )

—❀—

( ରାଗ—ଜୟନ୍ତ । ତାଳ—ଆଡ଼ଖେମଟା )

ଆହା ମୋ ଦୁଃଖୀ ସଙ୍ଗାଳ ଲବଣ୍ୟ ପସରା ।
ଗୋକୁଳ ଚନ୍ଦ୍ରମା ମୋର କଣ୍ଠ ରତ୍ନ-ହାର, କଳା କାବଞରେ । ୧ ।
କହ କହ ଧନମାଳ ତୋତେ ମୋହରାଣ ।
କପାଇଁ ଶୁଖି ଯାଇଛୁ ତୋ ଚନ୍ଦ୍ରବଦନ । କଳା କାଇଞରେ । ୨ ।
କେଣେ ହରଶିଷ୍ଟ ହରେ ତୋ ଅଙ୍ଗମାଧୁରୀ ।
ବନେ ବୁଲ ବୁଲ କିଆଁ ହେଲୁ ଏତେ ସର । କଳା କାଇଞରେ । ୩ ।
କେତେ ରଖିଆଳ ତ ଅଛନ୍ତି ମୋର ଘରେ ।
କି ସୁଖ ଲଭୁଛୁ ବାପ ସେ ବଣ ବୁଲିରେ । କଳା କାଇଞରେ । ୪ ।
ବରତନ ଦେଇ ପଚ୍ଛେ ଜଗାଇବ ଧେନୁ ।
ନ ଯା ନ ଯା ଆଜଠାରୁ ବନେ ମୋର କାହ୍ନୁ । କଳା କାଇଞରେ । ୫ ।
କଏ ପରୁରେ ମୋ ଧନ ଦରବଳୁ ମୋର ।
ତୁ ଥିଲେ ସିନା ପୂରଇ ମୋ ରତ୍ନ ଭଣ୍ଡାର । କାଇଞରେ କଳା । ୬ ।
ବାତ୍ସଲ୍ୟ ସ୍ନେହେ ଜନନୀ ଯଶୋମତୀ ବାଣୀ ।
ସେ ଚରଣେ ନମିଯାନ ବେଣୁଧର ଭଣି । କଳା କାଇଞରେ । ୭ ।
( ଧୀରେ ଘେନ କାନନରେ କୃଷ୍ଣ ବଳମ୍ବିତ—ବୃତ୍ତେ )

—❀—

( ରାଗ—ଚନ୍ତ କାମୋଦ । ତାଳ—ଝୁଲ )

କହ୍ନାଇ କେତେ କର ଘେନଇଲୁ ନାହିଁ ରେ, କଳା କହ୍ନାଇ । ଘୋଷା ।
ଗୋରୁ ପଛରେ ନିତ କାନନେ ବୁଲି, ଭୋକ ଶୋଷ ମନରୁ ଗଲୁ ତୁ ଭୁଲିରେ ॥
ଅତି କୋମଳ ତୋର ପାଦ ଯୁଗଳ, କି ବ୍ୟଥା ନୋହୁଥିବ ମୋ ଧନ ମାଳ ॥
ନ ରଲୁ ମନୁ ଏକା ତୋହର ଚିନ୍ତା, ନିରତେ କଲି ନେହ ଲେତକ ଚିନ୍ତା ॥
କୋଳେ ଧରୁ ଥାଆନ୍ତି ନିଶି ବାସର, କି ସୁନ୍ଦର ଦଶନ୍ତା ଏ ମୋ ନଗର ॥

କେତେବେଳେ ଆସିବୁ ବନୁ ଲେଉଟି, ଦେଖିବ ତୋର କଳା ଶ୍ରୀମୁଖ ଗୋଟି ॥
ଧକ ଧକ ହେଉଛୁ ହୃଦୟ ମୋର, ଜତ୍ପାତ ଯେଣୁ କଂସ ଉଗରଙ୍କର ରେ ॥
ଜନମକାଙ୍କୁ ଦୃଷ୍ଟେ ହେଲେ କଇବ, ପ୍ରାଣେ ନାଶ ହୁଅନ୍ତ କୁଟ ଆଚରଣେ ॥
ଦେବ ଦେବୀମାନଙ୍କ କଲ୍ୟାଣୁ ଖିନା, ନବାଧେ ସେମାନଙ୍କ ବଧ୍ମ ପାଚନାରେ ॥
ସଖା ମେଳରେ ସତେ ବେଣୁ ବଜାଇ, ଆସୁଛୁ କ ବନରୁ ଧେନୁ ଅଡ଼ାଇ ॥
ତୋ ଗୋଧନ ବାହୁଡ଼ା ଛବଟି ଦେଖି, ଏକ୍ଷଣି ସୁଖିହେବ ଏ ପାପ ଆଖିରେ ॥
ଗସ ସନ୍ଧ୍ୟାରେ ତୋତେ ପୁରକୁ ନେବ, ଅଧାମ ସର ଦଧି ମୁଁ ଭୁଞ୍ଜାଇବରେ ॥
କହୁଁ କହୁଁ ଜନନୀ ଶୁଭିଲା ବଂଶୀ, ବେଣୁଧର ମାନସ ଉଠେ ଉଲ୍ଲସିରେ ॥
( ପଲକ ପଡ଼ନାହିଁ ରଜନୀଯାକ—ବୃତେଓ )



( ରାଗ—ଶୋକ ବରାଡ଼ି । ତାଳ—ଆଠତାଳୀ )

ମୋ କଳାମାଣିକ ଶ୍ୟାମଘନ ରେ । ଘୋଷା ।
ଆହା କ ବୁଦ୍ଧି କରବ ଏବେ ମୁଁ କେଣିକ ଯିବ ?
ଦୁଃଖିଧନରେ ! ଜୀବଧନରେ ! !
ଦେଖାଥରେ ତୋ ଚନ୍ଦ୍ର-ବଦନ ରେ । ୧ ।
ମୋ ବଚନ ନ ମାନିଲୁ କାହିଁକ ପଦ୍ମ ଚୋଳଲୁ;
ବେଣୁପାଣିରେ ! ବେଣୁପାଣି ରେ ! !
ମୋ ସୁଖ ସରଣୀ ଚିନ୍ତାମଣି ରେ । ୨ ।
ତୋ ବିନେ ତିନଭୁବନ ଦିଶୁଅଛୁ ମୋତେ ଶୂନ୍ୟ,
ବନମାଳୀ ରେ ! ବନମାଳୀ ରେ !!
ଧନ କ ସରବ ଭଳ ଭାଳରେ ? । ୩ ।
ତୋ ବଂଶୀସ୍ୱନ ମୁଁ ଆଉ ଶ୍ରବଣେ ଶୁଣିବ କାହୁଁ ?
ନୀଳମଣିରେ ! ନୀଳମଣିରେ !!
କ ଦଶା ପଡ଼ିଲା ଆସି ପୁଣିରେ । ୪ ।
କେଉଁ ଜନ୍ମେ କେଉଁ ପାପ ଅର୍ଜିଥିଲିଟିରେ ବାପ,
କଳାକାହ୍ନୁ ରେ ! କଳାକାହ୍ନୁ ରେ !!
ଏ ଦଣ୍ଡ ଲଭିଲି ଅବା ତେଣୁରେ । ୫ ।

କୃଷ୍ଣ କୃଷ୍ଣ ବୋଲି କରି ଡାକନ୍ତି ତା ନାମ ଧରି,
ହନସାଗ ରେ ! ହନସାଗରେ ! !
କାନ୍ଦିଗଲୁ ମୋ ରଙ୍କ ମସବ୍ବ ରେ । ୬ ।
ଏତେ ବୋଲି ଯଶୋମତୀ ଦୁଃଖେ ରୋଦନ କରନ୍ତି,
ସେହିକାଳେ ଯେ, ସେହିକାଳେ ଯେ,
ବେଣୁଧର ଭାସେ ଶୋକ-ଜଳେ ଯେ । ୭ ।
( ଆହା ନାଥ ହେ, ଆହା ନାଥ ହେ—ବୃନ୍ଦେ )

—❀—

# ମାତୃ ମିଳନ

## ( ଯଶୋଦା ଉକ୍ତି )

( ରାଗ—କେଦାରଗୌଡ଼ । ତାଳ—ଝୂଲା । )

ଆସରେ ଆସରେ ମୋର କାଳିଆଡାଳି ।
ଦୁଃଖିନୀ ଜୀବନ ଧନ ନେତ୍ର-ସମ୍ପତ୍ତି । ୧ ।
ସେହି ପ୍ରହରୁ ତ ବାପ କାନନେ ଗଲୁ ।
ଭୋକ ଶୋଷ ସବୁ ମୋର ମନୁ ଭୁଲିଲୁ । ୨ ।
ଏତେ ବେଳକୁ ମୁହିଁ କି ପଡ଼ିଲି ମନେ ?
କହକନା ତୋ ମୃଦୁ-ତରୁଣି-ବଚନେ । ୩ ।
ବନେ କଣ୍ଟା ଖୁଣ୍ଟି ବାଜି କୋମଳ-ପାଦ ।
କଥାଉଥିବ ପଥରେ ଗୋପ ସମ୍ପଦ । ୪ ।
ଗୋଧୂଳି-ଧୂସରିଆ ମୋ ଅଞ୍ଚଳ ନିଧି ।
ଭୁ ଭଲେ ଥିଲେଟି ଅଛୁ ମୋ ସବୁ ସିଦ୍ଧି । ୫ ।
ଆଉ ହତନ ନଯା ପରେ ଗୋରୁ ଚରାଇ ।
ତୋ ଲାଗି କେତେ ଝୁରିବ ମାଉ ଝୁରାଇ । ୬ ।
ଏତେ କହି ବ୍ରଜେଶ୍ୱରୀ ସେ ଯଶୋମତୀ ।
କୃଷ୍ଣଙ୍କୁ କୋଳକୁ ନେଲେ କରି ଆରତି । ୭ ।
ରାମଙ୍କୁ ରୋହିଣୀଦେବୀ କାଖରେ ଘେନି ।
ଅନ୍ତଃପୁରକୁ ଚଳିଲେ ଜନନୀ ଦେନି । ୮ ।

ଜୟ ରାମ କୃଷ୍ଣ ବୋଲି ଗୋପ କୁମରେ ।
ଆନନ୍ଦରେ ଚଳିଗଲେ ଯେ ଯାହା ପୁରେ । ୯ ।
ସେ ଗୋପକୁମାରଙ୍କର ଚରଣ ଧୂଳି ।
ଲାଗବ ବେଣୁଧର ଶିରେ ହୁଅଇ ବୋଲି । ୧୦ ।
[ କହନ୍ତି ମାୟା ଧୀବର ଶୁଣ ଯୁବତି—ବୃତ୍ତେ ।

—o—

## ପୌର୍ଣ୍ଣମାସୀ ଉକ୍ତି ।

( ରାଗ—ମଙ୍ଗଳ । ତାଳ—ତ୍ରିପୁଟା )

ସତେ କି ମୋ ମନୋରଥ ସଫଳ ହୋଇବ ?
ପୂର୍ବ ସୁକୃତ କି ମୋର ସାର୍ଥକ ଲଭିବ ଗୋ । ୧ ।
ଶୃଙ୍ଗାର ମଙ୍ଗଳମୟ ମୂରତି ଦୁହିଁଙ୍କ ।
ମିଳନ କରାଇବ ମୁଁ ଶୁଭ ମୁହୂର୍ତ୍ତେକ ? ଗୋ । ୨ ।
ଝଡ ପବନେ ସତେ କି ପ୍ରେମପୁଷ୍ପଲତା ? ।
ପରସ୍ପରେ ଲଟାଇବ ହୋଇ ଆନନ୍ଦିତା ଗୋ । ୩ ।
ମୋହ ମନେ ମୋ କୌଶଳ-ସଲିଳ ସିଞ୍ଚନେ ।
ନବଭାବ-ତରୁ ପଲ୍ଲବିବ ବୃନ୍ଦାବନେ ଗୋ । ୪ ।
ପ୍ରୀତି ଅନୁମାନ କରିବାର ଗୁରୁଜନେ ।
ମୋ ବଞ୍ଚନା ସିଦ୍ଧିହେବ ବରଜଭୁବନେ ଗୋ । ୫ ।
ଶ୍ରୀରାଧା ଗୋବିନ୍ଦ ବୋଲି ଉଚ୍ଛଳିବ ଧ୍ୱନି ।
ପବିତ୍ର ହୋଇବ ବେଣୁଧର ନେତ୍ରବେନି ଗୋ । ୬ ।
[ ଅଜ୍ଞାନ ତିମିରେ ଚକ୍ଷୁ ଅନ୍ଧକାର ଥିଲି—ବୃତ୍ତେ ]

—❋—

[ ରାଗ—ମାୟାମାଳବଗୌଡ଼ା । ତାଳ—ଝୁଲା ]

ଏ ବାଳାରତି, କି ଭଳି ହେଉଛି ପ୍ରତୀତ ? । ଘୋଷା ।
କର ଗୋ ଅନୁମାନ ଆହା ମୋ ଜୀବଧନ,
ଅଗାଧ ଅଛି ମୃଦୁ ସ୍ମିତ ଗୋ । ୧ ।
ମାନସେ ମୁନି ଯତି ଭାବନ୍ତି ଯାକୁ ନିତି,
ବିଷୟ-ବନ୍ଧରୁ ନିବର୍ତ୍ତି ଗୋ । ୨ ।
ତାଙ୍କ ହୃଦୁ ବାହାର ଏ ବାଳା ବାଞ୍ଛା କର,
ତହିଁରେ କଳାଉଛି ମତି ଗୋ । ୩ ।

ଏ ଚଉଦ ଭୁବନ          ମୋହୁଛୁ ଯାର ମନ,
ସେ ନାମେ କମ୍ପାଉଛୁ ଧୃଷ୍ଟ ଗୋ । ୪ ।
ସୁପ୍ରସନ୍ନେ ଶ୍ରବନ୍ତ          ଭଷିଲେ ଭଗବନ୍ତ,
ବଦନ୍ତି କବି ନଶାପନ୍ତ ଗୋ । ୫ ।
( ଆଜ ତ ବେଶ ବଡ଼ ଚୋର—ବୃନ୍ଦେ )

—❀—

( ରାଗ—କଳହଂସକେଦାର । ତାଳ ଝୁଲା )
ଆହେ ନୀଳମୂରତି ପଙ୍କଜମୁଖ !
କାହିଁକି ଶ୍ରୀମତୀଙ୍କ ଦେଲ ଏ ଦୁଃଖ ହେ, ପଙ୍କଜମୁଖ । ୧ ।
ହେ ଗୋକୁଳ ନରେନ୍ଦ୍ର-ଗୋପନନ୍ଦନ ।
କ୍ଷାନ୍ତିରେ ଶ୍ରେଷ୍ଠ ଅଟ ନାଗରରାଜ ହେ, ପଙ୍କଜମୁଖ । ୨ ।
ହେ ବଳଶାଳୀ ଏଣୁ ଗୋପଭୁବନେ ।
ନାହିଁ କେ ନ୍ୟାୟବନ୍ତ ତୁମ୍ଭ ସମାନେ ହେ, ପଙ୍କଜମୁଖ । ୩ ।
ରସିକବର ଆହେ ଲୀଳାବିନୋଦ ।
(କମ୍ପା) କୁଳବତୀଙ୍କ କର ଦେଲ ଉନ୍ମାଦ ହେ, ପଙ୍କଜମୁଖ । ୪ ।
ତୁମର ଚରିତକୁ ସର୍ବଦା ଗାବ ।
ତୁଟି ଗଲାନି ଶିଶୁ ଲାବଣ୍ୟ ଛବି ହେ, ପଙ୍କଜମୁଖ । ୫ ।
ସେହି ଆଜନ୍ମ ସୁକୁମାର ଛଇଳ ।
ବଞ୍ଚିବ ନକ ସଙ୍ଗେ ସୁନା ପିତୁଳ ହେ, ପଙ୍କଜମୁଖ । ୬ ।
ଏଥର ପ୍ରତିକାର କର ବନ୍ଦନ ।
କରୁଛି ବେଣୁଧର ଏ ନିବେଦନ ହେ, ପଙ୍କଜମୁଖ । ୭ ।
( ସ୍ୱପନେ ଦେଖିଲି ଗୋ ମୁରଲୀପାଣି—ବୃନ୍ଦେ )

—❀—

ରାଗ—ତୋଡ଼ିପରଜ । ତାଳ—ତ୍ରିପୁଟା, ଆଠତାଳୀ )
କେ ଜାଣି ପାରିବ ସଙ୍ଗତ ଏ ଗାଢ଼ ପୀରତି ସ୍ୱାନ୍ତ ।
ମହାଭାବ ଉଦ୍ଦୀପନେ ଯାହା କରିଥାଏ ଗ୍ଲାନ୍ତ । ଘୋଷା ।
ନବ କାଳକୂଟୁଁ ବଳି          ହୃଦେ କରି କଣ୍ଠୁ କେଳି,
କ୍ଷଣକୁ କ୍ଷଣି ଗୋ ତାଳି ଦିଅଇ ସନ୍ତାପ ତତି । ୧ ।

ପୁଣି କ୍ଷଣକ ଉତ୍ତରେ ପ୍ରମୋଦକୁ ଜାତ କରେ,
ସୁଧାପାନ କଲା ପରି ଲାଗୁଥାଏ ଚିତ୍ତ ଚିତ୍ତ । ୨ ।
ଯା ହୃଦେ କାମମୋହନ— ପ୍ରେମ କରନ୍ତୁ ସଦନ,
ସେହି ଏକା ଭାଗ୍ୟବାନ ନାହିଁ କେହି ଆନ ଗତ । ୩ ।
ଭଣେ ବେଣୁଧର ବୋଲେ କୃଷ୍ଣ ମନ ସମର୍ପିଲେ,
ସୁଖ ଦୁଃଖ ଦୁହିଁଙ୍କର ସଙ୍ଖ୍ୟା କେ କରେ ଏ କ୍ଷିତି । ୪ ।
[ ଦେଖିଲେ ଦେଖିଲ ପରି ଥରେ ରସିକରାଜଙ୍କୁ—ବୃତ୍ତେ ]

—※—

## ନବ ଉଦ୍ୟମ ।

( ରାଗ—ରାମକେରୀ । ତାଳ—ଆଠତାଳୀ )

ନବ ବୃନ୍ଦାବନେ ନବୀନ ତରୁ ଲତିକାଗଣ ।
ନବ ବିକଶିତ କୁସୁମେ ଆହା କି ଶୋଭାବନ । ୧ ।
ନବୀନ ବସନ୍ତ ସମୟେ ନବ ମଳୟାନିଳ ।
ନବନବ ଫୁଲେ ମାତିଲେ ନବ ଭ୍ରମର କୁଳ । ୨ ।
ନବୀନ ଉତ୍ସବ ପଟାଇ ନବ ନାଗର କାହ୍ନୁ ।
ନବ-କୁଞ୍ଜମାନେ ବଜାଇବା ଏ ନବୀନ ବେଣୁ । ୩ ।
ନବପ୍ରେମ ଭାବ ଉଦୟେ ହୋଇ ନବୀନ ଭୋଳ ।
ନବୀନ ଲହରୀ ଖେଳଇ ନବ କାଳନ୍ଦୀ ଜଳ । ୪ ।
ନବୀନ ରସାଳ ମୁକୁଳ ମଧୁ ଆସ୍ୱାଦନରେ ।
ନବୀନ କୋକିଳ ଗାଆନ୍ତି ନବ ପଞ୍ଚମସ୍ୱରେ । ୫ ।
ନବ ନବ ବ୍ରଜ-ଯୁବତୀଗଣ ଚିତ୍ତ ଉନ୍ମାଦେ ।
ନବ ରସେ ମଜ୍ଜି ଧାବନ୍ତା ବୃନ୍ଦାବିପିନେ-ମୋଦେ । ୬ ।
ନବ-ନାଗରୀ ଶ୍ରୀରାଧିକା ନବ ସଖୀଙ୍କ ମେଳେ ।
ନବରଙ୍ଗେ ମାତି ନବୀନା ନବ କୁସୁମ ତୋଳେ । ୭ ।
ନବ ନଟବର ମୋହନ ଭୁଲେ ନବୀନ ଭେଟ ।
ନବ ଉଦ୍ୟମରେ କରାଇବାକୁ ଲୀଳା ପ୍ରକଟ । ୮ ।
ନବ ଭାବ ହୃଦେ ଆଣିଛି ଇଚ୍ଛାମୟ ଇଚ୍ଛାରେ ।
ନବ ସଖୀଯୋଗେ ମିଳାଇବାକୁ ନବ କୁଞ୍ଜରେ । ୯ ।
ନବନିଧି ବିଧି ବିଧାନୁ କାହିଁ ସଫଳ ହେବ ।
ନବ ଦାସୀପଣେ ସେବାକୁ ବେଣୁଧର କି ଯିବ ? । ୧୦ ।
[ ଯମୁନା କୂଳରେ ଆଜ ମୁଁ କଉତୁକ କରିବ—ବୃତ୍ତେ ]

## ବସନ୍ତ ଉତ୍ସବ

ରାଗ—ସାବେରୀ । ତାଳ—ଆଠତାଳୀ )

ଘେନ ଶୋଭା ସମ୍ଭାର ।
ଆସେ ବାସନ୍ତୀ ଲୋକନ କର ଗୋ । ଘୋଷା ।

| | |
|---|---|
| କୃଷ୍ଣ ଲୀଳା ଭୂଇଁ | କି ଶୋଭା ବହଇ |

ବୃନ୍ଦାବନ ନାମ ଯାର ଗୋ ।

| | |
|---|---|
| ମୃଦୁ ହାସ୍ୟମୟୀ | ଅପୂର୍ବ ମାଧୁରୀ |

ନାହିଁ ସଂସାର ମଧ୍ୟର ଗୋ । ୧ ।

| | |
|---|---|
| ଉଲ୍ଲାସ ଉନ୍ମାଦ | ପୂର୍ଣ୍ଣ ସଉନ୍ଦର୍ଯ୍ୟ |

ବିକାଶେ ମାନସ ରଞ୍ଜେ ଗୋ ।

| | |
|---|---|
| ଅପ୍ରାକୃତ ପ୍ରେମ | ବିଳାସ ରସର |

ମହା ଯୋଗପୀଠ ସାଜେ ଗୋ । ୨ ।

| | |
|---|---|
| ତରୁ ଲତାଗଣ | ବିବିଧ ସୁମନ— |

ମଣ୍ଡନେ କି ମନୋହର ଗୋ ।

| | |
|---|---|
| ପରାଗ ପତନେ | ପରିମଳ ଭରେ |

ବହେ ମଳୟ ସମୀର ଗୋ । ୩ ।

| | |
|---|---|
| ବସନ୍ତ ରାଜାର | ଆନନ୍ଦ ବାରତା |

ବିଶ୍ୱେ ଦେବାକୁ ନକର ଗୋ ।

| | |
|---|---|
| କଳକଣ୍ଠ ଦୂତ— | ହୋଇ ପ୍ରଚୁରଇ |

ନାଚ ଗାଇ କି ମଧୁର ଗୋ । ୪ ।

| | |
|---|---|
| ଭ୍ରମର-ଗୁଞ୍ଜିତ | କୁସୁମିତ-କୁଞ୍ଜେ |

ମଦନ ଶଙ୍ଖୁଆ ପୂର ଗୋ ।

| | |
|---|---|
| ଧନ୍ୟ ଧନ୍ୟ ଧନ୍ୟ | ଏ ଋତୁରାଜନ |

ଭକତି ମୋ ଚମତ୍କାର ଗୋ । ୫ ।

| | |
|---|---|
| ମଦନ ମୋହନ | ଦରଶନେ ମନ |

ଛନ୍ଦଛନ୍ଦେ ଅଗ୍ରସର ଗୋ ।

| | |
|---|---|
| ଆଜ ଶ୍ରୀ ଗୋବିନ୍ଦ | ଗୋକୁଳ ବୃନ୍ଦଙ୍କ |

ନୂତନ ଲୀଳା ପ୍ରଚୁର ଗୋ ।

| | |
|---|---|
| କରି ଦରଶନ | ବେଣୁଧର ଧ୍ୟାନ |

ହେବ କି ଭବୁ ନିସ୍ତାର ଗୋ ? । ୬ ।

( ଆହେ ନାଗରବର, ସହି ସହିବ କି ଅନାଦର—ବୃତ୍ତେ )

(ରାଗ—ଶଙ୍କରାଭରଣ । ତାଳ—ଅଠତାଳୀ)

ଆଡ଼ା କ ସ୍ୱଖ ବର୍ଣ୍ଣନ ।

ଆଜ ତ ନୂଆ ବସନ୍ତ ପଞ୍ଚମୀର ଦିନ ! ଘୋଷା ।
ନୂତନ କୁଞ୍ଜେ ନୂତନ ଯୁଗଳ ମୂରତି ।
ମିଳନ ଉତ୍ସବ ଦେଖି ଲଭିବ ତୃପତି । ୧ ।
କନକ ପ୍ରତିମା ରାଈ ଶ୍ୟାମ ନୀଳମଣି ।
ପ୍ରେମେ ଜଡ଼ାଜଡ଼ି ହେବେ ଅନୁପମ ଠାଣି । ୨ ।
ଆନନ୍ଦ-ସିନ୍ଧୁ ମୋହର ପଡ଼ିବ ଉଚ୍ଛୁଳି ।
ସଙ୍ଗୀମାନେ ପକାଉ ଥିବେ ହୁଳହୁଳି । ୩ ।
ଜୟ ଶ୍ରୀ ରାଧାଗୋବିନ୍ଦ ଏ ନାମ ଶ୍ରବଣେ ।
ସାର୍ଥ ହେବ ମୋ କୌଶଳ ବେଣୁଧର ଭଣେ । ୪ ।

( ସବୁ ଏ ନନ୍ଦ କୁମର— ବୃତ୍ତେ )

—o—

## ଭଗବତୀଙ୍କ ସ୍ୱାଭିଷ୍ଟ ଲାଳସା

( ରାଗ—ଆଷାଢ଼ଶୁକ୍ଳ । ତାଳ—ଝୁଲା )

ପୂର୍ବେ କାମନା ।

ଯେବେ କୁଞ୍ଜେ ଦେଖିବି ରାଧା କାହ୍ନା । ଘୋଷା ।

ସଖୀମାନେ ବେଶ ବିଧାନ ସାରି । ଗେଲେ ଇଙ୍ଗିତ ବଚନ ଉଚ୍ଚାରି ।
ଯେ ଯାହା ସେବାରେ ହୋଇ ହରଷ । ଅଭିସାରେ ବଳାଇବେ ମାନସ ।
ପାଏଡ଼ା ପକାଇଣ ଧୀରେ ଧୀରେ । ପଦଣ୍ଡ ମଣାଇ ନେବା ବେଳରେ ।
ଜୟ ଶ୍ରୀନନ୍ଦିନିକେ ଶ୍ରୀରାଧିକେ । ସଖୀଏ କହୁଥିବେ ଏକେ ଏକେ । ୨ ।
ନାନାପ୍ରକାରେ ଛଳାଇ କେ କେତେ । କହୁଥିବେ ଶୁଦ୍ଧ ସଙ୍ଗୀତ ଗୀତେ ।
ଲଜ୍ଜ-ସିନ୍ଧୁରେ ବୁଡ଼ ବରୋହିମା । ମାରୁଥିବେ ଲୀଳା କମଳ ଘେନି । ୩ ।
ନିକୁଞ୍ଜ ପ୍ରାଙ୍ଗଣେ ଯେଉଁ ପ୍ରବେଶ । ମୋତେ ପାଗ୍ଲେଟି ନେବେ ପୀତବାସ ।
ବର-ସଖି ଧର ବେଳ କୌତୁକେ । ସମର୍ପି ଦେବେ ମୃଦୁ ମଞ୍ଜୁ ବାକ୍ୟ ।
ଆଗୋ ବନ୍ଦ୍ରେ ଗର୍ଗନନ୍ଦିନୀ ଶୁଣ । ତୁମ୍ଭ ଏଥି ପ୍ରଧାନ ହେବୁ ଜାଣ ।
ନୂତନ ମିଳନେ ଉଦ୍‌ଯୋଗ କର । ନାମ ବଂଶୀ, ସ୍ୱପ୍ନ ନକର । ୪ ।
ଭଗବତୀଙ୍କ ମୁଖୁଁ ଏହି ବାଣୀ । ଶ୍ରବଣେ ନାରୀମୁଖ ଚନ୍ଦ୍ରାନନା ।
ପ୍ରେମାନନ୍ଦ ଶରେ ହେଲେ ବିହ୍ୱଳା । ବୋଲେ ବେଣୁଧର ବ୍ରଜ ପାଗଳା ।

( ଗୁହିଁଲ ତ ନାହିଁ—ବୃତ୍ତେ )

# ମାଧୁର୍ଯ୍ୟ ସଙ୍ଗୀତ ରୂପାନୁରାଗ

## ରାଧାଉକ୍ତି—ଦର୍ଶନ ଉତ୍କଣ୍ଠା ।

( ରାଗ—ପୂରବୀ । ତାଳ—ଝୁଲା )

ଦେଖିବା ସଖି ! ଚଳ ଚଳ ଶ୍ୟାମସୁନ୍ଦର । ଘୋଷା ।
ଆହା କି ମୋହନ ମୂରତି ଠାଣି    ନିକୁଞ୍ଜ ଦେବତା ମୁରଲୀ ପାଣି
ସେ କିଶୋର ଚନ୍ଦ୍ର ଇନ୍ଦ୍ର ନୀଳମଣି କାନ୍ତି ସୁନ୍ଦର । ୧ ।
ଶିରେ ଶିଖିପୁଚ୍ଛ ଚୂଳ ଉପରେ    ସର୍ବାଙ୍ଗେ ରତନ ଭୂଷଣ ସାଜେ,
ପୃଷ୍ଠଦେଶେ ବେଣୀ ଖଣ୍ଡା ପୁଷ୍ପଶ୍ରେଣୀ ଶୋଭନ ଛନ୍ଦର । ୨ ।
ଶୁଣିଲେଟି ତାର ମୁରଲୀ ନାଦ    ବୃନ୍ଦା ବନରେ ନ ଚଳେ ପାଦ,
ଭୁଆଁଶୁଣି ଭୁଲେ ଏବେ ପ୍ରମାଦ ସୁତ ନେହ ନନ୍ଦର । ୩ ।
ତାହାର ସେ ଯେଉଁ ବାଙ୍କ ଚାହାଣି    ଟଳିଲ ପାଷାଣ କରଇ ପାଣି,
ଭଣେ ବେଣୁଧର ସେ ପଦ ମିନତି ! ଧରିଥିଲେ ମନ୍ଦର । ୪ ।
( ଦେଖିବ ପଦ ଅସ ଅସ ବାମନପୁର—ବୃତ୍ତେ )

—❀—

## ରାଧାଉକ୍ତି

( ଖେଦ )

( ରାଗ—କଲ୍ୟାଣ କେଦାର । ତାଳ—ଆଡ଼ ତାଳି )

ଯମୁନା ଘାଟ ମନା ହୋଇଲା ମା ।
କୃଷ୍ଣ ଭାବନେ ଯିବା ଅଜ୍ଞ ହୋଇଲା ମା । ଘୋଷା ।
ମୃଦୁ ମୁରଲୀ ସ୍ୱନ    ଡକାଇ ନେବ ପ୍ରାଣ ।
ରତ ପୂଜା ଅକଠାରୁ ରହିଲା ମା । ୧ ।
ଏ କୁଳ ନେଲେ ବାଳୀ    ନାହାନ୍ତି ପ୍ରିୟ ଆଳୀ,
ତନ୍ଦ୍ରିଣ ବାଧା ରାଧା ସହିଲା ମା । ୨ ।
ସେ ଶ୍ୟାମ ବନ୍ଧୁ ବିନି    ହୋଇଲି ମୁଁ ଅଭାଗୀ,
ଏବେ ଚନ୍ଦ୍ର ମନମଥେ ଦହିଲା ମା । ୩ ।
ଲଳିତା ତବ ଧରି    ଲକ୍ଷନ୍ତେ ଶ୍ରୀ ଚରଣେ,
ପ୍ରବୋଧି ଏ ବେଣୁଧର କହିଲା ମା । ୪ ।
( କୃଷ୍ଣ ବେଣୀ ପୁଷ୍ପ ବଦନାରେ—ବୃତ୍ତେ )

## ରୂପ ଦର୍ଶନ

( ରାଗ—ବସନ୍ତ ବରାଡ଼ି । ତାଳ—ଝମ୍ପା )

ଏ ପରାରେ ! ପରାଣସଙ୍ଗିନ !
ଏ ପରା, ଏ ପରା, ଏ ପରାରେ । ଘୋଷା ।
ମଦନ ମୋହନ ମୁରଲୀ ବଦନ,
ବ୍ରଜେନ୍ଦ୍ର ନନ୍ଦନ ଏ ପରାରେ ପରାଣ ସଙ୍ଗିନ ! ୧ ।
ଯମୁନା ତଟିଆ ପ୍ରୀତି ଲମ୍ପଟିଆ,
ମହତ ଲୁଟିଆ ଏ ପରାରେ ପରାଣ ସଙ୍ଗିନ । ୨ ।
ଜାତି କୁଳଛଡ଼ା ଧଇର୍ଯ୍ୟ ଉଜୁଡ଼ା,
ପର ଘରବୁଡ଼ା, ଏ ପରାରେ ପରାଣ ସଙ୍ଗିନ । ୩ ।
ବନେ ଧେନୁଚରା ଗୋବର୍ଦ୍ଧନ ଧରା,
ସଖି ମନହରା, ଏ ପରାରେ, ପରାଣ ସଙ୍ଗିନ ! । ୪ ।
ଭଣେ ବେଣୁଧର କନ୍ଦ-ନଗାକର
ସେ ଲବଣୀ ଚୋର, ଏ ପରାରେ, ପରାଣ ସଙ୍ଗିନ । ୫ ।
( କାହିଁକି ରେ ମୋ ଠାରେ ଗୁମାନ···ବୃତ୍ତେ )

—୦—

## ଦର୍ଶନାନୁରାଗ

( ରାଗ—କର୍ଣ୍ଣାଟ । ତାଳ—ଏକତାଳୀ )

ଏହି ସେହି ପରା ଲୋ ମିତ ! ନାସା ତନ୍ତ୍ର ବନ୍ତ ଉକାଇଚ । ଘୋଷା ।
ତା ବଙ୍କିମ ଠାଣି କୁଟିଳ ଚାହାଣୀ,
ମାର-କାତି ଆଣି ମର୍ମ ହେଲ ହାଣି,
ଜୀବନ ଜାତି ନେବାକୁ ଶୋଭା ଆଚମ୍ବିତ । ୧ ।
ଦେଖି ସେ ମୂରତି ନ ରହଇ ଧୃତି,
ପତିବ୍ରତା ବୃତ୍ତି— ଭେଜବେ ପ୍ରମିତି
ଦେଉଛୁ ମୋ ମନେ ଚୋରେ କଳ୍ପଲଟି ସତ । ୨ ।
ତା ମୂରଲୀ ସ୍ୱନେ ମୋ ମନକୁ ଟାଣେ,
ତା' ନା, ଅନୁକ୍ଷଣେ ଜପି ଗୋ ସଦନେ,
ହଜାଇବ ସଖୀ ପ୍ରାଣ ନ ମଣ ଇଙ୍ଗିତ । ୩ ।

ଜବଚନ୍ଦ୍ର ବୋଲେ ମନ ହୋଇଥିଲେ,
ଧ୍ରୁବ ଶିବ ଭଲେ ଛବକ ଦେଖିଲେ,
ଭବତଳେ ମୁନି ଯାକୁ ଭଜନ୍ତି ସନ୍ତତ । ୪ ।
( ମଧ୍ୟକାଳ ବା ସୁଖକାଶ—ବୃନ୍ଦେ )

—o—

## ରୂପାନୁରାଗ

[ ରାଗ - ମାଧ୍ୟମାଳବ ଗୌଡ଼ା । ତାଳ—ଝୁଲ ]

ନନ୍ଦସୁତଙ୍କୁ । କେ ବକ ନ ଦେବ ଚଉକୁ ? । ଘୋଷା ।
ଭଲ୍ଲ ତା ବାଙ୍କଜୁଡ଼ା ମଲ୍ଲୀ ସେବତି ବେଢା,
ଦେଖି କେ ଧରିବ ଦମ୍ଭକୁ । ୧ ।
ତା ସେହିଁ ବଂଶୀଗାନ ମୃଦୁ ମଧୁର ତାନ,
କମ୍ପାଇ ନ ଦିଏ ବା ବୁକୁ । ୨ ।
ତ୍ରିଭଙ୍ଗୀ ଠାଣି ତାର ଆହା କେଡ଼େ ସୁନ୍ଦର,
ନିନ୍ଦୁଛି କୋଟି ମଦନକୁ । ୩ ।
କେତେ କାଳ ବିରଞ୍ଚି ଗଢ଼ିଛି ପାଞ୍ଚି ପାଞ୍ଚି,
ଉପମା ବିନା ସେ ତାହାକୁ । ୪ ।
ଏ ତ୍ରିଭୁବନେ କେହୁ ତା ସମ ଦିଶୁନାହିଁ,
ମନ୍ତ ନ ବଳେ ମୁର୍ଚ୍ଛିବାକୁ । ୫ ।
ଭଣଇ ବେଣୁଧର ରାଧେ ସେ ତ ଭ୍ରମର
ବଂଶୀରେ ବାଉଳନ୍ତି ନା, କୁ । ୬ ।
( ଆଜ ତ ବେଶ କେଡ଼େ ତୋର, ରେ ଶ୍ୟାମନାଗର,—ବୃନ୍ଦେ )

—o—

[ ରାଗ—ତୋଡ଼ି ମଙ୍ଗଳ । ତାଳ—ଅଠତାଳୀ ]

ସଖି ! ମୋ ଜୀବଧନ ଏ ବ୍ରଜ-ମୋହନ ।
ହୃଦୟ-ରଞ୍ଜନ ଶ୍ୟାମ-ନୟନ-ଅଞ୍ଜନ । ଘୋଷା ।
ସ୍ୱପନେ ମୋ ପୁରେ ପ୍ରବେଶି ବସି ମନ୍ଦ ମନ୍ଦ ହସି
ବୋଇଲେ ରେ ମଦାଳସି ! ମୁହିଁ ତୋର ଜଣାଜନ । ୧ ।
ସ୍ୱପନେ ସୁନାସ୍ତ ବେଶରେ ପ୍ରବେଶିଣ ମୋ ପାଖରେ
କରକୁ ସଜାଇ ଦେଲେ ତତ୍ତ୍ୱ ନବ-ରତନ । ୨ ।

ବନେ ନାପିତୁଣୀ ବେଶ— ଧରି ସେସନ୍ତ ପୀତବାସ
ମୋ ପାଦେ ଲକ୍ଷାରସରେ ଲେଖିଲେ ମୁଁ ଶ୍ୟାମ ଶ୍ୟାମ । ୩ ।
ଏମ୍ନପରି ନାନାମତେ ରସାଇଲେ ସଖୀ ମୋତେ,
ମୂର୍ଚ୍ଛିବ କି ତାଙ୍କୁ ସତେ ? ବେଣୁଧର ନିବେଦନ । ୪ ।
( ଦେଖିଲେ ଦେଖିଲା ପରି ଥରେ ରସିକ ରାଜଙ୍କୁ—ବୃନ୍ଦେ )



( ରାଗ—ଚ୍‌ସ କାମୋଦ । ତାଳ—ଏକତାଳୀ )
ମନମୋହନ ମୂରତି ଶୋଭା ଛବିକ ।
ଦେଖି କେ ଅବା ଚିତ୍ତ ତାକୁ ନ ଦେବ ବିକ ? ଘୋଷା ।
ଶୁଦ୍ଧଚନ୍ଦ୍ରିକା ଚୂଳରେ କେତକୀ-ଦଳ ।
ତହିଁ ମଲ୍ଲିକା ଜାଈ ଯୂଥି କୁସୁମମାଳ । ୧ ।
ପୃଷ୍ଠଦେଶରେ ଲମ୍ବିଛି ସୁଗୁରୁ ବେଣୀ ।
ନାସେ ଶୋଭିତ ଦିବ୍ୟ ଗଜମୋତି-ବଧଣୀ । ୨ ।
ନବ-ରତନ-କୁଣ୍ଡଳ ଖେଳଇ ଗଣ୍ଡେ ।
ଦେଖି କେବା ନୋହିବ ଘାରି ମଦନ ଦଣ୍ଡେ । ୩ ।
ଭାଲେ ରଞ୍ଜିଛି ସୁଗୋରୋଚନା କସ୍ତୁରୀ ।
ନେତ୍ର ଅଞ୍ଜନ-ଗାର ଦିଶେ କେଡ଼େ ମାଧୁରୀ ? । ୪ ।
ଗଳେ ଶୋଭଇ କାନନ-କୁସୁମ ମାଳ ।
କଟିଦେଶେ କିଙ୍କିଣୀ ପୁଣି ପୀତଦୁକୂଳ । ୫ ।
କରେ ବଳୟ କଙ୍କଣ ମୁରଲୀ ଶୋଭା ।
ସେତ ତ୍ରିଭଙ୍ଗୀ ଛନ୍ଦେ ନୀପମୂଳରେ ଉଭା । ୬ ।
ପାଦେ ନୂପୁର ବାଜେଣୀ କରଇ ସ୍ୱନ ।
କୋଟି ମନ୍ମଥ ରୂପ ମୋହେ ତ୍ରିଭୁବନ । ୭ ।
ନେତ୍ରକଟାକ୍ଷ ଚାହାଁଣି କେଡ଼େ ଛଟକ ।
ଗୀତେ ଭାଷଇ ବେଣୁଧର ପଦନାୟକ । ୮ ।
( ଦେଖ ଦିଶେ କି ସୁନ୍ଦର ରାସ ରଙ୍ଗିମା—ବୃନ୍ଦେ ).



## ରୂପାନୁରାଗ

( ରାଗ—ଆହାରି । ତାଳ—ଆଠତାଳୀ )

ସଜନୀ ଗୋ କେଳିକଦମ୍ବ ମୂଳକୁ ଅନା ।
ନଟବର ବେଶେ କେଡ଼େ ଶୋଭାପାଏ ନନ୍ଦକହ୍ନା । ଘୋଷା ।
ହୋଇ ତ୍ରିଭଙ୍ଗିମା ଠାଣି, ମୋହନ ମୁରଲୀପାଣି,
ନେତ୍ର କଟାକ୍ଷ ଶରହାଣି ଜନ୍ମାଏ କାମ ବେଦନା । ୧ ।
ଶିରେ କେଳିପୁଚ୍ଛ ଚୂଡ଼ା, ଜାତି କୁସୁମରେ ବେଢ଼ା,
ନ ପଡ଼େ ନେତ୍ର ପିଚ୍ଛଡ଼ା ବଂଶୀଧର ଡାକେ ମୋନା । ୨ ।
ନାସାରେ ଗଜମୁକୁତା, ଦଶନ କେଡ଼େ ଶୋଭିତା
କର୍ଣ୍ଣେ ମକର କୁଣ୍ଡଳ ଭାଲେ ଚନ୍ଦ୍ର ଗୋରୋଚନା । ୩ ।
ଗଳେ ଶୋଭେ ବନମାଳ, ପିନ୍ଧିଛି ପୀତଦୁକୂଳ,
ସ୍ୱର୍ଣ୍ଣ କଙ୍କିଣି କଟିକି ଦିଶେ କେଡ଼େ ଶୋଭବନା । ୪ ।
ପଦେ ନପୁର ବଜେଣି ମାନସ ନିଅଇ କିଣି,
ସେ ପଦୁରେ ବେଣୁଧର—କବିଚନ୍ଦ୍ର ଭାବନା । ୫ ।
( ମୋହନ ହେ, ଭଲ ବସୁରଟି କଲ—ବୃତ୍ତେ)

—୦—

## ଗୋଚାରଣେ ଦର୍ଶନାନୁରାଗ

( ରାଗ—ଖଣ୍ଡ କେଦାର । ତାଳ—ଏକତାଳୀ )

ସଖି ! ଅନାଗୋ ଥରେ ।

ବଦଳିତ-ଅଞ୍ଜନ, ମହେନ୍ଦ୍ର ମଣି ଘନ, ସୁରୁଚି ଅପଘନ, ଦିଶଇ କି ଶୋଭନ,
ଇନ୍ଦୀବର ନୟନ, ବନ୍ଧକରୁଛି ଜନ ମନୋରଥ ରେ । ୧ ।
ମୃଗମଦ ଚିତାକୁ, କେ ଦେଇଛି ଗୋ ତାକୁ, ରମଣୀଧୀରତାକୁ ବିନାଶ କରିବାକୁ
ସଜାଇଛି ଧେନୁକୁ, ବଜାଇଣ ବେଣୁକୁ ରାଜପଥରେ । ୨ ।
ଶିରେ ବରହୀ ଚୂଳ, ସୁରଙ୍ଗ ଜାମୁଡ଼ାଳ, ଗଳାରେ ବନମାଳ, ଶ୍ରବଣରେ କୁଣ୍ଡଳ
ବୃନ୍ଦା ପୁଣି ଆକୁଳ—ନହେବ କେ ଗୋକୁଳ ନାରୀ ଚିତ୍ତରେ । ୩ ।
ଭଣଇ ବେଣୁଧର, କବି ରଜନୀକର, ତା ନୀଳ ଜଳଧର, ମଧୁକୁ ଆଶାମୋର,
ସଖି ! ଧରୁଛି କର, ଭୁ ପ୍ରଣିକାର କର, ତାର ସାଥିରେ । ୪ ।
[ ବୃନ୍ଦା ବୃନ୍ଦା ଗୋ ଦୂତୀ—ବୃତ୍ତେ ]

—*—

## ରୂପାନୁରାଗ

( ରାଗ—ଚନ୍ଦ୍ରା କାମୋଦୀ । ତାଳ—ଖେମଟା )

ମୁରଲୀପାଣି, ରୂପ କି ଶୋଭା ମିଚଣି ଗୋ । ଘୋଷା ।
ତନୁ ନନ୍ଦେ ନବଘନ ଇନ୍ଦ୍ର-ନୀଳମଣି ।
କେକୀ-ପୁଚ୍ଛ ବାଙ୍କଚୂଳ ତ୍ରିଭଙ୍ଗୀ ଠାଣି ଗୋ । ୧ ।
ଭାଲେ ଗୋରୋଚନା ଚିତା ବଙ୍କିମା ଚାହାଁଣି ।
ଭ୍ରୁରୁ ନନ୍ଦେ କାମ-ଚାପ ନାସେ ମୋତିମଣି ଗୋ । ୨ ।
ଗଳେ ବନମାଳ ପୃଷ୍ଠ ଦେଶେ ଶୋଭେ ବେଣୀ ।
କଟୀରେ ହେମକଙ୍କିଣୀ ବାଜେ କଣି କଣି ଗୋ । ୩ ।
ଶ୍ରୀକରେ ବଳୟ ପଦେ ନୂପୁର ବାଜେଣି ।
ମୁରଲୀ ସ୍ୱନରେ ଚିତ୍ତ ବିତ୍ତ ନିଏ କିଣି ଗୋ । ୪ ।
† ଶ୍ରୀ ଶ୍ରୀ ନୃପ କୃଷ୍ଣଚନ୍ଦ୍ର ନରଇନ୍ଦ୍ର ଭଣି ।
ଦେଖି ସେ ମୂରତି ବଶ ନୋହିବ କେ ପୁଣି ଗୋ । ୫ ।
( ମୁରଲୀଧାରୀ ସଙ୍ଗେ ଯିବେ କି ବାହାର ହୋ—ପ୍ରଭୃ )

—o—

## ରୂପାନୁରାଗ

( ରାଗ—ମାଳବ । ତାଳ—ଖେମଟା )

ମିତ ଅନା, ଏହି ଟର ବ୍ରଜରାଜ କହ୍ନା ଗୋ । ଘୋଷ ।
ତ୍ରିଭଙ୍ଗୀରେ ଉଭାହୋଇ ମୁରଲୀ ଅଧରେ ଦେଇ
ବାଙ୍କ ନୟନରେ ଚାହିଁ ହରୁଛି ଚେତନା ଗୋ । ୧ ।
ଶିରେ ଶିଖିପୁଚ୍ଛ ଜୁଡ଼ା, ତହିଁ ସେବତୀ ଚ ଖୁଡ଼ା,
ଯୁବତୀଙ୍କ ଘର ବୁଡ଼ା ସେ କାଳିୟାହୁନା ଗୋ । ୨ ।
ଦେଖି ସେ ମୋହନ ମୂର୍ତ୍ତି ରହିବ କାହାର ଧୃତି,
ହେଲେ ପତିବ୍ରତା ମତି ନ ହେବ କି ଚୂନା ଗୋ । ୩ ।
ଶ୍ରୀମତୀ ବୋଲନ୍ତି ଦୂତି, ସେ ମୋ ନୟନ ସମ୍ପତ୍ତି
ସେ ପଦରେ କୃଷ୍ଣଚନ୍ଦ୍ର ନୃପତି ଭାବନା ଗୋ । ୪ ।
( କହ ସଖି ଖ୍ୟାମଳଗି କି ବୁଦ୍ଧି କରିବି—ପ୍ରଭୃ )

—❋❋❋—

† ଏ ଗୀତ ରଣପୁରାଧୀଶ୍ୱରଙ୍କ ନାମେ ଭଣିତ

( ରାଗ—ଦକ୍ଷିଣ ସାରଙ୍ଗ । ତାଳ—ଝମ୍ପା )

ଆନା ଆନା ସଖି କଦମ୍ବ ମୂଳକୁ ।
କି ଶୋଭା ପାଉଛି ଶ୍ୟାମ ଯମୁନା କୂଳକୁ । ଘୋଷା ।
ତ୍ରିଭଙ୍ଗିମା ଠାଣି (ତାର) କୁଟୀଳ ଚାହାଣୀ,
ରଖିବ କି ଆଉ ପତିବରତ କୂଳକୁ । ୧ ।
କର୍ଣ୍ଣରେ କୁଣ୍ଡଳ ଲୁଳେ ଗଣ୍ଡ ମଣ୍ଡଳ,
ରତନ ବଳୟ ସାଜେ ବାହୁଯୁଗଳକୁ । ୨ ।
ଜାଇ ଜୂଈ ମାଳ ଚମ୍ପା କେତକୀ ଦଳ,
କି ରଙ୍ଗେ ମାନୁଛି ସଦ୍ଧ ତା ବାଙ୍କ ଚୂଳକୁ । ୩ ।
ହୃଦେ ବନମାଳ ଦିଶୁଅଛି କି ମଞ୍ଜୁଳ,
କି ମାନୁଛି ନୀଳ ଅଙ୍ଗେ ପୀତଦୁକୂଳକୁ । ୪ ।
ଭାଲେ ଗୋରୋଚନା ଅଧର ରଙ୍ଗିମା,
ମୋହନବଂଶୀ କି ଶୋଭା କର କମଳକୁ । ୫ ।
କଟିରେ କିଙ୍କିଣୀ ପାଦେ ନୂପୁର ବାଜେଣି,
ମଧୁର ଧ୍ୱନିରେ ମୋହେ ହୃଦୟ ସ୍ଥଳକୁ । ୬ ।
ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ନରକୁଳ ଇନ୍ଦ୍ର
ଲୋଟାଇଛନ୍ତି ଶିର ସେ ଚରଣ ତଳକୁ । ୭ ।
( ଦେଖ ଦେଖ ସଖି କାହ୍ନୁ ବଂଶୀଧର—ବୃତ୍ତେ )

—*—

( ଦୂତୀ—ପ୍ରତି ଶ୍ରୀରାଧା ଉକ୍ତି )

( ରାଗ—ଖଣ୍ଡ କେଦାର । ତାଳ—ଏକତାଳୀ)

ଚାହାଁ ଚାହାଁ ଗୋ ଦୂତୀ, କଦମ୍ବ ମୂଳରେ ନବଘନ ମୂରତି । ଘୋଷା ।
ଶିରେ ଶିଖଣ୍ଡି ଚୂଡ଼ା, ମଲ୍ଲିମାଳରେ ବେଢ଼ା,
ଯୁବତୀ ଜ୍ଞାନ ବୁଡ଼ା, କୂଳ ମହତ ଛଡ଼ା,
ତ୍ରିଭଙ୍ଗି ଛନ୍ଦେ ଛିଡ଼ା, ନୁଦେଁ ନେତ୍ର ପିଚ୍ଛଡ଼ା,
ଦେଖି ତା ରୀତି । ୧ ।
କର୍ଣ୍ଣେ ହେମ କୁଣ୍ଡଳ ଲୁଳଇ ଗଣ୍ଡସ୍ଥଳ,
ହୃଦରେ ବନମାଳ, ନାଶାରେ ମୋତିଫଳ,
ଆହା ସେ ନନ୍ଦବାଳ, ଦଶନ୍ତ କି ମଞ୍ଜୁଳ;
ନେତ୍ର ସମ୍ପତ୍ତି । ୨ ।

ପୀତାମ୍ବର କାଚ୍ଛଣୀ ଝଲସେ କି ସୌଦାମିନୀ,
କିଙ୍କିଣୀ କଣି କଣି,— ନାଦେ ନଇଇ କଣି,
ତା ନୂପୁର ବାଜେଣୀ କେକେଞ୍ଜ ମଧୁର ଧ୍ୱନି,
ହରଇ ଧୃତି । ୩ ।

ଗୋରୋଚନା କସ୍ତୁରୀ,— ଚିତା ସିନ୍ଦୂର ଶିରୀ,
ଚନ୍ଦନ ପାଟି ହରି,— ନଞ୍ଚଇ ଚନ୍ଦ୍ର ଶୀତ,
ବେଣୁଧର ସେ ହରି, ପଦ୍ମପାଦେ ପ୍ରହାରି,
କରେ ବନନ୍ତ । ୪ ।
( କ ଗୁମାନେ ବସିଲୁ—ବୃତ୍ତ )
—o—
(ରାଗ—ଖଣ୍ଡକେଦାର । ତାଳ—ଏକତାଳୀ )
ଶ୍ୟାମ ମୁରତି ଥରେ ।

ଦେଖି ନେଇ ଧାଇ ନୋହିବ ମନମନ୍ଥରେ । ଘୋଷା ।
ହେଲେ ପଞ୍ଚବରଷ ରଖିବ ନାକ ଧୃତି,
ମୁରଲୀ ଶୁଣି ଶ୍ରୁତି ତାରେ ଉଛିବ ରତି,
ଶ୍ୟାମବନ୍ଧୁ ପୀରତି, ଛନାରେ କି ବରତି ପାରିବ ଥରେ । ୧ ।
ହେଲ ପାଦପମାପ— ମୁଳେ ଶ୍ୟାମଳ ରୂପ,
ଦର୍ଶନେ ସନ୍ତର୍ପ— ଭଙ୍ଗି ଯିବ କନ୍ଦର୍ପ—
କାଣରେ ନିକଷ୍ଟ ଅପଧନ କହିବ ଅପସି ଦେହ ସ୍ୱର୍ଥରେ । ୨ ।
ହିଭଙ୍ଗ ଉଷ୍ମ ଶୋଭା ଦେଖି କେ ଅବା ଲୋଭ,
ନୋହିବ ତା ପ୍ରତିଭା ରଖିଦେବକ ଯୁବା, ?
କୁଳବଧୂ ବଲ୍ଲଭା, ଆଜ ଭରିବ ଜବାଧରି ବ୍ରତରେ । ୩ ।
ଚିନ୍ତ ସେ ବେଣୁଧର— ଚଦ୍ଧର ବେଣୁଧର,
ଭବ ରଜନୀ କର କନ୍ଦ ସଜନୀ କର;
ଧର କଟୋରୀ ସାର, ମଣି ଚିନ୍ତାମଣିର ପ୍ରେମ ରତରେ । ୪ ।
( ସଖି ବୃନ୍ଦା ଏ ପର—ବୃତ୍ତ )
( ରାଗ—ଖଣ୍ଡକେଦାର । ତାଳ—ଏକତ )
ଶ୍ୟାମ ଛବି ଛଟକ ।

ଦେଖି ହେବା ନ ହାରିବ ବୁଦ୍ଧି ବିବେକ । ପଦ ।
ମଧୁର ବଂଶୀଧ୍ୱନି ମତି କରେ ଉଛନ୍ନି,
ଭୂକକ୍ଷ ଗୁମାନ— ଗ୍ଲୁର କେତେ ଏ ମାନ
ସେ ଅଖିଳବନ୍ଧନ,—ଛାଡ ଅଲବଣ୍ୟ, ପ୍ରେମମାଦକ । ୧ ।

ନେତ୍ର ଭଙ୍ଗି କଟାକ୍ଷ ଭୁଲତା ବାଙ୍କ ଛୁରୀ,—
ଦେଲ୍ଲ ବେଳରେ ମାର ମରମେ ହୁଏ ଘାରି;
ସେ ତାନ୍ତ୍ର ସମ୍ବର୍କର, ଅଛୁ କେଉଁ ନାଗରୀ, ନ ଲଭେ ଦଳ । ୨ ।

ତା ମନ୍ଦ ମନ୍ଦ ହାସ ମଦନ ଚନ୍ଦ୍ର ହାସ;
ମୁରଲୀର ଆଶ୍ୱାସ କରଇ ଧୃତି ନାଶ,
ଗୁଡ଼ାଁ । ଗୁଡ଼ାଁ । ଗୋ ରାସ-ରଙ୍ଗିମା ସେହି ବାସରେ ଗ୍ରଛକ । ୩ ।

ଲଳତା କର ଧର ଶ୍ରୀଷତ୍ର ଶ୍ରୀ କଶୋରୀ
ସେହି ରୂପ ମାଧୁରୀ ମୋ ନେତ୍ର ଅଛୁ ପୂର,
ବେଣୁଧର ବସ୍ତୁର, ହେବକ ସେବାକାଙ୍କ୍ଷୀ ତାଙ୍କ ନଜକ । ୪ ।
( ସଖି ଗୁଡ଼ାଁ ଏ ପର—ପ୍ରତି )

—୦—

(ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )
ରେ ହଙ୍ଗାଚ ! ଗୋଷ୍ଠଚନ୍ଦ୍ରମାଙ୍କ ଠାଣି ।
ଆହା କ ସୁନ୍ଦର ସୁବା ପୁରନ୍ଦର
ମୋହନ ମୁରଲୀ ପାଣିରେ । ଘୋଷା ।
ତ୍ରିଭଙ୍ଗ ମୂରତି କୋଟି ରତିପତି
ଦର୍ପ ଚକାଉଛୁ ହାଣି ।
ମୃଦୁ ମନ୍ଦ ହାସ ବଚନେ ପୀୟୂଷ
ଧନ୍ୟ ସେ ବାଙ୍କ ଗୁଡ଼ାଁଣି ରେ । ୧ ।
ଦେଖିଦେଲେ ଥରେ ନୟନ ପଥରେ
ପଥର ହୋଇବ ପାଣି ।
ହେଲେ କୁଳବଧୂ ବଳେ ହେବ ମତି
ନ ପଶ୍ଚିବ ଜାଣି ଜାଣି ରେ । ୨ ।
କେତେ ଶ୍ରମ କର ଗଢିଛୁ କ କର
ଭଲ ସେ ବଣ୍ଟ-ବନ୍ଧାଣୀ ।
ଯେତେ ଦେଖୁଥିଲେ ତେତେ ଲୋଭ ବଳେ
କ କହିବ ସେ କାହାଣୀ ରେ । ୩ ।
ବୋଲେ ବେଣୁଧର ନ ହୁଅ ଅସ୍ଥିର
ବୃନ୍ଦାବନ ଠାକୁରାଣୀ ।

ହେବେ ସେ ଭୂମର ହୃଦ-ରତ୍ନହାର
ଭାଗ୍ୟ ଶଶୀ ଉଇଁଲା ରେ । ୪ ।
( ରେ କପୋତ ! ଯଛେ ଛୁଇଁବୁ ମୋ ତନୁ—ବୃନ୍ତେ )

—୦—

## ଦର୍ଶନାନୁରାଗ

( ରାଗ—କେଳ କେଦାର । ତାଳ—ଆଠତାଳୀ )

କେ ସେ ନୀପମୂଳେ ମୋ ସଜନୀ ! କହ କହ ଗୋ !
ଅନୁପମ ତନୁ ନନ୍ଦେ ନବ ବାରବାହ ଗୋ । ଘୋଷା ।
ଆହା କି ସୁନ୍ଦର ଛବି, ଚଉଦ ଭୂବନେ ନାହିଁ,
ଅବା ଦେହ ଧରି ବ୍ରଜେ ଆସିଛୁ ଅଦେହ ଗୋ । ୧ ।
ମୃଦୁ ମୃଦୁ ହାସ ଖଣ୍ଡି, ମୋ ମନକୁ ନଏ ଭଣ୍ଡି,
ରଖିବକି ବାକି ପଞ୍ଚଶରଣ ସମୂହ ଗୋ । ୨ ।
ଆଉ ନୟନେ ତ ରହିଁ କରଙ୍ଗେ ଭୃରୁ ଠାରଇ,
ଭଲକୁ କି ମନ୍ଦକୁ ମୁଁ । ଲାଗୁଛି ସନ୍ଦେହ ଗୋ । ୩ ।
କବିଚନ୍ଦ୍ର ବୈଶୁଧର, ବୋଲେ ସେ ନଟନାଗର,
ଜଣାଯାଏ ଅଞ୍ଚଳରେ ଯୋଗ୍ରଇବ ଲୁହ ଗୋ । ୪ ।

—୦—

[ କାଳନ୍ଦୀ କୂଳକୁ ମୋର ସଙ୍ଗାଳ ନ ଯାରେ—ପ୍ରଭ ]

## ଅଦ୍ଭୁତ ଉପମା—ରାଧାଉକ୍ତି

ସେ କେଉଁ ଦେବତା ସଖି ! ନାମ ନଜାଣଇଁ ଗୋ ॥
ତାକୁ ଦେଖିଲା ବେଳକୁ ମୋ ହୃଦୟ ଥରଇ ଗୋ । ଘୋଷା ।
କବା କଳାଘନ ଆସି ମହୀରେ ଖେଳଇ ଗୋ ।
ଥିର ବଜୁଳି ତହିଁକି ପ୍ରଭା ପ୍ରକାଶଇ ଗୋ । ୧ ।
ଚନ୍ଦ୍ର ଭୁଲେ ଇନ୍ଦ୍ରଧନୁ ରଙ୍ଗେ ଝଳସଇ ଗୋ
ରବି ମଣ୍ଡଳରେ ତାରା ଛବି ବଗରଇ ଗୋ । ୨ ।
ନୀଳପଦ୍ମ ଭୁଲେ ବନ୍ଧୁଜୀବ ଅଛି ଉଭା ଗୋ ।
ତା ଉପରେ କେକୀ ନୃତ୍ୟ କରେ କାହିଁପାଇଁ ଗୋ । ୩ ।
ଅକଳା ପ୍ରୁର ମୁଁ ଧୈର୍ଯ୍ୟ ଧରିବଟି କେହ୍ନେ ଗୋ ।
ଦେଖ ମୋ ଆଡ଼କୁ ନେତ୍ର-ଶର ପ୍ରହାରଇ ଗୋ । ୪ ।

ସଜନୀ ସ୍ୱଜଣୀ ଧନ ! ଭଜନ୍ତୁ କ ପାଇଁ ଗୋ ?
ନିକୁଞ୍ଜ ମନ୍ମଥ ସେହ୍ନ ବେଣୁଧର କହ୍ନ ଗୋ । ୫ ।
( ନିରେଖି ଗୃହାଁରେ ସଖି ! ଏ କଦମ୍ବ ମୂଳକୁ—ପ୍ରଭୃ )

—୦—

[ ରାଗ—ସାବେରୀ ତାଳ—ଆଠତାଳୀ ]

ପ୍ରାଣସହି ରେ । କେତେ ଭଙ୍ଗ ଜାଣେ ଶ୍ୟାମ ନାଗମୁକେଳ ରହି । ପଦ
ଆଜ ଯମୁନାକୁ ଗଲାବେଳେ  ବ୍ରଜରାଜତନୁଜଙ୍କୁ ଡୋଳେ
ଦେଖିଦେଲି ଥିଲେ ସେ ନିସ୍ତଳେ,
ସେତେବେଳୁ ମାର ଶରେ ହେଉଅଛି ଦହି ରେ । ୧ ।
କାହୁଁ କି ମନ୍ତ୍ର ସେ ଅଛି ଶିଖି  କେ ନ ଭୁଲିବ ତା ଛବି ଦେଖି,
ପତିବ୍ରତା କରି ଜନେ ରଖି,—
ଦେବ ନାହିଁ ସରି ଏ ବ୍ରଜରେ କହ୍ନାଇଁ ରେ । ୨ ।
ଭଲ ତା ବାଙ୍କ ଚନ୍ଦ୍ରିକା ଚୂଡ଼ା  ମଲ୍ଲି ସେବତି ପାଖୁଡ଼ା ବେଢ଼ା,
ଯୁବାନାରୀଙ୍କର ଲଜ୍ଜାନବୁଡ଼ା,
ଲୋଚନରେ ସେ କାହାକୁ କି ନ କରଇ ରେ ।୩।
ଆହା ସେ ଲାବଣ୍ୟ ତନୁ ଶୋଭା  ଦେଖି କେ ଅବା ନୋହିବ ଲୋଭା
ତାହା ଦେଖା ଆଶେ ସିନା ଭବା,—
ବସ୍ତୁ ପ୍ରକାର ବେଣୁଧର ଭାଷଇ ରେ । ୪ ।
( ବିଚକ୍ଷଣା ଲୋ; ବିନା ତୋ ପ୍ରୀତି କେ ଗତି—ବୃନ୍ଦେ )

—୦—

# ରୂପାନୁରାଗ

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ହଟି ଏ ନନ୍ଦକୁମର, ତ୍ରିଭଙ୍ଗିମା ଛବି ଆହା କେଡ଼େ ମନୋହର ।
ଶିରେ ଶିଖି ପୁଚ୍ଛ ଚୂଡ଼ା, ମଲ୍ଲିମାଳେ ବେଢ଼ା ।
ବଙ୍କିମା ଗୃହାଣି କୁଳବଧୂ ଘଟକୁଡ଼ା । ୧ ।
କର୍ଣ୍ଣେ ମକର କୁଣ୍ଡଳ, ଭାଳେ ଗୋରୋଚନା ।
ଦେଖି କିଏ ନୋହିବ କେ ଏ ବ୍ରଜଅଙ୍ଗନା । ୨ ।
ନାସାରେ ଗଜମୁକୁତା, ହାସ ମନ୍ଦ ମନ୍ଦ ।
ଚିକ୍କଣ ଶ୍ୟାମଳ ଅଙ୍ଗ ଆହା ନେତ୍ରାନନ୍ଦ । ୩ ।
ଶ୍ରୀକରେ ମୋହନ ବଂଶୀ ଗଳେ ବନମାଳ ।
କଟିରେ କିଙ୍କିଣି ପୁଣି ସୁପୀତଦୁକୂଳ । ୪ ।

ମୃଦୁପଦ୍ମରେ କାଜେଣି, ନୂପୁର ନିନାଦ ।
ମାପମୂଳେ ଜଙ୍ଘ ଶୋଭା କେଡ଼େ ଆହ୍ଲାଦ । ୫ ।
ମଦନ ମୋହନ ମୋର, ହୃଦୟ ଚନ୍ଦନ ।
ବେଣୁଧର କବିଚନ୍ଦ୍ର କରୁଛି ବନ୍ଦନ । ୬ ।
( ଗୁର୍ଜ୍ଜରୀ ଚମକ ପଣ୍ଡାକ—ବୃତ୍ତେ )

—❀—

## ସଖୀ ପ୍ରତି ରାଧା ଉକ୍ତି

( ରାଗ – ରସକଦମ୍ବ । ତାଳ—ଏକତାଳୀ )

କେଡ଼େ ହଟିଆ ଗୋ ନନ୍ଦର ବଳି ।
କଦମ୍ବ ମୂଳରେ ରହି କେତେଭଙ୍ଗି ସେ କରୁଛି । ଘୋଷା ।
ଆହା ସେ ଛବିଭଙ୍ଗି ଠାଣି କରଙ୍ଗେ ବାଙ୍କ ଚାହାଣି,
ମୋହନ ମୁରଲୀପାଣି କିନା ମୁଁ ନ ଜାଣେ କଛି । ୧ ।
ନବୀନ ନୀରଦ ତନୁ ପାଶୋର ନଯାଏ ମନୁ,
ନିରନ୍ତରେ କଳାକାହ୍ନୁ ମୋର ନୟନେ ନାଚୁଛି । ୨ ।
ଶିଖିପୁଚ୍ଛ ବନମାଳୀ ମୋର ନୟନ ସଙ୍ଗାଳ
ତାଙ୍କ ଲଗି ପର ଆଳୀ ଲାଜ ଭୟ ବରଜିଛି । ୩ ।
ଦୀନ ବେଣୁଧର ବୋଲେ ଅପବାଦ ହେଉ ହେଲେ
ଏ ପିଣ୍ଡ ପରାଣ ଥିଲେ ତାଙ୍କୁ ପାଛିବ କ ମୁର୍ଚ୍ଛି । ୪ ।
[ ମୋତେ ସେହି ରୂପ ଦେଖାଅ ହରି—ବୃତ୍ତେ ]

—o—

## ସଖୀ ଉକ୍ତି

( ରାଗ—ତମାଳ । ତାଳ—ଖେମଟା । )

ଶ୍ରୀ କଶୋରୀ ଗୋ; ରାଧା ଫେର ।
ଦେଖ ମାପମୂଳ କଶୋରୀ ହରିଛି ମୋହନ ମୁରଲୀଧାରୀ ॥
ମୋ କଶୋରୀ ॥ ଘୋଷା ॥
ନବୀନ-ମଦନଠାଣି ଗୋ, ସୁହାସ ବାଙ୍କ ଚାହାଣି,
ଭ୍ରୂଲତାଙ୍କ ଭୁଗ୍ନ ନୟନ କଟାକ୍ଷ ମରମ ପକାଏ ହାଣି । ୧ ।
ଝାଲିଆ ମୟୂର ଚୂଳ ଗୋ, ବଢ଼ାଇ ଛଡ଼ାର ମୂଳ,
ନାଲିଆ କମଳ ଚରଣ ତଳରେ ବଳଦେବେ ସପ୍ତକୁଳ । ୨ ।

ତାଙ୍କରୁ ଚଳଣା ସବୁ ଗୋ, ସକଳ ଅଙ୍ଗ ମାଧୁରୀ,
ଗୋଟି ଗୋଟିକର ବାଖ୍ୟାନ କଲେ ଲକ୍ଷେଯୁଗ ଯିବ ସରି । ୩ ।
ସେ ଶ୍ୟାମ ମୂରତି ସୁନ୍ଦର ଗୋ, ଉପମା ଦେବାକୁ ନାହିଁ,
ବୋଲେ ବେଣୁଧର ଗୋଟିଏ ଅବତାର ଏକା ସେ ଭୁବନ ପାଇଁ । ୪ ।
( ସଖେ ପ୍ୟାରେ ରେ ବଂଶୀଧାରୀ—ବୃତ୍ତ )

— ୦—

( ରାଗ—ତୋଡ଼ିଭରଜ । ତାଳ—ତିଯୁଟା )

ସୁବର୍ଣ୍ଣଚମ୍ପା ବରନାରେ ! ସ୍ୱର୍ଗ । ସ୍ୱର୍ଗ । ଭୁବନ ଅନ୍ତରେ ।
ଚକ୍‌ଚକ ଶ୍ୟାମଳ ରୂପ କ ଶୋଭା କାଳନ୍ଦୀତୀରରେ । ଘୋଷା ।
ଚୂଳ କେକୀ ଶିଖଣ୍ଡରେ ମଣ୍ଡିଅଛି ଶିରପରେ
ଦୃଷ୍ଟି ପଡ଼ିଗଲେ ଅରେ ମନ ନପୂରକୁ ଦୂରେ । ୧ ।
ଭାଲେ ଗୋରୋଚନା ଭଲେ କସ୍ତୁରୀ ବିନ୍ଦୁ ତା ପରେ
ମୋହନ ମୂରଲି କରେ-ଧରି ଦେଉଛି ଅଧରେ । ୨ ।
ଚରଣେ ସୁଲମ୍ବ ବେଣୀ ନାସେ ଗଜମୋତି-ମଣି
ରତ୍ନକୁଣ୍ଡଳ କର୍ଣ୍ଣରେ ଝଟି ରବି ତେଜ ଧରେ । ୩ ।
ଚମ୍ପା ନାଗେଶ୍ୱର ମାଳେ ଲମ୍ବାଉଛି ତାର ଗଳେ
ଚେତା ହଜାଉଛି ଦେଲେ ନେତ୍ର ଭ୍ରୂର ସୁଲଳିତରେ । ୪ ।
ଚତୁର୍ହସ୍ତ-ସ୍ଥଳକଟି କ ତା ପୀତପଟ ଘଟି
ତା ପରେ ସ୍ୱର୍ଣ୍ଣ କଙ୍କିଣୀ ରଣି ରଣି ନାଦକରେ । ୫ ।
ଚରଣେ ନୂପୁର ସାଜେ ଚପଳେ ଚଞ୍ଚଳୁ ରଞ୍ଜେ
ଚନ୍ଦ୍ରାପାଦ୍ୟାଧାରୀ କବି ବେଣୁଧରଙ୍କ ବାଳେ । ୬ ।
( ଦେଖିଲେ ଦେଖିବ ସଖି—ବୃତ୍ତ )

—୦—

( ରାଗ—ଭରବେଳ । ତାଳ—ଏକତାଳୀ )

ସ୍ୱର୍ଗରେ ସର୍ଜିନ ଭେଳ ମଧ୍ୟରୁ ମୂଳକୁ ।
ସେ ମନୋହର ମୂରତିଶୋଭ ବାଙ୍କଚୂଳକୁ । ପଦ ।
ଭଲେ ଶୋଭେ ଗୋରୋଚନା କସ୍ତୁରୀ ଅଟା ରଚନା
ଦେଖି ଭେକଣ ଅଙ୍ଗନା, ନ ଭେଳବ କୁଳକୁ । ୧ ।
କର୍ଣ୍ଣେ ରତନ କୁଣ୍ଡଳ ଶୋଭା କରେ ଗଣ୍ଡସ୍ଥଳ
ସ୍ୱର୍ଗ । ଅରେ ଝଳମଲ, ନାସା ମୋତି ଫଳକୁ । ୨ ।

ପୃଷ୍ଠଦେଶ ଶୋଭେ ବେଣୀ ଗଳେ ରତ୍ନହାର ପୁଣି
କଟିରେ କ୍ଷୁଦ୍ର କଙ୍କିଣି, ସୁପୀତ ଦୁକୂଳକୁ । ୩ ।
ଶ୍ରୀପଦେ ନୂପୁର ଧ୍ୱନି ନାଦେ ମୋହୁଛି ଅବନୀ
କରେ ମୋହନ ମୁରଲୀ ବଂଶ କି ମଞ୍ଜୁଳକୁ । ୪ ।
ରଙ୍ଗିମା ଅଧରେ ହାସ ବାଙ୍କ ଗୁହାଁଣି ପ୍ରକାଶ
ବୋଲେ ବେଣୁଧର ସେ ତ ଚନ୍ଦ୍ରମା ଗୋକୁଳକୁ । ୩ ।
( ନିରେଖି ଗୁହାଁରେ ସଖି ! ଏ କଦମ୍ବ—ବୃକ୍ଷେ )

—o—

( ରାଗ — ଲଳିତକେଦାର । ତାଳ — ଆଠତାଳୀ )

ଆଗୋ ରାଧେ ! ଗୁହାଁ ।
କି ସୁଷମା ଇନ୍ଦ୍ରନୀଳମଣି ବାହା । ଘୋଷା ।
ରସରାଜ ବେଶ ନଟବର ରଙ୍ଗିମା ଅଧର କି ସୁନ୍ଦର
ଲକ୍ଷ ହେବ କାହିଁ ଲକ୍ଷେ ରତି-ନାହା । ୧ ।
ଲାବଣ୍ୟ ପ୍ରତିମା ଚିତ୍ତଚୋର ଲପନ ଚନ୍ଦ୍ରମା କେତେ ଚୋର
ରମା ଉମା ଯାଚି ନୋହିବେ କି ବାହା ? । ୨ ।
ନାସାପୁଟେ ଗଜ ମୋତିବର ଲଳିତ ନୟନେ ଝୁଲିବାର
ଦେଖି କେଉଁ ସତୀ ନ ଭୁଲିବ ଆହା ! । ୩ ।
ବିଧାତା ବଖାଣି କେତେ କାଳେ ବସି ନିର୍ମାଣିଲା ଶ୍ରମବଳେ
ଅନୁପମ ଶିରୀ ପୂରୁଅଛି ଯାହା । ୪ ।
ବରଜ ସଙ୍ଗାଳି ଶୋଭା ଛବି ନିରନ୍ତରେ ଚିତ୍ତ ଭାବ ଭାବ
ବେଣୁଧର ଅନୁସରେ ଗତି ରାହା । ୫ ।
( ଆଗୋ ଦୂତି ଅନା, କୁଞ୍ଜେ କି ଶୋଭା — ବୃକ୍ଷେ )

( ରାଗ — କଲ୍ୟାଣ । ତାଳ — ଆଠତାଳୀ )

ସେ ମୋହନ ବଂଶୀଧାରୀ, ସଖି ! ପରା ଗୋ ।
ବ୍ରଜ କୁଳବଧୂଙ୍କର ଚିତ୍ତଚୋର ଗୋ । ଘୋଷା ।
ତ୍ରିଭଙ୍ଗି ମୂରତି ହୋଇ ନୀପମୂଳେ ଥାଏ ରହି,
କେତେ ରଙ୍ଗ କରେ ସେହି ନେତ୍ର ଠାର ଗୋ । ୧ ।
ଦେଖିଲେ ତା ଭଙ୍ଗୀମାନ ରହିବ କାହା ଗୁମାନ
ମଦନ ରଜାର ସେତ ଦମ୍ଭହର ଗୋ । ୨ ।

ହର୍ଷିବାକୁ ସନ୍ତାପିତ ଏ ଗୋପେ ହୋଇଛୁ ଜାତ
ଆହା କ ଶୋଭା ଘେନି ତା ବେଶ ଭୋଗ ଗୋ । ୩ ।
କବି ବେଣୁଧର ବୋଲେ ପଢ଼ିଲେ ତା ପ୍ରୀତି ପାଲେ
ଧରନ୍ତି ପାଶକ କେଉଁ ଜବାଧିଗ ଗୋ । ୪ ।
( କେ ମୁରଲୀ ବଜାଉଛୁ ବୃନ୍ଦାବନେ ଗୋ—ବୃତ୍ତେ )

—:*:—

( ରାଗ—ଇମନକଲ୍ୟାଣ । ତାଳ—ଆଠତାଳି )
ଷଟପଦ ନୀଳକେଶୀ ସୁକନକ ଦେହା ରେ ।
ନଟବର ମୁରଳିଙ୍କି ଥରେ ଗୃହା । ଗୃହା ରେ । ଘୋଷା ।
ପଟରେ ଯା ଶବ ଗୁହିଁ ବାଇଆଣୀ ପରି ହୋଇ
ଘଟରୁ ଚେତା ପାଶୋରୁ ଏ ସେ ବଂଶୀ ବାହା କରେ । ୧ ।
ନଟ ଖଞ୍ଜଘଟନେଶି ଯା ମୁରଲୀ ଶୁଣି ଶ୍ରୁତି
ଛୁଟଇ ଦମ୍ଭ ହଜଉ ଏ ସେ ଭଟ-ନାହା ରେ । ୨ ।
ହଟରେ ଯା ନାମ ଗୁଣ ଏକାନ୍ତେ କରି ଶ୍ରବଣ
ଅଟକାଉ ମନ ପ୍ରାଣ ଏ ସେ ଉନୋହଥା ରେ । ୩ ।
ଫଟକ ହାସ ମଞ୍ଜୁଳା ନବ ରସିକା ଛଇଳା
ପଟନାୟକ ଏ ବେଣୁ ଭୋର ଦାସୀ ନୁଆ ରେ । ୪ ।
( ଶ୍ୟାମ ହସ୍ତ ବଂଶୀ ମୋର ହୋଇଲା ସ୍ୱାଧୀନ—ବୃତ୍ତେ )

—:*:—

ରାଗ—କୁମ୍ଭ କେଦାର । ତାଳ—ଆଠତାଳି ଝୁଲା )
ଗୃହାଁ ଗୋ ମନ ପଗଣ ତାଳ (ଗୃହା । ଗୋ )
ଆହା କ ସୁନ୍ଦର ଶ୍ରୀ ବନମାଳୀ । ଘୋଷା ।
ଯାହା ପାଇଁ ପୂଜୁ କୁ କରମାଳୀ ।
ତାହାଙ୍କୁ ଏବେ ଗୋ ନଅ ସମ୍ଭାଳି । ୧ ।
କାହାରେ ବାହୁଛି କରେ ମୁରଲୀ ।
କାହା ଦନ୍ତ-ଦ୍ରୁମ ନ ଯିବ ଟଳି ? । ୨ ।
ନାହା ଭୋଳ ଏ ଯଶୋଦା ସଙ୍ଗାଳି ।
ବାହା କରିବାକୁ ଛନ୍ତି ସେ ଭଳି । ୩ ।
ହା ହା କୃଷ୍ଣ ବୋଲି ଯାଉଛୁ ଭଳି ।
ସହା ତାଙ୍କ ବନୁ ଅଛୁ କ ଆଳି । ୪ ।

ଆହ୍ଲାଦେ କହୁଁ ସଜଣୀ ଛଳି ।
ସାହା ଭୁ ଭ୍ରଷନ୍ତ ଭନୁଦୁଲ୍ଲୀ । ୫ ।
ପାହାନ୍ତ ଅବକାଶ ସେବା ପାଳ ।
ବାହାର ଦାସୀ କବଚନ୍ଦ୍ର ଭଳ । ୬ ।
(ସଖି । ଗୋ ମୋର କୁଞ୍ଜକୁ ଆଜ—ବୃତ୍ତି )

—o—

## ସଖୀ ଉକ୍ତି

( ରାଗ—ମଧୁଶ୍ରୀ । ତାଳ—ଝୁଲ )

ନନ୍ଦସୁତଙ୍କୁ । କ ଅଛୁ ଉପମା ଦେବାକୁ । ଘୋଷା ।
ସଂସାର ସାର ଶିରୀ ଯା ଅଙ୍ଗେ ଅଛୁ ପୂରି
ନନ୍ଦୁଛୁ କୋଟି ମଦନଙ୍କୁ । ୧ ।
ଭଲ ତା ଠିଆ ଠାଣି ପାଷାଣ କରେ ପାଣି
ଦେଖି କେ ରଖିବ ମନକୁ ? । ୨ ।
ମଲ୍ଲି ସେବତୀ ବେଢା ଶିଖୀ ଚନ୍ଦ୍ରିକା ଚୂଡା
ନାଶୁଛୁ ସତୀ ବରତକୁ । ୩ ।
ମୁରଲୀ ଧରି କରେ ଦେଇ ବିମ୍ବ-ଅଧରେ
ମୋହୁଛୁ ତିନ ଭୁବନକୁ । ୪ ।
ଗୁରୁ ଚନ୍ଦନପାଟି ଆହା କି ଚଉପାଟି
ଗୁହଁା ତା ଭ୍ରୂଲତା ନାଟକୁ । ୫ ।
ମିଠ ମଧୁର ହାସ ଚହିଁ ଦେଇ ଭଳାସ
ଶିଖାଏ ପୀରତି ପାଠକୁ । ୬ ।
କହଇ ବେଣୁଧର ଚିନ୍ତା-ସମ୍ପତ୍ତି-ନିକର
ରଖିବ କାହା ଗୁମାନକୁ । ୭ ।
( ଆଜ ତ ବେଶ ବଡ ତୋରବେ ଶ୍ୟାମ ଦୋର—ବୃତ୍ତି )

—o—

( ରାଗ—ଶଙ୍କରାଭରଣ । ତାଳ—ଏକତାଳୀ )

ସେ କାଳିଆକୁ ଗୃହଁା ନା ଲୋ ପରାଣ ମିତ !
(ତୋ) ସ୍ନେହଲତାରେ ଫଳବ ଆଖରକୁ ବମସିତ । ଘୋଷା ।
ସଖି ତୋ କୁଳବରତ ଆଦର ମାନ ମହତ୍ତ୍ୱ
ହଜାଇଦେବୁ ଯାବତ ନ ପାଇବୁ ଲୋଡ଼ିଲେ ତ । ୧ ।

ବେଳହୁଁ କହୁଛୁ ସ୍ୱତ  ତେବେ ନ ବଳାଅ ଚିତ୍ତ
ତା ମୋହନ ବେଣୁ ଗୀତ କରିବ ହତ କାଇ ତ । ୨ ।
ପ୍ରତନା ମଗ ଚରିତ  ନାହିଁ ସଂସାର ଭରି ତ
ଦେଖିଲ ମାନେ ଭରିତ ହରି ନଏ ଚିତ୍ତ ସତ୍ତ । ୩ ।
ବେଣୁଧର ବଉଚିତ  ଏ ଶିକ୍ଷା କାଣି କହିତ—
ନମଣ ଅଣ ହଚତ ବେଳୁଥାଅ ଚରିକ ତ । ୪ ।
( କୁଞ୍ଜବନରେ କାଳିଆ ଦେଖିଚା – ବୃନ୍ଦେ )
[ ଗୀତ – ବସନ୍ତ କେଦାର । ତାଳ -- ଏକତାଳୀ ]

ପ୍ରାଣସଙ୍ଗିନୀ କାଳିଆ କୂଳକୁ ତୁ ସ୍ୱହାଁ ନା ରେ ।
ବନମାଳୀ କାଳିଆ ମାପତରୁ ମୂଳିଆ ସାରିଦେବ ତୋ ଧୃତି ମୋହନା ରେ ।
ଅପବାଦ କଳଙ୍କ –  ଘୋଷଣା ବ୍ରଜଯାକ
ତାର ତୋର ନାଆଁରେ ନଜାଣୁ କରେ ଠିକ,
ତ ବର୍ତ୍ତୁଳ ଆନନା –  ମାନ କଥା ପଦକ
ବ୍ରଜକୁଳ କାମିନୀ ପ୍ରଧାନା ରେ । ୧ ।
ହେନେ ଶ୍ୟାମ ସ୍ନେହରେ –  ଗଢ଼ ଗଲୁ ମୋହରେ
ବିବେକ ହଜାଇ ତୁ ଚକ୍ଷୁପୂର୍ଣ୍ଣ ଲୁହରେ;
ଘାରି ହୋଇଲୁ ବାଳା  କେବଳ ଅଦେହରେ
ମନେ ନାହିଁକ ଗଜଗମନାରେ । ୨ ।
ଭୂତ ନବଜଶୋଷ  ନପାରୁ ଧୈର୍ଯ୍ୟ ଧରି
ପୁଣି ରୂପ ତାହାର ଦେଖିବା ପାଇଁ ଝରି –
ହେଉ ରଜନୀ ହନ  ଏକ ସ୍ୱିତ ତୋହରି
କହ ମୋ ଲୁନ-କଳହଂସନା ରେ । ୩ ।
ସଖୀଙ୍କର ମେଳରେ  ଗୁଲ ଗୁଲ ସଧୀରେ
ନ ହୁଅ ଜାନହର ଏ ଯମୁନା ପଥରେ,
ଆରେ ଜୀବ ଜୀବନ  ମୋ ବେଲ ଘେନ ବାରେ
ବେଣୁଧର କି ତୋର ଅଧୀନାରେ । ୪
[ ପ୍ରାଣ ସଜନୀ ପବନ ହେଲ ନେଇ – ବୃନ୍ଦେ ]

—୦—

[ ରାଗ—ସାବେରୀ ତାଳ—ଏକତାଳୀ ]

ତୁ, ବୃନ୍ଦାବନ ଲୋ ସନ୍ଧ ! କଳାରୂପକୁ ।
ସେ ମଦନସଗ ବଟଭୂପକୁ । ଘୋଷା ।

ଅନୁଭବ ନାହିଁ ଯେବେ କାଳେ    ଚାଣି ଯେନପିବ କୁଞ୍ଜମାଳେ
ଅଛି ପରମାଦ    ତା ମୁରଲୀ ନାଦ
ଦେଖୁ ଦେଖୁ ସନ୍ତାପ୍ତ ଚାଳେ, ତୁ ବୃନ୍ଦାବନା ଲୋ । ୧ ।

ତା ସିତ ଗତି ତୁ ନାହିଁ ଜାଣି    କରଦେବ ଘର ବାଇଆଣୀ
ମୋହିନୀ ମନ୍ତ୍ରର    କୁହୁକ ଯନ୍ତ୍ରର,
ଜାଣେ ସେ ନବଲାବଣ୍ୟ ଠାଣି, ତୁ ବୃନ୍ଦାବନା ଲୋ । ୨ ।

ସହଜେ ଅବଳା ରସନଧି    ଘୁଞ୍ଚନାହିଁ ଚୋର ପିଲ୍ଲ ବୁଦ୍ଧି
ଚନ୍ଦ୍ରର କଳଙ୍କ    କାଳ ଯୁଗପାକ
ତା ପ୍ରେମନଶା ଗୃଢିବୁ ଯଦି, ତୁ ବୃନ୍ଦାବନା ଲୋ । ୩ ।

ଶୁଣିଛୁନା ଚନ୍ଦ୍ରାବଳୀ କଥା    ଦାଣ୍ଡେ ଟେକ ପାରୁନାହିଁ ମଥା
କଏ କେତେ ଜାତି    ତଗ ମେଲୁଥାନ୍ତି
ବେଣୁଧର ବୋଲେ ନୁହେଁ ମିଥ୍ୟା, ତୁ ବୃନ୍ଦାବନା ଲୋ । ୪ ।

[ ମୁଁ କ ଶୁଣିଲ ଆଜ ନୂଆକର—ବୃତ୍ତି )

—୦—

[ ରାଗ – ପୂରବ । ତାଳ – ଏକତାଳୀ ]

ବୃନ୍ଦାବନ ଗୃହବାନା ଧନ ସେ କାଳିଆ ଠାଣିକ ରେ ।
ସୁବର୍ଣ୍ଣ ଜୀବନ ଯେନା ବଙ୍କାବଂଶୀ-ପାଣିକ ରେ । ପଦ ।

ଜାଣେ ସେ ମୋହିନୀ ଲଗା    ଲମ୍ପଟିଆ ଘାଟଜଗା
ବେଳ ଦେଖି ଦେବ ଦଗା ନ ରଖିବ ଆଣିକ ରେ । ୧ ।

ରସିକାମଣି ଶ୍ରୀମନ୍ତ    କଷି ନାହିଁ ତାର ମନ୍ତ
ବୁଝି ଚଳୁ ଥୋକେ ସମ ନ ଆସନ୍ତ ପାଣିକ ରେ । ୨ ।

ତୁ ତ ନୂତନା ଛଇଳ    ପିଲ୍ଲବୁଦ୍ଧି ନାହିଁ ଟଳ
ତା ରୂପରେ ନ ଯା ଭଳ, ଯେନ କୁହା ବାଣୀକ ରେ । ୩ ।

ଗୋବର୍ଦ୍ଧନ ମଲ୍ଲନାଗ    ତା ଠାରେ ଶରଧା କର
ବେଳକୁ ସେ ଯାହା ହେଲ ନାହୁ କ ତା ଜାଣିକ ରେ । ୪ ।

କବଚନ୍ଦ୍ର ବୋଲେ ଶୁଣ ଶିଖଣ୍ଡଚୂଳଆ ଗୁଣ
ଏବା ଦେଖି କୁଞ୍ଜ ବନେ ନଏ ପଗ ଟାଣିକ ରେ । ୫ ।
[ କାହା ମନେ ଥିଲ ବନ୍ଧୁ ଏହା କ ସେ—ବୃତ୍ତେ ]

—o—

( ରାଗ—ଏକତାଳ । ତାଳ—କେଦାର )
କାଳିଆକୁ ଗୃହଁନା ଲୋ କହୁଛୁ ତୋ ସ୍ୱଭୁଟି ।
ଝଟକ ମାବକେ କଣି ନେବେ ତୋର ଚାଉଁଟି । ଘୋଷା ।
ଉଚାଟ ମନ୍ତ୍ରର କର ଧଇର୍ଯ୍ୟ ମହତ୍ତ୍ୱ ସାର
ବାଇକର ଦେବଟି ଲୋ, ମୋ ପରାଣ ମିଛୁଟି । ୧ ।
ଦୂରୁ ମୁଁ କରୁଛୁ ମନା ତେଣିକ ମନ ଦଅନା
ଗ୍ଭେରାଇ ନେବଟି ତୋର, ଏ ଗୁମାନ ବଡ଼ୁଟି । ୨ ।
ତା ଫାନ୍ଦରେ ଗଲେ ପଡ଼ି ଅପବାଦେ ଯିବୁ ସଡ଼ି
ଗୁରୁଜନଙ୍କ ମୁଖରୁ, ପାଇବୁ ଫଜଭୁଟି । ୩ ।
ଏ ଦାମର ବେଣୁଧର ବଦନ୍ତ ସଖି ଉତ୍ତର
ଭୁଲ ଯିବ ନକେ ଶୁଣି, ତା ମୁରଲୀ ଗୀତୁଟି । ୪ ।
(ମନାଇ ପାରିଲୁ ନାହିଁ—ବୃତ୍ତ )

—o—

## ସଖି ଉକ୍ତି

( ରାଗ—ଚୋଡ଼ ପରଜ ; ତାଳ—ଏକତାଳୀ )
ଶ୍ୟାମ ପ୍ରୀତି ଘରବୁଡ଼ା ରେ ସଙ୍ଗାତ ଶ୍ୟାମ ପ୍ରୀତି ଘର ବୁଡ଼ା ।
ମାପମୂଳେ ରହି ମୁରଲୀ ବଜାଏ ଜାତିକୁଳ, ଗୋଷଛଡ଼ା ରେ । ପଦ ।
ତା ଯେଉଁ ଗୃହାଣି, ପୁଣି ଠିଆଠାଣି ଯୁବତୀ ଜ୍ଞାନ ଘଜଡ଼ା ରେ ।
ପତିବ୍ରତା ହେଲେ କେ ନ ଭୁଲିବ କ ଦେଖି ତା ଛବ ମଉଡ଼ା ରେ ।୧।
ମଲ୍ଲୀମାଳେ ବେଢ଼ା ସେବତୀ ପାଖୁଡ଼ା କେତକୀ ଦଳେ ସଜଡା ରେ ।
ଶିଖି ପୁଚ୍ଛ ଗୁଚ୍ଛ ଜ୍ଞାନକରେ ଭୁଞ୍ଜ ସେ ଯେଉଁ ଚନ୍ଦ୍ରିକା ଚୂଡ଼ା ରେ । ୨ ।
ପ୍ରୀତିପଟଙ୍କ ଲକ୍ଷି ଯିବୁ ଚନ୍ଦ୍ରମୁଖି ପଦ ତେଣିକି ନ ବଢ଼ାରେ ।
ଅପବାଦ ଜଳେ ଭସାଇ ଦେବାକୁ ତା ନେହ ପ୍ରେମ ଲହଡ଼ା ରେ ।୩।
ନେବ ଦୁରୁମତ ସାରବ ମତତ ଗ୍ଭଲ ଗ୍ଭଲ ନୂଦ ଛୁଡ଼ାଇବ ।
ବୋଲେ ବେଣୁଧର ସେ ଶ୍ୟାମ ନାଗର ଅଟନ୍ତି କେତେ ଲେଉଡ଼ାରେ ।୪।
( ଚଳିଣିତ ଗଳ୍ପ କଥା—ବୃତ୍ତେ)

—*—

# ପୂର୍ବରାଗ

## ( ରାଧାଉକ୍ତି )

( ରାଗ—କାମୋଦୀ । ତାଳ—ଏକତାଳୀ )

ଲଳିତ ନଟବର ମୂର୍ତ୍ତିକିରେ ।
ଦେଖି ହଜାଇ ଦେଲି ଧୃତିକି ରେ ।
କି ଶୋଭା କୋଟିସ୍ମର ଗର୍ବ ହରା ଶରୀର,
ଉଜାଡ଼ିଦେବ ସତୀ ବୃତ୍ତିକି ରେ । ପଦ ।
ଲପନେ ସ୍ମିତ ହାସ ଜୋଛଣା ସୁଧା ପ୍ରକାଶ
ନେତ୍ରାନ୍ତ ଖେଳା ନେବ ଜାତିକି ରେ ।
ହେଉ ପଛକେ ପତି— ବରଜୁ କୁଳବଧୂ
ତା ପ୍ରେମେ ନ ଯିବ କେ ମାତିକି ରେ ? । ୧ ।
ଗେଲବସର ଗୁଳି କି ରଙ୍ଗେ ଝୁଲି ଝୁଲି
ଆସନ୍ତି ଫୁଲାଇଣ ମତିକି ରେ ।
ଉପମା ସୃଷ୍ଟି ସାର ଏ ସଂସାର ବାହାର
ବାସବ ନୀଳମଣି ଦ୍ୟୁତିକି ରେ । ୨ ।
ଭ୍ରୂଲତା ଭଙ୍ଗୀ ଛଟା ଗ୍ରହିଁ କେ ସୁନ୍ଦରଘଟା
ନ ଦଉଡ଼ିବ ତାଙ୍କ କତିକି ରେ ।
ସ୍ୱପନେ ହେଲେ ସେହି ରୂପ ନ ଦେଖି କେହି
ନାଶ ପାଇବ କାହିଁ ବର୍ତ୍ତିକି ରେ । ୩ ।
ନ ନେଉଡ଼ିବ କେ ଶ୍ୟାମ ବାହୁ ଭଡ଼ା କରମ
ବାତୁଳ ହୋଇ ଧନ ରାତିକି ରେ ।
କହଇ ବେଣୁଧର ମିଛ ନୁହେ ଏ ଗିର
ତାଙ୍କ ବିନା ଅଛୁ କି ଗତି କି ରେ ? । ୪ ।
( ଦେଖିଲେ କାହ୍ନୁ ମନ ଭ ଯିବ ଗୋ—ବୁଝେ )

— ❁❁❁ —

( ରାଗ—ତୋଡ଼ି ପରଜ । ତାଳ—ଝିପୂଠା )

ଜକ ଜକ ନୀଳତନୁ ନାଚିଲେ ନେତ୍ରପଥରେ ।
ଜାମୁଡାଳିଆ କାଳିଆ ବାଇ କଲେ ନିରନ୍ତରେ । ଘୋଷା ।
ଜଗନ୍ମୋହିନିଆ ହରି ଯମୁନା ତଟ ବିହାରୀ
ଜଳାଞ୍ଜଳି ଦିଆଇଲେ କୂଳେ ମୋହିନୀ ମନ୍ତ୍ରରେ । ୧ ।

ଜରଗ୍ର ଜଟିଳା ବାଣୀ କୁଟିଳା କଟୁ କାହାଣୀ
ଜାଣ ମୁଁ ଶୁଣି ନ ଶୁଣି ଯେ ନାମ ଜପେ ଅନ୍ତରେ । ୨ ।
ଜହର ସମ ଯୁଗତେ ଅଶନ ବସନ ମୋତେ
ଜଞ୍ଜାଳଆ ଶ୍ୟାମ ବିନେ ଯନ୍ତ୍ରଣା ଲଭେ ଚିତ୍ତରେ । ୩ ।
ଜୀବ ଗଲେ ଯିବ ଚିନ୍ତା ପ୍ରାଣେ ଥିବା ଯାକ କନ୍ଥା
ଜଡ଼ ରହିଥାନ୍ତୁ ହୃଦେ ବୋଲି ଓଷା ବ୍ରତ କରେ । ୪ ।
ଜୀବକା ସେ ତ ମୋହର ଯେ ଯାହା ବୋଲୁ ଏଥର
ଜଳଜ ପଦେ ତାଙ୍କର ଶରଣ ମୁଁ ସତ୍ୟରେ । ୫ ।
ଜଳଧି ଏଥା ଶ୍ରୀମତ୍ତ ସଜଣୀ ଶିକ୍ଷା ଭରତ୍ତ
ଜନେ ହସିବେ ଦାହାଙ୍କ ? ବେଣୁଧର ଜଣାକରେ । ୬ ।
( ଦେଖିଲେ ଦେଖିଲୁ ପର – ବୃତ୍ତି )

—o—

( ରାଗ—କରବାଣୀ । ତାଳ—ଏକତାଳୀ )
କ ଦେଖିଲ ସଖି ନୀପମୂଳେ ରେ ( ମୁଁ ) ।
କମଳଜ ବନ୍ଧୁ ଧୂତା କୂଳେ ରେ ( ମୁଁ )
ନବୀନ ନୀରଦ ବରନ ମୋହନ
ମରକତ ନାଗଲେ ବେକ ଡୋଳେ ରେ ( ମୁଁ ) । ଘୋଷା ।
ନଟବର ବେଶ ହୋଇ କରି ତ୍ରିଭଙ୍ଗି ଠାଣିରେ ସେ କପଟ
ଅଧରେ ମୁରଲୀ ଦେଇ ଉଦ୍ଧେ ହୋଇ
ଥିଲେ ବ୍ରଜରାଜ ପୁର ଶୀସ ରେ [ ମୁଁ ] । ୧ ।
ଦୁହୁ ଭୁରୁଭଙ୍ଗୀ କାମଚୁରୀ ଉଞ୍ଚାଇ ମରମେ ଦେଲେ ମାରି
କଟାକ୍ଷ ନେହାନ୍ତ ଭିଷ୍ମୁନା କୁନ୍ତ
ପ୍ରହାରେ ମୋ ଜ୍ଞାନ ଦେଲେ ସାରି ରେ [ ମୁଁ ] । ୨ ।
ସେ ନଟକୁଟିଆ ନୀଳମଣି କ ମନ୍ତ୍ର ରଚନା କଲେ ପୁଣି
କ କରିବ ବୋଲି ବୁଦ୍ଧି ନ ବଳିଲି
ନ ଚଳିଲା ମୋର ପାଦ ପାଣି ରେ [ ମୁଁ ] । ୩ ।
ଆସି କଳାକାହ୍ନୁ ମୋର ପାଶ ବଦନପ୍ରେ ଧରି ବାସଶେଷ
ମଧୁର ବଚନେ ଶବ୍ଦୁକେ ଶ୍ରୀକରି
ଲବେଣୀ ମୋ ଚିତ୍ତ କଲେ ବଶ ରେ [ ମୁଁ ] । ୪ ।

ରଣପୁର ମଣ୍ଡଳାଧିପତି    ବୋଲନ୍ତ ସେ ଭୂପ ଶନ୍ତ ଶନ୍ତ
ତା ନିଭଙ୍ଗଠାଣି    କୁଟିଳ ବୁହାଣୀ
ମନହ୍ରୁ ପିବ କ ଦବା ଗତି ରେ [ ମୁଁ ] । ୫ ।
( କ ଶୁଣିଲ ଆଜ ନୂଆ କର—ବୁଝେ )

—o—

( ରାଗ—ଡିପା । ତାଳ—ଖେମଟା )
କ ଦେଖିଲ ଆଜ ମିତଣି ! ଯମୁନା କୂଳେ । ଘୋଷା ।
ନିଭଙ୍ଗ ମୂରତି ହୋଇ    ମାପମୂଳେ ଥିଲେ ରହି,
ଥରେ ମାତ୍ର ଦେଲ ଦୃଷ୍ଟି ସେ ରୂପ ଡୋଳେ ।୧।
ରବି ପୂଜ ଯାଇଥିଲି    ଛବି ଦେଖି ଭୁବଗଲି,
ଲାଜ ଭୟ ନ ରଖିଲା ମଦନ ଖେଳେ । ୨ ।
ଆହା ସେ ନବ ମାରଦ—    ବରନ ନେତ୍ର ସମ୍ପଦ,
ତା ଚରଣ କୋକାନଦ ସେବକ ହେଲେ । ୩ ।
ଗୀତେ ବେଣୁଧର ଭଣି    ସେ ମୋହନ ବେଣୁପାଣି,
ମନୁ ଯିବ କ ମିତଣି ! ପରାଣ ଥିଲେ । ୪ ।
( ସ୍ଥିତ ମୋତେ ବାଟ ମୋହନ—ବୁଝେ )

—o—

ରାଗ—ତୋଡ଼ିପରଜ । ତାଳ ଏକତାଳୀ )
କ ଶୋଭା ଦେଖିଲ ଆଜରେ ସଙ୍ଗିନ !
କ ଶୋଭା ଦେଖିଲ ଆଜ ।
କଳା କଞ୍ଜକଣା ଅଞ୍ଜନ ମର୍କତ ପୁମାନେନ୍ଦ୍ର ମଣି ତେଜ ଘୋଷା ।
କୋଟି ସୃଷ୍ଟି ସାର ଲାବଣ୍ୟ-ସାଗର ମନ-ଧନ ଚୋର ସେତ ।
ପୀୟୁଷାନନ୍ଦ ଆହ୍ଲାଦ ମାଦକ ଶୃଙ୍ଗାରମୟ ସାକ୍ଷାତ । ୧ ।
କେଉଁ ଗ୍ରମେ ବିଧି ଗଢ଼ିଅଛି ସେହି ବଟିକ ପ୍ରୀତି ପ୍ରତିମା ।
ମୋହନ ମନ୍ତ୍ରେ ଜୀବନ୍ୟାସ କରଣ ଖଞ୍ଜିଲ୍ ବୃନ୍ଦ ଭଙ୍ଗିମା । ୨ ।
ସଖୀ ଘନବୃତ୍ତା ତାର ଶିଖଚୂଡ଼ା ବନଫୁଲ ମାଳେ ବେଢା ।
ଚନ୍ଦ୍ରି ଗୁଣି ଗୁଞ୍ଜ ଗୁଞ୍ଜାବଳୀ ଖଞ୍ଜା ନାଗ ଧଇର୍ଯ୍ୟ ଜଜୁଡ଼ା । ୩ ।
ମନୋହର ନଟବର ବେଶକୁ ଗୋ ନିଭଙ୍ଗିମା ଠାଣି ତାର ।
ମଧୁର ଅଧରେ ମୃଦୁ ମୃଦୁ ସ୍ୱରେ ସଙ୍ଗୀତ ଉଚ୍ଚାରେ ବାର । ୪ ।

ସରୁକଟିକି ତା ପାଦ ଛନ୍ଦା ଢଙ୍ଗ ବେନକର ଆଡ଼ ବଙ୍କା
ବାଙ୍କ ଚାହାଁଣିରେ ଧୃତିକି ହାଣଇଁ ସେ ନବ ଯୁବତୀରଙ୍କା । ୫ ।
ମୋହନ ବଂଶୀରେ ରାଧାନାମ ଘୋଷି ଗାଉଅଛ କେଉଁ ସୁଖ ।
ବେଣୁଧର ବୋଲେ ସେ ଯୁଗଳ ପଦ ସେବ ସବୁ ଯିବ ଦୁଃଖ । ୬ ।
( ଗରଜ ମରୁଛୁ କେତେ ରେ ମାରଦ—ବୃନ୍ଦେ )

—o—

[ ରାଗ—ଖଣ୍ଡକାମୋଦୀ । ତାଳ—ଆଠତାଳୀ ]

ସଜନି ! ମୁଁ କି ଦେଖିଲି ଆଜ ରେ ।
ନୀପମୂଳେ ଛବି ନାଗର-ରାଜ ରେ । ଘୋଷା ।
ଆହା କି ଶୋଭା ତା ମୋହନ ଛବି ।
ସେତିକି ବେଳୁଁ ମୋ ନେତ୍ରେ ନାଚଇ ରେ । ୧ ।
ହେଳି ବୋଲି ଛନ୍ଦା ପଦେ ସେବକା ।
ଲାଜ ମହତକୁ ଦେଲିଣି ଭକ ଠେ । ୨ ।
ନ ରହିବ ଘଟେ ଜାତି ପାଟକେ ।
ଯେ ଯାହା ବୋଲୁ ଏ ଗୋପ-କଟକେ ରେ । ୩ ।
ବୋଲଇବି ଶ୍ୟାମବନ୍ଧୁ କଳଙ୍କୀ ।
ମାଗୁଛି ଦଶନେ ତିରଣ ଧରି ରେ । ୪ ।
ବୋଲେ ବେଣୁଧର ଆଗୋ ଶ୍ରୀମତି !
ଭଲ ବାଇ କଲେ ସେ ନୀଳହାତି ରେ । ୫ ।
( ମୁରଲୀ, ତୋହର ଶରଣ ଗଲି—ବୃନ୍ଦେ )

—o—

( ରାଗ—କାମୋଦୀ । ତାଳ—ଏକତାଳୀ )

ଦେଖିଲି ଆଜ ବେଣୁ ପାଣିକି ଗୋ ।
ନବୀନ ନଟବର ଠାଣିକି ଗୋ ।
ନୀଳେନ୍ଦ୍ରମଣି ଆଭା କୋଟି କନ୍ଦର୍ପ ପ୍ରଭା,
ସେ ଭ୍ରୁରୁ ବଙ୍କିମା ଚାହାଁଣିକି । ଘୋଷା ।
ଶିଖିଚନ୍ଦ୍ରିକ ଚୂଳେ ବେଢ଼ା-କେତକୀ-ଦଳେ,
ଆହା କି ଶୋଭା ଚିନ୍ତାମଣିକି ଗୋ ।
ତା ଭାଲ ଗୋରଚନା ବୁଡ଼ାଇଲା ଚେତନା,
ରଖି ପାରିଲି ନାହିଁ ଆଣିକି ଗୋ । ୧ ।

ଗାଲ ଅଳକାବଳୀ ଝ ଅବା ଶିଶୁ ଅଳି;
ଶୋଭଇ ଝୁଲି ଏଣି ତେଣିକ ଗୋ ।
କାମମୋହନ ମୂର୍ତ୍ତି ଲଖିବ କାହା ଧୃତି, ?
ଶୁଣାଇଁ ତା ମୂରଲୀ ବାଣୀକ ଗୋ । ୨ ।
ନାସାପୃଷ୍ଠରେ ମଣି— ଦୋହଲିବାର ଠାଣି,
ମନ୍ଦ ହାସରେ ନଏ କଣିକ ଗୋ ।
ଦେଖିଲେ କୁଳବରଣ୍ଣ ତା ଫାନ୍ଦରୁ ବରନ୍ତି—
ଯିବ କେ କହ ସଖି ! କେଣିକ ଗୋ । ୩ ।
କାହ୍ନୁଁ କ ମନ୍ଦ ସନ୍ଧ ଜାଣିଛୁ ପ୍ରିୟସନ୍ଧି !
କ ନ କରିବ ପୁବାଶ୍ରେଣୀକ ଗୋ
ଏ ବେଣୁଧର ଭାଷେ ଦାସୀ କରଣ ପାଶେ,
ରହନ୍ତୁ ମସ୍ତକେ ସେ ଏଣିକ ଗୋ । ୪।
( ସେକାଳି ଆମ୍ଭେ ଯେତେ କଲ୍ଲୁ ଗୋ—ବୃତ୍ତ )

—✻—

( ରାଗ—ଖଣ୍ଡକାମୋଦୀ । ତାଳ—ଆଠତାଳୀ )
ସଙ୍ଗାତ ! ତାଙ୍କୁ ଦେଖିଲି ଡୋଳେ ରେ ।
ଛଳେ କରିଥିଲେ କଦମ୍ବମୂଳେ ରେ । ଘୋଷା ।
ନଟବର ବେଶ କେଡେ ସୁନ୍ଦରେ ।
ଲଷ୍ଟ ଗଲା ଆଖି ସେ ବାଙ୍କଚୂଳେ ରେ । ୧ ।
ତ୍ରିଭଙ୍ଗି ଛବିଟି ଦେଖିଲେ ବେଳେ ।
ରହିବେ ନାହିଁ କ ସତୀ ଗୋକୁଳେ ଲୋ । ୨ ।
କ ମୋହନୀ ଅଛି ତା ନେତ୍ରାଞ୍ଚଳେ ।
ଝଲକ ପଡନ୍ତେ ପଡ ନ ଟଳେ ରେ । ୩ ।
ନ ରହିବ ପଛେ ମୁଁ ଜାତିକୁଳେ ।
ଶରଣ ନେବ ସେ ଚରଣ ତଳେ ରେ । ୪ ।
ବେଣୁଧର ବୋଲେ ସଙ୍ଗିନୀ ଛଳେ ।
ଘର କଲେ ବନ୍ଧୁ ହୃଦ-କମଳେ ରେ । ୫ ।
( ମୁରଲୀ, ତୋରେ ଶରଣ ଗଲି—ବୃତ୍ତ )

—✻—

( ରାଗ— ପରଜ । ତାଳ—ଝମ୍ପା )

ଖରବେଳେ ସହି ! ଗଲି ମାତପାଇଁ ଏକା ହୋଇ ଯମୁନାକୁ ।
ଖଣ୍ଡେଦୂରୁ ଗୁହିଁ ବଅଲେ କହ୍ନାଇ ଘନ କାଳିଆ ସ୍ୱନାକୁ ଲୋ ମିତ !
ଖରେ ବଜାଇଲେ ତତ୍ତ୍ୱ ବତ୍ତ ଲୋ । ଖଣ୍ଡିବଟି କେ କମ୍ପ ଲଗିବ ଲୋ । ୧ ।
ଖସି ପଡ଼ିଲା ମୋ କକ୍ଷରୁ ମାଠିଆ ଭାଙ୍ଗି ହୋଇଗଲା ଚୂନା ।
ଖେଦ ମନେ ଚହୁଁ ପଛୁର ଗୁଳେନ୍ତ କ ହେଲା ତୁ ଜାଣିଛୁନା ? ଲୋ ମିତ !
କ୍ଷୀଣକଟିଆ ସେ ଗାଇ ଗୀତ ଲୋ । ପଥ ଓଗାଳୁ ହେଲି ଚକିତ ଲୋ । ୨ ।
ଖିଆଲିଆ ହୋଇ ଲାଗିଲେ ମୋ ଭୁଲେ ମାଗିଲେ ଅପୂର୍ବ କଥା ।
ଖସିବା ଓଢ଼ଣା ଶିରେ ଟାଣି ଧୀରେ ଚଳକୁ ପୋଛିଲା ମଥା, ଲୋ ମିତ ।
କ୍ଷୁଦ୍ର ଘଣ୍ଟିଆଙ୍କର ଚରିତ ଲୋ । ଦେବ ପୋଥିଏ ପାଠ କରିତ ଲୋ ।୩।
ଖଞ୍ଜାଇ ବନସ୍ତୁ ବାଣୀ ପଦ କେତେ କହିଲେ ନ ଯାଏ ମନୁ ।
ଖୁଣ୍ଟା ରହିବ ମୋ କୁଳେଟି ଗୋକୁଳେ ବୋଲି ଶୁଣିଲେ ବଦନୁ ଲୋ ମିତ !
ଖ୍ୟାତ ନୋହୁ ଏହା ଡରକଲ ଲୋ । ଚଳିଗଲେ ସେ ଧୀରଲଳିତ ଲୋ ।୪
ଖଣ୍ଡଖଣ୍ଡ ହୋଇଯାଏ ମୋ ହୃଦୟ ଭାବ ବସିଲେ ସେମାନ ।
ଖଳ ବନ୍ଧୁ ଯାହା କପାଳେ ଲେଖିଛି ହୋଇବ କି ତାହା ଆନ ଲୋ ମିତ ।
ଖାଲି ଘାଣ୍ଟି ହୋଇ ଯିବେଳି ତ ଲୋ । ବେଣୁଧର ବୋଲେ ଏ ଟି ଖ୍ୱାତ ଲୋ ।୫

( କଣୋଗ ବଧୂରେ ଦୂତିକା ବଧୂରେ—ଭୂଷଣ )

— ❋ —

## ସଖୀପ୍ରତି ଶ୍ରୀରାଧା

(ରାଗ -- ଖଣ୍ଡକେଦାର । ତାଳ—ଏକତାଳୀ)

ସତେ କି ଭଙ୍ଗୀ କଲା, ସେ ଯା କାଳେ ଗୁହିଁଲା ।
ମନ ମୋହନିଆଁ ନବଘନ ଛଇଳା । ପଦ ।

କି କହିବି ମିତଣି ଗଲି ମୁଁ ପାଣି ଆଣି
ସେ ଶ୍ୟାମ ବେଣୁପାଣି ହୋଇ ନିଭଙ୍ଗି ଠାଣି,
ତା କଟାକ୍ଷ ଚାହାଁଣି, କାମ କଣ୍ଟକ ଆଣି, ମର୍ମେ ମାରିଲା । ୧ ।
ସେ କେଡ଼େ କଉତୁକ ଅଟନ୍ତି ନରେ ସଖି,
ଇଚ୍ଛାରେ ତାଙ୍କୁ ଟିକେ ? ଚଉକୁ ଦେଲି ଚକ,
ବାଙ୍କ ଚୂଳକୁ ଦେଖି, ଏ ମୋର ବେନି ଆଖି, ଲାଖି ରହିଲା । ୨ ।

ମୋ ନାମ ଧରି ହରି ବାଇ ହେଲେ ବାଂଶରୀ,
ଦମ୍ଭ ଧଇର୍ଯ୍ୟ ସାରି ବସିଲେ ସହଚରି !
ପାମର ହରି ଅରି, ତାପ ରେ ହେଲି ଝାରି, କି ମନ୍ତ୍ର କଲା । ୩ ।
ଆହା ସେ ଶ୍ୟାମମୂର୍ତ୍ତି ଦେଖି କେଉଁ ଯୁବତୀ,
ହେଲେ ପତିବରତି ନ ଭୁଲିବ କି ଦୁତି, ?
ବେଣୁଧର ବଦତି, ସେ ମୋହନ ମୁରତି, ମୂର୍ଚ୍ଛି ନୋହିଲା । ୪ ।
( ମିଡ଼ ଗୁହଁା ଏ ପଗ—ବୃତ୍ତେ )

—❋—

(ରାଗ—ପଟ୍ଟମଞ୍ଜରୀ । ତାଳ—ଯତିପଟ)
କି ମୋହନ ମୂରତିଟି ଯେ ନନ୍ଦର ବଳା ଗୋ ।
ନାସିଭୂଲ ମନ୍ମଥକୁ କଏ ହେଲା ଗୋ । ଘୋଷା ।
ମନ୍ଦ ମନ୍ଦ ହାସ ତାର ନାସାଚୁଡ଼ା ଫୁଲ ଗୋ ।
ଭ୍ରୁରୁ ଚଳାଇବା ଭଙ୍ଗି ନେତ୍ର ଢ଼ୋଳା ଖେଳା ଗୋ । ୧ ।
ସିନ୍ଦୂରାଧରେ ମୁରଲୀଟି ବାଜୁଅଛି ଭଲ ଗୋ ।
ନବଘନ ଜିଣି କାନ୍ତି ସୁଚିକ୍କଣ କଳା ଗୋ । ୨ ।
ବୋଲେ ବେଣୁଧର ସେହି ଲାବଣ୍ୟ ପିଣ୍ଡୁଳା ଗୋ ।
ବ୍ରଜବଧୂ ଶତସୁଖ ସାଗରକୁ ଢେଲା ଗୋ । ୩ ।
( ମୋହନ ମୁରଲୀସ୍ୱନ ଶୁଣି ହେଲି ବାଇ ଗୋ—ବୃତ୍ତେ )

— ୦—

( ରାଗ—ମଙ୍ଗଳ କାମୋଦ । ତାଳ—ଏକତାଳୀ )
ଛନ ହେଲି ସଖି ! ଶ୍ୟାମ ଛବି ଦେଖି ଗୁପ୍ତ ତୁ ତା କଥା କହନା ଲୋ ।
ଛେଦିଦେଲା ସେ ମୋ ଧଇର୍ଯ୍ୟ ତରୁକୁ ତୁ ପୁଣି ତାହାକୁ ଦହନା ଲୋ ।ଘୋଷା
ଛେଳପରି ପଶିଆ ନ ଜାଣୁ କି ଭାରି ଛଇଲ-ନାଗର ଯାହା ନା ଲୋ ।
ଛନ୍ଦ ମନ୍ଦ ବାଣୀ ନନ୍ଦ ନନ୍ଦନର ଫାନ୍ଦରେ ତାହାର ପକାନା ଲୋ । ୧ ।
ଛେଲପରି ଲାଗେ ତା ଗେଲ ବଚନ ମୋତେ ତୁ ଏଥି ଅଟକା ନା ଲୋ ।
ଛପି ରହିଅଛି ଏହି ନିକୁଞ୍ଜରେ ଗୁଲ ଗୁଲ ଦଣ୍ଡେ ରହନା ଲୋ । ୨ ।
ଛୁଟି ନେବ ନେତ୍ର-ବଡ଼ଶୀ ମୂନରେ ହୃଦରୁ ନିଷ୍ଟୁସ୍ତ ଚେତନା ଲୋ ।
ଛୁରି ମାରି ମରମରେ ଯାହା କରେବଂଶୀରେ ଡ଼ାକିଲେ ମୋହନ ଲୋ।୩।
ଛୁଇଁଦେବ ଯେବେ ରହିବ କି ଦମ୍ଭ ବଡ଼ାଇ ଗୁମାନ କେତେକ ଲୋ ?
ଛଅ ପଦ-ପୂର୍ବୀ ଶ୍ରୀମତୀ ଦୁତୀକି କହେ ବେଣୁଧର ଭାବନା ଲୋ । ୪ ।
( ମନାକଲେ ଯେତେ ଭୁଲିବ କି ଚିତେ ସେ ନନ୍ଦନନ୍ଦନ—ବୃତ୍ତେ)

—❋—

( ରାଗ—କେଦାରଗଉଡ଼ା । ତାଳ—ଆଠତାଳୀ )

ଦେଖିଲେ କାହିଁକି ? ଜଳମାଝେ ସଖି !
ନ ଦେଖିଲେ ଝୁରି ମରୁଥାଇ ।
କି ମନ୍ତ୍ର କରଛି କି ଯନ୍ତ୍ର କରିଛି ?
ସେ କାଳିଆ ନନ୍ଦର କହ୍ନାଇଁ । ଘୋଷା ।
ଯମୁନା ପାଣିକି ମନା ହେଲା ମୋତେ,
ଟିକିଏ ତାଙ୍କୁ ଦେଖିବାରୁ ସହି ।
ଫଟା କପାଳରେ ଏହା ଲେଖା ଥିଲା,
କେ କେବେ ଯମୁନା ଯାଉନାହିଁ । ୧ ।
ଘାଟକ କୂଳରେ— ହାଟ ବସିଅଛି,
କଳଙ୍କିନୀ ହେଲା ବୋଲି ଗୋପୀ ।
କୁଳବଧୂ ହୋଇ କେ ଘରେ ବସିଛି,
ବଂଶୀସ୍ୱନେ କେ ନୋହିଛି ବାଇ ? । ୨ ।
ସବୁ ସବୁ ଗୁଣ— ପଥର କଳଣି
କହିଲେ କେ ଦୁଃଖ ନେବ ସହି ?
ଇଛିଅଛି ସିନା କରମ ଆଦର
ଅଛି ଗରଳ ବଅଛି ଖାଇ । ୩ ।
ସଂସାର ଯାକରେ ଖୋଜିଲେ ସଜନି
ମୋ ପରି ଦୁଃଖି କେ ଅଛି କାହିଁ ?
ସେହି ବନମାଳୀ— ପାଦପଦ୍ମ ଭଜି
ବେଣୁଧର ଜୀବ ଯାଉନାହିଁ । ୪ ।
( ମରମେ କହିଲେ ମରମେ ବାଧୁଛି— ବୃତ୍ତେ )

—*—

( ରାଗ—ତୋଡ଼ି । ତାଳ—ଝୁଲା )

ନଟବର ମୋହନ ମୂରତି କେତେ ନଟକୁଟ ଜାଣିଥାଇ ମାଁ ।
ହଟକରି ରଙ୍ଗନନ୍ଦନା ତଟରେ ବାଟ ଜଗିକରେ କେତେ ଛଇ ମା ॥
ଲଟ ଲଗାଇଣ ଘାଟ ମାଗୁଥିଲେ ନନ୍ଦସୁତ ବୋଲି ଛାଡ଼ିନାହିଁ ମା ।
ଅଟାଳର ଆଜ ଯାହା ସେ କହିଲା କହିବାକୁ ଲାଜ ଲାଗେ ସହି ମାଁ । ୧ ।
ଏଡ଼େ ଅପାତ ସେ କାହିଁକି କରୁଛି ଡାକୁଥାଇ ପର ମାଇଁ ୨ ମାଁ ।
ଜାଣିଛୁ ସେ ବଡ଼ ଅନ୍ତର୍ଯ୍ୟାମୀ ଅଟେ ନାଶିଲା ବନ୍ଦୁ ପୁତନା ଧାଇ ମାଁ । ୨ ।

ବିରହ ମୁରଲୀ ଗୀତେ ଗୀତେ ବୋଲି ନିରନ୍ତରେ କେତେ ଗାଉଥାଇ ମାଁ ! !
ଜାତି ପତି ଧୃତି ବିବେକ ଟିକାଏ କାହା ମାନସରେ ନ ରଖଇ ମାଁ । । ୩ ।
ମୋତେ ପରି ମନା ତା ଲଗି ଯମୁନା ବ୍ରଜରେ ହସନ୍ତି ସର୍ବେ ଗୋଇ ମାଁ । !
ବୋଲେ ବେଣୁଧର ଜଳଚନ୍ଦ୍ର ଚିବ ଲାଗି-ସେ ତ୍ରିଭଙ୍ଗି ମୂର୍ତ୍ତି ହୋଇ ମାଁ ।୪।

( ଆଳି ! ବନମାଳୀ ଯା ନା—ବୃତ୍ତେ )

—o—

( ରାଗ—ଲଳିତ କେଦାର । ତାଳ—ଝୁଲ )

ନନ୍ଦସୁତ ଛନ୍ଦରେ କାଳକ ଯୋଗରେ ସଖି ମୁଁ ପଡ଼ିଗଲି । ପଦ ।
ଏକାହୋଇ ଗଲି ଯମୁନା                କେଳିମାପ ମୂଳରେ କହ୍ନା,
ଉଭା ହୋଇଥିଲା                ଶୋଭା ଗୃହିଁ ଭଲା,
ଲୋଭା ହୋଇ ଧୈର୍ଯ୍ୟ ହଜାଇ ଦେଲି । ୧ ।
ତାର ବଂଶୀସ୍ଵନକୁ ଶୁଣି                ନ ଚଳିଲା ମୋ ପାଦପାଣି,
ଲଭିଲି ବିଷାଦ                ମନେ ହେଲା ଖେଦ,
ବିବେକ ହରାଇ ଦେଇ ବସିଲି । ୨ ।
କେତେବେଳେ ମୋହନ ବଂଶୀ—          ଧାଇଁ ମୋହ ପଛରୁ ଆସି,
ବେନି କରେ ମୋର                ବେନି ଚକ୍ଷୁ ବୁଜି
ନ ଛାଡ଼ିଲେ ଯେତେ ବିନତି ହେଲି । ୩ ।
ବୋଇଲେ ତୁ ନୟନ କର                ମୁଁ ତୋ ହୋଇଥିବି କିଙ୍କର,
ତେବେ ନୟନରୁ                ଛାଡ଼ିଦେବି କର
ବେଣୁଧର ବୋଲେ ସମ୍ମତ କଲି । ୪ ।

( କାହିଁଗଲେ ମୁରଲୀଫୁଙ୍କା—ବୃତ୍ତେ )

—o—

( ରାଗ—ପୁନ୍ନାଗ । ତାଳ—ଖେମଟା । )

ଶ୍ୟାମ ଛନ୍ଦରେ କାଳି ମୁଁ ତ ଭୁଲି ଗଲିରେ ।
ଚିତ୍ତ ମୋର ମୋହି ନେଲା ତ ମୁରଲୀ ରେ ॥ ଘୋଷା ॥
ତ୍ରିଭଙ୍ଗି ମୂରତି ହୋଇ                ନୀପମୂଳେ ଥିଲେ ରହି,
ସେ ରୂପକୁ କାହିଁତେ ମୁଁ ଚାହିଁ ଦେଲି ରେ । ୧ ।
ସଖି ସେ କଳା କହ୍ନାଇ                କି ଜାଣି ଦେଲେ ଅନାଇଁ
ମୋ ଦେହୁ ଧଇର୍ଯ୍ୟ କାହିଁ ହରାଇଲି ରେ । ୨ ।
କଲେ ଯେତେ ଅଙ୍ଗ ଭଙ୍ଗି                କି କହିବି ପ୍ରାଣସଙ୍ଗି !
ମୋ ଉରକୁ ହେଲେ ଫିଙ୍ଗି ନେହଭଲି ରେ । ୩ ।

ନୃପ କୃଷ୍ଣଚନ୍ଦ୍ର ବୋଲେ    ଦେଖିଲେ ଯେ ମୂର୍ତ୍ତି ଯାହା,
ବରଣ କରନ୍ତୁ ତାର ସ୍ତୁତି ପାଞ୍ଚିରେ । ୪ ।
[ ଲକ୍ଷି ଉଦ୍ଧବ ଅକ୍ଷି ସକ୍ଷି ଶିକ୍ଷାଗୁରୁଙ୍କରେ — ବୃନ୍ଦେ ]

— ୦ —

[ ରାଗ — ଖଣ୍ଡକେଦାର । ତାଳ ଏକତାଳୀ ]
ନବ ନାଗରକାନ୍ତିରେ ।
ଶ୍ୟାମଶୋଭା ନ ଧରନ୍ତି ନୀଳ ଆଦିରେ ॥ ଘୋଷା ॥
କୋଟି ମନ୍ମଥ ଛବି    ଯେହି ଦିବ ବାହ୍ୟ —
ସ୍ଥିର କେ ହେବ ସମ ଦୃଷ୍ଟି ରକ୍ଷିବାକୁ ।
ତାର ରୂପକୁ ଭାବ    ତଣ୍ଡ ମୋହନ ଧ୍ୟାନ, ।
ଗଲ୍ପ ସଖିରେ । ୧ ।
କୁଞ୍ଚିତ କୁନ୍ତଳକୁ    ଲମ୍ବାଇଛୁ ନଳକୁ;
ଦୋହଲାଏ କି ରଙ୍ଗେ ଗଣ୍ଡରେ କୁଣ୍ଡଳକୁ ।
ମଣ୍ଡିଛୁ କଣ୍ଠସୂତ୍ର —    ତାର ବକ୍ଷ ସ୍ଥଳକୁ,
ଦେଖ ଲକ୍ଷିରେ । ୨ ।
ମୃଗମଦ ତିଳକ    ଝଲେ ଲଲାଟେ ଝଳକ,
ମୋତି ବସଣି ନାସେ କି ପ୍ରକାଶେ ପଲକ ।
ଅଧରେ ଗୁମ୍ଫିଲେ ମୁଖ    ଦେଖିବ ନାଗରୀ ଲକ୍ଷ,
ସଣମାଣି ନୀଳ । ୩ ।
ଶିରେ ବନ୍ଧ ଚୂଡ଼ା    ସଙ୍ଗୀ ଧାଇଁଲୀ ଛଡ଼ା,
ତା କେତକୀ ପାଖୁଡ଼ା ସୁଗନ୍ଧ ଗୁଞ୍ଜେ ବେଢ଼ା ।
ବେଣୁଧରଙ୍କୁ ନେଡ଼ା    କାଳିନ୍ଦୀ ତଟ ଯୋଡ଼ା ।
ମାପ ଶାଳୀରେ । ୪ ।
[ ସକ୍ଷି ବର୍ଦ୍ଧା ଏ ପଦ — ବୃନ୍ଦେ ]

—❀—

[ ରାଗ — ମାଳୁଆ । ତାଳ — ଆଠତାଳୀ ]
ପଦ୍ମଣ ସଙ୍ଗିନୀ ଆଜ ।
ପଦ୍ମ ପା କରେ ଗୋ ବ୍ରଜ ରସିକ ରାଜ । ଘୋଷା ।
ଶଙ୍କାଂଶୁ ତନୟା ତଟେ    ଧନ୍ୟ ପଣ୍ଡଗଣ୍ଡ ବାଟେ,
ସଙ୍କଟରେ ସ୍ପର୍ଦ୍ଧି ଦେଲେ ନନ୍ଦ-ଆତ୍ମଜ । ୧ ।

ହରଷ ହୋଇଣ ବାନ୍ଧ ଶରାସନେ ଶର ସନ୍ଧ,
ପରାଭବ ଦେଲୁ ଯେତେ କହିବା ଲାଜ । ୨ ।
ମରାଳଗତି ନବନା ! ବରାଙ୍ଗିନି ମୁଁ ତୋ କଣା
ଥରାଇଲେ ଏହା କହି ସଖି ସମାଜ । ୩ ।
ହରାଇ ବସିଲି ବୁଦ୍ଧି ସରାଇ ଲାଜ ଅବଧି
କରାଇଲେ ଯାହା ନ ରହିଲା ଧଇର୍ଯ୍ୟ । ୪ ।
ତାରାପତି ବେଣୁଧର ଯେ ରାଜୀବାକ୍ଷ ପଦୁର,
କେବଳ ହେବକ ଶ୍ୟାମ ଧଇଲେ ଭୁଜ । ୫ ।
( ପ୍ରାଣ ସଙ୍ଗିମାରେ ନେହାନନ୍ଦ ପସରା—ପ୍ରଭୃତି )

—o—

( ରାଗ—ଝିଂଝୋଟ । ତାଳ—ଏକତାଳୀ )

ପ୍ରାଣ ସଙ୍ଗିନି ! ଅଛୁଟି କି ତୋର ମନରେ । ଘୋଷା ।
କାଲି ସେ ନନ୍ଦନନ୍ଦନ ମୋହନ ବଂଶୀବଦନ,
ଯାହା କଲେ କୁଞ୍ଜବନରେ । ୧ ।
ଗଲାବେଳେ ଫୁଲ ତୋଳି ଚିତ୍ତଚୋର ବନମାଳୀ,
ମୋହିନେଲେ ବଂଶୀସ୍ୱନ ରେ । ୨ ।
ଆହା ସେ କାଳିଆ ସୁନା କଲେ କି ମନ୍ତ୍ର ରଚନା,
ପଶିଗଲି ମୁଁ ମଦନରେ । ୩ ।
ବେଣୁଧର ବୋଲେ ମିତ ସେତେବେଳୁଁ ମୋର ଚିତ୍ତ,
ଥୟ ହେଉ ନାହିଁ ଛନ୍ନ ରେ । ୪ ।
( ଭଲ ଭୁଲିଲୁ ତା ପ୍ରୀତିରେ—ବୃତ୍ତ )

—o—

( ରାଗ—ପୂରବୀ । ତାଳ ଆଠତାଳୀ )

ପ୍ରାଣମିତ ! ଆଜ କି ଦେଖିଲି କୁଞ୍ଜ ତପସାତ ରେ । ଘୋଷା ।
ତ୍ରିଭଙ୍ଗିରେ ରହି ବ୍ରଜେନ୍ଦ୍ରଭୂମତ, ମୋ ନାମେ ବଜାଇ ମୁରଲୀ ଦେଇ ସ୍ୱର,
ଖୋଜୁଥିଲେ କି ରଙ୍ଗରେ ଧୀର ଧୀର, ଶୁଣି ଦ୍ରବିଗଲି ଚିତ୍ତରେ । ୧ ।
ହରଷେ ପୂଜିବା ପାଇଁ କରମାଳ, ଏକାହୋଇ ଯାଉଥିଲି ଫୁଲତୋଳି ।
କଟାକ୍ଷରେ ଚାହିଁ ଦେଲେ ନେତ୍ର ଢାଳି, ନ ରହିଲା ମୋ ଅୟତ୍ତ ରେ । ୨ ।
ଆସି କଳାକାହ୍ନୁ ଧରି ମୋ ଅଞ୍ଚଳ, ଚୁମ୍ବି ଦେଲେ ଗଣ୍ଡ ନୟନେ ଚଞ୍ଚଳ,
ଧରି ବେନପାଣି କଲେ କେତେ ଗୋଳ, ଓଗାଳି ଆସିବା ପଥରେ । ୩ ।

ଏସନ ଶ୍ରୀମନ୍ତ ସଜମାଳନ୍ତରେ, କହନ୍ତି ଏକାନ୍ତେ ହରଷମନ୍ତରେ,
ବୋଲେ ବେଣୁଧର ଶ୍ୟାମଳ ମୂର୍ତ୍ତିରେ, କେ ନ ଭୁଲିବ ଜଗତରେ ? ।୪।
[ ସରସିଜନ, ଜୀବନେ ଜଶୋଶ୍ୱ—ବୃତ୍ତ ]

—o—

( ରାଗ—ପୂରବୀ । ତାଳ—ଝୁଲା )

କାଳି ଶ୍ୟାମ ଯାହା କଲେ । ହସି ହସି ଗେଲେ ଗେଲେ ଗୋ । ଘୋଷା ।
ଯମୁନାକୁ ନୀର ଆଣି — ଯାଉଥିଲି ରେ ମିତଣୀ
କି ରଙ୍ଗେ ଅନାଇ ଦେଲେ ହସି ହସି ଗେଲେ ଗେଲେ ଗୋ । ୧ ।
ପୁଣି କି ବହୁର ହର — ରାଧେ ରାଧେ ବୋଲିକରି
ମୁରଲି ବଜାଇ ଦେଲେ ହସି ହସି ଗେଲେ ଗେଲେ ଗୋ । ୨ ।
ଶୁଣି ତା ମୁରଲି ସ୍ୱନ — ହଜିଯାନ୍ତେ ମୋ ଚେତନ
ଆସି ପାଶେ ମିଳିଗଲେ ହସି ହସି ଗେଲେ ଗେଲେ ଗୋ । ୩ ।
ସେ ନଟବର କହ୍ନାଇ — ସଧୀରେ ଚୁମ୍ବନ ଦେଇ
ଉରଜରେ କର ଦେଲେ ହସି ହସି ଗେଲେ ଗେଲେ ଗୋ । ।
ନ ଶୁଣି ମୋର ବଚନ — କରି କି ଭଙ୍ଗି ରଚନ
ଜଗି ପଥ ନ ଛାଡିଲେ ହସି ହସି ଗେଲେ ଗେଲେ ଗୋ । ୫ ।
କବିଚନ୍ଦ୍ର ବେଣୁଧର — ବୋଲେ ସେ ନନ୍ଦକୁମର
କାହିଁ ଏମାନ ଶିଖିଲେ ହସି ହସି ଗେଲେ ଗେଲେ ଗୋ । ୬ ।
( ଆସୁଛନ୍ତି ବ୍ରଜବାସୀ ଧୀରେ ଧୀରେ ଝୁଲ ଝୁଲ—ବୃତ୍ତି)·

—o—

( ରାଗ—କେଦାରଗଡ଼ା । ତାଳ—ଆଠତାଳୀ )

ଭଣ୍ଡିବାକୁ ମୋତେ— ମାଡୁଛୁ ସଜନ !
ନ ଭଣ୍ଡିତ ରଣ୍ଡି ପାରୁନାହିଁ ।
ଅଣ୍ଡଦଳା ଶ୍ୟାମ — ଯାହା କଲେ ଆଜ
ଶୁଣି ଗଲେ ହାତ ଦେବୁ ତୁଣ୍ଡି । ଘୋଷା ।।
ସଖୀ ଜଣେ କେଣ୍ଡି— ପାଶରେ ନ ଥିଲେ
ବସି ଫୁଲ ଗୁନ୍ଥୁଥିଲି ମୁହିଁ ।
ବହୁ ଅନୁରାଗ — ପାଞ୍ଚି କାହ୍ନୁ ସଙ୍ଗ
ଗାଉଥିଲି ଗୀତ ତୋଷ ହୋଇ । ୧ ।

ରହିଥିଲେ କାହ୍ନିଁ    ସେ କଳା କହ୍ନାଇଁ
ଧୀରେ ମୋର ପଛୁ ଆସିଛନ୍ତି ।
କର ପଦେ ଧନ    ବୁଜନ୍ତେ ନୟନ
ବୋଇଲି ତୁମ୍ଭେ ଗୋ ଦୁଷ୍ଟ ସହି ।୨।
ତେଣୁ ବେଣୁପାଣି    ଭାଷିଲେ ଏ ବାଣୀ
ଆହା ତେତେ ଭାଗ୍ୟ ମୋର କାହିଁ ?
ଦାସୀ ପଦକୁ କି    ଭାଜନ ହୋଇବ
ଗତ ଜନ୍ମେ ପୁଣ୍ୟ କରିନାହିଁ । ୩ ।
ଶ୍ରୀଅଙ୍ଗ ଆମଦୁଁ    ତରଳ ଚିହ୍ନିଲି
ପ୍ରେମ ଚିନ୍ତାମଣି ମୋ ମାଧୋଇ ।
ରସେ ରସାଇଲେ    ଅଙ୍କେ ବସାଇଲେ
ବେଣୁ ବୋଲେ ସତେ କି ଗୋ ରାଇ ! । ୪ ।
(ଦେଖିଲେ କାହ୍ନିଁକି ଲାଜମାଡେ ସଖି—ବୃତ୍ତେ)

—※—

[ରାଗ—ପରଜ । ତାଳ—ଖେମଟା ।]

ସଜନି ! କହିଲେ ମାଡୁଛି ଲାଜ !
ସେ ଯମୁନା କୂଳେ ନୀପ ତରୁ ମୂଳେ ଯା କଲେ ମୋହନ ରାଜ । ପଦ ।
ତ୍ରିଭଙ୍ଗି ଠାଣିରେ ଉଭା ହୋଇଥିଲେ ନଷ୍ଟେଳ ମୁରଲୀଭୁଜ ।
କି ଚଞ୍ଚଳେ ଆସି ପଥକୁ ଓଗାଳି ଆରମ୍ଭିଲେ କି ପହ୍ନିକ । ୧ ।
ଶୁଣିଲେ ତୁ ଗାଲେ ହାତ ଦେବୁ ଲୋ ମା ହସିବେ ସଖୀ ସମାଜ ।
ଏ ବନ୍ଦୁ ତାହାକୁ କିଏ ଶିଖାଇଲା ଏତେ ନଟ କୁଟ ବ୍ୟାଜ । ୨ ।
ଜରନ୍ତ ଯଦ୍ୟପି ଜାଣିବେ ଏମାନ କି ବୋଲିବେ ମୋତେ ଆଜ ।
ପାଣିକି ଯିବାର ନିଷେଧ କରିବେ ସତ ତ ଯିବ ମୋ ଓଜ । ୩ ।
ଫିଟାଇ କହୁଛି ତୋ ଆଗରେ କହି ପଛନେ ତୁ ମୋତେ ଗଞ୍ଜ ।
ବଟାଳିବା ବୁଦ୍ଧି ଧରି ବିପରୀତ ମାଗିଲେ ନନ୍ଦ ତନୁଜ । ୪ ।
ଭଲ କପାଳକୁ ଏ ଲାଭ ହୋଇଲା କଳଙ୍କ-ପସରା ସଜ ।
ବୋଲେ ବେଣୁଧର ଆଗୋ ଶ୍ରୀ ରାଧିକେ ବୁଝିଲଣି ପ୍ରୀତି ବାଜ । ୫ ।
( ମୋହନ, ଏହାକି କଲ ଗାରଜା—ବୃତ୍ତେ )

—※—

[ ରାଗ ଚୋଢ଼ି ପରଜ । ତାଳ -- ଅଠତାଳୀ ]

ସଙ୍ଗାତ ! କହିବାକୁ ବଡ଼ ଲାଜ ।
ତପନ ତନୟାତଟେ ଯାହା କଲେ ବ୍ରଜପୁର ଯୁବରାଜରେ । ଘୋଷା ।
ଲାଗୁଥିଲା ଶଙ୍କା, ଏକା ଶ୍ୟାମବଙ୍କା କଳିଆ ଦେଖାକୁ ଆଜ ।
ଭାବୁଥିଲି ଯାହା, ଫଳଗଲା ତାହା ନଥିଲେ ସଖି ସମାଜ ରେ । ୧ ।
ଦୂରୁ ଭୁରୁ ବେନ, ନଚାଇ କ ଘେନ ଠାରିଦେଲେ ନେତ୍ରକଞ୍ଜ ;
ଚେତିଲି କେଳିକୁ ମରମ ଭିତର ଘାଣ୍ଟିଦେଲା ମନସିଜ ରେ । ୨ ।
ହରାଇଲି ଜ୍ଞାନ, ନୋହିଲା ଚେତନ, ରହି ନୋହିଲା ଧଇର୍ଯ୍ୟ ।
ସେ ମନ ମୋହନ, ଅସିଣ ବଦନ, ବଳେ ଧଇଲେ ମୋ ଭୁଜରେ । ୩ ।
ମୁକପରି ବାକ୍ୟ, ନ ସ୍ଫୁରିଲା ଶ୍ୟାମ, ଶ୍ରୀମୁଖ କରିଣ ନୋଇ ।
ଚୁମ୍ବି ଦେଲେ ଗଣ୍ଡ, ଦୁର୍ନୀଭୁକେ ଦଣ୍ଡ ଯାଏ ନ ଶୁଣି ମୋ ଓଜରେ ।
ପୁଣି ବଂଶୀପାଣି; ମୋ ବଚନ ବାଣୀ, ଶୁଣି ପଥ କଲେ ତ୍ୟାଗ ।
ବେଣୁ ବୋଲେ ପୁରେ ପ୍ରବେଶି ଦେଖନ୍ତେ କରନ୍ତେ ଷଟ ଜରଜରେ ।
[ ସଙ୍ଗାତ ! ତୋ ବୋଲେ ବସନ୍ତ ମାନେ—ବୃତ୍ତେ ]

—o—

[ରାଗ - ଆନନ୍ଦ କୌମୁଦୀ । ତାଳ—ଆଠତାଳୀ ]

ସେ କାଳିଆ ଯାହା କଲା କାଳି ଗୋ; ସଖି ! ।
ଅଖଣ୍ଡେ ତା ଆରତି ଚଢ଼ିଲେ ଗୋ । ଘୋଷା ।
ମୋ ଭୁଲେ ନ ଥିଲେ କେହି ଯାଉଁ ଯମୁନା ଗାଧୋଇ,
ମାପଚରୁମୁଲେ ରହି ଦେଲା ଗୋ । ୧ ।
କ ମୋହିମା ଜାଣେ ସେହି ପାହୁଣ୍ଡେ ନ ଯାଇ କାହିଁ,
ଥକା ହୋଇ ମୁଁ ତ ରହିଗଲି ଗୋ । ୨ ।
ତହୁଁ ସେ ମୋ ପାଶେ ଅସି କହିଲେ ଯାହା ଆଶ୍ୱାସି,
ବଖାଣି ବସିଲେ ଲାଜେ ମଲି ଗୋ । ୩ ।
ବେଣୁଧର ବୋଲେ ଶୁଣି ମୁଁ ତା ଜାଣି ପାରିଲିଣି,
କସ ଲୁବ୍ଧହେତୁ ଉପବଲ୍ଲୀ ଗୋ । ୪ ।
( ଏ ମୋହନ ରଖିଦେବ ନାହିଁ ଗୋ ସହି—ବୃତ୍ତେ )

—o—

( ରାଗ—ଖଣ୍ଡ କେଦାର । ତାଳ—ଏକତାଳୀ )

କି ଭଙ୍ଗିରେ ଚାହିଁଲା, ସେ ମନ ମୋହନ କାହ୍ନୁ ଜାଣି ରହିଲି । ୦ ।
କେଳି ନୀପମୂଳରେ ଥିଲେ ସେ ନିଶ୍ଚଳରେ,
ଚାରୁ ଚକ୍ଷୁ ମେଳରେ ମଦନ ଉଲ୍ଲାସରେ,
ଧରଣୀ ସେ କାଳରେ, କେଉଁ ମନ୍ତ୍ର ବଳରେ ମୋ ମନ ହରିଲା ।୧।
ଶୁଣି ତା' ବଂଶୀନାଦ ତେଜିଲି ନାହିଁ ପାଦ,
ଶ୍ରୀ ରାଧା ରାଧା ପଦ ମୋ ଚିତ୍ତକୁ ପ୍ରମାଦ,—
କରାଇ ଦେଲା ଗତ, ଗତେ ନବ ବାରିଦ, ମୂରତି ଭଲା । ୨ ।
ଥିଲି ମୁଁ ସଖି ମେଳେ କି ରୂପେ ସେ ଚହ୍ନିଲେ,
ମୋ ନାମ ଧରି ଡାକିଲେ ବେଣୁ ବଜାଇ ଦେଲେ,
ତାଙ୍କ କପଟ ଚାଳେ, ରହିବେ ନିଜ ଭୁଲିଲି, ବ୍ରଜଛଇଳା । ୩ ।
ରାଜଧାମ ସମର— ପୁର ମଣ୍ଡଳେଶ୍ୱର,
ଧୀର ଶ୍ରୀ ବରବର କୁଳ-ଧୁର ନର—
ସୁରନର ଶ୍ରୀ କୃଷ୍ଣଚନ୍ଦ୍ର ମନୁ ସେ ମୂର୍ତ୍ତି, ମୂର୍ଚ୍ଛି ନୋହିଲା । ୪ ।
( ସଖି ! ଚାହିଁ ଏ ପଥ—ପ୍ରଭୃ )

—※—

( ରାଗ—ଗୋଡ଼ ମଲାର । ତାଳ—ଆଦିତାଳୀ )

କହ କି ଉପାୟ ଆଜିରେ ସଙ୍ଗିନି ! କହ କି ଉପାୟ ଆଜି ।
ଦେଖିଲି ବେଳୁ ସେ ମୋହନ ମୂରତି, ମଦନ ଦେଲାଣି ବାଜି । ପଦ ।
କୁଳଶୀଳ ଲାଜ ମହତ ଆଦର, ଜାତି ପଡ଼ୁକେ ମୋ ଯାଉ ।
ମୁଁ ତ ମୁରୁଛିଲେ କେହି ନ ମୁଞ୍ଚାଇ ସେ ମୋ ମନକୁ ମଜାଇ । ୧ ।
ମୋ ମନତ ତହିଁ ବୁଡ଼ି ରହିଲାଣି ଅଇର ଅନାଇଁ ଅନାଇଁ ।
ଅପଙ୍ଗରଙ୍ଗ ଲୋଚନା ମୋ ନାହିଁ ଭୁ କମ୍ପା ମୋହିତ ଭଙ୍ଗାଇ । ୨ ।
ତ୍ରିଭଙ୍ଗିମା ଠାଣି ବଙ୍କିମା ଚାହାଣି ଅଙ୍ଗ ଝଟକ ତାଜି ତାଜି ।
ଛବ ନଟବର ନବୀନ ସୁନ୍ଦର ମୋ ଗଳେ ଭୁଜ ବେଢ଼ାଇ । ୩ ।
କୋଟି-କାମଣୀଙ୍କ ଯା ଛବିରେ ପୂରି, ତା ପ୍ରୀତିରେ ଚିତ୍ତ ଯାଉ ।
ବେଣୁଧର କହି ହେବି ତାଙ୍କ ଦାସୀ, ପିଣ୍ଡେ ପ୍ରାଣ ଥାଉଁ ଥାଉଁ । ୪ ।
( ଚଳିଣିତ ଗଲ୍ପ କଥାରେ ଧାତା—ପ୍ରଭୃ )

—୦—

( ରାଗ—ତୋଡ଼ି ପରଜ । ତାଳ—ଆଡ଼ତାଳୀ )

କାହ୍ନିକି ବୃହିଁ ହେଲି ଶ୍ୟାମକୁ (ମୁଁ)
ଅଇର ହୋଇଲି ସିନା କାମକୁ (ମୁଁ) । ଘୋଷା ।
କୁଳ ଲଜ ଖଣ୍ଡ ହୋଇଲ ଦୂର । ନୟନେ ନାଚିଲେ ନଟନାଗର । ୧ ।
ବସିଲଣି ଅପକୀରତି ହାଟ । ତେବେ ମନୁ ନ ଯାଏ ନନ୍ଦବୁଟ । ୨ ।
ଗୁରୁଜନ ଶାଶୁ ନଣନ୍ଦ ଗାଳି । ଢଅନ୍ତୁ କେତେ ମାରି କରତାଳି । ୩ ।
ମନା ହେଲଣି ଯମୁନା-ପାଣିକି । ଲୁଚି ଦେଖିଯାଏଁ ବେନୁପାଣିକି । ୪ ।
କି ମନ୍ତ୍ର କରିଛି ନନ୍ଦକହ୍ନାଇ । ତାଙ୍କୁ ଛିଲେ ମୂର୍ଚ୍ଛି ନୋହିଲି ସହି । ୫ ।
ଗଲେ ଅପବାଦେ ପାଉଛି ସରି । ନଗଲେ ମଦନେ ହେଉଛି ବାରି । ୬ ।
ନୃପ କୃଷ୍ଣଚନ୍ଦ୍ର ବଦତି ସହି ! । ରାଧାକୃଷ୍ଣ ବିନୁ ଶରଣ ନାହିଁ । ୭ ।
( ଝଗଡ଼ ମାର ହେଲି ହେ ଶ୍ୟାମ—ବୃତ୍ତେ )

— ୦ —

( ରାଗ—ରସ ମଞ୍ଜରୀ । ତାଳ—ରୂପକ । )

କାଳିଆ କାଳିଆ ହୋଇ ଏ ଜୀବ ଯାଉ ।
କୁଳ ବସିଲେ କେ ମୋତେ ନ ଢଣେ ଆଉ ॥
(ସଖି) ଏ ଜୀବ ଯାଉ । ଘୋଷା ।
ଥିଲ ସେ ମୋର ସଙ୍ଗାଳ ଚତୁର୍ବେଶ ବନମାଳୀ,
ଟାଳି ଅଭିମାନ ରାଧା ନା ଗୁଣ ଗାଉ । ୧ ।
ତାଳ ନେଇ ଅଶ୍ରୁ ବାରି, ଧ୍ୟାନକରି ବଂଶୀଧାରି,
ମାଳଥିବ ଦୂତ ବ୍ରତ ଜୀବନ୍ତ ଥାଉ । ୨ ।
କାଳ ନଗୁ ପଢ଼େ କୁଟିଳେ, ନ ରଖନ୍ତୁ ଏ ଗୋକୁଳେ
ଝାଳ ଛନ୍ଦା ପଦେ ମନ ପ୍ରାଣ ବକାଉ । ୩ ।
ଚାଳମାରି ଅଲବଣୀ, ଡସିଲେ ଡସନ୍ତୁ ପୁଣି,
ଥାଳ ସେ ମୁଁ ଯୋଗିଣୀର ନକ ନ ଖସାଉ । ୪ ।
ବୃଲବା କୁରୁ ତା ବୃହିଁ କାଳୀଶ ହେବାର ସାଙ୍ଗ,
ମାଳକର ବେଣୁଧର କୃଷ୍ଣ ଭଜାଉ । ୫ ।
( ଡାହିଁ ଛୁଡ଼ିଗଲି ଶ୍ୟାମ କାଳିଆସୁନା—ବୃତ୍ତେ )

— ✿ —

[ ରାଗ—ଚୋଖପଞ୍ଜ । ତାଳ—ଆଡ଼ତାଳୀ ]

ସଜନି ! ମନୁ ନିବାର ସତେ ?
ଯାହା ମୁଁ ଦେଖିଲି ଯମୁନା ତଟେ ଗୋ । ଘୋଷା ।
ନୂଆ ମୂରତି ସେ ନୂଆ ମଦନ, କୁଆଁର ପୁନିଅଁ ଜାଳିଆ ଜହ୍ନ । ୧ ।
ଧୀର ଲଳିତ ଅପୂର୍ବ ସୁନ୍ଦର ନାଗର ବରନ ରସିକ ବର । ୨ ।
ନ କରୁ ସେ ମୋତେ ଦେଖିଲେ ଅନାଇଁ
କଙ୍କଣ କର ତ ନେଲେ ମନାଇଁ । ୩ ।
କବିଚନ୍ଦ୍ର ବୋଲେ ମୁଁ ଥିଲି ଦେଖି
ପବିତ୍ର କରନ୍ତୁ ଏ ପାପ ଆଖି । ୪ ।
( ସଖି ଗୋ, ମୋର କୁଞ୍ଜକୁ ଆଜ—ବୃତ୍ତେ )

—o—

## ସଖୀଉକ୍ତି

( ନବାନୁରାଗିଣୀ ଶ୍ରୀ ରାଧାଙ୍କ ପ୍ରତି—ଲଳିତା )

(ରାଗ—ରସକେଦାର । ତାଳ—ଏକତାଳୀ )

ପଡ଼ିଗଲୁ ସତେ ଶ୍ୟାମ ଫାନ୍ଦରେ କିଶୋରୀ ଗୋ !
ନେଉଥିଲୁ ପର ତାର ସଙ୍ଗ ଅନୁସରି ଗୋ । ଘୋଷା ।
କରୁଥିଲି ତୋତେ ମନା, ନଯିବୁ ବୋଲି ଯମୁନା,
ମୋହିନୀ-ମନ୍ତ୍ର ଜାଣେ ସେ ମୁରଲୀଧାରୀ ଗୋ । ୧ ।
ହେଲେ ପତିବ୍ରତା ସତୀ, ତା ଆଗୁଁ କେ ଯିବ ବର୍ତ୍ତି ।
କେଡ଼େ ସାହସ ତୁ କଲୁ ମୋତେ ନବାରି ଗୋ । ୨ ।
ସେ ଶ୍ୟାମ-କାମ ଅନଳ,— ମାଦକେ ହୋଇ ବିହ୍ୱଳ,
କଦମ୍ବ ମୂଳକୁ ବୁହିଁଦେଲୁ ତୁ କପରି ଗୋ ? । ୩ ।
ବୋଲେ ବେଣୁଧର କବି, ତୁ ତ ନୋହୁ ଅନୁଭବୀ ।
ଏଥର ନେହେ ନାଚିବ ମୋହନ ମାଟୁରୀ ଗୋ । ୪ ।
( ଏହିପରି ସଖି ! ଆନ୍ତ ବ୍ରଜେନ୍ଦ୍ର ନନ୍ଦନ—ବୃତ୍ତେ ),

—*—

( ରାଗ—କେଦାରଗଡ଼ା । ତାଳ ଆଠତାଳୀ )

ଷଟପଦ-ଜଳା କୁନ୍ତଳା ଚଞ୍ଚଳା
ନଟନାଗରଙ୍କୁ ଭଜିଲୁ କି ?
ପଟ ବଳେକନ ଜଳ ଢଳୁ ଧନ
ମନ ବଳ ତାର କଷିଲୁ କି ? । ଘୋଷା ।

ଘଟ ଘେନଗଲ୍ ବେଳେ ଯମୁନାକୁ;
ଆଡ଼ ନେତ୍ରେ ଚାହିଁ କାଳିଆ ସୁନାକୁ,
ଅଟକାଇ ପଦ— କଞ୍ଜ ସୁମନାକୁ
ଚଟ ଭ୍ରମରେ ଭରସିଲୁ କି ? । ୧ ।
ଛଟ ଲଗା ଗୋଷ୍ଠ ଚନ୍ଦ୍ରମା ଛଟକି,
ହୃଦୟ କୁଞ୍ଜେ ତୋ ରହିବାରୁ ଘୋଟି,
ଛଟକ ଭୃକୁଟୀ— ମନ୍ତରେ ଆଭୁଷି
ହୋଇ ଏତେ ଭଳି ବସିଲୁ କି ? । ୨ ।
ଜଟଇ ବୋଲି ସେ କୁଳକାମିନୀଙ୍କି,
ଆଜଯାଏଁ ତୁ ଅଜଣା ଥିଲୁ ନକି ?
ଝଟକ ହାସି ରେ ଚିନ୍ତାମଣି ମାଳ—
ଜପି ଗୃମତରେ ଘୋଷିଲୁ କି ? । ୩ ।
ଖଟ-ପୁଷ୍ପ ଶେଯା ହେବାଯାଏ କୁଞ୍ଜେ,
କି ଗତି ତୋ ଅଛି ବୁଝ ହୃଦାମ୍ବୁଜେ,
ପଟନାୟକ ବେଣୁ— ଧର ଧଣ୍ଡାସ୍ଥ
ହେବାକୁ କରୁଣା ବର୍ଷିଲୁ କି ? । ୪ ।
[ ଆଜନମ ଦୁଃଖୀ ପଙ୍କଜମୁଖୀ ଗୋ— ବୁଝେ ]

— ୦ —

( ରାଗ—ଉଷକେଦାର । ତାଳ—ପଦପଟ )
ସଖି ! ଶିଖୀପୁଚ୍ଛ ମୁକୁଟ ଲମ୍ପଟ ଆଖିରେ ତୋ ଲାଗି ଗଲେ କି ?
ଅଖିଳ ମୋହନ ତ୍ରିଭଙ୍ଗମାଙ୍କୁ ଶିଶୁମନ୍ତ ନ ଦେଖିଲୁ ଭଲେ କି ? ପଦ ।
ରଖି ପାରିବୁ କି ଧୈର୍ଯ୍ୟ ଗୁମାନ;
ଲେଖି ଦେବୁ ନଷ୍ଟେ ଜାତି ଜୀବନ,
ସେ କ୍ଷୀରବ୍ରେବଙ୍କ ପ୍ରୀତିପାଇଁ ରଙ୍କ ନ ହୋଇବୁ ପ୍ରାଣ ଥିଲେ କି । ୧ ।
ସାକ୍ଷୀ ମାଳମୂଳ ଚନ୍ଦ'ଣ କହ୍ଲାଇ,
ଅବଶ୍ୟ ତୋ ମନ ନେଲେଣି ମନାଇଁ,
ଦେଖି ଭୁଲିଗଲୁ ସତେ ଜାହାପାଇଁ ନ ସହିବୁ କଳଙ୍କଲେ କି । ୨ ।
କ୍ଷେତ୍ରି ସ୍ବତନ୍ତ୍ର ପରିତ ହେଲାଣି,
ସେ ନବନୀରଦ କାନ୍ତ ବଂଶୀପାଣି,
ସଖିଶୁଣ ତ ତ୍ରିଭୁବନ ଜଣି ପଣ୍ଡ ନ ଗିବୁ ତା ପାଖେ କି । ୩ ।

ଶିଖିଛୁ ସେ ମନ-ମୋହିନୀ ମନ୍ତର,
ବାଲି କରାଇବ ତୋତେ ନିରନ୍ତର,
ଭାଷେ କବିଚନ୍ଦ୍ର ତା ହସ୍ତ ଯନ୍ତ୍ରର ସଦା ରାଧା ରାଧା ବୋଲେ ଜ ।୮।
(ପୀତପଟ ହଟ ନଟକୁଟିଆର ପ୍ରୀତିକଥା ସଖି କହନା—ବୃତ୍ତେ )

—❋—

( ରାଗ—ତୋଡ଼ି । ତାଳ—ଆଠତାଳୀ )
ଦେଖିଲୁ ଟିକି ଗୋ ରାଧେ ସେ ମନ ଭୁଲା ମୂର୍ତ୍ତିକି ?
କୁଳବତୀ ବ୍ରତ ନାଶକରେ ଯେ ନିତି ନିତିକି । ଘୋଷା ।
ନବ ନଟବର ବେଶ, ବିଚିତ୍ର ନେତ୍ର ବିଳାସ,
ଦୁରୁ ଭୁରୁ ଭଙ୍ଗୀମା ରେ ହରି ନେବାର ଧୃତିକି ? ।୧।
ମଦନ ମଦ ହାରିଟି, ମାପମୂଳ ବଢ଼ାଉଛି;
କେଶରୀ ସରୁଆ କଟି କେ ସରିଟି ତା କଟିକି । ୨ ।
ନାମ ଶୁଣିଲୁ ବଦନରୁ, ଚିନ୍ତୁଥିଲୁ ଯାକୁ ଆରୁ;
ଶ୍ୟାମସୁନ୍ଦର ପ୍ରତିମା ନୀଳେନ୍ଦ୍ରୀ ମଣି ଦ୍ୟୁତିକି । ୩ ।
ମୋହନ ମୁରଲୀପାଣି, ହିଛନ୍ଦ ତା ଠିଆଠାଣି,
ଛଡ଼ାଇବ କୁଳ ମୂଳ ଆବର ଜାତି ମାତିକି । ୪ ।
ବେଣୁଧର ବୋଲେ ସହି ଏକଥା ମିଛ ନୁହଇ,
ଆମ୍ଭ ଜେମାମଣି ରକ୍ଷା କରିବେ ପ୍ରାଣ ପତିକି ? ।୫।
( କାହା ମନେ ଥିଲା ବନ୍ଧୁ ଏହାକି ସେ କରିବ—ବୃତ୍ତେ )

—୦—

( ରାଗ—ପୂରବୀ । ତାଳ ଝୁଲା )
ଭଲା ରସିଲୁ ମୁରଲୀ ପାଣିକି ॥ ଘୋଷା ॥
କଳା ଅନୁରାଗେ, କଳା ଦରବରେ,
ଶରଧା ତ ବଢ଼ୁ ଏଣିକି । ୧ ।
କି ବସ୍ତ୍ର ଚଢ଼େ, ଭୁଆ ଭୁଆ କେତେ,
ନରେଖ ଯମୁନା ପାଣିକି ! ୨ ।
ଆଖି ବୁଜି ରହି, ଜସ ଦେଖୁଥାଉ
ହୃଦ ମଧ୍ୟେ ପୂର୍ଣ ପୂର୍ଣି କି ? । ୩ ।
ଅଟପି ସୁମନ,— ଚମ୍ପା ସହିତେ,
ଗୁନ୍ଥିଲୁ କି ଲୁବ ଅଣିକି ? । ୪ ।

ମର୍କତ ରତନ, କୁନ୍ଦନେ ଯତନ,—
କର ହାର ପିନ୍ଧିଲୁଣି କ ? । ୫ ।
କଆଁତ ଘୁଞ୍ଚରେ, ଲଦୁ ନିରନ୍ତରେ,
ପିଟାଇ କାଳିଆ ବେଣୀକ । ୬ ।
ବେଣୁଧର ଭଣି, ଜଣା ପଡ଼ିଲଣି,
ଶ୍ୟାମ ଫାନ୍ଦ ଯିବୁ କେଣିକ ? । ୭ ।
( ଶ୍ୟାମବନ୍ଧୁଙ୍କୁ ନିରତେ ଦେଖିବ—ବୃନ୍ଦେ )

—✻—

( ରାଗ—କଳମା ଗୌଡ଼ା । ତାଳ ଝୁଲା )
ମାଳ ମଧବା ଛବି । ଦେଖିକା ହୃଦ-ପଦ୍ମ ନ ଯିବ ଦ୍ରବି । ଘୋଷା ।
ଆହା ତାହାଙ୍କ ଯେଉଁ ଗୃହାଁଣି ଛଟା ।
ନଷ୍ଟେଁ ମାର କଲୁଷ କଟା । ୧ ।
ସେ ଯେଉଁ ଭ୍ରୂରୁ ଭଙ୍ଗି କୁଟିଳ ଠାର ।
ଫିଙ୍ଗେ କ ବାଙ୍କ-ଛୁରୀ ଦର୍ପକ ସାର । ୨ ।
ମନ୍ଦ ହସନ ଅମ୍ବାଧରେ ପ୍ରକାଶ ।
କରିତ ହୁଏ ସତୀ ଗୁମାନ ଧ୍ୱଂସ । ୩ ।
କୋଟି ମନମଥର ମନ ମଥନ ।
ସଂସାର ବିମୋହନ ଶ୍ରୀ ଭଗବାନ । ୪ ।
ନନ୍ଦ ହୃଦୟାନନ୍ଦ ଗୋକୁଳ ଇନ୍ଦୁ ।
ସୁରସମ୍ପୃ ନବ ଲାବଣ୍ୟ ସିନ୍ଧୁ । ୫ ।
ଅପୂର୍ବ ପ୍ରେମାନନ୍ଦ ସୁଖଦାୟକ ।
ଆଶ୍ରିତ ବେଣୁଧର ପଞ୍ଚନାୟକ । ୬ ।
(ଶ୍ୟାମ ଶିଖଣ୍ଡ ଚୂଳ—ଦ୍ରୁତ )

—✻—

( ରାଗ—ମାରୁଆ । ତାଳ—ଆଠତାଳୀ )
ଅନାଇଁ ଦେଲା ମିତ କଦମ୍ବ ମୂଳେ ଛଉଁ-
ଶ୍ରେଗଙ୍କୁ ଯାଇଥିଲି ପାଣିକ ଗୋ ।
ସେତେକ ବେଳୁ ମନ ହେଉଛୁ ଛନ ଛନ,
ମୂର୍ଚ୍ଛିବି କେମନ୍ତେ ସେ ଠାଣିକି ଗୋ ? । ଘୋଷା ।
ଭ୍ରୂରୁ ଭଙ୍ଗିରେ ଠାରି ବାଙ୍କ-ନେତ୍ର-କଟାକ୍ଷ,
ମରମେ ହେଲେ ମୋର ହାଣିକ ଗୋ । ୧ ।

ତରଳ ଗଲା ଚିତ୍ତ ନ ରହିଲା ଆୟତ୍ତ,
ଶୁଣି ତାଙ୍କ ମୁରଲୀ ବାଣୀକି ଗୋ ।
ଅକୀର୍ତ୍ତିକି ନ ମାନି ହୋଇଛି ପାଗଳିଣୀ,
ସେ ନବକିଶୋରୀ ନ ଜାଣିକି ଗୋ । ୨ ।
କୋଟି କାମ ମୋହନ ମୂରତି ନବଘନ,—
ଜିତ ବରନ ବଂଶୀପାଣିଙ୍କି ଗୋ ।
କେତେ ଶ୍ରମ ଲଭିଣ ଗଢ଼ିଛି ଧନ୍ୟ ଧନ୍ୟ,
କହିବା ବିନା ସେ ବ୍ରହ୍ମାଣୀକି ଗୋ । ୩ ।
କେଉଁ ସୁକୃତ ଫଳେ କର୍ମ ସୁଭାଗ୍ୟ ବଳେ,
ଭଲ ମିଳିଛି ନନ୍ଦରାଣୀଙ୍କି ଗୋ ।
ପାମର ବେଣୁଧର ଭରସା ନିରନ୍ତର,
ଛନ୍ଦା ପଦ୍ମର ପଦ୍ମପାଣିଙ୍କି ଗୋ । ୪ ।
( କଦମ୍ବବନେ ବଂଶୀ ବାଜିଲା ରେ—ବୃତ୍ତେ )

—o—

( ରାଗ—ରସକେଦାର । ତାଳ— ଏକତାଳୀ )

ବ୍ରଜନାରୀ ହରିରେ ।
ଶ୍ୟାମ ଛବି ଦେଖି ଭୁଲିଗଲୁ ପରିରେ ? । ପଦ ।
ଯାର ଲାଗି ଯମୁନା ତୋଟେ ହେବାର ମନା,
ସେ ନନ୍ଦସୁତ କହ୍ନା— ପ୍ରେମେ ହତ ଚେତନା,—
ହେଲୁ ଯା ଚନ୍ଦ୍ରାନନା ରସେ ମଜ୍ଜିଲୁ କିନା ଧର ଧରିରେ । ୧ ।
ଜାତି ପତି ଗାଡ଼ିକା ବୁଡ଼ାଇ ତାରେ ଢକା,—
ହୋଇଲୁ ଯା ରାଧିକା ବାଜିବ ନିନ୍ଦା ଡଙ୍କା,
ଗୁରୁଜନଙ୍କୁ ଟିକାଏ ତ କଲୁ ଢକା ଜବାଧରିରେ । ୨ ।
ଲମ୍ଫିଆ କପଟ ନ ଜାଣି ଜଳଘାଟ—
କୁ ଯା ପଲୁଟିଗଟ— ସୁତା ଚଉଡ଼ଛାଟ
କରାଇଦେଲା ନଟବର ଲଗାଇ ହଟ ନେଇ ଠାରିରେ । ୩ ।
ଭଣଇ ବେଣୁଧର ଶ୍ରୀମନ୍ତ ପ୍ରତ୍ୟୁତ୍ତର,
ସେ ମୋ ହୃଦପୂଜାର ତା ସଙ୍ଗେ ନିରନ୍ତର,
ନିକୁଞ୍ଜରେ ବିହାର କରି ବରଷ ବର ମଲ୍ଲୀଦରିରେ । ୪ ।
( କି ରୂପମାନେ ବସିଲା ଶରତ ଚନ୍ଦ୍ରବଦନା—ବୃତ୍ତେ )

—o—

( ରାଗ—ଦେଶାକ୍ଷ । ତାଳ ଝୁଲ )

ମନମୋହନ ଭଙ୍ଗୀ ଲୋ ସଙ୍ଗିନି !
ଦେଖିଗଲୁ କି ମଙ୍ଗିଲୋ ? ଘୋଷା ।
ହଟିଆ ନାଗରବର ପୀତପଟିଆ ।
କମିଆ କଲ କି ତୋତେ ନଟକୁଟିଆ ଲୋ । ୧ ।
ସହଜେ ପାଟକଳାଣ୍ଡ ବଡ଼ ବିଷମ ।
କେ କେତେ ଝଙ୍କିବେ ବାଇ ତୁଣ୍ଡ-ଡିଣ୍ଡିମ ଲୋ । ୨ ।
ପିଲ ବୁଦ୍ଧିଟି ତ ଛାଡ଼ ନାହିଁ ତୋହର ।
କି ସାହସେ ଚୂଳ ଦେଲୁ ତେଣେ ପଦୂର ଲୋ । ୩ ।
ପଡ଼ିତ ଗଲୁ ଅଖଞ୍ଜେ ନବକିଶୋର !
ଲଗାଇଲୁ ଆହୁଁ ଶ୍ୟାମ ପୀରତିଡୋର ଲୋ । ୪ ।
କେତେ ହଟହଟା କୁଆକୁଟା ବସିବ ।
ନୟନ ଲୋତକେ ସିନା ହୃଦ ଭାସିବ ଲୋ । ୫ ।
ଆଗରୁ ଯା ମୋତେ ପଦେ ଭାଳିଲୁ ନାହିଁ ।
ବୋଲେ ବେଣୁଧର ଆଉ ଉପାୟ କାହିଁ ଲୋ ? । ୬ ।
( ଭଲ କଲ କି ଭଙ୍ଗୀ ଲୋ—ବୁଝେ )

—❋—

( ରାଗ—ମାଳଆ । ତାଳ—ଆଠତାଳୀ )

ଦଳା-ଅଞ୍ଜନ କାନ୍ତି କଳା-ଜଦଣ୍ଡ-ହାଣ୍ଡି,
ହାବୁଡ଼େ ଆଜ ଗଲୁ ପଡ଼ିକରେ । ଘୋଷା ।
ଚଳା କନକ ଗୋରୀ ! ଚଳାପାଙ୍ଗୀ କିଶୋରୀ !
ମୋ କୁହା କଥା ଗଲୁ ହୁଡ଼ିକରେ ?
କୋଟି ମନ୍ମଥ ଶିର ତା ଅପୂର୍ବ ମାଧୁରୀ,—
ସିନ୍ଧୁ-ସଲିଳେ ଗଲୁ ବୁଡ଼ିକରେ ? । ୧ ।
କଳାହକ କୁନ୍ତଳା ଲୀଳା ନିଧି ଛଇଳା,
ଫିଟାଇ କହ ହୃଦ ଢେଡ଼ିକରେ ?
ଜାଣି ଜାଣି ସୁମନା ଏକା ଯାଇ ଯମୁନା,
ଏ ଦଶା ଆଣିଲୁ ତୁ ଲେଉଡ଼ିକରେ ? । ୨ ।
ଜଳା କବାଟି ବାନେ ବୁଦ୍ଧି ଚେତନା ଘଟେ,
ନ ରଖୁ ପରି ଘଡ଼ ଘଡ଼ିକରେ ?
କି ସାହସେ ରେ ଧନ ! ବଳାଇ ଦେଲୁ ମନ,
କୁଞ୍ଜେ ଚଷ୍ଟ ଦେବତା ଅଡ଼ିକରେ । ୩ ।

କଲୁ ତୁ ଅବସର ଏଥିକି ପ୍ରତିକାର
ଯା ଅଛି ଦେବ ମୁଁ ସଜାଡ଼ିକରେ ?
କହଇ ବେଣୁଧର ତୋ ଦେହ ଦାହଜ୍ୱର
ଘୁଞ୍ଚିବ ଗଲେ କୁଞ୍ଜବାଡ଼ିକରେ । ୪ ।
( ସଜନୀ ଆଜ ରଜନୀରେ ନଇଲେ—ବୃତ୍ତେ )

— ❊ —

( ରାଗ—ମରୁଆ । ତାଳ—ଆଠତାଳୀ )
ଜାଣ ମୋ ପରାଣ ସଙ୍ଗି
ନାହିଁ ନାହିଁ କାହିଁ ମନ ମୋହନ ଭଙ୍ଗୀ । ଘୋଷା ।
ସେ ବନ ଭୁ ଥିଲୁ ସଙ୍ଗେ ହାସ୍ୟ ପରିହାସ ରଙ୍ଗେ,
ଖୁହିଁ ହେଲେ ଯା ନେହକଣ୍ଟାସ୍ତ ଫିଙ୍ଗି । ୧ ।
ଆଜ ବନେ ବଣାଖିକା ଭୁଲେ ଆସିଥିଲ ଏକା,
ଯା କଲେ ଖେଳାଇ ଡୋଳା ଭ୍ରୂ ଭୁଜଙ୍ଗ
ବନକୁ ବନତ ନୂଆ— ହୃଦରଆ ସେ କାହ୍ନୁଆ,
ପତିବ୍ରତ ମେରୁ ଗର୍ବ ଦେଲଣି ଭାଙ୍ଗି । ୩ ।
ବେଣୁଧର ବୋଲେ ସତ କୋଟି ମନ୍ମଥ ଯାନନ୍ତ;
ନିକୁଞ୍ଜ ମତ୍ତକେଶରୀ ଭ୍ରମେ କୁରଙ୍ଗ । ୪ ।
( ଶ୍ୟାମ ନାଗର ହେ ବାମନସ୍ୱମୀ ଭ୍ୱଳ—ବୃତ୍ତେ )

—o—

( ରାଗ – ତୋଡ଼ିସରଜ । ତାଳ—ଆଠତାଳୀ )
କହ୍ନେଇ ସିନା ଗେଲେ ଗୋ ପ୍ରିୟସଖି !
ଅଜ୍ଞତ ମଣିଲୁ ମୋ କଥା ପଦକୁ ହେଜି ନ ପାରିଲୁ ଭଲେ ଗୋ ।ଘୋଷା।
ପଶୁତ ଲମ୍ପଟ ପୀତପଟ ନଟପଟଳ—ମୁକୁଟ ଭୁଲେ ଗୋ ।
ଜସୁନ୍ଧରଗଣ୍ଡ-ଚମ୍ପାମାଳୀ ଶୋଭା-ଲହରୀ ରସୁଁ ଖିଆଲେ ଗୋ । ୧ ।
ତୋର ନାମ ଧରି ମୋହନ ବାଂଶରୀ ବାଇ ମାଧବନେ ବୁଲେ ଗୋ ।
ଅନୁରାଗେ ବୁଝି ଛଳେ ପିନ୍ଧେ ନିତ କମ୍ପା ଚମ୍ପା ଦାମ ଗଳେ ଗୋ । ୨ ।
ପୁଣି ଅଛୁ ଦେଖି ରସ ମୋର ଆଖି ତା ସ୍ନେହ ସେବନ୍ତିଫୁଲେ ଗୋ ।
ଶିଖୀଚୂଳେ ନେଇ ଲଗାବେ ଖଞ୍ଜିଇ ନେହଧୋଇ ପ୍ରେମଜଳେ ଗୋ । ୩ ।
ବସନ୍ତ ବରନ ଦ୍ରବ୍ୟ ଯେତେ ଧନ ! ତାହା ମାନସୁ ନ ଭୁଲେ ଗୋ ।
ବୋଲେ ବେଣୁଧର ଭାବ ତାର ତୋର ଅନୁମାନିଛୁ ପଢ଼ିଲେ ଗୋ । ୪ ।
( ମନେ ହସି ଦେଲୁ କେଣେ ଗୋ—ପ୍ରତି । )

—o—

( ରାଗ— ରସକେଦାର । ତାଳ—ଖେମଟା )

ମିତ ଚିତ୍ତଚୋର ପୀତପଟିଆଙ୍କୁ ହିତବୋଲି ତୁ ନମଣିବୁ ।
ଇତର ମୁଖରୁ କେତେ ଅପବାଦ ଗୀତ ତମାଳୀରେ ଶୁଣିବୁ । ଘୋଷା ।
ସତ କହୁଅଛୁ ଆଜ ଏଣିକି ଏକୁଟିଆ ଯିବୁନାହିଁ ପାଣିକି ;
ନଟକୁଟିଆ ମୁରଲୀପାଣିକି ମାନସକୁ ନ ଆଣିବୁ । ୧ ।
ଯତନରେ ଧରି ତୋର ଭୁଜକୁ ମନ୍ଥର କରି ସେ ନେବ କୁଞ୍ଜକୁ,
ସତରକ ହୋଇ ରଖି ଲାଜକୁ କାଳିଆ ଫାନ୍ଦରୁ ଜିଣିବୁ ।୨ ।
ରତନ ହଜାଇ ଖୋଜିଲାପରି ଅନ୍ତରଗତରେ ହେବୁଟି ଘାରି;
ରହିଁଦେବୁ ଯେବେ ସେ ଚିନ୍ତାମଣିକି ଚିନ୍ତା କରି ଗାର ଗଣିବୁ । ୩ ।
କବିଚନ୍ଦ୍ର ବେଣୁଧର ବଦନ୍ତି ଏତିକିଲେ ସଖି ମୋର ବିନତି,
ଗଜଗତି ମତି ମୋହନ ପ୍ରୀତି ସ୍ୱରସରୁ ବିଷ ଗୁଣିବୁ । ୪ ।
( ପ୍ରୀତି କଥା ସଖି କହନା—ବୃନ୍ଦେ )

—o—

( ରାଗ—ନଟସାରଙ୍ଗ । ତାଳ—ପହପଟ )

ନନ୍ଦନନ୍ଦନ ବଦନ ଚନ୍ଦ୍ରମାଙ୍କୁ
ଦେଖି ସଖି ବାଇ ହୋଇଲୁକି ଗୋ । ଘୋଷା ।
ଘନ ବରନଙ୍କୁ ମନ ମୋହନା ତୁ,
ହୃଦ ସମ୍ପୁଟରେ ଥୋଇଲୁକି ଗୋ ।
ମନ ଛନ୍ଦଛନ୍ଦେ ନେତ୍ର ଅନଥନେ,
ପ୍ରିୟ ହସି କର ଧଇଲୁକି ଗୋ । ୧ ।
ଅନବରତେ ତା— ସନମତ ପାଇଁ,
ଯମୁନା ପାଣିକି ଧାଇଁଲୁକି ଗୋ ।
ଜନ ଶୂନ୍ୟ ପଥେ ମନସିଜ ହାତେ,
ଏତେ ପରାଭବ ପାଇଲୁକି ଗୋ । ୨ ।
ଅନୁରାଗ ଛଳେ ବନୁ ଫୁଲ ତୋଳି,
ଉପହାର ଦେବ ବୋଇଲୁକି ଗୋ ।
ତନୁ ତା ତନୁରେ ମିଶାଇବା ପାଇଁ,
ଧନୁ ଭ୍ରୂରୁ ଗୁଳ ରୁହିଁଲୁକି ଗୋ । ୩ ।
ଭାନୁ ସୁତା କୂଳେ କେଳି ନୀପମୂଳେ,
କାହ୍ନୁ ସ୍ନେହ ଗୁଣ ହୋଇଲୁକି ଗୋ । ୪ ।

ବନ୍ଧୁ ଧନ ଚୋର                    କ ନୂତନ ପ୍ରୀତି—
କଲ୍ପଲତାକୁ ବଢ଼ାଇଲୁକ ଗୋ ।
ମନ୍ଦ ଯାଶୋଦେବୁ                    ନାହିଁ ବେଣୁଧର,
ବନତକ ମାନ ରହିଲକ ଗୋ । ୬ ।
( ଘନ ବରନ ମଦନ ମୋହନଙ୍କୁ—ବୃତ୍ତ )
( ରାଗ—ଝିଂଝୋଟ । ତାଳ—ଖେମଟା )
ନ ଯା ଯମୁନା ଲୋ ସହି ! ନ ଯା ଯମୁନା !
ଘାଟ ବାଟ ଜଗିଛି ସେ ଛଇଲ କହ୍ନା ଲୋ । ଘୋଷା ।
ତାକୁ ତୁ ଦେଖିଲାକ୍ଷଣି                    ହୋଇଯିବୁ ପାଗଳଣୀ,
ଗରବ ଗୁମାନ ଦମ୍ଭ କରିବ ଚୂନା ।୧।
ଏ ବରଜେ କେତେ ବାଳ                    କାହାକୁ ଛିରେ ସଙ୍ଗାଳ,
ତୋତାଠାରେ ଯିନା ନତ ତାହାର କୁହ୍ନା । ୨ ।
ବାଉଁଶର ବଂଶୀ ଖଣ୍ଡ—                    ଫୁଙ୍କି ବଅଇ ଯା ଦଣ୍ଡ,
ଆଜନମ ସୁଖି ଧର୍ମ ତା ଜାଣିଛୁ ନା ? । ୩ ।
ତୋ ନାମ ଗୋଟି କରକା—                    କରି ବୁଲେ ଗିରି ଟେକା,
ଯେତେ ମନା କଲେ ହେଲେ ନକରେ ଘେନା । ୪ ।
ବୋଲେ ବେଣୁଧର ମିତ !                    ଯାହା କହିଲ ଗୋ ସତ,
କ ନ କରନ୍ତି ସେ ଘନ କାଳଆସୁନା । ୫ ।
( ମୋତେ କହନା ଲୋ ସହି ! ମୋତେ କହନା—ବୃତ୍ତ)

—❋—

(ରାଗ – ସିନ୍ଧୁଡ଼ା । ତାଳ – ରୂପକ)
ଭଳ ହେଉଛୁ କାହିଁକି ?
ତାଳ ବଜାଇ ହସିବେ କାହିଁକି ? । ଘୋଷା ।
ମାଳ କରିବାକୁ                    କାଳିଆ କାହ୍ନୁକୁ
ଡାକିଲୁ ନେଇ ତେଣିକି ।
ପାଳି ପାଳି କରି                    କେତେ ବୁଝାଇଲି
ନ ପାଳିଲୁ ମୋ ବାଣୀକି । ୧ ।
ଗୁଳିଲୁ ତ ପାଦ                    ସେ କାଳିନ୍ଦ ହ୍ରଦ,
ଉପବନ ପଦ୍ମିଣୀକି ।
କ୍ଷାଳକୁ ନାହିଁକି                    ଲୋଚକେ ନପୂନ,
ଅକଳଙ୍କ ଶଶୀମୁଖି । ୨ ।

ବାଳକା ବୁଦ୍ଧି ତ ଗୁଡ଼ ନାହିଁ ତୋର,
ଚମକ ପଡ଼ୁ ଘ୍ରଇକ ।
ଟାଳ ଲାଜ ଭୟ ଦେଲୁ କେଣେ ଲୟ, ?
ମାପମୂଳଆ ଘ୍ରଇକ । ୩ ।
ଆଳୀ ଗୀର ଶୁଣି ଶ୍ରୀ ଭନୁ ଦୁଲାଳୀ,
ଲପନ ଦେଉଁ ମଞ୍ଜିକ ।
କାଳ ଦଳା ପଦ ଚନ୍ଦ୍ର ବେଣୁଧର,
ବୋଲେ ଦେବ ମଳାଇକ ? । ୪ ।
( ସହ୍ବ ! ଅଣ୍ଡିଳ ନାହିଁକ—ବୃତେ )

—❋—

( ରାଗ—ତୋଡ଼ି ପରଜ । ତାଳ—ଆଡ଼ତାଳୀ )
ଚଣ୍ଡି ସଙ୍ଗାଳରେ, ଗେଲେ କହ୍ବଦେଲ ପିନା ।
ଗୁପତେ ଯାହାଙ୍କୁ ବରଣ କରିଛୁ ସେ ତୋ କଣ୍ଠ ରତ୍ନମୀନା ।ଘୋଷା
ଗୋବର୍ଦ୍ଧନ ଧର ମୋହନ ସୁନ୍ଦର ତୋ ଲାଗି କରେ ଭାବନା ।
ଗୀତ ଛଳେ ବଲେ ରାଧାସୁତାକୁଳେ ଗାପ୍ତନ କରଇ ତୋ ନା । ୧ ।
ମନ ଭଡ଼ିବାକୁ ବୋଇଲଟି ରାଧେ ନ ଯିବୁ ଏକା ଯମୁନା ।
ଛନକା ପୂରାଇ ଗୁଣ୍ଡରେ ତୁ କେଡ଼େ ବେଗେ ଧେଲୁ ହୋଧମନା ? । ୨ ।
ଗୋବନ୍ଦ ସୁଖଦାୟିନୀ ଜେମାମଣି ଆଜନ୍ମ ସୁଖୀ ନବୀନା ।
ଗଳ୍ପ କଥା ଶତ୍ରେ ନ ଧର କଣ୍ଠରେ ବଣା କୁରଙ୍ଗୀ ନୟନା । ୩ ।
ଗଞ୍ଜି ନ ହୁଅ ସନ୍ତାପେ ରସନଧି ଶରଦଚନ୍ଦ୍ର ବଦନା ।
ଗଜପତ୍ନି ଆଜ ଶୁଭେ ବେଶ ସାଜ ପୂରୁ ତୋ ମନ କାମନା । ୪ ।
ଗୁନ୍ଥାଅ ସଜମାମାନଙ୍କ ହାତରେ ମଲ୍ଲୀ ନଆଳୀ ସୁମନା ।
ଗୋପବୃନ୍ଦ ଭୁଲେ କୁଞ୍ଜେ ବଳସିବୁ ବେଣୁଧର କରେ ଜଣା । ୫ ।
( ଆଜ ଖେଳନା ଗୋ ଏ ନକୁଞ୍ଜେ ଗଳ ଗଳ—ବୃତେ )

—୦—

( ରାଗ—କେଳ ସାରଙ୍ଗ । ତାଳ—ଝେମଟା । )
କଞ୍ଜନୟନା କରେଣ ସା ଜାଣିଥା ରେ ।
କଥା ପଦକ ମନକୁ ଆଣିଥା ରେ । ଘୋଷା ।
କଲବେଳେ ଅଭିସାର ସେ ଯମୁନାପଥେ ।
କଦମ୍ବମୂଳକୁ ନ ଯିବୁ ଆଡ଼କେହେ । ୧ ।

କନକତୋଷମାନଙ୍କୁ ଉଷ୍ଟୁନ୍ତି ଯେ ଟାଙ୍କ ।
କଳାପିଚୂଳଆ କହ୍ନା ଉଷିବ କ ବାଙ୍କ ? । ୨ ।
କଳଙ୍କଲଗା ମୋହ୍ନମା ଶିଖିଛୁ ସେ କାହ୍ନୁ ?
କହେ ଏ ବୁଝିବଣା ପର ଶୃଙ୍ଖୁ ଶୃଙ୍ଖୁ । ୩ ।
କହଚନ୍ଦ୍ର ବେଣୁଧର ନନ୍ଦର ଏ ଗୀତେ ।
କୁଞ୍ଜବନ କାଳିଆକୁ ନ ଯିବୁ ପରତେ । ୪ ।
( ପର ପୀରତି ପାତୋଷ ଯାଇକ—ବୃତେ )

—※—

[ ରାଗ—ଟିପା । ତାଳ ଝୁଲା ]
ସୁନା ପିଞ୍ଜୁଳ ମୋ ରାଇ !
(କମା) କହ୍ନାଇ ଅଙ୍ଗକୁ ଦେଲୁ ଅନାଇ ଗୋ ଶ୍ରୀ ଜେମାଦେଈ !
(ପେଚି) ବବେକ ଦେଲ୍ ହଜାଇ ଗୋ ଶ୍ରୀ ଜେମାଦେଈ ! । ୧ ।
କରୁଥିଲ ପଣ ମନା ?
ନ ଯେନ୍ନଲ୍ ତାହା ଛଳେ ସୁମନା ହେ, ଚନ୍ଦ୍ରଆନନା !
(ଯାହା) ଲଭିଲୁ ଏତେ ବେଦନା ରେ, ଚନ୍ଦ୍ରଆନନା । ୨ ।
ସେ ମତ୍ତ କଳା କୁଞ୍ଜରେ ।
ସ୍ନେହୀ ହେଲୁ ଭୁ ତ କଳାକୁଞ୍ଜରେ ଗୋ, କାଳସଞ୍ଜରେ ।
(ଭୁ ତ) ଚଢ଼ିଗଲୁ ଅଞ୍ଜରେ ଗୋ, କାଳସଞ୍ଜରେ । ୩ ।
ମୋ କଣ୍ଠୋଷମଣିବର ।
ତୋକ ଦେଇଛୁ ତ ପ୍ରେମ ଜହର ଗୋ, ବଅହଜ୍ଵର । ୪ ।
[ ଅପୂର୍ଣ୍ଣ )—
[ କୃଷ୍ଣଚନ୍ଦ୍ର ଚଉତିଶା ବାଣୀ ]

—※—

( ରାଗ—ମଙ୍ଗଳ କଲ୍ୟାଣ । ତାଳ ଖେମଟା )
ଯିବୁନାହିଁ ସଜନ ! କୁଞ୍ଜବନକୁ ଏକା ।
ଦେଖିଲେ କ ଗୁଡ଼ବ ସେ ମୁରଲୀଫୁଙ୍କା ॥
ସେହି ଚଉଚମକା, ସେହି ଯୁବଷରଙ୍କା । ଘୋଷା ।
ହୁନ୍ତ ଯେବେ ସେ ଦେଖଇ ଭୁରୁଭଙ୍ଗୀରେ ଠାରଇ,
ମୁରୁଛି ପାରବ ତାହା କେଉଁ ଗୋପିକା ? । ୧ ।

କୁଳଛଡ଼ା ବୃତ୍ତିକି ସେ   ଠକ କରିଛୁ ମାନସେ,
ମୂଳ ଯିନା ତାର ନାଗ୍ରମଗ୍ର ଜାଲିକା । ୨ ।
ଦେଖିଲେ ତା ଭଙ୍ଗୀମାନ   ରଖି ନୁହଇ ଗୁମାନ,
ଲେଖି ଯଉବନ ଧନ କେ ନୋହେ ଝଳା ? ୩ ।
ବେଣୁଧର ବୋଲେ ଶୁଣ   ମଣୁଛୁ କି ତାକୁ ସାନ, ?
ଅଣୁ ପରମାଣେ ଗ୍ରଧେ ନକରୁ ଧକା ? । ୪ ।
( ଓଡ଼ୁଥାଇ ସଜନୀ ! ଘରୁ ଯିବାକୁ ତେଣେ — ବୃତ୍ତ )

—o—

( ରାଗ—ଚୋଡ଼ ପରଜ ତାଳ—ଆଡ଼ତାଳୀ )

ଛୁଆ କହ୍ନାଇଁ ଲେ ଧୂଆଏ ଲୋତକେ ଆଖି ।
ନୂଆ ଭୂଆଁଶୁଣିମାନଙ୍କୁ ସେ ପବ୍ର ମାଟମୂଳେ ଥାଏ ଠାକି ? । ପୋଷା
ପୁଆର ତାହାର ଅତି ଚମତ୍କାର ଜାଣିନାହୁଁ କି ଲୋ ସଖି !
ଭୂଆକୁ ଛୁଆ ସେ କୁଆଁକୁଠା ପଣେ କି ରଙ୍ଗେ ଠାରଇ ଆଖି । ୧ ।
ମୁଁ ଆଗରେ ଥିଲି ସେଦିନ ଛଳିଲା ତୁ ପଛରେ ଥିଲୁ ଲୁକି ।
ଶୁଆକୁ ଛଅଣା ଝିମିଆ ପରାପ୍ତି କି ଟଣ୍ଠିଲେ ନେଲା ଝିଙ୍କି । ୨ ।
ଦୁଆର ଦେହଳି ମନା ଯାହା ଲାଗି ନଣନ୍ଦ ଗଞ୍ଜେ ଯହିଁକି ।
ଗୁଆଳ ଏ ଯେତେ ସାହି ପଡ଼ିଶାରେ କେହି ନ ପାରନ୍ତି ଦେଖି । ୩ ।
ଜୁଆସ ଭିତରେ ଲୁଚିଲେ ଏଣିକି ଅକଳଙ୍କ ଚନ୍ଦ୍ରମୁଖି !
ଯୂଆନା ଅକାଡ଼ି ପସର ଏ ଗୋପ ବଜାରେ ତୁ ବାଟଜାକ୍ଷୀ । ୪ ।
ଚୂଆ ଚନ୍ଦନ ପାଟିଅ ଠାରେ ଯେତେକ ଲୋଭ ରଖିବୁ ଏଣିକି ।
ଖୁଆଇବୁ ଗାଳି ସିନା ବେଣୁଧର ସନ୍ଧ୍ୟାରେ ସଜନୀଙ୍କି । ୫ ।
( ଜଣା ପଡ଼ିଲାରେ କଣା ମୃଗାକ୍ଷୀ ତୋ ଗୁଣ—ବୃତ୍ତ )

—❉—

( ରାଗ—ଚୋଡ଼ପରଜ । ତାଳ— ଆଠତାଳୀ )

ସଙ୍ଗିନ ! ଆହା ରାସ ରଙ୍ଗିନରେ ।
ମାଳ ନାଗୁଣୀ ସୁଭୁରୁ ଭଙ୍ଗିନରେ । ପଦ ।
ଜାଣୁ ଜାଣୁ କେତେ ସାହସ କଲୁ ।
କାଣୁଆ ମାର ବାଣେ ଘାରି ହେଲୁ ରେ । ୧ ।
କେଉଁ ପଢ଼ ଧନ ! କେଉଁ ପସନ୍ଦେ ?
ହାତ ବଢ଼ାଇଲୁ ଗଗନ ଚାନ୍ଦେ ରେ । ୨ ।

ତୁ ତ ସୁଚକ୍ଷୁ ନ ଚିନା କର ।
କୁକୁକେ କୋକିଲ ବାସି କାକର ରେ । ୩ ।
ରାଜ ଜେମା ଆଜ କ ନ ହେଲ ଟି !
ତରହ ସିନ୍ଧୁରେ ଭସି ଗଲୁଟି ରେ । ୪ ।
ଯେଣୁ ତୁ ସନ୍ତାପେ ପାଉଛୁ ଦୁଃଖ ।
ବେଣୁ ବୋଲେ ଏଣୁ ମୋର କି ସୁଖରେ । ୫ । ?
( ଝଗଡ଼ ମାଟ ହେଲ ହେ ଶ୍ୟାମ— ବୃତେଃ )

—❊—

( ରାଗ—କେଳକୌମୁଦୀ । ତାଳ—ଏକତାଳୀ )

ଯୌବନ ବନ  ଦେଉଛୁ ସଖି !
ତୋ ମନ ପ୍ରବୃତିକ ଜାଣିବାକୁ ।
ମନ ଧନ ଦେଇ  ରାଧିକେ ତୋ ପାଇଁ,
ସ୍ନେହସୁଧା ପଣା ପୁଣିବାକୁ । ଘୋଷା ।
ତୋହର ଆଦେଶେ  ତାଙ୍କୁ ଗୋ ହରଷେ,
ନଡ଼ ଖୋଜୁ ଥାଉଁ ଆଣିବାକୁ ।
ଅଞ୍ଜି ନୋହୁଁ କୁଞ୍ଜ  ମଧ୍ୟରେ ଗୋ କଞ୍ଜ—
ପୂଚା ଚନ୍ଦ୍ରାତପ ଟାଣିବାକୁ । ୧ ।
ଶଗୁଙ୍କୁ ତଲାଇ  ଦେଉଁ ଗୋ ମିଳାଇ,
କାଳିଆ ତ୍ରିଭଙ୍ଗ ଠାଣିମାକୁ ।
ବୃନ୍ଦାବନେ ଧାଉଁ  ମହାନନ୍ଦ ପାଉଁ,
ତୋ ମୃଦୁ ବାଣୀଟି ଶୁଣିବାକୁ । ୨ ।
ତୋ ପ୍ରେମ ବଜାରେ  ବଣ୍ଟିର ମଜାରେ,
ନୀଳମଣି ରତ୍ନ କଣିବାକୁ ।
ବଳାଉଁ ଶରଧା  ସଦା ରାଧା ରାଧା,
ଗୋବନ୍ଦ ନାମଟି ଗୁଣିବାକୁ । ୩ ।
ଆମ୍ଭେ ସବି ଅଠ  ତୋର ପ୍ରୀତ ପାଠ,
ପଢୁ ଥାଉଁ ଗୀତ ଭଣିବାକୁ ।
କବିଚନ୍ଦ୍ର ରଙ୍ଗେ  ଦେଉଁ ଗୀତବାଟେ,
ଫୁଲରେ ତାଜ ହାଣିବାକୁ । ୪ ।

( ଆସ ଗୋ ସଜ୍ଜ ! ପ୍ରାଣ ମାଧୋଇ ଛନ୍ଦାଚରଣ ତଳେ – ବୃତେଃ )

—୦—

( ରାଗ—କଳହଂସକେଦାର । ତାଳ—ଝୁଲା )
ଛଳ ବସିବୁ ସିନା ।
କାଳିଆ ମୂରତିଙ୍କି ନବ ନଗୀନା । ଘୋଷା ।
ଗାଳି ନନ୍ଦନ ଯୁଗୁଁ ମାରୁଛେ ବନ ।
ଘାଳଣ ଭଳି ହେବୁ ପଛନ୍ତ ଧନ ! ୧ ।
ଚାଳିଲୁ ନାହିଁ ମୋର କହିବା ହିତ ।
ଛାଳିଲୁ ମାପ ଆଡ଼େ ଅପାଙ୍ଗ ମତ ! । ୨ ।
ଝାଳିଲୁ ମନ ପୁଣି ସେ ଖାଠ ଘଟେ ।
ଲଳକୁ ନଳ ପଦ ରୁ ଦାଣ୍ଡେ ହାଟେ ? । ୩ ।
ମାଳି ବଲ୍ଲୁଣି ବୋଲି ବ୍ରଜମୋହନ ।
ତାଳି ମାରି ହସିବେ ଏ ଗୋପଜନ । ୪ ।
ଆଳୀଙ୍କି ନ ଡରୁଣ କି କଲୁ ଏତେ ?
ଜାଳିବ ମାର ବହ୍ନି ତୋ ଅନ୍ତର୍ଗତେ । ୫ ।
ବାଳିକା ବୁଦ୍ଧି ଛାଡ଼ନାହିଁ ତୋହର ।
ଟାଳିଲୁ ଧୃତି ଭାଷେ ଏ ବେଣୁଧର । ୬ ।
( ରୂପରେ ଗୃହିଁ ଗୋପ କାଳିଆ ସୁନା—ବୃତ୍ତେ )

—o—

( ରାଗ—ଚନ୍ଦ୍ରକାମୋଦୀ । ତାଳ—ଅଠତାଳୀ )
ମନ ମୋହନ ଛଳିଲେ; ସଜନି !
ସେ ଶୋଭା ଚଉଦ ଭୁବନେ ନାହିଁ ଲୋ । ଘୋଷା ।
ଯେ ଦେଖିଛୁ ଶ୍ୟାମ-ତ୍ରିଭଙ୍ଗୀ ନାଟ,
ନୋହିଛୁ କି ତାର ଚିତ୍ତ ଉଚାଟ ଲୋ । ୧ ।
ଯେ ଶୁଣିଛୁ କୃଷ୍ଣ ମୁରଲୀ ଗୀତ,
ତରଳି ନ ଯାଇଛୁ କି ତା ଚିତ୍ତ ଲୋ । ୨ ।
ଯେ ଚାଖିଛୁ କାହ୍ନୁ ଅଧରାମୃତ,
ଧନ୍ୟ ସିନା ତାର ପୂର୍ବ ସୁକୃତ ଲୋ । ୩ ।
ଯେ ଲଭିଛୁ ହରି ଚରଣ ଧୂଳି,
ତାକୁ ଜାଣ ଭାଗ୍ୟବନ୍ତି ବୋଲି ଲୋ । ୪ ।
ବେଣୁଧର ବୋଲେ ମୋ ପୁଣ୍ୟ ନାହିଁ
କେବେ ସେବା ଅବା ପାଇବି କାହିଁ ? ଲୋ । ୫ ।
( ତୋହରି ଶରଣ ଗଲି ରେ, ମୁରଲୀ—ବୃତ୍ତେ )

—o—

( ରାଗ—ତୋଡ଼ି ପରଜ । ତାଳ—ଏକତାଳୀ )

ଛନ ଛନ ମନ କେମନେ କର ମଙ୍ଗାତ ! ଛନ ଛନ ମନ କେମନେ ?
ଛବି ନିଭଙ୍ଗିଆ ସେ ନବରଙ୍ଗିଆ, ନାଚିଲେ କି ମେଘ କୋଣରେ ॥
ଛଦ୍ମ ନ ରଖିଣ, କହ ପ୍ରାଣ ଧନ, ଚିତ୍ତ ଖଟାଇଛୁ କେଉଁଣେ ।
ଛପଦ ପରି ଯା-ସାନ୍ତ ନାସା ଘଟା, ସେ ବାଇ କଲା କି ତେଣେ ରେ ।୧।
ଛାଡ଼ ପାଦ ଯୁଗ, ଅତି ଅନୁରାଗ ବଂଶୀଠାରେ କରେ ଜଣେ ।
ଛପି ନ ପାରିବ, ତାରେ ଯାଇ ଭାବ, ଫିଟି ପଡ଼ିବ ସେ ଗୁଣେ ରେ ।୨।
ଛଟା ପାଞ୍ଚଣିଆଁ ଶ୍ରୀ ବୃନ୍ଦାବନଆଁ ମୋହନୀ ଲଗାଇ ଜାଣେ !
ଛଟ ପଟ କରାଇବ ଆଖିଚକ୍ଷୁ ଅତୁଳ ବରଷ-ବାଣେ ରେ ।୩।
ଛନ୍ଦ ଗୋପ ସେତେ ସୁନ୍ଦରୀ ଯୁବତୀ ସଙ୍ଗେ କି ନିକୁଞ୍ଜ ଠାଣେ ।
ଛପି ରହିଥାଏ ମାରି ଅଣା ଘାଟେ କେ ଜାଣେ ସେ କେଉଁ ଗୁଣେ ରେ ।୪।
ଛଳ ପରିହାସ ଭଙ୍ଗୀ ବାଣୀ ରେ ସେ ନାସା ଦମ୍ଭ ଚହ୍ନୁ ହାଣେ ।
ଛଇଳ ସୁନ୍ଦର ହୃଦର ଖଣ୍ଡିକ ଗୁଣ୍ଡ ନ ପିବ ପରାଣେ ରେ ।୫।
ଛନ୍ଦ କପଟିଆ ଚାଲ କର ପତ୍ତ ତୁ ପରକୁଟି ଅନୁକ୍ଷଣେ ।
ଛପନ ଭୋଗିଆ ଭାବ ଗୁଣି ଗୁଣି ପଶ ବେଣୁଧର ଭଣେ ରେ ।୬।

( କହିଲେ ବନ୍ଧୁକୁ ସେବକରେ—ପ୍ରତି )

—*—

( ରାଗ—ଲଳିତକାମୋଦୀ । ତାଳ—ଝୁଲା )

କିଣା ଗଲୁଣି ଗୋ ରାଧେ ! କିଆଁ ତେତେଣେ ରହିଲୁ ?
ସେ କାଳିଆ କୁହୁକରେ ପଡ଼ି ଏଡ଼େ ହୋଇଲୁ । ଘୋଷା ।
ସତେ କହରେ ଜଣୋର ! ଇତରେକ ମୋହନ ଶୀଘ୍ର,
ନବ ଘନ ବିଦ୍ୟୁପରି ଖେଳିବା ବଖାଣିଲୁ ।୧।
ତା ବଚନ୍ନ ବାଣୀ ଶୁଣି, ଭୁଲିଗଲୁ ଗୁଣମଣି,
ଶିଖି ଚୂଳପରେ ଆଖି ଅଞ୍ଜଳକୁ ଡାଳିଲୁ ।୨।
ଏବେ ତ ଲୁଚିଲେ କଳଙ୍କ; ଲଗାଇବୁ ହୋଇ ରଙ୍କ,
ଅକୀର୍ତ୍ତି-ପସରା ଶିରେ ବହିବାର ପାଞ୍ଚିଲୁ ।୩।
ତୁ ତ ସୁଜାଣ ରମଣୀ, କି ସାହାସ କଲୁ ଧନୀ,
ବେଣୁଧର ବୋଲେ ମୋତେ ପଚେ ଯା ନ କହିଲୁ ।୪।

( ଏବୁମାନ ଚୋର ରାଧେ ନ ଆସେ ମୋ ମନକୁ ଗୋ—ବୃନ୍ଦେ )

—o—

## ସଖୀଶିକ୍ଷା

( ରାଗ—ଚୋଢ଼ ପରଜ । ତାଳ—ଆଡ଼ତାଳି )

ଶୁଣ ମୋର ବାଣୀ କୁନ୍ଦରଦନା ଗୋ ।
ରାଧିକେ ! ତୋତେ କରୁଛି ମନା ଗୋ । ଘୋଷା ।
ଘାଟେ ଜଗିଅଛି ସେ ନନ୍ଦ କହ୍ନା ।
ଏକାହୋଇ ତୁ ନ ଯିବୁ ଯମୁନା ଗୋ । ୧ ।
ସେ ନଟକୁଣ୍ଡିଆ କାଳିଆସୁନା ।
କହିଲେ ତ କଥା ନ କରେ ଶୁଣା ଗୋ । ୨ ।
ତା ସଙ୍ଗ ସଂସାରୁ ବାହାର ସିନା ।
ବାଳକାକୁ ନାଶିଅଛି ପୂତନା ଗୋ । ୩ ।
ରଖିଥାଅ ମନେ ଚନ୍ଦ୍ରବଦନା ।
ବୋଲେ ବେଣୁଧର ସୁଖ ସଦନ । ଗୋ । ୪ ।
( ଝିଙ୍ଗେ ମାହି ହେଲ ହେ ଶ୍ୟାମ—ପ୍ରଭୃତି )

—*—

( ରାଗ—ଦକ୍ଷିଣୀ ବରାଡ଼ି । ତାଳ—ଏକତାଳୀ )

ଜାଣି ଜାଣୁ ମଣି ହୁଡ଼ିଗଲୁ ରେ ।
କଳଙ୍କ ପଙ୍କରେ ବୁଡ଼ିଗଲୁ ରେ (ତୁ) । ଘୋଷା ।

ନୂଆ ହୃଦଗଆ ଛୁଆକାହ୍ନୁ    ଭୁଆଁକୁ ଭୁଆଁ ବଜାଇ ବେଣୁ,
ଗୁଆଳୀ ଯୁବାଙ୍କ —    ସୁଆଗ ବତାଏ
ତା' ପାଦରେ ସତେ ପଡ଼ିଗଲୁ ରେ । ୧ ।

ଭୁଆଣୁଣୀ ସଖୀ କେବା କାହିଁ    ଦୁଆର ଦେହଳି ଡେଇଁ କାହିଁ ?
ଖୁଆଇବା ପାଇଁ    ଓଷ୍ଠ ସୁଧା ତାକୁ,
ଚନ୍ଦ୍ରା ଚରିତ କି ନ ଶୁଣିଲୁ ରେ ? । ୨ ।

ମୁଁ ଆଗରୁ ସବୁ ଥିଲି କହି    କୁଆଁଇ ତୋ କାନେ ଆରେ ସହି !
ଧୂଆଇବୁ ଏବେ    ଲୋତକେ ନୟନ,
ଆହା ତୁ କେଡ଼େ ସାହସ କଲୁ ରେ ? । ୩ ।

ଥୁଆଇବୁ କାହା ପସରି    କୁଆ ବୁଆ କେତେ କରିବେଟି,
ଚୁଆଇଲୁ ହୃଦେ    ଖେଦ-ମଞ୍ଜି ଗୋଟି,
ବେଣୁଧର ମନା ନ ଘେନିଲୁ ରେ । ୪ ।

—○—

( ରାଗ—ବସନ୍ତବରାଡ଼ି । ତାଳ—ତ୍ରିପୁଟ )

ଋତୁରାଜ ଶୁଭେ ବିଜୟେ କଲେଣି ଏ ମଧୁର ବୃନ୍ଦାବନେ ଗୋ !
ମଧୁପ ଶଙ୍ଖୁଆ ଜଣାଇ ଦେଉଛନ୍ତି ଗୁଣୁଗୁଣୁ ଶଙ୍ଖସ୍ୱନେ ଗୋ ।
କୋକିଳ ଡାକୁଆ ପୁଣି ।
ଡାକେ ପଞ୍ଚମ ତାନେ ମିଳଣି ଗୋ । ୧ ।
ଶୁଣ କୁମ୍ଭାଟୁଆ ମର୍ଦ୍ଦଳ ବାଉଛି ଧୁମୁଧୁମୁ ଦମକାଇ ଗୋ ।
ଖଞ୍ଜନ ମଦର ବଜାଉଛି ତାର ସୁବାଚଣ ଚମକାଇ ଗୋ ॥
ପୁଚ୍ଛ ଟେକି ଡାକେ କେକୀ ।
କାନ୍ତ ବିରହିଣୀ ଅଛ କେଉଁ ଗୋ ? । ୨ ।
ଶୁକ ସାରି ମିଳି ଧରୁଛନ୍ତି ତାଳି ମଙ୍ଗଳ ସଙ୍ଗୀତ ଗାନେ ଗୋ ।
ମଦନ ବସନ୍ତ—ଆଗମନ—ଗୀତ ଦୁଃଖ ସୁଖ ଦିଏ ପ୍ରାଣେ ଗୋ ॥
ବିୟୋଗୀଙ୍କର ଦୁଃଖଦ ।
ସଂଯୋଗୀଙ୍କ ଏ ସୁଖ ସମ୍ପଦ ଗୋ । ୩ ।
ଚମ୍ପା ନାଗେଶ୍ୱର ଅଶୋକ ଟଗର ମାଧବୀ ମଧୁମାଳତୀ ଗୋ ।
କୁନ୍ଦ କନିଅର ତଗର ମନ୍ଦାର ବିକଶିତ ପନ୍ତି ପନ୍ତି ଗୋ ।
ଏ ମଳୟ ସମୀରଣ ।
ନବ ପଲ୍ଲବେ କରେ ବ୍ୟଜନ ଗୋ । ୪ ।
ଆସ ଗୋ କିଶୋରୀ ନିକୁଞ୍ଜେ ବଦନ ଦେଖିବା ସେ କଉତୁକ ଗୋ ।
ଗୁନ୍ଥି ନାନାଫୁଲ କରି ସମତୁଲ ଗଳେ ଦେବୁଁ ଯଉତୁକ ଗୋ ॥
କର ଦୂର ଅନ୍ଧକାର ।
କରଯୋଡ଼ି କହେ ବେଣୁଧର ଗୋ । ୫ ।

( ନାଗମଣି ଗିରିଧାରୀ ଠାକୁର କ ବନ୍ଦୁର—କୁଚେଇ )

—❀—

## ଫୁଲଦୋଳି

( ରାଗ—କେଦାରଗୌଡ଼ା । ତାଳ—ଝୁଲା )

ଆସ ଆସ ଫୁଲଦୋଳି ଦିବା ସଖି ! ( ଆସ ଆସ ) । ଘୋଷା ।
ଦେଖ ଏ ବସନ୍ତକାଳ ବହୁଛି ମଳୟାନିଳ,
(ଆହା) କି ମଧୁର ପିକକୁଳ ରାବେଲଣି ମନ ମୋହି । ୧ ।
ଦେଖ ଏ ଭ୍ରମର ପନ୍ତି ଗୁଣୁଗୁଣୁ ସ୍ୱରେ ମାତି,
କି ରଙ୍ଗରେ ଉଡୁଛନ୍ତି ଏ ଫୁଲେ ସେ ଫୁଲେ ଯାଇ । ୨ ।

ଶୁକ ଶାରିକା ଗଞ୍ଜନ                    କରନ୍ତି ମୃଦୁ କୂଜନ,
ସତେ କି ସଙ୍ଗୀତ ତାନ—ସୁଧା ଢାଳୁଅଛି କର୍ଣ୍ଣ ।୩।
କାହିଁକି ଆଗୋ ଶ୍ରୀମତି                    ଆଜି ଏ ବିରସ ମତି,
କି ଭାବୁଛୁ ମୁଖ ପୋତି କହ କହ ଜେମାଦେଇ ।୪।
ପ୍ରିୟସଖି କାହିଁପାଇଁ ଉଷିଚୁକ — ଦୃଶ୍ୟ )

—✿—

( ରାଗ—ଚୋଢ଼ପରଜ । ତାଳ—ଆଡ଼ତାଳୀ )

ରାଧେ ! ଅନାଅ ଗୋ କି ଶୋଭା ଏ କୁଞ୍ଜବନ ।
ଫୁଟିଅଛି କି ଯତନେ ଭିନ ଭିନ ନାନାରଙ୍ଗରେ ସୁମନ ( ଘୋଷା )
ମାଧବୀ ଅଶୋକ ନଆଳୀ ଚମ୍ପକ ମଲ୍ଲୀ ସେବତୀ କାଞ୍ଚନ ।
କନଅର କୁନ୍ଦ ସ୍ଥଳ ଅରବିନ୍ଦ ଜୁଇଅନା ଫୁଲମାନ ।୧।
ରଙ୍ଗଣୀ ମନ୍ଦାର ବକୁଳ ଟଗର ମଧୁମାଳତୀ ପ୍ରସୂନ ।
ଯୂଥି ନାଗେଶ୍ୱର ବଧୂଲିକେଶ୍ୱର କେତକୀ ହରୁଛି ମନ ।୨।
ଏ କେଳିକଦମ୍ବ ପଳାଶ ପାଟଳୀ ଗୋଲାପ ଦେଖରେ ଧନ !
କିଆ କୁରୁବକ କି ଅପୂର୍ବ ଗନ୍ଧ କରେ ଆନନ୍ଦବର୍ଦ୍ଧନ ।୩।
ଗୁଣୁଗୁଣୁ ସ୍ୱରେ ଏ ମତ୍ତ ଭ୍ରମରେ କରୁଛନ୍ତି ମଧୁପାନ ।
ଚୂତ ମୁକୁଳକୁ କୋକିଳେ ଭକ୍ଷଣ କରନ୍ତି ପଞ୍ଚମେ ଗାନ ।୪।
ତୋଳି ଆଣିଦେବୁଁ ସଖୀମାନେ ସବୁ କାହିଁରେ ରଖିଛୁ ଧ୍ୟାନ ।
ସେହି ଫୁଲହାର ଟାହିଆ ସଜାଡ଼ି କରିବୁଁ ତୋତେ ମଣ୍ଡନ ।୫।
ଲାଜ ନ କର ମା କହିବଅ ଜେମାମଣି ତୋ ମୃଦୁ ବଚନ ।
କେଉଁ କେଉଁ ଫୁଲେ ତୋ ଶରଧା ବୋଲ ଆରେ କିଶୋରୀରତନ ।୬।
ସଖୀ ବାଣୀ ଶୁଣି ଶ୍ରୀ କିଶୋରୀମଣି ଭାଷିଲେ ଧୀରେ ଏସନ ।
ବୋଲେ ବେଣୁଧର ଜୟ ନିଶାକର ଧ୍ୟାୟି ସେ ପଦ ନଳିନ ।୭।
( ହାସ୍ୟ ଫୁଲଇ ଗୋ ଫଟଇ ଖେଡ଼େ ସୁନ୍ଦର—ବୃନ୍ଦେ )

—○—

ଲୁଚୋଳା । ରାଧାଉକ୍ତି ।

[ ରାଗ—ଇମନ୍ କଲ୍ୟାଣ, ତାଳ ଆଠତାଳୀ ]

ଆଗୋ ସଖି ! କି ସୁନ୍ଦର ଏହି ଫୁଲବନ ଗୋ ।
ଦେଖିଲାବେଳୁଁ ମୋହିତ ହୁଏ ମୋର ମନ ଗୋ । ପଦ ।
ଏ ବନପଟେ ତ କେବେ                    ଆସି ନ ଥିଲି ପୂର୍ବେ
ଯାହା ମୁଁ ଦେଖୁଛି ଏବେ, ଶୋଭା ଅକଥନ ଗୋ ।୧।

କେତେ ପରକାରେ ଫୁଲ ଫୁଟି ବଣେ ସମତୁଲ
ବାସନାରେ ଚହଟୁଛୁ ଚଉଦ ଭୁବନ ଗୋ । ୨ ।
ଯେତେ ଅଜଣା ମୋତେ ସେ ଫୁଲମାନ ଭୁରେତ
ତୋଳ ଅଣି ଚହ୍ନାଅ ମା ସବ ସଙ୍ଗୀଗଣ ଗୋ । ୩ ।
ଏମନ୍ତ ଦଖୀଙ୍କି ଭାଷି ଶ୍ରୀମତୀ ଶରଧା ବନ୍ଧ
ଶୁଣୁଁ ଲଳିତା କହନ୍ତି ବେଣୁଧର ଗୁଣ ଗୋ । ୪ ।
( କୁଞ୍ଜରଗାମିନୀ କୁଞ୍ଜମନ୍ଦରକୁ ଯିବା ଗୋ -- ବୃତ୍ତେ )

— ୦ —

( ରାଗ – ଲଳିତକାମୋଦୀ, ତାଳ ଝୁଲା )

ରାଧା ଉକ୍ତି

ଆଗୋ ସଖିଗଣ ମୋର ଏକ୍ଷ ନିବେଦନ ଗୋ !
ସବୁ ଫୁଲରୁ ମୋ ପାଇଁ ସବେ ତୋଳିଆଣ ଗୋ । ୧ ।
ଗୋଟି ଗୋଟି କରି ମୋତେ ଚହ୍ନାଅ ବହନ ଗୋ ।
କାହାର କି ନାମ କାର ସୁବାସ କେମନ ଗୋ । ୨ ।
ଅନ୍ତ ହାର ଗୁନ୍ଥି ବ ମିଶାଇ ମିଶାଇଣ ଗୋ ।
ଯେପରି କୁସୁମ ମାଳା ବର୍ଣ୍ଣିବ ଯତନ ଗୋ । ୩ ।
ଆହା କି ସୁନ୍ଦର ଦଶୁଛି ଏ ଫୁଲବନ ଗୋ ।
ନାଲି ନେଳି ଧଳା କଳା ବସନ୍ତ ବରନ ଗୋ । ୪ ।
ତୋଳ ଗୋ ସଖିଏ ବେଗେ ଚଳିବା ସଦନ ଗୋ ।
ବେଣୁଧର ବୋଲେ ରାଧେ ! ନ ହୁଅ ଉଛନ୍ନ ଗୋ । ୫ ।
( ଆଗୋ ରାଧେ ସେ ମୋହନ ମାନ କରୁ କାହିଁକି – ବୃତ୍ତେ)

— ୦ —

ଫୁଲତୋଳା – ସଖୀ – ଉକ୍ତି ।

[ ରାଗ – ଯଥାରାଗ – ତାଳ ଆଠତାଳୀ ]

ଶୁଣ ଚମ୍ପାଗୋରୀ, ଆରେ ଶ୍ରୀକିଶୋରୀ, ଦେଖ ଏ କେତକୀ ଫୁଲ ଗୋ ।
କପରି ସୁନ୍ଦର, ବାସ ମନୋହର ବଣେ ତୋ କାନ୍ତିକୁ ଲଗୋ ।
କୁଞ୍ଜବନ ଯାକ ବୁଲି । ଧମା ତୋପାଇଁ ଅଣିଛୁ ତୋଳି ଗୋ । ୧ ।
ବଣାଖା ବୋଲନ୍ତି, ଆରେ ଗୋ କୁନ୍ଦଦନ୍ତୀ, ଏ କୁନ୍ଦ ଫୁଲକୁ ଅନା ଗୋ ।
ଏହା ସଙ୍ଗେ ପୁଣି, ତୋଳିଛୁ ମିଳଣି, ଦେଖ ଏକ୍ଷ ଚୁସିଅନା ଗୋ ।
କାଁ ପଡ଼ୁଛି ଚହଟି । ଭଅ ନଅ ମୋର ଜମ୍ଭୁଟି ଗୋ । ୨ ।

ଶଙ୍ଖା ପକ୍ଷୀ ଭଣି, ହେ କଶୋଗ୍ରମଣି, ଦେଖ ଏକ୍ସ ଇନ୍ଦୀବର ଗୋ ।
ମାଳତୀଙ୍କ ଶଣ୍ଢ, ହତୁଛୁ କେମନ୍ତ, ଶୀଘ୍ର ଅବତଂସ କର ଗୋ ।
ଦେଖ ଏ ଅପରାଜିତା । ତୋ ନୟନକୁ ଜିଣିବ ଶୋଭିତା ଗୋ । ୩ ।
ଚମ୍ପକ ଲତିକା, ଭଙ୍ଗନ୍ତ ବୃଧିକା, ଏ ଚମ୍ପକ ପୁଷ୍ପ ଦେଖ ଗୋ ।
ଗୁନ୍ଥିବାକୁ ହାର, କେ ଦେବ ପର, ପଡ଼ିଲେ ଏହାକୁ ରଖ ଗୋ ।
ନାଥ ଏ ତଗର ସଜ୍ଜ । ତୋଳି ଅଣିଛୁ ମୁଁ ତୁମ୍ଭ ପାଇଁ ଗୋ । ୪ ।
ଇନ୍ଦୁରେଖା ପୁଣି, କହନ୍ତି ଗୋ ଧନି, ସ୍ୱର୍ଣ୍ଣ ସ୍ୱର୍ଣ୍ଣ କ ମଞ୍ଜୁଳ ଗୋ ।
ଏ ବନ୍ଧୁଲି ଫୁଲ, ଯାହାର ଉତ୍ତ କୁଳ, ତୋ ଅଧର ସମତୁଲ ଗୋ ।
ନାଥ ନାଗ କେଶର ଦେଖ । ଗୁନ୍ଥ ମାଳି ପାଖଡ଼ା ମିଶାଇ ଗୋ । ୫ ।
ତୁଙ୍ଗ ଭଦ୍ରା ସଖୀ, ଗଞ୍ଜଶିଞ୍ଜନକ, ଦେଇ ଶ୍ରୀ କଦୋମ୍ବ ପାଶେ ଗୋ ।
ବୋଲନ୍ତି ହେ ମିତ, ଯତ୍ନେ ଏହା ଗୁନ୍ଥ, ବକୁଳ ପରାଗ୍ ବାସେ ଗୋ ।
ଏ ତଗର ପୁଣି ନାଥ । ହାର କର ଗଳାରେ ଲମ୍ବିଅ ଗୋ । ୬ ।
ରଙ୍ଗଦେବୀ ବୋଲେ, ଏ ରଙ୍ଗିଣି ଫୁଲେ, ଗୁନ୍ଥିବ ହାର ସୁନ୍ଦର ଗୋ ।
ଆଦର ମୁଁ ତୋଳି, ଆଣିଛି ଉଜ୍ଜଳ, ଏ କୁସୁମ ନାଗେଶ୍ୱର ଗୋ ।
ନାଥ ହେ ଭୁଜଙ୍ଗମାହ୍ୱଗା । ଗଜଗମନା ଚନ୍ଦ୍ରବଦନା ଗୋ । ୭ ।
ସୁଦେବୀ ଚଣ୍ଡି, ତୋଳି ପୁଷ୍ପ ଯାଇ ସେବନ୍ତି ଅଶୋକ ବନ ।
ଶ୍ରୀମନ୍ତଙ୍କ ପାଶେ, କହନ୍ତି ହରଷେ, ଭାନୁ ନୃପତି ଦୁଲାଳୀ ଗୋ ।
ଦେଖ ବକୁଳ ସୁବାସ । ଏଥି ସଦା ଭୃଙ୍ଗ ହୋଏ ବଶ ଗୋ । ୮ ।
ଏହିପରି ପ୍ରୀତେ, ସଖୀ ଶ୍ରୀଗୋବିନ୍ଦେ, ଚର୍ଚ୍ଚନ କଲେ ସୁମନ ।
ଆନନ୍ଦ ଲଭିଲେ ନନ୍ଦନନ୍ଦନ ଶ୍ୟାମ, ଦେଖି ହରଷିତ ମନ ଯେ ।
ଦୀନ ବେଣୁଧର ଭଣେ । ଧନ୍ୟ ହେବ ସଖୀ ଯାଦେ ଦାସୀ ଗୋ । ୯ ।
(ଦେଖ ତ ଅରୁଣକୁଞ୍ଜ ଗୋ ସଜନ! ବୃତ୍ତ)

—୦—

[ ରାଗ—ଦକ୍ଷିଣ ସାରଙ୍ଗ । ତାଳ—ଝୁଲା ]

ଜୟ ଜୟ ହେ ନନ୍ଦକିଶୋର !

ରହ ନା ଭଜନେର ସଖି ! ଏ କ ସତ୍ତ ଚୋର । ଦେଖ ।
ହଜାଇଛି ଚେତନା, କ ସେକେରେ ଚନ୍ଦ୍ରାନନା,
ଅଙ୍ଗରେ ନାହିଁ କାହିଁକ ଗୋ ପୁରୁଷ ଶ୍ରୀସ । ୧ ।
କାହିଁପାଇଁ ଏତେ ଖର, ଦେଖୁରେ ଜବା ଅଧର,
ଉନ୍ମାଦ ପରି ଗୋଟି ସୁଧା ପାଉ ଥର । ୨ ।

ତୋ ମାଳକୁନ୍ତଳ ପିଠି, ଝାଟମୁ ଯାଉଛୁ ଲୋଟି,
କାହିଁ କସ ଦେଖିଲୁ କ ମାଳକ ଖଣ୍ଡନ ! । ୩ ।
କେବେନ ମନ ଛନ ଛନ, ପୂର୍ଣ୍ଣ ନେଇ ଥନ ଥନ,
ଗୁଡ଼ ଫଲ ତୋଳା କଅଁ ଅଇଲୁ ବାହାର ? । ୪ ।
ସଜନୀଙ୍କ ବାଣୀ ଶୁଣି, ହସିଲେ ରାଧା ତକ୍ଷଣି,
ବେଣୁଧର ଯୋଡ଼େ ପାଣି ସେ ପଦାବ୍ଜ ସ୍ମୃତ । ୫ ।
( ଛଡ ନ ରଖ କୁନ୍ଦନ ଗୋପ—ବୃତ୍ତ )

—୦—

## ରାଧା ଉକ୍ତି

( ରାଗ ଭାଟିଆରୀ । ତାଳ—ଏକତାଳୀ )

ଆଗୋ ସଖିମାନେ ! ଆଜ ନ ରହିବ କେବେହେଁ ମୁଁ ଜୀବନ । ଘୋଷା ।
କେଉଁଆଡ଼ ଏ ପାମର ଅଳି, ଉଡ଼ ଉଡ଼ ଆସି ଗୋ କ ଭଳି,
କରୁଛି ବହୁ ର ଝଙ୍କାର ନାଦରେ ବସି ନାନାବ ସୁମନେ । ୧ ।
ଦେଖି ମୋର ଚିତ୍ତ ଯାଏ ଥରି, କ କରିବ କହ ସହଚରୀ,
ଚୂତଡାଳେ ପିକ ମୁକୁଳ ଭକ୍ଷିଣ କ ନକରେ କୁହୁ ସ୍ୱନେ । ୨ ।
ଏ ମଳୟ ବାତ ବଡ଼ ମନ୍ଦ ବହୁଛି କ କରି ମନ୍ଦ ମନ୍ଦ,
ଭୂତ ଲଗିଲାର ପରପ୍ରେ ନାକର ଲାଗିଯାଏ ମୋତ ଅପଘନେ ।୩।
ଏମନ୍ତ ଶୁଣି ସଜନୀ ଶ୍ରେଣୀ, ଭାଷିଲେ ଦୁଃଖରେ ଏହି ବାଣୀ,
ଶ୍ରୀରାଧାଙ୍କ ଭାବ କରି ଅନୁଭବ ବେଣୁଧର କହେ ଦୁଃଖ ମନେ ।୪।
( ଆଗୋ ପ୍ରିୟ ସହି ! ଶ୍ୟାମବନ୍ଧୁ ପର କେହି ଯମୁନାହିଁ—ବୃତ୍ତ )

—୦—

( ରାଗ—କଳ୍ୟାଣ । ତାଳ—ଝୁଲ )

କ କହିବ ସଖି ତୁମ୍ଭ ଆଗରେ ଗୋ ମୁହିଁ ।
ନର୍ଲଜ୍ଜୀ ଭ୍ରମରୀ ମୋତେ ରଖି ଦେଲା ନାହିଁ । ପ୍ରାଣସଖିଏ ଗୋ । ୧ ।
ମୋ ମୁଖ ପାଶେ ଭ୍ରମିଲା ଗୁଣୁ ଗୁଣୁ କରି ।
ପଛକୁ ଘୁଞ୍ଚିଲୁ ମୁଁ ଘୁଞ୍ଚନ୍ତେ ଥିରି ଥିରି । ପ୍ରାଣସଖିଏ ଗୋ । ୨ ।
ଗୋଡ଼ାଇ ଗୋଡ଼ାଇ ତେବେ ନ ଛାଡ଼ିଲା ମୋତେ ।
ଫୁଲ ତୋଳ ଆସି ହଠହଠା ହେଲି କେତେ । ପ୍ରାଣ ସଖିଏ ଗୋ ।୩।
ଯେତେ ନିବାରିଲି ବାସ ଅଞ୍ଚଳରେ ତାକୁ ।
ନିବର୍ତ୍ତିଲା ନାହିଁ ବଳି ବେଳକୁ ବେଳକୁ । ପ୍ରାଣସଖିଏ ଗୋ । ।

ଜତନ୍ ରାଖନ୍ତୁ ପ୍ରେମ ନେଇ ଏ ଜନ୍ମର ।
ମୋର ଜନ୍ମ ସାର-ନେଲ ମୁହିଁ ମୁହିଁ ମାର । ପ୍ରାଣସଖିଏ ଗୋ । ୫ ।
ଏ କଥ ମାଁ । ତାହିଁ ମୁଁ ଅପିଲ ବୋଲି ବୋଲି ।
ଗତ ରାବତ ଆଡ଼କୁ ଉଠାଇଁ ତ ଦେଲ । ପ୍ରାଣସଖିଏ ଗୋ । ୬ ।
ଚନ୍ଦନଅ ଚନ୍ଦ୍ରଚୂଳ ଦଶିଗଲ ଜଣେ ।
ଜାମ ମୋହନ ମୂରତ ଦପିତ ଜତନେ । ପ୍ରାଣସଖିଏ ଗୋ । ୭ ।
ଜଟାଶ ନେଶାନ୍ତ ଭଙ୍ଗି ଛଟାର ମାଧୁରୀ ।
କେତିକି ଜେ କୁଳକରଣ ରହେ ଧୂତ ଧର । ପ୍ରାଣସଖିଏ ଗୋ । ୮ ।
ଚନ୍ଦ୍ରମାଳମଣି ଜଣି ଶ୍ରୀମୁଖର କାନ୍ତ ।
ଧୀର ଧୀର ହୋଇ ଗୁଳ ଆସନ୍ତେ ମୋ ଚିତ୍ତ । ପ୍ରାଣସଖିଏ ଗୋ । ୯ ।
ଉନ୍ମତ୍ତ ହୋଇ ଚହୁଁ ଅମିଳ ମୁଁ ଧାଇଁ ।
କେଣ୍ଟ ଏ କଣା କହଲ ମିଳୁ ବନ୍ଧୁ ନାହିଁ ପ୍ରାଣସଖିଏ ଗୋ । ୧୦ ।
ଚନ୍ଦ୍ରୋଷ୍ଣୀଙ୍କ ମୁଖୁ ଏ ବଚନ ଶୁଣି ।
ଲକ୍ଷିତେ ଲଜ୍ଜିତା ସଖି ବେଣୁଧର ଭଣି । ପ୍ରାଣସଖିଏ ଗୋ । ୧୧ ।
( ଜଳାମଣିଜ—ପ୍ରତ )

—o—

## ସଖୀଉକ୍ତି

( ରାଗ ଝିଂଝୋଟି—ତାଳ ଏକତାଳୀ )

ଚନ୍ଦ୍ରବଦନ ରେ ଚନ୍ଦ୍ରୋଷ୍ଣମଣି । ଘୋଷା ।
ରେ ପିକ ମଞ୍ଜୁ ବଚନା, ଶିଶୁ କୁରଙ୍ଗୀ ଲୋଚନା,
ଗଜଗାମିନୀ ସୁଲକ୍ଷଣୀ ରେ । ୧ ।
ଶୁଣ ରେ କୁନ୍ଦନ ଦନ୍ତୀ, ଯେ ଗର୍ବ ଧରେ ଏ କୁରଙ୍ଗୀ,
ତୋ ମୁଖ ତା ସୁଧା ଦାନ ରେ । ୨ ।
ଅଟେ ତୋ ନୟନ, ଯେନବାରେ କୁଳପ୍ରାଣ;
ବେଣୁ ଭଙ୍ଗି ଉଚ୍ଚ ଜାଣିବେ । ୩ ।
ତୋ ଅଧରୁ ସୁଧା ଝଡ଼େ, ଜଣା ଜଣା ପଣା ମଧୁ,
ରାଜସେବ ଦ୍ରୁତ ଶୁଣି ରେ । ୪ ।
ଯେ ମଧୁ ପିପାସୀ ହୋଇ; ଆସିଛୁ ରେ ପ୍ରିୟସଙ୍ଗ,
ପ୍ରାଣ ପଦ୍ମ ରମଣୀ ରେ । ୫ ।
ଅଙ୍କୁଶି କେତେ ତାଳ, ଅଛନ୍ତି ନ ମାର ଧନ,
ନ ଭଲ ତାଙ୍କୁ ସଜନି ରେ । ୬ ।

ଦେଖାଯାଉ କେତେ ଦୂରେ, ଯୋଜନକ ଛେଲୁ ତୋରେ
ଧନ୍ୟ କୁଞ୍ଜକୁଟୀର ରେ । ୭ ।
ଆମ୍ଭେ ଅଛୁ ଯେତେ ଆଳୀ, ଯାଉଛୁ ତୋ ଫୁଲ ତୋଳି,
ନକର କଛୁ ଖେଳଣି ରେ । ୮ ।
ଦୁଃଖୀ ବେଣୁଧର ଭଣି, ଯୁଗଳ ଚରଣେ ଭଜି,
ଏକାନ୍ତ ଏ ଉତ୍ସବର ଲକ୍ଷୀରେ । ୯ ।
( ଭଲ ଭୁଲିଲୁ ତା ପ୍ରୀତିରେ—ପ୍ରଭ )

—୦—

## ନବାନୁରାଗ

( ରାଗ—ଧନାଶ୍ରୀ । ତାଳ । ଆଠତାଳୀ )

ବଳାନା ମନ ଗୁଞ୍ଜ ତୋଳା ରେ ଧନ ଅନ୍ତ,
ଭଳାପି ଚୂଳ ସ୍ନେହ ତରବେ ଲୋ । ଘୋଷା ।
ପଳାଇବାକୁ ରାଧା ନ ପାଇବୁ ସୁଦେହା
ପଡ଼ନ୍ତି ଗଲେ ସେନ୍ତୁ ଗରବେ ଲୋ । ୧ ।
ଏ କୁଞ୍ଜବନେ ଖଟି, ଅଟଇ ଚାହାରିଟି
ଯା ଧୂନ ଗୁଣି ଶିଳା ଦର ବ ଲୋ । ୨ ।
ଉଷା ବାର ବରତ ପୂଜା ହୁଅଇ ହତ
ଯାଉ ଦାଣ୍ଡେ ପୁଣ୍ୟ ଘରବେ ଲୋ । ୩ ।
ସେ ନଟ ଚକ୍ରବର୍ତ୍ତୀ ତୋ ରୂପକ ସମ୍ପତ୍ତି
ସାଉବେକ ଅଛୁ ଯା ସରବେ ଲୋ । ୪ ।
ବଦଇ ବେଣୁଧର ଭବ ଉଜାଗର
* ସକ୍ଷି ମୋତେ ସେ ବଂଶୀରବେ ଲୋ । ୫ ।
( ନାହିଁ କ ମନେ ତୋର ଶ୍ୟାମ ନାଗର ସଙ୍ଗ—ବୃନ୍ଦେ )

—*—

( ରାଗ—ସାବେରୀ । ତାଳ—ଆଠତାଳୀ )

ଖଞ୍ଜନାକ୍ଷିରେ !
ଲତାମାନେ କି ଘଣ୍ଟ ନା ମୋ ଲଣଟି ସଖି ! । ଘୋଷା ।
ତଳା ଅଞ୍ଜନ ମଞ୍ଜୁଳ କାନ୍ତ । ଏକ ବନ ଦେଖୁଛାଟି ଏଥି ।
ନବୋଦ୍ଧତରେ ବାହାରଇ ଜଳ ।
ବ୍ୟାଜ ନୁହେ ସ୍ୱ ଚକ୍ଷୁରେ ଅଛୁ ମୂର୍ଚ୍ଛି ଦେଖି । ୧ ।

---

* ପାଠାନ୍ତର—(ମୋହ୍ନ ଜାଣେ ସେ ବଂଶୀରବେ ଲେ)

ନୂଆ ଛଇଳା ସୁନ୍ଦରୀ ନେତ୍ର । ପଡ଼ିଗଲେ ତା ହାବୁଡ଼େ ସଖି ॥
ଟାଣି ନଏ ପରା ବନେ ସେହି ।
ତହୁଁ ଉଦ୍ଧୁର ପାଇବ କେ ଧଇର୍ଯ୍ୟ ରଖି । ୨ ।
ଏ ତୋ ଅଙ୍ଗ ତ୍ରିଭୁବନ ସାର । ନବ ଲାବଣ୍ୟ ରସ ଭଣ୍ଡାର ॥
କାହେ କଣ ପାରଇ ସେ କୂଳ ।
ବୃଥାଶ୍ରମ କରୁ ଧନ କେଉଁ ଫଳ ଦେଖି । ୩ ।
ଶ୍ରୀ କଟୋଷଙ୍କ କର୍ଣ୍ଣେ ଲଗାଇ । ତହୁଁ କହୁଁ ଛଳେ ଏହି କଥା ॥
ବଂଶୀ ଧ୍ୱନି ପ୍ରସରିଲା ତଥା ।
ବୋଲେ ବେଣୁଧର ଶୁଣି ବସୁସୁ ସୁମୁଖୀ । ୪ ।
( ରତ୍ନକଣାରେ, ବନା ନୋ ପ୍ରୀତିକେ ଗତ—ବୃନ୍ଦେ )

—୦—

( ରାଗ- କୁମ୍ଭ କେଦାର । ତାଳ – ଆଠତାଳୀ ।)
ଯା ହେବାର ହେଲଣି ମୋ ଜୀବନ-ସଙ୍ଗାନରେ ।
ଖେଳ ନା ବୁଲ ନା ଆଜ ଏ ନିକୁଞ୍ଜ ଗଳରେ । ଘୋଷା ।
କାନଅା ଦେବତା ସେହି ବଡ଼ ବିଷମ ଅଟଇ
ଏ ବନେ ବିହରୁଥାଇ, ଅନୁହର ଆଳୀ ରେ । ୧ ।
ନୋହୁ ପଛେ ଫୁଲ ତୋଳା ତୋର କଜ୍ଜଳକ ଲୀଳା
ବେଳକୁ ସିନା ଛଇଳା, ଖାଉ ଯିବ ବଳ ରେ । ୨ ।
ଏହ୍ନିପରି ପ୍ରତିଦିନ କରି ସେ ମୁରଲୀ ସ୍ୱନ
ଗୋପ ଯୁବତୀମାନଙ୍କ ଦମ୍ଭ ଦିଏ ଟଳରେ । ୩ ।
ତଣ ପଦର ଗୁଅଳ ତା ପାଦେ ପଲେଣି ଭୁଲି
ସଭିଙ୍କ ଠାରୁ ତ ତୋର କାନ୍ତି ଅତି ଝଳ ରେ । ୪ ।
କୁଞ୍ଜ ଉଦ୍ୟାଡ଼କୁ ଝିଙ୍କି— ନଏ ଯେ କୁଳବତୀଙ୍କି
ତୋତେ କ ରଖିବ ବାଲୀ ନୂପତ ଧୂଳୀ ରେ । ୫ ।
ଏ ବାଣୀ ଶୁଣି ଶ୍ରୀମତୀ ଲାଜେ ଦେଲା ମଥା ପୋତି
ବେଣୁଧର ବୋଲେ ନେତ୍ରୁ ପ୍ରେମାଶ୍ରୁ ଢାଳ ରେ । ୬ ।
( କାଳନ୍ଦୀ କୂଳକୁ ମୋ ସଙ୍ଗାନି ଆଜ ନ ଯା ରେ—ବୃନ୍ଦେ )

—❀—

ସଖୀ ପ୍ରତି ରାଧା ଉକ୍ତି ।
( ରାଗ — ଲଳିତ କେଦାର । ତାଳ — ଆଠତାଳି )
ଆଗୋ ପ୍ରିୟ ସଖି ! ଆହା କି ସୁନ୍ଦର ନାମ ଦେଲୁ ଦେଲୁ କହି । ଘୋଷା ।
କୃଷ୍ଣ ବୋଲି ଯେଉଁ ଦ୍ୱିଅକ୍ଷର ମିଶିଛୁ ତହିଁ କି ସୁଧା ଧାର
ଶୁଣିବାରୁ ପୁଲକିତ ମୋର ଦେହି । ୧ ।
ସମ୍ମନ ମୋହନ ଉଚ୍ଚାଟନ ବଶୀଭୂତ ମନ୍ତ୍ର ସଞ୍ଚରଣ
ସେ ମୂରତ ନାମ ଗୋଟି ଅଛି ବହି । ୨ ।
ଯାର ନାମ ଶୁଣି ମୋର ମନ ଅନ୍ତରରେ ହୁଏ ଛନ ଛନ
ତାଙ୍କୁ ନ ଦେଖିଲେ ବଞ୍ଚିବି କି ମୁହିଁ ? । ୩ ।
ଧରି ଲଳିତାଙ୍କ ବେନିପାଣି ଭାଷନ୍ତି ଶ୍ରୀରାଧା ଠାକୁରାଣୀ
ଦୀନ ବୈଶୁଧର କହେ ତାଙ୍କୁ ଧ୍ୟାୟି । ୪ ।
( ଆଗୋ ଦୂତୀ ଅନା, କୁଞ୍ଜେ କି ଶୋଭା ପାଉଛି ନନ୍ଦନନ୍ଦନ — ବୃତ୍ତେ )
— ୦ —
( ରାଗ — ଭୈରବୀ । ତାଳ — ଏକତାଳି )
ଆହା କି ମଧୁର । କୃଷ୍ଣ ବୋଲି ସଖି ! ଯେଉଁ ଦ୍ୱିଅକ୍ଷର । ଘୋଷା ।
କୋଟିଏ ଶ୍ରବଣ ଥାନ୍ତା ହେଲେ ସେ ନାମକୁ ଶୁଣୁଥାନ୍ତି ଭଲେ
ସବେ ତ ଦୁଇଟି ଦେଲା ପରମେଷ୍ଠି, ଧିକ ତାର ସୃଷ୍ଟି ରଚିତଲେ । ୧ ।
ଆସ୍ୱାଦିବାପାଇଁ ମୋ ରସନା ଗୋଟିଏ କି ଦେଲା ରେ ସୁମନା
ଲକ୍ଷ ପରିମିତ ହୋଇଥିଲେ ମିତ ! ତୃପ୍ତି ଲଭୁଥାନ୍ତି ଗୁଣି ଦିନା । ୨ ।
ଦେଖିନାହିଁ ନେତ୍ର ସେ ବିଗ୍ରହ ଦେଖିବାକୁ ବଳାଉଛି ସ୍ନେହ
ଇନ୍ଦ୍ରପରି କରିଥାନ୍ତା କୃପାଧାରି, ନାହିଁ ତାର ଏତେ ଅନୁଗ୍ରହ । ୩
ରାଧା ବାଣୀ ଶୁଣି ସଖୀ ଭଣି ଆଗୋ ସୁକୁମାରି କେମାମଣି
ଆସୁଛି ମୋହନ କରିବୁ ଦର୍ଶନ, ବୈଶୁଧର ବୋଲେ ଥାଅ ଜାଣି । ୪ ।
[ ଆଗୋ ଶ୍ୟାମ ସ୍ନେହ, ଯାଶୋଦାବାକୁ — ବୃତ୍ତେ ]
— ୦ —
[ ରାଗ — ପଥାରାଗ । ତାଳ ନିପୁଟ ]
ପ୍ରିୟସଖି ଗୋ ! କାହାକୁ କହିବି ମନ କଥା ?
କି ନକରଇଟି ପୁଣି ଦାରୁଣ ବ୍ୟଥା ଗୋ । ଘୋଷା ।
ତୋଳିବା ପାଇଁକି କରେ ଗଗନ-ସୁମନ ।
ଅତି ଲୋଭ କରି ତ ବଳାଇ ହେଲି ମନ ଗୋ । ୧ ।

ରମା ଉମାଙ୍କୁ ନ ଗଣେ ପତିବ୍ରତା ଗୁଣେ ।
ଈର୍ଷାରେ ସେ ଭୁଆଇଲେ ଏ ନାମ କି ଗୁଣେ ଗୋ । ୨ ।
କୃଷ୍ଣ ବୋଲି ଦ୍ୱିଅକ୍ଷର ଆହା କି ମଧୁର ।
ଶୁଣାଇଁ ଯା ଭଗବତୀ ହୋଇଲେ ଅନ୍ତର ଗୋ । ୩ ।
ଚେତନକବେଳୁଁ ଇନ୍ଦ୍ରିୟମାନେ ସର୍ବେ ମୋର ।
ପ୍ରବଳ ହେଲେଣି ଧିକ ପ୍ରାଣ ଧରିବାର ଗୋ । ୪ ।
ବେଣୁଧର ବୋଧି କହେ ନ ହୁଅ ବିମନ ।
ଲଭିବୁ ଅବଶ୍ୟ ରାଧେ ତୋ ବାଞ୍ଛିତ ଧନ ଗୋ । ୫ ।
( ବନ୍ଧୁ ହେ, କାହିଁଅଛ ଦିଅ ଦରଶନ— ବୃତ୍ତେ )

—o—

ସଖୀ ଉକ୍ତି । ନାମ ଶ୍ରବଣ ।
( ରାଗ—ତମ୍ବି । ତାଳ—ଝୁଲ )

ଅତି ସୁମଧୁର ସେହି । କୃଷ୍ଣ ବୋଲି ଯେଉଁ ଅକ୍ଷର ଦୁଇ ଗୋ ।
କଣୋଗ୍ରାମଣି ! ଚଉଦ ଭୁବନେ ନାହିଁ ଗୋ । ୧ ।
ତୁଣ୍ଡରେ ସେ ନୃତ୍ୟ କଲେ । କୋଟି ତୁଣ୍ଡ ପାଇଁ ଶରଧା କଲେ ଗୋ ।
କଣୋଗ୍ରାମଣି ! କର୍ଣ୍ଣ କୋଟି ଇଚ୍ଛେ ଭଲେ ଗୋ । ୨ ।
ହୃଦୟ ପ୍ରାଙ୍ଗଣେ ଗୁଣି । ଏହି କୃଷ୍ଣ ନାମ କଲେ ଭ୍ରମଣି ଗୋ ।
କଣୋଗ୍ରାମଣି ! କରି ଦିଏ ପାଗଳିଣି ଗୋ । ୩ ।
ମାଳୋତ୍ପଳ ମୃଗମଦ । ସେହି କୃଷ୍ଣଙ୍କର ଶ୍ରୀଅଙ୍ଗ ଗନ୍ଧ ଗୋ ।
କଣୋଗ୍ରାମଣି ! ନାସା ଇଚ୍ଛେ ହୋଇ ମୋଦ ଗୋ । ୪ ।
ସେ ମାଳେନ୍ଦ୍ରମଣି କାନ୍ତି । ନେତ୍ର ଦେଖି ଥରେ ନୁହେ ହିପୂର୍ତ୍ତି ଗୋ ।
କଣୋଗ୍ରାମଣି ! କୋଟି ନେତ୍ର ଇଚ୍ଛେ ନିତି ଗୋ । ୫ ।
ସେ କୃଷ୍ଣଚନ୍ଦ୍ରଙ୍କ ବକ୍ଷ । ମର୍କତ କବାଟ ହେବ କି ଲକ୍ଷ ଗୋ ।
କଣୋଗ୍ରାମଣି ! ଦେଖାଇଦେବ ପ୍ରତିକ୍ଷଣ ଗୋ । ୬ ।
କହୁଥିଲେ ଏହିପରି । ନ ସରିବ କୋଟି ଦିବା ଶର୍ବରୀ ଗୋ ।
କଣୋଗ୍ରାମଣି ! ସର୍ବ ସୁଲକ୍ଷଣ ହରି ଗୋ । ୭ ।
ନବ ଅନୁରାଗ ଉସେ । ଲଳିତା କହନ୍ତି ରାଧାଙ୍କ ପାଶେ ଗୋ ।
କଣୋଗ୍ରାମଣି ! କବି ନଟୋନାଥ ଭାଷେ ଗୋ । ୮ ।
( କରିଥାନ୍ତା ଇନ୍ଦ୍ରପରି—ବୃତ୍ତେ )

—*—

( ରାଗ—ବସନ୍ତକେଦାର । ତାଳ—ରୂପକ )

ଉତ୍ତମା ଗୋ କୃଷ୍ଣ ନାମ ରସେ ରସି । ଉପେକ୍ଷିଲୁ ସବୁ ସୁଖ ଶ୍ରଦ୍ଧା ରାଶି ।୧।
ଉପାସନା କଲୁ କେଗୋ କଳାରୂପ । ଉପନତ ହେଲୁ କ ନାଗର ଭୂପ ।୨।
ଉପରାଣ ଶୂନ୍ୟେ ଏକ ଗୋତ ଧନ । ଉର୍ଦ୍ଧ୍ୱ ନିଶ୍ୱାସ ଘୁଡ଼ୁଛୁ ଘନଘନ ।୩।
ଉପଭୋଗରେ ତ ଦେଉନାହୁଁ ମନ । ଉପରକୁ ଚାହିଁ ହେଉ ଛନ୍ନଛନ୍ନ ।୪।
ଉର ଥରାଇ ନୟନୁ ଡାକୁ ନୀର । ଉଷ୍ଣ ଭଜୁଛୁ ଲାବଣ୍ୟ କଳେବର । ୫ ।
ଉଣା ହନୁ ହନୁ ହେଲେ ଦୂନା କାନ୍ତି । ଉଦ୍ଧ ବୋଲି ବ୍ୟଗ୍ରେ କହୁଛ ଭାରତୀ।୬।
ଉଦ୍ଦୀପନ ଭାବୁ ଆଗୋ ଶଶୀହାସୀ । ଉପଦ୍ରବମାନ ହୋଇଯାଏ ବାସୀ ।୭।
ଉତ୍କଟତ ଏ ବିଷମ ବ୍ୟାଧି ତୋର । ଉଦାସୀନେ ରହୁ କେଶେ ସଖି ମୋର ॥
ଉପାଧିତ ଏଥିକି ନହେଲେ ମୋତେ । ଉତ୍ତର ଯା ନ ଦେଉ ପୁଚ୍ଛିଲେ ଯେତେ
ଉଦ୍ଧରିବୁ କପରି ଏ ଦଣ୍ଡୁ ସବୁ । ଭକ୍ତ ଛଳେ ଦୁଃଖୀ ବେଣୁଧର କହୁ ।୧୦।
ବନ୍ଧୁ ହେଲେ ପାଇଛୁ ହେ ନୀଳମଣି—ପ୍ରଶ୍ନ )

—୦—

( ରାଗ—ଭାଟିଆରୀ । ତାଳ—ଏକତାଳୀ )

ଆଗୋ ଶ୍ରୀ କିଶୋରି !

ହେଲୁଣିତ ଶ୍ୟାମ ଉନ୍ମାଦରେ ଘାରି । ଘୋଷା ।

ଗୁଡ଼ ନାହିଁ ତୋର ବାଲ୍ୟ ଦଶା
ଆହାରେ ନବ ନୀରଦ କେଶା ।
ସକଳେ ତ ତୋତେ ପ୍ରଶଂସା କରନ୍ତି
ଏଣିକି ହେବୁଟି ଲୋକହସା । ୧ ।
ରଦନଶୋଭି ପ୍ରମୋଦ ହୋଇ
ସଦନରେ ରହୁଥାଉ ଭୁଇ ।
(ଏବେ) ମଦନ କଦନ ସହୁଅଛୁ ଧନ !
ବଦନ ଚନ୍ଦ୍ରମାଟି ଶୁଖାଇ । ୨ ।
ଯାଉଛ ଭଗବତୀଙ୍କ ଆଗେ,
ଏହୁ କଥା ଜଣାଇବ ବେଗେ ।
ପଠାଇଥିଲେ ସେ ମୋତେ ଅନୁରାଗେ,
ତୋ ଦଶା ଦେଖି ଯିବାର ଲାଗେ । ୩ ।
ସଖି ନାନ୍ଦୀମୁଖୀ ଏତେ କହି !
ଚଳିଲେ ତହୁଁ ବିଦାୟ ନେଇ ।

ଶ୍ରୀ ରାଧାଙ୍କ ପଦ ଧ୍ୟାନେ ବନ୍ଧୁ ମୋର
ଭଜ ବେଣୁଧର ଝରଚର । ୪ ।
( ଆଗୋ ଶ୍ୟାମ ସ୍ନେହ ପାଶୋରିବାକୁ ଉପାୟ—ବୃନ୍ଦେ )
—ଳ—
( ରାଗ—ତୋଡ଼ି ପରଜ । ତାଳ—ଅଡ଼ତାଳୀ )
କିଶୋରି ! ତୁ ତ ନୂତନା ବାଳୀ ।
ବସିଲୁଣି କଳା ତନକୁ ଭଲ ରେ । ଘୋଷା ।
ଜାଣିନାହୁଁ ଧନ ତାର ସ୍ୱଭାବ ।
କେତେ ଫନ୍ଦା ହାଟ ବସାଇ ଦେବ ରେ । ୧ ।
ଜାତି କୁଳ ଛଡ଼ା ସେ ବନମାଳୀ ।
ତା ଦାଉରୁ ପାରିବୁଟି କି ସମ୍ଭାଳ ରେ । ୨ ।
ଶୁଣିଛୁ ନା ବ୍ରଜେ ଚନ୍ଦ୍ରା ଚରିତ ।
ହେଲାଣି ଯା ନାମେ ତମାଳ ଗୀତ ରେ । ୩ ।
କୁଳ ମହତକୁ ଥିଲେ ତୋ ଡର ।
ନନ୍ଦ ନନ୍ଦନେ ତୁ ଆଶା ନକର ରେ । ୪ ।
ବୋଲେ ବେଣୁଧର ଗୋ ରାଧିକେ ।
ମରଣୁ ବଳବ ଲାଜ ଅଧିକେ ଗୋ । ୫ ।
( ସଖୀ ଗୋ ମୋ କୁଞ୍ଜକୁ ଆଜ—ବୃନ୍ଦେ )
—୦—
( ରାଗ—କୁମ୍ଭ କେଦାର । ତାଳ—ଆଠତାଳୀ
ନଗର ମାଳଆ ଶ୍ୟାମେ ଶଉଁ ଦେ ନା ଗୋ ।
ଟାଣ ଖୁଣ୍ଟି ରହି ପିବ ଗୋପେ ପିନା ଗୋ । ଘୋଷା ।
ଟିକ ଟିକ ହେବ ହୃଦ ଟାହୁଲ ଗଞ୍ଜଣା ପଦ
ଟାଳବ ମଞ୍ଜୁ ଅହ୍ଲାଦ ସୁବଦନା । ଗୋ । ୧ ।
ଟୋକାଟା ବଦନରୁ ସେତ କୋଟି ମନମଥ ଭୂତ
ଲଗାଇ ଜାଣେ ମହତ—ସରା ତା ନା ଗୋ । ୨ ।
ଟହଲୁଥାଇ ଯମୁନା— ଖରେଟି ଟେ ସ୍ନେହ ଯେନା
ଟାକ ନବଯୁବତୀଙ୍କି ସେହ୍ନ କହ୍ନା ଗୋ । ୩ ।
ଟପିବୁ ନାହିଁ ଦେହଳ— ଦୁଆରେ ଏକା ଛଇଳ ?
ଟସକର ବଶ କର ନେବ କନା ଗୋ । ୪ ।

ଝମକି ବାଜେ ବଂଶୀରେ ଚନ୍ଦ୍ରଙ୍କୁ ସୂଚା ଦଂରେ
ଝାପଟି ନୁହଇ ବେଣୁଧର ମନା କଗା । ୫ ।
( କାଳନ୍ଦୀ କୂଳକୁ ମୋ ସଙ୍ଗାଳ—ବୃତ୍ତ )

—*—

( ରାଗ—ଚୋଖ ପରଜ । ତାଳ—ଆଡ଼ତାଳୀ )
କଣ୍ଠ ନ ଥିଲ ପଦ୍ମନେ ଚୋଟେ
ଅନ୍ତର ମଣିଲୁ କାନ୍ତିକ ଚନ୍ଦ୍ରେ । ଘୋଷା ।
ମଧୁର ପିପୀଲିକା ହୋଇ ଧନ ! ବଇଲୁ ଧରିଧା କାହିଁ ଗଗନ । ୧ ।
ରହିଥିଲୁ ପୂରେ ଆପଣା ସୁଖେ । ସହିବୁ ଏଣିକି ଦୁଃଖ ଅନେକେ । ୨ ।
ଦହିକ ମରମେ ମୀନ କେତନ । ବହିବ ନୀରଚେ ନୟନୁ ଦନ । ୩ ।
ସ୍ନେହୀ ହେଲୁ ଯାହା କଳା ଦାଗରେ । କେହି ବଞ୍ଚିବୁ କଳଙ୍କ ଦାଗରେ । ୪ ।
କ ହୀନ ଅବସ୍ଥା ହେବୁ ସୁହେଡ଼ା । ଲଭିଥିଲି ବନ୍ଧି କରମେ ଏହା । ୫ ।
ରହିତ ହେଲା ଆଜି ସବୁ ସୁଖ । ଭଣିଲା ଏ ବେଣୁଧର ମୂରୁଖ । ୬ ।
( ଝୁଲାଇ ମାଝ ହେଲ ହେ ଶ୍ୟାମ—ବୃତ୍ତେ )

—*—

( ରାଗ—କାମୋଦୀ । ତାଳ—ଆଠତାଳୀ )
ଧନ ଦୁଃଖି ସଙ୍ଗାଳ ମାନସେ କସ ଗ୍ଳନ ।
ହେଉ ଏ ଭଲ ଦୁଃଖ ସଜମାରେ । ଘୋଷା ।
କସ ଚନ୍ତା ସନ୍ତତ ହରୁଛି ତୋର ଧୃତ,
ଭୃନ୍ତାକ୍ଷ ଜର ବାସ ସ୍ୱେଦ ମାରେ ।
ସମ୍ଭାବିଲୁ ତୁ ଏହା କାହୁଁ ସୁଚମା ଦେହା,
କୃଶାଙ୍ଗ କଳେବର କ ଘେନରେ । ୧ ।
ଭଜୁ ଏତେ ସରଳ କହନ୍ତି ଏ ଚରିତ,
ଯଥାର୍ଥରେ ପ୍ରକାଶ ସଙ୍କେତରେ ।
ବ୍ୟାଧିରୁ ବିଲକ୍ଷଣ ଜଣାଯାଏ ବଦନ,
ଶରଧ ପୂର୍ଣ୍ଣଚନ୍ଦ୍ର ବଦମାଭେ । ୨ ।
ପ୍ରିୟ ସଖିରେ ମିତ ଗୁପତ କ ଉଚିତ,
ଭୋକେ ଆନ୍ନେ ଶପଥ କହନରେ ।
ମରମ ଭାବ ଫେଡ଼ି ବଦନ ଢାଅ ଫେଡ଼ି,
ସଜ ସବେଗ ହଲ ନୟନରେ । ୩ ।

ଶୁଣି ସଖୀ ଭାଷଣ          କ୍ରୀଡ଼ାବସ୍ତୁ ତକ୍ଷଣ,
ଲପନ ଦେଲେ ଧମ୍ମ ଅବନୀରେ ।
କହଇ ବେଣୁଧର          ଅଳ୍ପମାନେ ଏଥର,
ଚିହ୍ନିଲେଣି ସକଳ ସଜନୀରେ । ୪ ।
( ସଜନି ! ଆଜ ରଜନୀରେ ନଇଲେ—ବୃତ୍ତେ )

—୦—

( ରାଗ—କେଦାରଗଡ଼ା । ତାଳ ଝୁଲ )

ରାଜ କେମାମଣି କଣୋସ୍ତମଣି ଗୋ ଆଜ ଏ ଉମନ କାହିଁପାଇଁ ।
ମାଜଣା ବଧାନ ନ ବଡ଼ାଉ ଧନ ବସି ଅବନୀକି ଲୁହିଁ ଲୁହିଁ । ଘୋଷା ।
କି ଭାବୁଛୁ ଚିତ୍ତେ ନୟନୁ ଝରଇ ସଲିଳ ଧାରାଚ ଯାଏ ବହି ।
ଫୁଲତୋଳା ଲୀଳା ପାଶୋରି ଛଳିଲା ଘାରି ହେଲୁ ବାଇ ପ୍ରାୟ ହୋଇ ।୧।
ମନ କଥା ଫେଡ଼ି କହ ଏବେ ଘଡ଼ି ହଜଥିଲେ ଖୋଜିଦେବ ମୁହିଁ ।
କେଉଁ ଅପରୂବ ଦ୍ରବ୍ୟ ଲୋଡ଼ା ଥିଲେ ଅଣାଇ ଦେବୁଁ ଗୋ ସର୍ବ ସହି ।୨।
ଇଚ୍ଛା କଲେ ସରଗର ପୂର୍ଣ୍ଣ ଚନ୍ଦ୍ର ତୋ ହାତରେ ଦେବଟି ଧରାଇ ।
କି ଗୁରୁ କଥାକୁ ମନେ ରହିକ୍ଷୁ କହୁଁହିଁର ଜଣାଯାଉ ନାହିଁ । ୩ ।
ସୁନାବରନାରେ ଧୂ-ନାଗରବରେ ଲୋଭ ବଳାଛୁ କି କହ ତୁହି ?
ବୋଲେ ବେଣୁଧର ସୁସମୟ ଜାଣି ଅନାୟାସେ ଦେବ ମୁଁ ମିଳାଇ । ୪ ।
( ଆଜମନ ସୁଖୀ ପଙ୍କଜମୁଖୀ—ବୃତ୍ତେ )

—❀—

( ରାଗ—କରବାଣୀ । ତାଳ—ଆଠତାଳୀ )

ଧନ କାହିଁକରେ ଲଭୁ ଏ ବଦନ ?
ମନ ଛନଛନେ ଶ୍ୱାସ ଉଠେ ଘନ ଘନ । ଘୋଷା ।
ବୃନ୍ଦାବନ ସୁଧାନିଧି-ନନ୍ଦନ-ମଦନ ।
ହୃଦୟରେ ତୋର ଅବା କଲେକ ସଦନ ? । ୧ ।
ଅଛି ବିଚକ୍ଷଣ ବ୍ରଜ-ନରେନ୍ଦ୍ର-ନନ୍ଦନ ।
ମଣ୍ଡ ଲେଖା କଲେ କି ସେ ମୁରଲୀ ବଦନ । ୨ ।
ସରସିଜ ନେତ୍ର କେଣେ ବହିଯାଏ ବନ ।
ଧରଣୀକି ଲୁହିଁ ଛନ କରୁଛୁ ଭାବନ । ୩ ।
କବିଚନ୍ଦ୍ର ଭାଷେ ପ୍ରିୟସଖୀ ପ୍ରବୋଧନ ।
ଅବଲମ୍ବ ଭେଟାଇବ କାଳୀୟମର୍ଦ୍ଦନ । ୪ ।
( ଜଣା ପଡ଼ିଲା ମୋ । ଏ କପଟ ଗିର—ବୃତ୍ତେ )

—୦—

( ରାଗ—କର୍ଣ୍ଣାଟ । ତାଳ—ଝୁଲା )

କହ କାହିଁକି ? ଏ ବିମନା
ମୋର ସୁନାବଉ ଗୋ କିଶୋରି ! ଘୋଷା ।
ନୀଳ ନଳିନ ନୟନୁ ବହୁଛି ବାରି ।
ଧରଣୀକି ଚାହିଁ କାହିଁକି ହେଉଛୁ ଘାରି ।
ଖର ଶ୍ୱାସେ ଜବାଅଧରି; ଗ୍ଲାନିଚିତ ଯାଉଛି ଥରି । ୧ ।
ଭିନ୍ନେ ଦିଶୁଅଛି ଆଜ ଶ୍ରୀମୁଖ ଶିରୀ ।
ରୋମାଞ୍ଚିତ ହେଉଛୁ ନୀପ କୁସୁମପରି ।
ମନ ଖୋଲି କହି ଦିଅ ଗୋ; ସୁକୁମାରୀ ରାଜକୁମାରୀ । ୨ ।
ଏକ ଲୟେ କାହାକୁ ଚାହିଁ ରହିଛୁ ଗୋରୀ ।
ହସୁଛୁ କାନ୍ଦୁଛୁ ବସୁଛୁ କିସ ବିଚାରି ।
କେଣେ ଚାହୁଁ ନୟନ ଠାରି କୁନ୍ଦହାସୀ ବୃନ୍ଦାସୁନ୍ଦରୀ । ୩ ।
ସ୍ୱେଦରେ ସର୍ବାଙ୍ଗ ତୋର ଗଲାଣି ପୂରି ।
ଖେଦରେ ଏ ଦମ୍ୟନ୍ତୀ କୁ ହେବାରୁ କରି ।
ହେ ଦରହାସିନି ଚତୁରୀ, ବେଦନା ତୋ ହେଲାଣି ଭାରି
ଜାଣିଲି ତୋ ଭାବ ନିଶ୍ଚେ କ୍ଷୀଣ ଉଦରୀ ।
ଶୁଣିଲୁ କି କୃଷ୍ଣ ଚରିତ ଗୁଣ ମାଧୁରୀ ।
ତେଣୁ ଏ ଦଶାଟି ତୋହର ବେଣୁ ବୋଲେ ଶ୍ରୀକର ଧରି । ୪ ।
( ସହି କା ଆଗେ କହିବ ଗୋ ମୋର ମନ କଥା—ବୃନ୍ଦେ )

—୦—

( ରାଗ—ସିନ୍ଧୁଡ଼ା । ତାଳ—ଏକତାଳୀ )

ବାରିଜାକ୍ଷୀ ଯିବୁଟି ସରି ।
ମାରିଦେଲେ ଶ୍ୟାମ ନେତ୍ର କଟାକ୍ଷୀ । ଘୋଷା ।
ନାରୀ କୁଳେ ଜନମ ଧରି ରହିଛି କେ ବରଜପୁରୀ
( ଗୋ ନବକିଶୋରୀ ! )
ପାରିନ୍ଦ ମଧ୍ୟମା ବୃଷଭାନୁଜେମା; ଗାରିମା ଗୁମାନକୁ ନ ପାଶୋରି । ୧ ।
ହାରି ଯାକୁ ସେ ଶମ୍ବରାରି ଫୁଲଧନୁ ଫିଙ୍ଗି ତାହାର
ଶାରିକା ପଠନ କରେ ପ୍ରଶଂସନ, ସାରି ଶୁକ ପିକ ମୁଖରେ ଗୋରୀ । ୨ ।
ଆଉ ଗଲେ ମୋହନ ପାଲେ ହଠ ନଠ କପଟ ଜାଲେ
ଯାଉ ନୋହିବୁ କି ରଜନୀ ଅବସେ; ହାରଦ୍ରବରନା ରାଜକୁମାରୀ । ୩ ।

ଠାଣି ଦୁରୁ ସେ ବଟଘଟ— ଲୋଟିଲା ସୁବର୍ଣ୍ଣ ଆଣ୍ଟ
ତା ଘଡି ମଝିଟି ଫସାଇ ବାନ୍ଧାର ଷ୍ଟରପଦେ ବେଣୁଧର ବସ୍ତୁର । ୪ ।
[ ନନ୍ଦସୁତ ମୋର ଶାନ୍ତକା—ବୁଝେ ]

—❊—

( ରାଗ — ଚୋଡ଼ଫୁଲିଜ । ତାଳ — ଅଠତାଳୀ )
ଫଣୀଦଳା କଳା ମୂରଛିଙ୍କି ଚଳାପାଗି କଦ୍ୱାଇଲୁ ମନ ।
ଚଳାଇଲୁ ନନ୍ଦାଫଳ ଆଖରକୁ ନଷ୍ଟ ହୋଇ ଛନ୍ଦ ଛନ୍ଦରେ, କଶୋର !
ଫୁଲ ହୋମଳାଙ୍ଗୀ ବାଳୀ ।
ଫରଷ୍ଟ ଭାବେ କୁଞ୍ଜବନେ ଧାଇଁଲୁ କୁଳେ ଲୁଗିବାକୁ କାଳରେ । ୧ ।
ଫିଟିଗଲେ ଲଥା ଦ୍ୱାଣ୍ଡ ବଜାରକୁ ହସିବେ ଉଗାଗାମାନେ ।
ଫଗୁ ଅଧର ତୁ ହେଙ୍କ ନ ପାରଲୁ ଯାହା ଏ ଲକ୍ଷପ୍ରଧାନେ ରେ, କଶୋର !
ଫାନ୍ଦେ ପଡ଼ଗଲୁ ତାର ।
ଫୁଟା ଜାଲ କଞ୍ଜଚରଣିଆ କେତେ କରଛକ ନାଉଖାର ରେ । ୨ ।
ଫେଡ଼ ନ କହିଲୁ ଆଗୁଁ ତୋ ମରମ ନବ ଅନୁରାଗେ ଭୁଲ ।
ଫରହଷ୍ଟ ବୁଜେ ଅଖ୍ୟାତ ଋତାକା ଉଡ଼ବ ଆଜୁଁ କନ୍ତୁଳ ରେ, କଶୋର !
ଫେର ଆସିବ କ ତାହା ।
ଫତୁଆ ଜରଜା ସେ ନାଗର ରଜା ତୁଲେ ଅଚଳିଲୁ ଯାହା ରେ । ୩ ।
ଫୁଲିଲେଣି ଘୁଣ୍ଟ ଷ୍ଟକ ନ ପାରକୁ ବହୁଭଙ୍ଗ ଜନ ମେଳେ ।
ଫୋଡ଼କେ ଏକାନେ ସେକାନେ ନକ କେତେ ଲୁଦ ପୋଛିବୁ ଅଞ୍ଚଳେ ରେ,
କଶୋର ! ଫୁତୁଷାଇ ନ ଦେ ଶବ୍ଦ ।
ଫୁଲତୋଳା ଲୀଳା ଜଳାଇଁ ଦେ ଧନ ! ବେଣୁଧର ବରଚତ ରେ ।୪।
( ଫାଟି ପଡ଼ବାର ନିକୁଞ୍ଜ ସଞ୍ଚାର—ବୁଝେ )

—o—

( ରାଗ—ମାଳଗୌଡ଼ା । ତାଳ—ଏକତାଳୀ )
ସନ୍ତୁ ଗୋ ନନ୍ଦନନ୍ଦନଁ ଛନ୍ଦ ଜାଣିନାହୁଁ ତୁମ୍ଭ ।
ମନ୍ଦରଧର ଫାନ୍ଦରେ ପଡ଼ ହୋଇସିକୁ ବାଇ । ଘୋଷା ।
କନ୍ଦର୍ପ କୋଟିଏ ଏକ ହୋଇଛୁ ଯେହୁଁ ନାୟକ
ମନ୍ଦହାସୀ ଚୋର ଠେକ, ଆଉ କ ରଖିବ ସେଡ୍ଡ । ୧ ।
ଅଧରେ ମୁରଲୀ ଦେଇ ନଙ୍କା ନୟନେ ଠାରଇ
ନଜରେ ପଡ଼ିଲେ ଭ୍ରୁଲୁ ଭଙ୍ଗିରେ ବଶ ନଜ୍ଜଇ । ୨ ।

ସୁନ୍ଦରୀ କେ ଏ ଗୋପରେ ଅଛୁ ଚୋର ସ୍ୱରୂପରେ
ବୃନ୍ଦ ରମଣି ମଧ୍ୟରୁ, ବାଛୁ କେବ ମନ ମୋହ୍ଵ । ୩ ।
ରସେ ଭାଷେ ବେଣୁଧର ପଞ୍ଚନାଯୁକ ଏ ଗୀର
ବୃଷଭାନୁ ନନ୍ଦନୀଙ୍କି, ଲଳିତା କହେ ଛଳାଇ । ୪ ।
( ଦେଖିଲେ ଦେଖିବ ପର, ଥରେ ରସିକରାଜଙ୍କୁ—ବୃତ୍ତ )

—୦—

( ରାଗ—କାମୋଦୀ । ତାଳ—ଏକତାଳୀ )
ପିବୃଛି ସବ ଦେଖି ସେ ମୋହନ ମାଧୁରୀ ।
କୋଟିଏ କନ୍ଦର୍ପ ଶୋଭା ଯା ଅଙ୍ଗରେ ଅଛୁ ପୂର । ୦ ।
ସେ ନବ ଘନକାଳିଆ ବନ କୁସୁମ ମାଳିଆ
ଯୁବତୀ ଦମ୍ଭ ଟାଳିଆ ସତ୍ୟବ୍ରତ କେବ ଜୁର । ୧ ।
ତାକୁ ଦେଖିବାକୁ ଧନ ହେଉଛୁ ତ ଛନ ଛନ
ପଞ୍ଚନ୍ତେଟି ଚୋର ବନ ନ ଧରିବ ଝୁରି ଝୁରି । ୨ ।
କହିବୁ ନିନ୍ଦା କଳଙ୍କ ସହିବୁ ଦୁଃଖ ଅନେକ
ସହି ତେ ନାମେ ତା ନାମେ ପଡ଼ିଯିବ ଗୋପେ ଦୁରି । ୩ ।
ଦୀନ ବେଣୁଧର ଭଣେ ସେ ନବରଙ୍ଗିଆ ଜଣେ
ରସିକ ନାଗର ପଣେ ମୋହୁଛି ସେ ତନ୍ମସ୍ୱରୀ । ୪ ।
( କୁଞ୍ଜବନରେ କାଳିଆ ଦେବତା—ପ୍ରଭ )

—୦—

## ବଂଶୀ ଅନୁରାଗ

( ରାଗ—ବସନ୍ତ । ତାଳ ଝୁଲ )
ଆଜ ଏ ବୃନ୍ଦାବନେ ବ ଜ ମୋ ବଂଶୀ ବାଜ ।
। ଘୋଷା ।
ସାରେ ଗାମା ପାଧାନ ସାନ ଧାପା ମାଗାର,
ସପ୍ତସ୍ୱର ଉଚାରି ବାଜ ମୋ ବଂଶୀ ବାଜ । ୧ ।
ଲଳିତେ ବିଶାଖିକେ ସୁଚନ୍ଦେ ସୁଦେବୀକେ,
ଚନ୍ଦ୍ରାବଳୀ ଶୈବ୍ୟେ ପଦ୍ମେ ବୋଲି ମୋ ବଂଶୀ ବାଜ । ୨ ।
ବାଜ ସୁସ୍ୱରେ ବାଜ ଶ୍ରୀରାଧା ରାଧେ ବାଜ,
କାମ ଗାୟତ୍ରୀ ଛନ୍ଦେ ବାଜ ମୋ ବଂଶୀ ବାଜ । ୩ ।

ଏଣୁ ଯମୁନା ପାଣି ବହୁଯାଉ ଉଜାଣି,
ପାଷାଣ ତରଳାଇ ବାଜ ମୋ ବଂଶୀ ବାଜ । ୪ ।
ଯୋଗୀଙ୍କ ଧ୍ୟାନ ଭୁଟୁ କୁସୁମ-କଳ ଫୁଟୁ,
ଶୁଷ୍କ ତରୁ ପଲ୍ଲବାଇ ବାଜ ମୋ ବଂଶୀ ବାଜ । ୫ ।
ବ୍ରଜ କାମିନୀଗଣ ଆସନ୍ତୁ ହୋଇ ଛନ୍ନ,
ମୃଦୁସ୍ୱରେ ଘନ ଘନ ବାଜ ମୋ ବଂଶୀ ବାଜ । ୬ ।
ଏତେ ବୋଲି ନନ୍ଦସୁତ ଗାଇଲେ ମୁରଲୀ ଗୀତ,
କହେ ବେଣୁଧର ଦାସ ଦେଖି ଏ ଉଦ୍ୟୋଗ । ୭ ।
( ରାଧେ ଶ୍ରୀରାଧେ ରାଧେ, — ବୃନ୍ଦେ )

—୦—

( ରାଗ — ବସନ୍ତ । ତାଳ — ଝୁଲ )
ଶ୍ରୀରାଧେ ରାଧେ ବୋଲି ଥରେ ବାଜ ମୋ ବଂଶୀ ।
ବାଜ ମୋ ବଂଶୀ ପରାଣ ବଂଶୀ
ମୋହନ ବଂଶୀ ରସି ଥରେ ବାଜ ମୋ ବଂଶୀ । ଘୋଷା ।
ଯମୁନା ପାଣି ଉଠ ଉଜାଣି,
ବନ୍ଧୁରେ ମଳୟ ରାଣୀ । ୧ ।
ଶୁଖିଲା ତରୁ ପଲ୍ଲବ ଧରୁ,
ନାନା କୁସୁମ ବିକଶି । ୨ ।
କୋକିଳ ସ୍ୱନ ପଞ୍ଚମ ତାନ,
ସନ୍ଧତେ ଗାଉ ଉଲ୍ଲାସି । ୩ ।
ମତ୍ତ ଭ୍ରମର କରୁ ଝଙ୍କାର,
ଆସୁ ରାଧା ହସି ହସି । ୪ ।
ନନ୍ଦ ନନ୍ଦନ ପଦ ବନ୍ଦନ —
କର ବେଣୁଧର ଭଷି । ୫ ।
( ବନ୍ଧୁ ଗଲାଣି ଘର ମୋ ସଖୀ ଶ୍ରୀ କଶୋରୀ — ବୃନ୍ଦେ )

—୦—

## ରାଧା ଉକ୍ତି ।

( ରାଗ — ଇମନ୍‌କଲ୍ୟାଣ । ତାଳ — ଆଠତାଳୀ )
କ ଶବଦ ପଶି ଏହୁ କାନନ ଭରିଲା ଗୋ ।
ଏତେ ବେଳଯାଏ କାହିଁ କହୁ ତ ନଥିଲା ଗୋ । ଘୋଷା ।
ଏତେ କାଳେ ମୁଁ ଏ ଧନ ଶୁଣି ନଥିଲି ମିତଣି,
ଆଜ ଏକ ଅପରୂପ କାହୁଁ ଜନମିଲା ଗୋ । ୧ ।

କର୍ଣ୍ଣ ବାଜ ପ୍ରିୟସଙ୍ଗ ହେଉଛୁ ଚନ୍ଦ୍ର କମ୍ପାଇ,
ମୋ ଦମ୍ଭ ଛବେକ ଯାକ ସବୁ ସାର ହେଲା ଗୋ । ୨ ।
ତହିଁ ଅଛୁ କ ମନ୍ତର କରୁଛୁ କେ କ ଯନ୍ତର,
ପଶିଣ ମୋ ହୃଦାନ୍ତର ଧଇର୍ଯ୍ୟ ହରିଲା ଗୋ । ୩ ।
କ କରିବ ସହଚରୀ କହ ଗୋ ମୋତେ ବିଚାରି,
ନିଶ୍ଚୟ ଜାଣିଲି ମାନ ମହତ ସରିଲା ଗୋ । ୪ ।
ଶ୍ରୀମତୀଙ୍କ ବାଣୀ ଶୁଣି ଲଳିତା ସଜନୀ ଭଣି,
ଏ କୃଷ୍ଣ ମୁରଲୀ ବେଣୁଧର ବିରଚିଲା ଗୋ । ୫ ।
( ଶ୍ୟାମହସ୍ତ ବଂଶୀ ମୋର ହୋଇଲା ସ୍ୱାଧୀନ ଗୋ—ବୃତ୍ତେ)

—୦—

( ରାଗ—ବସନ୍ତ କେଦାର । ତାଳ—ଏକତାଳ )
କୁଞ୍ଜବନେ ବାଜୁଛି କାହା ବଂଶୀ ଶୁଣ ଲୋ ପ୍ରାଣସଙ୍ଗିନି । ପଦ ।
ପଞ୍ଚମତାନେ ମାନେ କ ଯତନେ ଶ୍ରୀରାଧେ ରାଧେ ଗାନେ ।
ମୃଦୁଳ ମୃଦୁସ୍ୱନେ ଆହା କ ମନୋହର ମୋହନ ବଂଶୀସ୍ୱର
ପୀୟୁଷପ୍ରେମଧାର ମୋହି ନେଉଛି ରହି ଯାଉଛି ଚମକାଉଛି ପ୍ରେମେ ଗାଉଛି ।
ପଡ଼ୁଛି କ ମନ୍ତର କ ଯନ୍ତର ହଜା ଏଧୂତ ମୋର ।
ନିରନ୍ତର ପୁଲକେ ଥରଥର ସ୍ୱେଦରେ ଜରଜର ।
ବହୁଛି ନେତ୍ରୁ ନୀର କହ ଲୋ ମିତ ଏ କ ଚରିତ
କରେ ମୋହିତ କଏ ମୋ ଚିତ୍ତ । ୨ ।
ଛବେକ ଲାଗି ଖିନ୍ତ ଜାତି ନୀତି, ଥାଉ ଲୋ ଆଜଠାରୁ ପ୍ରିୟଦୂତୀ ।
କେମନ୍ତ ସେ ମୁରତି, ଦେଖିବି ବଳେ ମତି, ଲାବଣ୍ୟମୟକାନ୍ତି,
କାହିଁ ମୋ ମନ, ନାହିଁ ପ୍ରସନ୍ନ, ସେହି ମୋ ଧନ, ସେ ମୋ ଜୀବନ । ୩ ।
କୁସୁମ ବନେ ବନେ ନଶିଦିନେ ବୁଲିବି ତା ଗହନେ ।
ଅନୁକ୍ଷଣେ ଏ ବେଣୁଧର ମନେ ଶୟନେ କ ସ୍ୱପନେ
ହୃଦ ମିଳନେ ରଖି ଯତନେ ନୀଳରତନେ ପୂଜିବ ଧ୍ୟାନେ ।
( କଏ ନେବ ଆସ ଗୋ ସଜଫୁଲ—ବୃତ୍ତେ),

—୦—

( ରାଗ—ମଙ୍ଗଳ କେଦାର । ତାଳ – ଏକତାଳୀ )
କାହା ବଂଶୀସ୍ୱନ ନିଧୁବନେ ବାଜୁଛି ?
ତାହା ଶୁଣି ମୋର ଜ୍ଞାନ ଧ୍ୟାନ ହଜୁଛି । ଘୋଷା ।
ଆହା କ ପଞ୍ଚମ ତାନ ଲଳିତ ମଧୁର ଗାନ
ଯାହା ହେଉଛି ମୋ ମନ କହି ନୋହୁଛି । ୧ ।

ବାହାର ଭିତର ମୋର ଥରାଏ ସେ ମୃଦୁସ୍ୱନ
ରାଧା ନ ଦଶଇ କାହିଁ ଯିବ ଭାବୁଛି । ୨ ।
ମହା ମୋହିନୀ ମନ୍ତ୍ରର କଲାପର ଅନ୍ତରର
ସୁହାଗ ଲଗାଇ ସେତ ବାଇ କରୁଛି । ୩ ।
ସାହା କେ ନାହିଁ ତୋ ବିନା ଶୁଣ ସହି ! ଯିବା କିନା
ଯୁହାର ବଂଶୀ କି ବେଣୁଧର ଭଜୁଛି । ୪ ।
( କହ କହ ଆଗୋ ରାଧେ ଆଜନ୍ମ ସୁଖୀ—ବୃତ୍ତ )

—o—

## ଶ୍ରୀରାଧାଙ୍କ ବଂଶୀ ଅନୁରାଗ ।

( ରାଗ—ପୁନ୍ନାଗ । ତାଳ—ଖେମଟା )

ତେକେ ସେ ନିକୁଞ୍ଜ ବନେ ସଖି ବଂଶୀ ବାଜୁଛି ।
ସେ ନାଦ ଶୁଣି ମୋ ଜ୍ଞାନ ହଜି ଯାଉଛି । ଘୋଷା ।
ସଖି ସେ କେଉଁ ହଟିଆ ଧଇର୍ଯ୍ୟ ବିତ୍ତ ଲୁଟିଆ
ବ୍ରଜନାରୀଙ୍କି ଭୁଲାଇ କିସ ପାଉଛି । ୧ ।
ଆହା ସେ ମୁରଲୀ ଗୀତ କି ମଧୁର ଧ୍ୱନି ମିତ
କି ରଙ୍ଗେ ନାମ ଉଚ୍ଚାରି ଆଜ ଗାଉଛି । ୨ ।
ଗୋପେ ସଖି କରି ଜଣେ ନ ରହିଲି ଘର ମନେ
ଜରତେ ମଦନ ବାଣେ ଭରମାଉଛି । ୩ ।
ଗଲେ ହେବ ଅପବାଦ ନ ଗଲେ ହେବ ପ୍ରମାଦ
ବେଣୁଧର ସେ ଯୁଗଳ ପାଦ ଧ୍ୟାଉଛି । ୪ ।
( ଲଖି ରହିଲା ଆଖି ସଖି ଶିଖୀ ଚୂଳେରେ—ବୃତ୍ତ )

—o—

( ରାଗ—ତୋଡ଼ି ପରଜ । ତାଳ—ଆଠତାଳୀ )

ଆହା କି ସୁନ୍ଦର ସଖି ! ବାଜେ ଲୋ ମୋହନ ବଂଶୀ ।
ସଖି ମତ୍ତ ଭୁଲି ସ୍ୱନ ଶ୍ରବଣ ସୀମା ପରଶି । ଘୋଷା ।
ଯିବାକୁ ତା ପାଶେ ମୁହିଁ ମନ ଉଚ୍ଛନ୍ନ ହୁଅଇ
ବାଇଆଣୀ ହେଲି ତହିଁ ଶରଧା ବଳାଇ ରସି ।
ତାନ ମାନ କି ଯତନେ ବସାଇଛି କୁଞ୍ଜବନେ
ନଣିନ୍ଦ ମୋର ନାମେ ଅଛି ତ ସେହୁ ଭରସି । ୨ ।
କହନ୍ତୁ ଯେ ଯାହା ପଛେ ଶୁଣ ତ ଶୁଣିବା ସ୍ୱଚ୍ଛେ
ଟଳାଇ ଦେଲାଣି ଧୃତ୍ତ ଶ୍ରୀ ବୃନ୍ଦାବନ ଶଶୀ । ୩ ।

କୁଳେ କଳଙ୍କ ଘୋଷଣ                ହେଲେ ନିନ୍ଦବ ନେଲ ଦୂଷଣ
ଗୋପ ସଙ୍ଗାଳ ମୋ ପ୍ରାଣ ବୋଲେ ବେଣୁ ବ୍ରଜବାସୀ । ୪ ।
( ଦେଖିଲେ ଦେଖିଲୁ ପର ଥରେ ରସିକରାଜଙ୍କୁ—ବୃତ୍ତି )

—o—

( ରାଗ—ଶଙ୍କରାଭରଣ । ତାଳ—ଆଡ଼ତାଳି )

ମୋ କର୍ଣ୍ଣେ ମୁରଲୀ ବାଜୁଛି ।
ଗରବ ଗୁମାନ ଦମ୍ଭ ବିବେକ ହଜୁଛି । ଘୋଷା ।
କୁଟିଳ କୁଣ୍ଠ ସିନ୍ଧୁରେ ନିତ ତରଜୁଛି ।
ଛଇଳକୁ ନିଅ ଲଗାଇ ମୋ ହାନି ଖୋଜୁଛି । ୧ ।
କି କରିବ ସଖି ! ସଦା ଦୁଃଖେ ମଜ୍ଜୁଛି ।
କଳଙ୍କ ଅପବାଦକୁ ଗଲେ ତ ଅର୍ଜୁଛି । ୨ ।
ଜରଜ ଜଟିଳା ପୁଣି ରୋଷେ ଗରଜୁଛି ।
ପ୍ରାଣବନ୍ଧୁ ବନ୍ଧୁ ବୋଲି ଗୁମରେ ଭଜୁଛି । ୩ ।
ଧନୁ ଜନୁ ମନୁ ସବୁ ସୁଖକୁ ତେଜୁଛି ।
ବୋଲେ ବେଣୁଧର କୁଳ ଗୁଡ଼ିବ ହେଜୁଛି । ୪ ।
( ସଖି ! ଏ ନନ୍ଦକୁମର ବୃତ୍ତେ )

— ❁ —

( ରାଗ—ଦେଶାକ୍ଷ । ତାଳ—ଝୁଲ )

ବାଜ ରେ ଟିକିଏ ଆଜ ମୋହନବଂଶୀ ।
କର୍ଣ୍ଣ ଡେରି ଭଲ କରି ଶୁଣେ ମୁଁ ବସି । ୧ ।
ଆହା କି ସୁନ୍ଦର ତୋର ଲଳିତ ସ୍ୱନ ।
ସତେ କି ଅମୃତ ଧାର କଲୁ ସିଞ୍ଚନ । ୨ ।
ମଳୟ ପବନେ ମିଶି କି ଧୀରେ ଧୀରେ ।
ପ୍ରସରି ପୂରିଲୁ ଆହା ଏ ମୋ ଶ୍ରୁତିରେ । ୩ ।
ତୁନ ହୋଇ ରହୁ ପୁଣି କାହାକୁ ଡରି ?
ଆଜ ଥରେ ବାଜ କନା ଗଞ୍ଜ କଶୋରି । ୪ ।
କରୁଛି ବିନତି ବଂଶୀ ନନ୍ଦ ମଜନ ।
ତୋ ନାଦ ଶୁଣି ବାହାର ଯାଉ ଜୀବନ । ୫ ।
ବେଣୁଧର ବୋଲେ ଆରେ ଗୋ କୃଷ୍ଣମୋହନ !
ବାଜିବ ମୁରଲୀ ସ୍ଥିର ହୁଅସି ଧନ । ୬ ।
( ନଷ୍ଟେ ସେହ୍ନ ନନ୍ଦସୁତ ଅଟଇ ମୁହିଁ—ବୃତ୍ତି )

---

(ରାଗ—ବସନ୍ତକେଦାର । ତାଳ—ଆଡ଼ )

କି ପୁଣ୍ୟ କରିଥିଲୁ ରେ ମୋହନ ମୁରଳି !
ଶ୍ରୀକୃଷ୍ଣ ଅଧରାମୃତ ପିଇବୁ ବୋଲି । ଘୋଷା ।

ତୁ ଯେ କଣ୍ଠା ବାଉଁଶ ହୋଇ, ମଜ୍ଜାଇଲୁ ବରଜ ଗୋଈ,
ବାଜି ରହିଅଛୁ ବାଜେଇ ନୂଆ ଛଇଳ । ୧ ।

ଆହା ହୋଇଥାନ୍ତି ମୁଁ ବଂଶୀ; ସଦା କୃଷ୍ଣ ରସରେ ଭସି,
ଗଢ଼ବଣୀ ହୋଇ ମୁଁ ପରି ଉଠନ୍ତି ଫୁଲି । ୨ ।

ଧନ୍ୟ ଧନ୍ୟ ଜନ୍ମ ତୋହର, ଛନ୍ତି କୃଷ୍ଣ କରେ ଆଦର,
ଆନନ୍ଦରେ ହରନ୍ତି ବନ କାନନେ ବୁଲି । ୩ ।

ପୂର୍ବଭାଗ୍ୟ ମୋର ତ ନାହିଁ, ତୋ ଦଶା ମୁଁ ପାଇବ କାହିଁ,
ଗୀତେ ବେଣୁଧର ଭଣଇ ଚରଣ ଗଲି । ୪ ।

( କାହିଁକି ଏ ଭୃଷାଣିଧନ ଚନ୍ଦ୍ରବଦନୀ—ପ୍ରତି )

—୦—

( ରାଗ—ବଙ୍ଗଳାଶ୍ରୀ । ତାଳ—ଏକତାଳୀ )

ସଖୀମାନେ ଭୁଲି ମନ୍ତ୍ରର କେ ଦେଲି ସେ କାଳିଆ କାହ୍ନୁକୁ ?
ଅତି ସରାଗରେ ନିକୁଞ୍ଜେ ଡାକଇ ବଜାଇଣ ବେନୁକୁ । ଘୋଷା ।
ପତିବ୍ରତା ହୋଇ କେ ରହିବ କାହିଁ କର ଅନୁମାନକୁ ।
ପତିବର ଶରେ କେ ଘାରି ନୋହିବ ଶୁଣି ବଂଶୀ ତାନକୁ । ୧ ।
ମତି ବଦଳାଇ କେ ନ ଯିବ ସହି ! ସେହି ବୃନ୍ଦାବନକୁ ।
ଯୋଗୀନ୍ଦ୍ର ଧିଆନ ଯେ କରୁଛନ୍ତି ଆନ ପ୍ରେମ ବରଧନକୁ । ୨ ।
ଛତି ଟେକାଇଥିବ ଯେ କୁଳବତୀ ରଖି ଅଭିମାନକୁ ।
ଗତି କସ ତାର କତିକି ନ ଯାଇ ରଖିବ କି ଜ୍ଞାନକୁ । ୩ ।
ରତି ଏ କି ମୂର୍ଚ୍ଛା ହେବ ନନ୍ଦବଂଶି ଶୋଭା ଅପଘନକୁ ।
ନତି କରେ ବେଣୁଧର କବିଚନ୍ଦ୍ର ଶିନ୍ତ ପଦ ଚିହ୍ନକୁ । ୪ ।

( ଗୋପ ଯୁବରାଜ ଯାହା କଲେ ଆଜ—ବୃତ୍ତେ )

—୦—

( ରାଗ—ଝିଂଝୋଟ । ତାଳ—ଆଠତାଳୀ )

ସଜନୀ ! ଘରେ ନ ଲାଗେ ମନ ।
ଶ୍ୟାମବଂଶୀ କଲା ମତି ଉଚ୍ଛନ୍ନରେ । ଘୋଷା ।
ରାଧା ରାଧା ବୋଲି ବାଜଇ ରାତି ।
କୁଳ ଛଡ଼ା ମନ୍ତ୍ର ଯନ୍ତ୍ର ତା ଗୀତିରେ ।୧।

ମୋହନ ଫାନ୍ଦରୁ କପଟ ସଟେ ?
ମୁକୁଳିବ କେଉଁ ଉପାୟେ ଏଥିରେ । ୨ ।
କାହ୍ନୁ କ ଶିକ୍ଷା ସେ ପାଇଛୁ ସବୁ !
ଅଳ ଭଳ ଚତୁ ବାଇ କରଇ ରେ । ୩ ।
ଗୋପେ ଏକା ମୁଁ କ ଅଛୁ ସୁନ୍ଦରୀ ?
ଆଦେ ବାଦେ ବଂଶୀ ହେଲା ବଇରୀ ରେ । ୪ ।
ବେଣୁଧର ବୋଲେ ସେ କୃଷ୍ଣ ବଂଶୀ ।
କେତେବେଳେ ନୁହେ ତୁମ୍ଭର ଦୋଷୀରେ । ୫ ।
( ଓଡ଼ିଆରେ ରାଧାରମଣ ବୋଲ—ବୃତ୍ତେ )

— ❊ —

( ରାଗ—ଦେଶ ବରାଡ଼ି । ତାଳ—ଝୁଲା )
ମନ ମୋହି ନେଲା ସଖି ବଂଶୀଧର ବଂଶୀ ନାଦୁଟା ଲୋ ମାଁ ।
ମାପଟରୁ ମୁଁ ଲୁଚି ସେ କାଳିଆ ମୋ ସଙ୍ଗେ ଲଗିଛୁ କାଦୁଟା ଲୋ ମାଁ ।ଋ।
ନିତିପ୍ରତି ଯମୁନା ଘାଟେ, ଶଠପଣେ ଜଗି ଲମ୍ପଟେ,
କୁଳବଧୂ ବ୍ରତ, ଛଡ଼ାଇବ ବୋଲି;
ଘୋଷେ ରାଧା ରାଧା ପଦୁଟା ଲୋ ମା । ୧ ।
ନଟକୁଟ ଖଣ୍ଡ ପସରା, ଗୋପେ ଗୋପୀ ମହାଜତ୍ୱରା,
ଅପବାଦକୁ ମୁଁ ହାରେଚ ଡର ଡରି,
ଥରୁଅଛୁ ମୋର ହୃଦଟା ଲୋ ମାଁ । । ୨ ।
ଶ୍ୟାମ ଫାନ୍ଦୁ ବର୍ତ୍ତିବ ବୋଲି, ଯେତେ କଉଶଳ ମୁଁ କଲି,
କେଉଁ ମନ୍ତ୍ରବଳେ ମନ ଧନ ଚୋରୁ,
ଧରାଏ ନେଇ ତା ପାଦଟା ଲୋ ମାଁ । । ୩ ।
ଚୋର ଯେଉଁ ଭୁଜଙ୍ଗୀଠାର, ମଠେ ବସି ବୁଦ୍ଧି ଦେବାର,
ସତ ମତ ଧୃତ ବଢ଼ାଇ କରତ,
ପଡ଼ିଲା କ ପରମାଦୁଟା ଲୋ ମା । ୪ ।
ବେଣୁଧର ବୋଲେ ମିତଣି, ଦୁଷ୍ଟ ଆଗେ ଶ୍ରୀମତୀ ଭଣି,
ଶ୍ୟାମବନ୍ଧୁ ଲଗି କଳଙ୍କିନୀ ହେଲି,
ମୋର କେଉଁ ଅପରାଧଟା ଲୋ ମାଁ । । ୫ ।
( ଆଲୀ ବନମାଳୀ ଯା ନା—ବୃତ୍ତେ )

—❊—

(ରାଗ— । ତାଳ—ଖେମଟା।

ରାଧାଙ୍କମେ ମୋହନ ବେଣୁ ବାଜୁଛି ଲୋ ମା ।
ସଖି ପଣ୍ଡ ବଇଚ ଦୁହୁ ହଜୁଛି ଲୋ ମାଁ । ।
ସଖି ପଣ୍ଡ ବଇଚ ଦୁହୁ ହଜୁଛି ଲୋ ମାଁ । । ଘୋଷା ।
ଭଲ ସେ ଶ୍ୟାମସୁନ୍ଦର, ଜାଣିଥାଇ କେତେ ହୃନ୍ଦର
କ ଯତନେ ପ୍ରେମ ସାଗରେ ମଜ୍ଜୁଛି ଲୋ ମାଁ । । ୧ ।
ସେ ଯମୁନାକୂଳ କାଳିଆ, ପ୍ରୀତିରସ ଭାବ ଭୋଳିଆ,
ନଟବର ବେଣୁଟି ଆଚ୍ଛା ସାଜୁଛି ଲୋ ମାଁ । । ୨ ।
କ ମନ୍ତ୍ରର ଶିଖିଛି କାହ୍ନୁ, ଭୁଲାଏ ଅନାଇଁ ଅନାଇଁ
ନାରୀକୁଳେ କଳଙ୍କ ଆଣି ଖଞ୍ଜୁଛି ଲୋ ମାଁ । । ୩ ।
ଅଜ ଏ ଯମୁନା ପାଣିକ, ଆସିବା ନୋହୁ ଗୋ ଏଣିକ,
ବେଣୁଧର ସେ ପାଦ ଯୁଗ ଭଜୁଛି ଲୋ ମାଁ । । ୪ ।
( ମୋହନା ରେ କାହିଁକ ହଠା ବସିଛୁ ଲୋ ମାଁ ।—ବୃତ୍ତେ )

—୦—

## ବଂଶୀ ଆକ୍ଷେପ

( ରାଗ—କେଦାରଭରଣ । ତାଳ—ଅଠତାଳୀ )

ଏହା ଥିଲ କ କରମେ ?
ଶ୍ୟାମ ବଂଶୀଭୁଜଙ୍ଗିମା ଡଂଶିଲା ମରମେ । ଘୋଷା ।
ସେ କଣ୍ଠା ବାଉଁଶ ଖଣ୍ଡେ ତାର ଏତେ ଡାଉ ।
ଶ୍ରୁତି ମୂଳ ଛୁଇଁ ଗୁପ୍ତ କରେ ଦାଉଁ ଦାଉଁ ଗୋ । ୧ ।
ସଭିଙ୍କି ସୁଲଭ ସେ ଗୋ ରାଧାର ବଇରୀ ।
ବାହାରେ ସରଳ ପେଟେ କୁଟ ଅଛି ଭରି ଗୋ । ୨ ।
ପିଉଛି ଯେ ନନ୍ଦସୁତ ଅଧର ଅମୃତ ।
ସେ ପୁଣି ଉଦ୍‌ଗାରେ ବିଷ ଏ ତ ବିପରୀତ ଗୋ । ୩
ଯେଉଁ ବନେ ଥିଲ ସେ ଗୋ ଆଗୁ ଜାଣିଥିଲେ ।
ଉପାଡ଼ି ଯମୁନା ସ୍ରୋତେ ମେଲିଥାନ୍ତି ଭଲେ ଗୋ । ୪ ।
ବୋଲେ ବେଣୁଧର ଆଗୋ ବନୋଦରୀ ରାଇ ।
ମୂଳଟି କାଳିଆ ମୂଳ୍ଲୀର ଦୋଷ ନାହିଁ । ୫ ।
( ହଟ କ ବୁଦ୍ଧି କରିବ—ବୃତ୍ତେ )

—୦—

# ମୁରଲୀ ଆକ୍ଷେପ

ରାଗ—ଦେଶାକ୍ଷ । ତାଳ ଝୁଲା ।

ମୁରଲୀ ! କେତେ ଯୋଡ଼ୁଛୁ କର ।
ରାଧା ରାଧା ବୋଲି କରି ପୁଣି ମୋ ନାମ ନ ଧର । ଘୋଷା ।
ଯେଣେ ଯେଣେ ମୋର ଉଦ୍ବିଗ୍ନ ।
ଗୁରୁଜନ ମୁଖଂ ନ ଶୁଣା ତୁ ଆପଣ ବାଣୀ । ୧ ।
ଶ୍ୟାମ ଠାରୁ କି ଶିକ୍ଷା ପାଇ ।
ସର୍ବଦା ଡାକିଲୁ ମୋତେ ଚୋର ଏଡ଼ିକି ବଢ଼ାଇ । ୨ ।
ତୋ ନିଃସ୍ୱନ ବଢ଼ିଲେ କାନେ ।
ଝର ଝର ହୋଇ ନୀର ବହେ ମୋ ଦୁଇ ନୟନରେ । ୩ ।
କୁଳଶୀଳ ନାଶିଲୁ ମୋର ।
ଶେଷ ଜୀବନ ନେବୁ ଜାଣି ପାରିଲି ଏଥର । ୪ ।
ଖଳ ମୁଖେ ବାଜ ନ' ଆଜ ।
ଯାହା କଲୁ କଲୁ ପ୍ରାଣ ଏଣିକି ପିଣ୍ଡରେ ଥାଉ । ୫ ।
ବେଣୁଧର ବୋଲେ ରାଧିକେ ।
ମନା କଲେ ମାନିବ କି ବାଜିବ ସେ ତ ଅଧିକେ । ୬ ।
( ସଙ୍ଗୀନି ତୁ ଏ ରାତି କଲୁ—ବୃତ୍ତ )

—✽—

( ରାଗ — ଚକ୍ରକେଦାର । ତାଳ — ଝୁଲା )

ସଙ୍ଗିନିରେ ମୋର ମନ୍ଦ କପାଳ ।
ମୋହନ ବଂଶୀ ମୋତେ ହୋଇଲା କାଳ । ଘୋଷା ।
ଲୋକ ହସାରେ, ଘର ନ ସରେ, କି କରିବ ବୁଦ୍ଧି ଏ ସଖି ତୁ ଭଲ ; ୧ ।
ଶାଶୁ ନଣନ୍ଦ, ଲଗାନ୍ତି ଦ୍ୱନ୍ଦ, କି ନ କଲେ ମୋତେ ସେ ଯଶୋଦା ବାଳ ।୨।
ଗଲେ ଯମୁନା, ସେ ନନ୍ଦକହ୍ନା, ମିଛରେ ଘାଟ ମାଗି କରେ କଠାଳ । ୩ ।
ନୂଦ ଏପରି, ସେ ତ ଭ୍ରମର, କହଇ ବେଣୁଧର ସେ ପ୍ରୀତି ପାଳ । ୪ ।
ସଙ୍ଗିନୀରେ ମୋତେ ହେଲାଣି ମନା — ବୃତ୍ତ )

—o—

( ରାଗ — ଶଙ୍କରାଭରଣ । ତାଳ — ଆଠତାଳୀ )

ମୁଁ ତ ନୁହେଁ ତୋ ବଇରୀ ।
ଆଦେ ବାଦେ ମୋ ଭୁଲେ ତୁ ଲଗାନା ଏପରି । ଘୋଷା ।
ମୁରଲୀ ରେ ମିନତି କରୁଛି ବାରମ୍ବାର ।
ଆଉ ଥରେ ମୋର ନାମ ମୁଖେ ତୁ ନ ଧର । ୧ ।

ଯେତେବେଳେ ପଞ୍ଚମେ ଉଚ୍ଚାରୁ ସ୍ୱଧେ ସ୍ୱଧେ ।
ଶ୍ରବଣେ ପଶି ମୋହର ମରମକୁ ବାଧେ । ୨ ।
ଦନ୍ତରେ ତୃଣ ଧରି ମାଗୁଛୁ ଏତକ ।
ଏ ଗୋପରେ ଘୋଷାଅ ନା ଅପକାରତକ । ୩ ।
ତୋହ ଯୋଗୁଁ ଏତେ ସରି ହେଲଣି ମୁଁ ପରା ।
ପଣ ସାଧି ଏଣିକ ମୋ ମହତ ନ ସରା । ୪ ।
ଗୁଡ଼ ଗୁଡ଼ କୁଟିଳତା ହୁଅ ତୁ ସରଳ ।
ସୁଧା ଗୁଣି ଉଦ୍‌ଗାର ନା ବିଷମ ଗରଳ । ୫ ।
ଯୁହାରୁଛୁ ବଂଶୀ ତୋତେ ନଦ ଅବୃଷ୍ଟାଣ ।
କଲବଲ କରା ନା ତୁ ଏ ପଞ୍ଚପରାଣ । ୬ ।
ବେଣୁଧର ବୋଲେ ଆଗୋ ବନୋଦସ୍ତ ରାଣ୍ଡ ।
କାଳିଆଙ୍କ ଏ ଭିଆଣ ବଂଶୀ ଦୋଷ ନାହିଁ । ୭ ।
( ସହ୍ୟ, ବିପରୀତ ରତେ—ପ୍ରଭ )
—୦—

( ରାଗ—ଦେଶାକ୍ଷ । ତାଳ—ଝୁଲ )
ବାଜ ନା ବାଜ ନା ବଂଶୀ ମୋ ନାମେ ଆଜ ।
ବାଧଇ ମରମେ ଯେବେ ସୁସ୍ୱରେ ଗାଜ । ପଦ ।
ମୁଁ ଯେ ସରଳା ଅବଳା ତୁ ଯେ କୁଟିଳା ।
ଅତ ବିଷମ ପୁଣି ଜଟିଳା କୁଟିଳା । ୧ ।
ପରପତ୍ନୀ ସାଙ୍ଗ ପଡ଼ୋଶୁଣି ଆବର ।
ଦେଖି ନ ପାରନ୍ତି ଶିରୀ ଉଚଳ ମୋହର । ୨ ।
କେ କେତେ ପ୍ରକାରେ ମେଳ ତେତେପ୍ରାନ ।
କହୁଥାନ୍ତି ଯା ମୋ ହୃଦୟ ଉଠଇ ଜଳ । ୩ ।
ଏଥିରେ ପୁଣି ମୋଠାରେ ତୋର ଅହଙ୍କା ।
ଅଧିକେ ବଢ଼ାଇ ଦେଉ ମୋ ମନେ ଚିନ୍ତା । ୪ ।
ଯୁହାର କୋଟିଏ ତୋତେ ବନନ୍ତ ଯେନ ।
କୃଷ୍ଣ କରେ ଥିଲେ ଥାଅ ନ କର ସ୍ୱନ । ୫ ।
ବେଣୁଧର ବୋଲେ ସାଧ ହେଲ କ ବାଇ ?
ଜନ୍ମିଛୁ ସେ କୃଷ୍ଣ ନାମ ଗାଇବାପାଇଁ । ୬ ।
( ନଷ୍ଟେ ସେହ୍ୱ ବନସୂତ ଅଟଇ ମୂର୍ତ୍ତି—ପ୍ରଭ )
—୦—

ରାଗ—ପରଜ । ତାଳ—ଝୁଲ )

ସଖି ରେ ! ନବ ନାଗର କାହ୍ନୁ ।
ଭଲ ଭଙ୍ଗୀରେ ତ ବଜାଏ ବେଣୁ । ଘୋଷା ।
ଆହା ସେ ଚକ୍‌କଣ କାଳଆ ତନୁ ।
ଦଣ୍ଡେ କ ଘଡ଼ଏ ନ ଯାଏ ମନୁ । ୧ ।
ନବରଙ୍ଗିଆ ସେ ପିଲଟି ଢନୁ ।
ଗୋଟିଏ ହୋଇଛୁ କୋଟି ଅତନୁ । ୨ ।
ଧେନୁ ଘେନ ଫେର ଆସନ୍ତେ ବନୁ ।
ହଜ ଯାଏ ଦୁଃଖ ରୂପ ଦର୍ଶନୁ । ୩ ।
ଅପୂର୍ବ ଜନ୍ମିଛି ନନ୍ଦ-ଭୁବନୁ ।
ଅଭିନବ ଛବି ସେ ଝନୁ ଝନୁ । ୪ ।
ଯାହା ପାଇଁ ରାଧ ପୂଜୁଛି ଭାନୁ ।
ବେଣୁଧର ଗତି କବା ତା ବନୁ । ୫ ।
[ ବନ୍ଧୁ ହେ ମୁହିଁ ଶିଖିବି ବଂଶୀ—ବୃନ୍ଦେ ]

—o—

( ରାଗ—କେଦାର । ତାଳ—ଝୁଲ )

ଯେନଲୁ ନାହିଁ ଯେତେ ଦଇନ କଲିରେ ।
କୃଷ୍ଣ ମୁରଲୀ ।
ବାରମ୍ବାର ମୁ ପଶ ଶରଣ ଗଲିରେ । ଘୋଷା ।
ସରଳ ହୋଇ କୁଟିଳ ଗତି ।
କ ଗୁଣେ ମୋ ଥାଇ ଗୋପ ଯୁବତୀରେ । ୧ ।
ନେଲୁ ମୋ ଜାତି ଧୃତି ମାନ ମହତ ।
ଲାଜ ଭୟ ଗାରିମା କଲୁ ନପାତରେ । ୨ ।
ବାଙ୍କା ଅଛୁ ଏ ଘଟେ ଜୀବନ ସିନା ।
ଛୁଡ଼ିଗଲେ ପୂରିବ ତୋହ କାମନା ରେ । ୩ ।
ଢଷମ ହୋଇ ଯେନ ସାଧିଲୁ ବାଦ ।
ଥିଲୁ କ ମୋ କରମେ ଏ ପଣମାନ ରେ । ୪ ।
ଘୋଷି ହେଉ ମୋ ନାମ କ ସୁଖ ପାଇଁ ?
ରାଧା ବଧା ତ ଶଳେ ଜାଣିଲୁ ନାହିଁ ରେ । ୫ ।

କହଇ ବେଣୁଧର ଚରଣ ଧରୁ ।
ନ ହୁଅ ସନ୍ତାପିତା ନିକୁଞ୍ଜେଶ୍ୱରୀ ରେ । ୬ ।
[ ପଲକ ପଡ଼ୁ ନାହିଁ ରଜନୀ ଯାଉ— ବୃତ୍ତେ ]

—o—

[ ରାଗ—ଲଳିତକାମୋଦୀ । ତାଳ—ଏକତାଳୀ )
କହ କହ ପ୍ରିୟସଙ୍ଗି ! ଏ କି ପରମାଦ ଗୋ !
ଅହରହ ବଂଶୀ ମୋତେ ଦେଲା ଅପବାଦ ଗୋ । ଘୋଷା ।
କି କରିବି କେଉଁଣେ ଯିବି    କେମନ୍ତେ ଏଥୁଁ ତରିବି ?
ଶାଶୁଙ୍କର କୁବଚନ ଝବାଧୀ ନଣନ୍ଦ ଗୋ । ୧ ।
ଯେଉଁଣେ ଗଲେ ତେଉଁଣେ ପୁଣି    ବୋଲୁଛନ୍ତି କଳଙ୍କିନୀ;
ଷଣେ ଭଲ ନ ଶୁଣିଲି ମୋ କରମ ମନ୍ଦ ଗୋ । ୨ ।
ଗ୍ରୁଣ୍ଡ ଗଢ଼ାଇ ଲୁହାର    ବଂଶୀକି କଲି ଯୁହାର,
ତେବେ ହେଲେ ନ ଘୁଞ୍ଚିଲା ମାନସରୁ ଖେଦ ଗୋ । ୩ ।
ଗୀତେ ବେଣୁଧର ଭଣି    ସ୍ଥିର ହୁଅ ସନୋଦନୀ,
ସେହି ଶ୍ୟାମବନ୍ଧୁ ତୁମ୍ଭ ହୃଦୟ ସମ୍ପଦ ଗୋ । ୪ ।
[ ଏ କାଳରେ ଘନ ଘୋଟି କି ଅଛନ୍ତି କଳି ଗୋ—ବୃତ୍ତେ ]

—✽—

( ରାଗ—ଯୌବନଚୋର । ତାଳ—ଆଠତାଳୀ )
ମୋହନାରେ ବାଜନା ତୁ ଏଣିକି ରେ । ବଂଶୀ !
ଯେନ ମୋର ଏ ବିପଦ ବାଣୀକି ରେ । ଘୋଷା ।
ଦୁଷମ ନଣନ୍ଦ ମୋର    ଶାଶୁ ଗଞ୍ଜଣା ଅପାର,
ଏଥିରେ ଯିବି ମୁଁ କହ କେଣିକି ରେ । ୧ ।
କରତାଳ ମାରି ସିନା    ହସିବେ ବ୍ରଜଅଙ୍ଗନା,
କାହାପରି ମୋତେ ଅଛୁ ମଣିକି ରେ । ୨ ।
କେତେ ଯୁବତୀ ଏ ଗୋପେ    କାହାନ୍ତି ଅବା ସୁରୂପେ;
ଏକା ମୋରେ ବାଦ ସାଧୁ ଜାଣିକି ରେ । ୩ ।
ଅଇଁ ତୋତେ ବାରମ୍ବାର    କରୁଛୁ କୋଟି ଯୁହାର,
ଘେନ ଘେନ ବେଣୁଧର ଭଣିକି ରେ । ୪ ।
[ ଦେଖିଲୁ କି ମୋହନ ମାଧୁରୀ—ବୃତ୍ତେ ]

—✽—

( ରାଗ—ଚୋଡ଼ପରଜ । ତାଳ—ଆଠତାଳୀ )

ଏଡ଼ି ମୂରଲୀ ଧ୍ୱନି ରେ, କଂଶାରି ।
ମୋହ ହୋଇ ଯିବୁ ସବୁ ଲୁ ଶୁଣି ରେ । ଘୋଷା ।
ସପତ ସ୍ୱରେ ତା ରାଗ ରାଗିଣୀ ।
ତରଙ୍ଗେ ଯମୁନା ବହେ ଉଜାଣି ରେ । ୧ ।
ମୂକ ହୁଏ ପିକ ନ ଭାଷି ବାଣୀ ।
ପାଷାଣ ତରଳ ହୁଅଇ ପାଣି ରେ । ୨ ।
ପଲ୍ଲବେ ଶୁଖିଲ ପାଦପ ଶ୍ରେଣୀ ।
ନ ଚର ପଶୁଏ ସ୍ଥଗିତ ତୃଣି ରେ । ୩ ।
ବୋଲେ ବେଣୁଧର ଜାଣ ମିତଣି
ସେ ବେଣୁ ବାଦକ ମୋହନମଣି ରେ । ୪ ।
[ କଳା ନା ସ୍ନେହ କଲା ନାଗର (ବୃ)—ବୃତ୍ତେ )

—o—

( ରାଗ—ରସମଞ୍ଜରୀ । ତାଳ—ଖେମଟା )

କୁଞ୍ଜବନେ ମୋହନ ବଂଶୀ ବାଜିଲା ରେ ।
ସଖୀ ପତିବ୍ରତା ଧୃତି ଭାଜିଲା ରେ । ଘୋଷା ।
ଶୀତଳ ଧୀର ସମୀରେ ସୁରମ୍ୟ ଯମୁନା ତୀରେ
ସୁଗନ୍ଧ କୁସୁମ ରାଶି ରଜିଲା ରେ । ୧ ।
ଶୁକ ସାରୀ ପରଭୃତ ଖଞ୍ଜନ ବସନ୍ତ ଯୁତ
ତରୁଲତା ଡାଳେ ତ ତରଜିଲା ରେ । ୨ ।
ବୃନ୍ଦା-ବିପିନ ଧରଣୀ ପୀତ ନୀଳ ରତ୍ନମଣି
ହୃଦୟ ସମ୍ପୁଟ ତାର ମାଜିଲା ରେ । ୩ ।
ସେ ଚରଣେ ସେବା ଦାସୀ— ହେବାକୁ ମନେ ମନାସି
ବେଣୁଧର ବେଶ ଭୂଷା ସାଜିଲା ରେ । ୪ ।
[ ଗୋବର୍ଦ୍ଧନ ମାନସୀ ଆଜ କାହିଁକ ନିର—ବୃତ୍ତେ ]

—o—

( ରାଗ—ବସନ୍ତ । ତାଳ—ଝୁଲ ଏ ଝପ୍‌ତା )

ସଖି ! ଶୁଣ ଶ୍ରୁତି ଡେରି ।
କି ରଙ୍ଗେ ବାଜୁଛି, ମୋହନ ମୁରଲୀ
ଗୋଟି ଗୋଟି ନାମ ଧରି ( ସଖି ) । ଘୋଷା ।
ଯମୁନାର ପାଣି, ବହୁଛି ଉଜାଣି, କୁହୁକୁହୁ ନାଦ କରି ।
ଆନନ୍ଦ ପ୍ରବାହେ, ଝୁଲି ଫୁଲି ଫୁଲି, ଖେଳୁଛି ମୃଦୁ ଲହରୀ । ୧ ।

ମଥରେ ପଥର, ତରଳ ଯାଉଛୁ, ମଜନ ତ ଶୁକ ଶାରୀ ।
ଦେଖ ଦେଖ ପିକ, ହୋଇଲେଣି ମୂକ, ନ ପାରେ ସ୍ୱନ ଉଚାରି । ୨ ।
ଯୋଗୀ ଯୋଗ ଭଙ୍ଗି, ଗଲେଣି ସଙ୍ଗିନ ? ପଶୁନ ଥକା ନ ଚରି ।
ବୃକ୍ଷ ତରୁମାନେ, ପଲ୍ଲବିତ ହୋଇ, ଧଇଲେ ଫୁଲମଞ୍ଜରୀ । ୩ ।
ଉଚ୍ଛନ୍ନ ନୋହିବେ, କଆଁ ଗୋପପୁରେ, ଅବଳା ସରଳା ନାରୀ ।
ବେଣୁଧର କହି, ମିଛ ନୁହେଁ ସଖୀ, ମରମ ପକାଏ ଝାରି । ୪ ।

( ହଟି ବସିଛୁ କଶୋରୀ—ବୃତ୍ତେ )

—o—

( ରାଗ—ମୋହନ । ତାଳ—ଆଠତାଳୀ )

ସଞ୍ଜବେଳୁଁ କୁଞ୍ଜରେ ବାଜୁଛି ତୋର ନାଁରେ ।
ରାଧେ ରାଧେ ବୋଲି ବଂଶୀ ଡାକୁଛି କାନା ରେ । ଘୋଷା ।
ଶୁଭେ ଅଭିସାର    କରିବା ସମ୍ଭାର
ସାଜ ରଖି ସଖୀ ବାଉ ସଙ୍ଗରେ ଯେନା ରେ । ୨ ।
ଆନନ୍ଦ ଉତ୍ସବ—    ଯାତ ଉଚ୍ଛୁଳିବ
ଫୁଲ ଦୋଳ ଝୁଲଣ ମଣ୍ଡପ ସୁମନା ରେ । ୨ ।
ସେ ଧୀର ସମୀର    ଯମୁନାର ତୀର
କୋଟି ସୁକୃତ ଅର୍ଜିବ ମିଳନୁ ଯିନା ରେ । ୩ ।
ସଙ୍ଗ ସହଚରୀ    ନୃତ୍ୟ ଗୀତ କରି
ମଜ୍ଜିବୁଁ ଯୁଗଳ ରସେ ଚନ୍ଦ୍ରବଦନା ରେ । ୪ ।
କହେ ବେଣୁଧର    କର ନା ଉଚ୍ଚୁର
କହେ ବେଣୁଧର    କର ନା ଉଚ୍ଚୁର
ଅକଳଙ୍କ ଗୋଷ୍ଠ ଚନ୍ଦ୍ର-ସୁଖ ସଦନା ରେ । ୫ ।

( ଯିବା ପର ପରାଣ ସଙ୍ଗିନ ଉଠିଆ ରେ—ବୃତ୍ତେ )

---

( ରାଗ—ଭାଟିଆରୀ । ତାଳ—ଏକତାଳୀ )

ଆଗୋ ଆସ ଆସ, ବଂଶୀ ଧ୍ୱନି କଲାଣି ଧଇର୍ଯ୍ୟ ନାଶ । ଘୋଷା ।
କାତର ନ ଭଜ ବିଚକ୍ଷଣା    ଯେ ହଟେ ଶୁଭୁଛି ଯିବ ଜଣା
ଖୋଜ ଖୋଜ ନିଷ୍ଟେ ପାଇବା ତାହାଙ୍କୁ ଜାଣି ଶୁଣି କପଁ । ଧୂର୍ତ୍ତ ବଣା ।୧।
ମିଳଣି ଗୋ ଚନ୍ଦ୍ର ଖଣ୍ଡ ରେଖା    ଅବଶ୍ୟ ପଡ଼ିବ ଆଜ ଧରା
ଗୀତକୁ କାନେଇଁ ଯିବା ପ୍ରିୟସଙ୍ଗ ! କେତେ ଲୁଚିବେ ପୁଚନା ମର ?।୨।
କୁଞ୍ଜେ କୁଞ୍ଜେ ଜଣେ ଜଣେ କରି    ଲୋଡ଼ିବା ତାହାଙ୍କୁ ସହଚରୀ
କେଳିନାଗ ମାନେ ତମାଳ ଗହଳେ ଥିବେ ଅବା ସେ ମୁରଲୀଧାରୀ ।୩।

ଶ୍ୟାମ ଅଙ୍ଗ ପଦ୍ମଳ ପର ପ୍ରସରଇ ଏହୁ ବଗଭର
† କୃପାମୟ ଦେବ ଭକ୍ତେ କେଣେ ଭାବ,
ନାଗେଶ୍ୱର ମୂଳ ଛନ୍ତ ହର । ଆଗୋ ଆସ ଆସ । ୫ ।
( ଶ୍ୟାମ ଅପବାଦ ମୋତେ ଲଗିଥାଉ—ବୃତ୍ତ )

—o—

( ରାଗ—ଦୈନପୂର ଚୋଡ଼ି । ତାଳ—ଏକତାଳୀ )
ନିକୁଞ୍ଜ ବନେ କାଳିଆ ଭୂତ ଉଗାଉଛି ମାଁ ।
ଏ ଅର୍ଦ୍ଧ ନିଶାରେ ନାମ ଧରି ଡାକୁଅଛି ମାଁ । ଘୋଷା ।
ବରଜ ଯୁବତୀ କୁଳ ନ ରଖଇ ଜାତି କୁଳ
ମଦନେ କରି ବାତୁଳ ଜ୍ଞାନ ହରାଉଛି ମାଁ । ୧ ।
ଏହୁପରି ନିତି ନିତି ଶୁଣାଉଛି ଅପକୀର୍ତ୍ତି
ଧୃତି ନାଶି ପତି ବ୍ରତ ପଣ ଘଟାଉଛି ମାଁ । ୨ ।
ଶୁଣିଲେ ତା ବଂଶୀ ଭାଷା ଝାଙ୍କଇ ମଦନ ଦଶା
ନରତେ ନଗରେ ଲୋକହସା କରାଉଛି ମାଁ । ୩ ।
✽ ନୃପ କୃଷ୍ଣଚନ୍ଦ୍ର ଗିର ମୋ ମୋହନ ବେଣୁଧର
ପର ଭୂମ୍ମାନଙ୍କର ଚିତ୍ତ ଦ୍ରବାଉଛି ମାଁ । ୪ ।
( ଯମୁନାକୂଳେ କାଳିଆ କେତେ ହଟା କଲା ମାଁ—ବୃତ୍ତେ )

—o—

( ରାଗ—ଦକ୍ଷିଣପାଠଙ୍କ । ତାଳ—ଏକତାଳୀ )
ଶୁଭୁଛି, ବଂଶୀ ତାନ ରେ । ନିକୁଞ୍ଜ ମାଝ ବନେରେ । ଘୋଷା ।
ଶୁଣ ଗୋ ଶ୍ରୀମତୀ ରାଇ ! ଥରେ ତୋ ମନ ପୂରାଇ
ଦେଉଛି ଚିତ୍ତ ଥରାଇ, ବାବେକ ଦର୍ପ ହରାଇ । ୧ ।
ସେ ନବ ଛଇଳ କହ୍ନା କହେ ତୋ ଗୁଣ ଭାବନା
ଯାହା ଦର୍ଶନେ ଯମୁନା—ଯାଉଛି ଉଜାଣି ଚନା । ୨ ।
କଟିବର ପୀତପଟ ଶିଖୀ ଚନ୍ଦ୍ରିକା ମୁକୁଟ
ଭେଟିକୁ ବଢ଼ନ ଉଠ, ଝଣେ ଭୁଜ କର ମଠ । ୩ ।
ତୋ ସୁକୃତ ରାଶି ଫଳ ରାଧାକୁ ହୋଇଛି ଠୁଳ
କର ଶୁଭ ଅନୁକୂଳ, ଗଡ଼ି ଯାଉଅଛି ବେଳ । ୪ ।

---

† ବଡ଼ଖେମୁଣ୍ଡୀ ଅଧୀଶ୍ୱରଙ୍କ ନାମେ ଏ ଗୀତ ଭଣିତ ।
✽—ରଣପୁର ଅଧୀଶ୍ୱରଙ୍କ ନାମେ ଏ ଗୀତ ଭଣିତ ।

ଥାଉ ପଛେ ଲାଗି ସଜ ଦର୍ଶନ ସୁଖ ଅରଜ
ବୋଲେ ବେଣୁଧର ବ୍ରଜ, ମୋହନ ସେବାରେ ମଜ୍ଜ । ୫ ।
( ବାଜୁଛି ସଖି ବାଜାରେ—ବୃନ୍ଦେ )

—୦—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )
ଆଗୋ ସଖି ! ସ୍ନେହ ଘେନା ।
ମୋ ହୃଦରେ ଜାତ ହେଲା ବିଷମ ବେଦନା । ଘୋଷା ।
ଚାଲ ଗୋ ପୁରକୁ ଯାଇ ଶୟନ କରିବା ।
ଏ କଷଣ ସହି ଏଥି ରହି ନ ପାରିବା । ୨ ।
କାଳନ୍ଦୀ କୂଳରେ ଏଣୁ ଯେଉଁ ବଂଶୀ ନାଦ ।
ବଢ଼ାଇଲା ପିନା ମୋତେ ବଡ଼ ପରମାଦ ।
କହିଦେଲୁ ଯାହା ତାହା ସଖି ଗୁଣାବଳୀ ।
ଚେତକ ହେଲୁ ମୋ ଧୃତି ଗଲାଣି ଟଳି । ୩ ।
ରଖିବ କ ପ୍ରାଣେ ଅବା ମାରିବ ଏ ବଂଶୀ ।
କାଳ ଭୁଜଙ୍ଗିମା ହୋଇ ହେଲା ମର୍ମେ ଦଂଶୀ । ୪ ।
ବେଣୁଧର ବୋଲେ ସଖୀ ବିଶାଖା ଉତ୍ତର ।
ତୋ ବ୍ୟାଧି ହୋଇବ ଭଲ ନ ହୁଅ କାତର । ୫ ।
( ସଖି ! କି ବୁଦ୍ଧି କରିବା—ବୃନ୍ଦେ )

—୦—

( ରାଗ—ଲଳିତ ବରାଡ଼ି । ଆଦି ତାଳ )
ମୋ ନାମ ବଂଶୀ ନ ବାଜରେ ( ଆଉ ମୋ ନାମେ ) । ଘୋଷା ।
ଶୁଣି ତୋର ସ୍ୱନ ହେଲି ମୁଁ ଉଛନ୍ନ
ହଟିକଣି ଲୋକ ଲାଜରେ । ୧ ।
ଏ ଗୋପ ନଗରେ ତମାଳୀ ତଳରେ
କେ କେତେ ଗଞ୍ଜନ୍ତି ବ୍ୟାଜରେ । ୨ ।
ମୁଁ ବୋଲି କୁଳଟା କେତେ ଦୁର ଦଟା
ବସିଛୁ ଗୋପ ସମାଜରେ । ୩ ।
ବେଣୁଧର ଭଣି ଠାକୁରାଣୀ ବାଣୀ
ବଇଣ୍ଣ କରୁଛୁ ଆଜ ରେ । ୪ ।
( ଶ୍ୟାମଚାନ୍ଦ ଙ୍କୁ ଝରଛେ—ପ୍ରଭ )

—*—

( ରାଗ—ବରାଡ଼ି । ତାଳ—ଝୁଲା )

ବ୍ରଜମୋହିନୀ ! ବ୍ରଜ ହେବୁ କଳଙ୍କିନୀ । ଘୋଷା ।

ଯାହାରେ ବଳାଇ ମନ    ହେଉଅଛୁ ଛନ ଛନ
ବନେ ଭାଳବୁ ତା ଘେନ । ୧ ।
ଯେଉଁ ମୁରଲୀକ କାନ—    ଡେରଅଛୁ ନିଶିଦିନ
ସେ କରିବ ଅଭିମାନୀ । ୨ ।
ଯା ନାମ ଶୁଣିଲେ ଶ୍ରୁତି    ପୁଲକେ ହୁବୁ ଶ୍ରୀମତି !
ତା ଲାଗି ହେବୁ ଗୁମାନୀ । ୩ ।
ସେ ଯୁଗଳ ପଦେ ଧ୍ୟାନ    ଥାଉ ମୋର ନିଶିଦିନ
କର ଯୋଡ଼ି ମାଗୁଅଛି ଏ ବେଣୁଧର ଅଜ୍ଞାନୀ । ୪ ।

( ଶ୍ୟାମ ରେ ନୂଆ ବମନା – ପ୍ରତି )

—o—

# ଷଷ୍ଠ ଅବଲୋକନ

## ସଖୀ ଉକ୍ତି

( ରାଗ—ସିନ୍ଧୁଡ଼ା । ତାଳ – ରୂପକ, ଝୁଲା )

ଆଜ ତୋର ଏ କି ବଚଘାତ ଗୋ, କହ କହ ପ୍ରାଣମିତ । ଘୋଷା ।
ନଟ-ପଟଳ ମୁକୁଟ ଚଟପଟ ଅବଲୋକନ ନାହିଁ ଧାମ ଗୋ ।
ନଳିନ ନୟନ; କରୁ ଥନ ଥନ, ମନରେ କି ଭାବ ଘେନ ଗୋ । ୧ ।
ଭୁନ ଭୁନ କରି, କି କହୁ କାହାରି, କିଛି ତ ନପାଏ ଜଣା ଗୋ ।
ଛନଛନ ହେଲୁ କମ୍ପା କରୁ ହେଲା, ଅଧୀର ବେଶ ମାଳତୀ ଗୋ । ୨ ।
ସର୍ବାଙ୍ଗେ ପୁଲକ, ଚକ୍ଷୁ ଜଳ ଢଳ, ହୁଅଇଟି କାହିଁପାଇଁ ଗୋ ।
ଭାଲେ ଖୋଷି ଡୋଳା, ହେଉଛ ବାତୁଳା; ଘନ ଘନ ଡୋଳ ହାଲ ଗୋ । ୩ ।
ଶ୍ୟାମପ୍ରେମ ଭୂତ, ଆକର୍ଷିଲା ପରା, କରୁଛି ମୁଁ ଅନୁମାନ ଗୋ ।
ନେଲ୍ହେଲେ କାହିଁକି, ସତ୍ତ୍ୱିକ ବିକାରେ, ମୁଖଚନ୍ଦ୍ର ହୋଇଲା ମ୍ଳାନ ଗୋ । ୪ ।
ସଖୀବାଣୀ ଶୁଣି, ଶ୍ରୀକିଶୋରମଣି, ରହିଲେ ଅଧୋବଦନେ ଗୋ ।
ବୋଲେ ବେଣୁଧର, ନବାନୁରାଗର ଲକ୍ଷଣ ଶ୍ରୀଅଙ୍ଗେ ଘେନ ଗୋ । ୫ ।

( ନବ ବସନ୍ତ ସମୟ, ନବ ବୃନ୍ଦାବନ ରସମୟ – ବୃତ୍ତେ

—o—

(ରାଗ—ପରଜ । ତାଳ—ଆଠତାଳୀ)

କପଟ କଥା କହୁଛୁ କାହିଁ ?
ବଧିବେ ! ସତେ ହେଲୁ କି ବାଇ ଗୋ । ଘୋଷା ।
ବୃଥାରେ ସଂଭ୍ରମ କି କହୁ ସଖି !
ଭୁଲି ଭୁଲି ସେ ଶ୍ୟାମଳ ମୂର୍ତ୍ତିଙ୍କି ଗୋ । ୧ ।
ସଜାବ ନୁହଇ ଯେତୁ ନର୍ତ୍ତକୀବ ।
ସେ କାହୁଁ ଜାଣିବ ତୋ ମନ ଭାବ ଗୋ । ୨ ।
ଜଳ ଭ୍ରମ ମରୀଚିକା ପରାୟେ ।
ତାହାଙ୍କି ତ ଶ୍ୟାମ ତଥା ଅଟଇ ଗୋ । ୩ ।
ଏଥୁଁ ସିନା ଦଶା ହେବ ପ୍ରବଳ ।
ଛାଡ଼ ଏ ଭାବନା ବୁହିଁ ଅକୂଳ ଗୋ । ୪ ।
ଉପାୟ କରିବା ଯିବାକୁ ଦୁଃଖ ।
ଶୁଖାଇ ଯାଅନା ଚନ୍ଦ୍ରମା ମୁଖ ଗୋ । ୫ ।
ଜଗଚନ୍ଦ୍ର ବେଣୁଧର କହଇ ।
ଆକାଶ-ପୁଷ୍ପ କେ କରେ ଖୋଜଇ ଗୋ ? । ୬ ।
(ମୁରଲୀ, ତୋର ଶରଣ ଗଲି—ପ୍ରଭୃ)

—୦—

(ରାଗ—ଇମନ କଲ୍ୟାଣ । ତାଳ—ଆଠତାଳୀ)

ନଟବର ଚିତ୍ର ପଟ ରହିଁ ଧରି ଗୋ !
ଅଟକି ଗଲି କି ତୋ ନୟନ ଦେବନ ଗୋ । ଘୋଷା ।
ଘଟଣ ଶ୍ୟାମସୁନ୍ଦର, ଛଟକେ ଭୁ ଭୂଲାବାର,
ହଟହଟା ଯୋଗ ଆସି ଘଟିଲାନ ଗୋ । ୧ ।
ତଟ ଯମୁନା ନିକଟ,— ଘାଟଜଗା ନନ୍ଦସୁତ,
ହଟରେ ଉଚାଟ ମନ୍ତ୍ର ରଟିଲାନ ଗୋ । ୨ ।
ଅଟଳ ଧନ୍ୟ ତ ସାର ଦେଲୁଣି ରେ ସୁକୁମାରୀ,
ଷଟପଦ କେଶୀ ପ୍ରେମ ରସଦାମରେ । ୩ ।
ଲଟ ଲାଗିଲା ଏଥର ପଟହ ଏ ଗୋପପୁର,
ପଟଣାରେ ବାଜିବ ପ୍ରକଟିଲାନ ରେ । ୪ ।
ବଟଣା ବାଳର ସଙ୍ଗୀ— ପଟଳ ଅଟନ୍ତ ଦେଖି,
ଗୁଟ ଯୋଡ଼ୁ ଏଡ଼! ବେଣୁଧର ଭଣିରେ । ୫ ।
(କାଳନ୍ଦୀ କୂଳକୁ ମୋ ସଙ୍ଗାଳ ନ ଯା—ପ୍ରଭୃତି)

# ତିନପୁରୁଷ ଭ୍ରମ

## ରାଧା ଉକ୍ତି

( ରାଗ—ଚକ୍ରମାଳିଆ । ତାଳ ଝୁଲା )

ମରଣହିଁ ମୋର ଶ୍ରେୟ; ତିନପୁରୁଷରେ ଦେଲି ଯା ଲୟ ଗୋ
ତେଣୁ ଚରଣ ଦ୍ୱଏ ଅଥୟ ସଜନି ଗୋ । ୧ ।
କୃଷ୍ଣ ବୋଲି ବେନବର୍ଣ୍ଣ, ଶୁଣିଲି ଜନରୁ ମୋ ବେନି କର୍ଣ୍ଣ ଗୋ
ତାଙ୍କଠାରେ ଡାଳି ଦେଲି ମନ ସଜନି ଗୋ । ୨ ।
ପୁଣି ଯେ ବେଣୁ ବାଦକ, ମର୍ମ ଝୀନ୍ତି ତାଙ୍କ ବଂଶୀ ମାଦକ ଗୋ ।
ନରତେ ମୋ ଚିତ୍ତ ଦକ ଦକ ସଜନି ଗୋ । ୩ ।
ଚିତ୍ରପଟେ ଯେଉଁ ମୂର୍ତ୍ତି, ଶ୍ୟାମଳ ସୁନ୍ଦର ନାମ ବହନ୍ତି ଗୋ ।
ସେ ମୋ ହୃଦେ ବାସ କରିଛନ୍ତି ସଜନି ଗୋ । ୪ ।
ଅର୍ଜିଲି କରମ ଦୋଷେ, ଆଶାବନ୍ଧାଇଲି ଏ ତିନି ପୁଂସେ ଗୋ ।
ଧିକ ଏ ଦୁର୍ବୁଦ୍ଧି ଦେଲି କେ ସେ ସଜନି ଗୋ । ୫ ।
ଶୁଣି ସହଚରୀ ଭଣି, ସେ ତିନଟି ଏକା ବିଭୁଙ୍କ ଠାଣି ଗୋ ।
ଭ୍ରମ ଦୂରକର ଜେମାମଣି ସଜନି ଗୋ । ୬ ।
କୃଷ୍ଣ ବୈଦେହିକ ଶବ୍ଦ, ସିନା ଏହି ବ୍ରଜ ନନ୍ଦେନ୍ଦ୍ର ସୁତ ଗୋ ।
ଦୁଃଖି ବେଣୁଧର ବରଣିତ ସଜନି ଗୋ । ୭ ।
( ରାଧା ଧରି ସଖି କର—ବୃନ୍ଦେ )

—❋—

## ସଖୀ ଉକ୍ତି

( ରାଗ ରାଗମାଳିଆ । ତାଳ ଝୁଲା )

ରାଧେ ତୁ ମୁଗ୍ଧ ରମଣୀ । ତିନିଜଣ ବୋଲି ଭାବୁଛୁ ସିନା ଗୋ, ଚନ୍ଦ୍ରବଦନା ।
ଜଣେ ଏକା ସେ କାଳିଆ-ସୁନା ଗୋ ଚନ୍ଦ୍ରବଦନା ।
କୃଷ୍ଣ ବୈଦେହିକ ଶବ୍ଦ । ଏ ତିନ ନାମ ତାଙ୍କର ବଚନ ଗୋ, ପରାଣମିତ !
ଆଜ କମ୍ପା ନା ତୁ ଚମ୍ପା-ଗାତ୍ର ଗୋ, ପରାଣମିତ ! । ୨ ।
ଶ୍ରୀକୃଷ୍ଣ ନାମ ଶ୍ରବଣ । ବଂଶୀ ଧ୍ୱନି ଶୁଣା ଚିତ୍ର ଦର୍ଶନ ଗୋ, ଜୀବନ ଧନ !
ଏ ତ ସ୍ନେହ ଜନମ ଲକ୍ଷଣ ଗୋ, ଜୀବନ ଧନ ! । ୩ ।
ସଖୀ ମୁଖୁଁ ଆଶ୍ୱାସନା । ପାଇ ସ୍ଥିର ହେଲେ ଭାନୁନନ୍ଦନା, ସେ କୁଞ୍ଜମଣ୍ଡନା !
ବେଣୁଧର କରେ ସମ୍ଭାବନା, ସେ କୁଞ୍ଜମଣ୍ଡନା । ୪ ।
( କରମ ମୋହର ମନ୍ଦ—ବୃନ୍ଦେ )

—❋—

# ରାଧା ଉକ୍ତି

( ରାଗ—ମଧୁସାରଙ୍ଗ । ତାଳ ଆଠତାଳୀ )

ଏଡ଼େ ଭାଗ୍ୟ ହୋଇବ କି ?
ଉଷା ମଧ୍ୟେ ବୋଲାଇବି ମୁଁ ତାଙ୍କ ସେବକୀ । ପଦ ।
ଶ୍ରୀକୃଷ୍ଣ ସୁଧା-ମୟୂଖ ବଦନ-ଦର୍ଶନ ।
ପାଇବି କି ସଖି ସତେ କହ ଗୋ ବହନ । ୧ ।
କରୁଣା କରୁଣାଳୟ ସେ ଅରୁଣାଧର ।
ତରୁ ମାପ-ତଳଆ ହେବେ ମୋ ହୃଦହାର । ୨ ।
ସ୍ୱପନେ ଦେଖିଛି ଯାଙ୍କୁ ଗତ ରଜନୀରେ ।
ତାଳବେ ସ୍ନେହ-ଅପାଙ୍ଗ ଏ ଅନାଥିମାରେ । ୩ ।
ବେଣୁଧର ବୋଲେ ରାଧେ ନ କର ଭାବନା ।
ନେବେ ଗୋ ଛାଡ୍ରେଟି ଖଣ୍ଡେ ଦୁରୁ ନନ୍ଦକହ୍ନା । ୪ ।
( କୁଞ୍ଜେ ମୁରଲୀ ବାଜୁଛି—ପ୍ରଭୃ )

—o—

( ରାଗ—ବସନ୍ତ । ତାଳ ତ୍ରିପୁଟା )

ପ୍ରାଣ ସଜନ ! ଶୁଣ ଶୁଣ ମୋ ବଚନୟୁ ବାଣୀ ।
କାହିଁ ଅଛୁ କି କରୁଛୁ ନ ପାରୁଛୁ ଜାଣି ଗୋ । ଘୋଷା ।
ଲଳିତ ନାଟୁଆ ହାଣ୍ଡି ସେ ତ୍ରିଭଙ୍ଗୀ ଠାଣି ।
କଳି ତ ପାରିଲି ନାହିଁ ଭାଙ୍ଗି ଦେଲେ ✽ ଆଣି ଗୋ । ୧ ।
ସୁନ୍ଦର ମେହନ ସତେ କି ମନ୍ତ୍ର ଜାଣନ୍ତି ।
ହୃଦର ଲଗାଇ ଦେବେ ନ ଥିଲି ତ ଚିନ୍ତି ଗୋ । ୨ ।
ବାର ନ ପାରି ତମାଳ ଭ୍ରମେ ଦେଲି ଗ୍ରହି ।
ଘାରିଲି ମରମେ ଦଂଶି ସେ କାଳଆ-ଅହି ଗୋ । ୩ ।
କହ ଗୋ ଏଣିକି ମୁହିଁ କି ବୁଦ୍ଧି କରିବି ?
ସହଜେ କି ଶ୍ୟାମ-ବନ୍ଧୁ ଫାନ୍ଦୁ ନିସ୍ତରିବି ଗୋ । ୪ ।
ଭଣେ ବେଣୁଧର ଆଗୋ ବନୋଦ୍ଧମୀ ରାଣ୍ଡି ।
ପାଶେ ତାଙ୍କ ✽କାମ-ଲେଖ ଦଅସି ପଠାଇ ଗୋ । ୫ ।
(ପ୍ରିୟସହି ଗୋ, ଦେଖ ଶ୍ୟାମ ଆସିଲେ ତ ନାହିଁ—ପ୍ରଭୃ )

—o—

✽ ଆଣୀ—ଟେକ, ବଢ଼ାଇ ✽ କାମଲେଖ— ଅନଙ୍ଗ ପତ୍ରିକା ।

# କୃଷ୍ଣାନୁରାଗ

## ରାଧା ଉକ୍ତି

( ରାଗ— ଶଙ୍କରାଭରଣ । ତାଳ—ଆଠତାଳି )

ଏହି ଦୃଢ଼ ବ୍ରତ ମୋର ।
ସତ୍ୟ କରି କହୁଅଛି ସଂଶୟ ନକର । ପଦ ।
ସଖି ଗୋ ! ଶ୍ରୀକୃଷ୍ଣ ନାମ କରି ଜପାମାଳ ।
ସଂସାର ସୁଖରେ ଦେବି ଶ୍ରଦ୍ଧାଞ୍ଜଳି ଗୋ । ୧ ।
ଲୋଡ଼ା ନାହିଁ ମୋର ଏ ଭୂଷଣ ଅଳଙ୍କାର ।
ଶ୍ୟାମ ଲାଗି କୁସୁମ ସିନା ଦରକାର । ୨ ।
କୃଷ୍ଣ ଚାଲି ଯାଇଥିବା ପଥ--ଚନ୍ଦ୍ର-ଧୂଳି ।
ହୋଇ ବୋଲି ହେଉଥିବ ଏ ମୋର ମଉଳି । ୩ ।
କୃଷ୍ଣ ଭୁଞ୍ଜିଲା ଉତ୍ତାରୁ ଯା ରହିବ ବାକି ।
ଆହାର କରି ତାହାକୁ ବଞ୍ଚୁ ଏ ସେବିକା । ୪ ।
କୃଷ୍ଣ ଭୁଞ୍ଜିଲା ଉତ୍ତାରୁ ଯା ରହିବ ବାକି ।
ଆହାର କରି ତାହାକୁ ବଞ୍ଚୁ ଏ ସେବିକା । ୪ ।
କୃଷ୍ଣ ବଂଶୀ ଯହିଁ ତହିଁ ବାଜିବାର ବେଳେ ।
ଡେଉଥିବ ଶ୍ରବଣକୁ ତା ଭାବ ବହନ୍ତେ । ୫ ।
ନିରନ୍ତରେ କୃଷ୍ଣ ରୂପ ଚିତ୍ତ ରହି ରହି ।
ଆନନ୍ଦାଶ୍ରୁ ମୋ ନୟନୁ ଯାଉଥାଉ ବହି । ୬ ।
କୃଷ୍ଣ ଗୁଣ ଗୁଣି ଗୁଣି ହେବି ପାଗଳିଣୀ ।
ଲାଜ ଭୟ ଲୋକାଚାର ଗୁଡ଼ାଇ ମିଳଣୀ ।
ବେଣୁଧର ବୋଲେ ଆଗୋ ପ୍ରେମମୟୀ ରାଈ ।
ତୁମ ସମ ପୁଣ୍ୟବନ୍ତ ତ୍ରିଭୁବନେ ନାହିଁ । ୮ ।
( ସଖି ! ଏ ନନ୍ଦକୁମର—ପ୍ରଭୃ

—୦—

( ରାଗ—ଖଣ୍ଡବଙ୍ଗଳାଶ୍ରୀ । ତାଳ —ଆଠତାଳି )

ଭକ୍ତ ଚିନ୍ତାମଣି— ବାଙ୍କଚୂଳିଆଙ୍କୁ
ଅଙ୍କରେ ଧରିବି ବୋଲି ଗୋ ।
ପଙ୍କଜ-କୁସୁମେ ତାଙ୍କର ଗଉଣ୍ଡ,
ପୂଜା ଆରମ୍ଭି ବସିଲି ଗୋ ।
ତାଙ୍କର ସେବାରେ ଧନ
ନେବି କହୁଛି ସଜନି ଘେନ ଗୋ । ୧ ।

ମନ୍ଦ ମନ୍ଦ ହାସ କନ୍ଦରୁ ମଧୁର,
ଚନ୍ଦନ ବୋଳା ଶ୍ରୀଅଙ୍ଗେ ଗୋ ।
କନ୍ଧା ରହିଛି ମୁଁ ରଜନୀ ଜାଗରେ
ପ୍ରିୟ ସଖୀଗଣ ସଙ୍ଗେ ଗୋ ।
ବୃନ୍ଦାବନ-କଳାକର ।
ଛନ୍ଦାଚରଣଟି ଫନ୍ଦା ମୋର ଗୋ । ୨ ।
ଆନନ୍ଦ ସାଗରେ ବୁଡ଼ି ରହିଥିବି,
ମନ୍ଦ ଘୋଷଣା ନ ଶୁଣି ଗୋ ।
କନ୍ଦର୍ପ ମୋହନ ବୃନ୍ଦାରକ-ବୃନ୍ଦ-,
ବନ୍ଦନ ମୋ ମଥାମଣି ଗୋ ।
କୁନ୍ଦ ମନ୍ଦାର ଅଧରୁ ।
ମଧୁ ଗୁଞ୍ଜି ବେଣୁ ଜନ ସରୁ ଗୋ । ୩ ।
( କୃଷ୍ଣନାମ ଆଜଠାରୁ ମୋ ଶ୍ରବଣେ—ବୃତ୍ତ )

—o—

( ରାଗ—ଶୋକବରାଡ଼ି । ତାଳ—ଏକତାଳୀ
ଶ୍ୟାମଚନ୍ଦ୍ର ମୋ ନେତ୍ର ସଙ୍ଗାଳ ଗୋ, ପ୍ରିୟଆଳ !
ଜୀବ ଯାଉ ତାଙ୍କୁ ଭଲ ଭଲ ଗୋ ! । ଘୋଷା ।
ହେଲେ ହେଉ ପଛେ ମନା ନ ଛେଳିବ ନନ୍ଦ କହ୍ନା
ତା ନାମ କରିଛୁ ଜପାମାଳ ଗୋ ! । ୧ ।
ଏ ଗୋପରେ ତାଳ ମାରି ହସନ୍ତୁ ପଛେ ଉଗାରି
ମୋ ପ୍ରୀତି ପସରା ବନମାଳୀ ଗୋ ! । ୨ ।
ଶାଶୁ ନଣନ୍ଦ ଭର୍ତ୍ସନା ନ କରେ ମୁଁ ତ ଶୋଚନା,
ତା ଲାଗି ସହଇ ନିତ୍ୟ ଗାଳି ଗୋ ! । ୩ ।
ଗୀତେ ବେଣୁଧର ଭଣି ଶୁଣ ଗୋ କମଳ ଗୁମଣି '
ଶ୍ୟାମ ପ୍ରୀତି ଥାଅ ପ୍ରତିପାଳି ଗୋ । ୪ ।
( ତାଙ୍କ ଲାଗି ମୋର ଜୀବ ଯିବ—ବୃତ୍ତ )

—o—

( ରାଗ— କେଦାରଗୌଡ଼ା । ତାଳ-- ଆଠତାଳୀ )
ଯାଉ ଜୀବ ଯିବ ଯିବା ଲେ ସଜନି !
ଗୋବିନ୍ଦ ମୀତକି ଭଲ ଭଲ ।

ଗ ଉଥାନ୍ତୁ ଲଗାଗ୍ନ ଏ ମୋର ନିନ୍ଦା,
ଗ୍ରାମେ ହାଟେ ବୁଲି ମାରି ଢାଳ । ଘୋଷା ।
ଗୁରୁ ଗଉରବ ଗୁମାନ ବଢ଼ାଇ,
ଗେଲି ଗରବରେ ଜଳାଞ୍ଜଳି ଦେଇ
ଗଡ଼ାଇଛି ଗୁଡ଼ି ମୁଗୁନ-ପଥରେ,
ଗାଳିକୁତ୍ସା ନ ଭୁକିବ ବୋଲି । ୧ ।
ଗାଢ଼େ ମଉଁହୋଇ ଶ୍ୟାମନାମ ମଦେ,
ଗତ ମତ ବକୁଛି ମୁଁ ଛନ୍ଦାପଦେ,
ଗିରିବରଧାରୀ ସର୍ବସ୍ୱ ମୋହର,
ଗଞ୍ଜିନ୍ତୁ ଯେ ଯେତେ ଲୋକ ମେଳି । ୩ ।
ଗଣି ଗଣି ପାଦ କଣ୍ଟି ବୁଲୁ ବୁଲୁ,
ଗରିଷ୍ଠ ଅଚେଷ୍ଟି ପଡ଼ଇ ପଢ଼ିଲୁ,
ଗୋପପୁର ଯାକ ଅକୀର୍ତ୍ତି ଡମ ଜ,
ବାଜିଗଲା ସବୁ ମୁଁ ସହିଲି । ୩ ।
ଗଲା ମରକତ ମାଳିନି କହ୍ନାଇ,
ଜ୍ଞାନ ମୋର ସେହି ଧ୍ୟାନ ମୋର ସେହି
ଗୁଣ ସୁନ୍ଦରଙ୍କ ଦାସୀ ମୁଁ ହୋଇଛି,
ଉପହାର ଦେଇ ଗୁଞ୍ଜାମାଳୀ । ୪ ।
ଗୀତେ କହେ କବିଚନ୍ଦ୍ର ବେଣୁଧର
ଗତକଥାକୁ ଗୋ ଶୋଚନା ନକର,
ଗୁଞ୍ଜମାଳିଆ ତୋ ପ୍ରେମେ ନିରନ୍ତର,
ଗତ ଦାସୀ ହୋଇଛନ୍ତି ଘାଳି । ୧ ।
( ଦେଖିଲେ କାହିଁକି ଲାଜ ମାଡ଼େ ସଖି—ବୃନ୍ଦ )

—*—

( ରାଗ—ଲଳିତ କାମୋଦୀ । ତାଳ—ଏକତାଳୀ )
ଆଗୋ ସଖି ଶ୍ୟାମବନ୍ଧୁ ମୋ ହୃଦ ସମ୍ପତ୍ତି ଗୋ ।
ତାଙ୍କ କଥା ଆଜ ମୋର କେହି ନାହିଁ ଗତି ଗୋ । ପଦ ।
ଯେ ଯେତେ କହନ୍ତୁ ମିଛ ନ ମୁର୍ଚ୍ଛିବ ନନ୍ଦସୁତ ।
ମୋହନ ମୁରଲୀ ଗୀତ ଶୁଣୁଥିବ ଶ୍ରୁତି ଗୋ । ୧ ।

ତାଙ୍କୁ କରିଛି ଗାରବା ଏ ପିଣ୍ଡ ସେ ମଦନ ଢକା ।
ଅପକାରଣକ ପଳା ନାହିଁ ମୋର ଦୁଃଖ ଗୋ । ୨ ।
ସେ ନଟ ନାଗରବର ପଚ୍ଛେ ନକୁଞ୍ଜ ଦ୍ୱାର—
କରି ଦିନ ଯାଉ ମୋର ଭାବୁଅଛି ନିତ୍ୟ ଗୋ । ୩ ।
ଘନ ବେଣୁଧର ଭଣି ଶୁଣ ଗୋ କଶୋରୀମଣି ।
କ ମନ୍ତ୍ର କଲେ ମନମୋହନ ମୁରତି ଗୋ । ୪ ।
( ଏ କାଳରେ ଘନ ଘୋଟି କ ଆଚ୍ଛନ୍ନ କଲ—ବୃତ୍ତ )

—❁—

## ବୃନ୍ଦା ଉକ୍ତି

( ରାଗ—ପ୍ରଭାତୀ । ତାଳ—ଅଠତାଳୀ )

ଭଗବତି ! ଶୁଣ ଶୁଣ ମାତା ମୋହର ବଚନ ଗୋ । ଘୋଷା ।
ନବାକୁ ରଗିଣୀ ଭାନୁଜେମା ଶ୍ରୀରମଣି ।
ବରଜ ଉତ୍କଣ୍ଠା ତାପେ ସତେ ଦବାଗ୍ନି ଗୋ । ୧ ।
ଏକା ଶ୍ରୀନନ୍ଦନନ୍ଦନ ସେ କାଳିଆ ହାଣି ।
ହୃଦୟ ଭିତରେ ତାର ଘର କରିଛନ୍ତି ଗୋ । ୨ ।
ଯେଣିକି ଚାହୁଁଛି ତେଣେ ଶ୍ୟାମମୟ ଜାନ୍ତି ।
ଦେଖି ପ୍ରେମ ବହ୍ନିଳତା ହୁଏ ରସବତୀ ଗୋ । ୩ ।
ମିଳନ ଶାନ୍ତି ତା ହୋଇଛି ପଢ଼ା ପୋଥି ।
ଶ୍ୟାମସୁନ୍ଦରଙ୍କୁ ଶୁଭେ ଭେଟାଅ ଝଟତି ଗୋ । ୪ ।
ଯେପରି ନ ପଡ଼ୁ ବାଧାବନ୍ଧ କିଛି ଏଥି ।
ବୃନ୍ଦାବାଣୀ ଗୀତେ କବି ଶରାଙ୍କ ବଦନ୍ତି ଗୋ । ୫ ।
( ଧନ ଉଠ ଉଠ ପାହିଲା ରଜନୀ—ବୃତ୍ତ )

—o—

## ଦୂତୀ ଉକ୍ତି

( ରାଗ—ବରାଡ଼ି ଅଷାଢ଼ ଶୁକ୍ଳବାଣୀ । ତାଳ ଝୁଲା )

ହେ ମୁରଲୀପାଣି ! ହେ ମୁରଲୀପାଣି !!
କ ନ କଲ ସତେ ଲବଣ୍ୟଠାଣି । ଘୋଷା ।
ଶ୍ରୀ ବୃଷଭାନୁ ନୃପତି ଦୁଲଣୀ । ପୂର୍ଣ୍ଣ ଚନ୍ଦ୍ର ଜନ୍ମ କଶୋରୀମଣି ।
ସରି ଯାଉଛି ହୋଇ ବଉଁଣୀ । ବଞ୍ଚିବା ଆଶା ଛାଡ଼ି ସାରିଲୁଣି । ୧
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ରାଧିକା । ଧ୍ୟାନ କରି ତୁମ୍ଭ ରୂପକୁ ଏକା ।
କଣ୍ଠାଗତେ ପ୍ରାଣ ରହିଛି ତାର । ଉଗାଣ ହୋଇଛି ପାମର ମାର । ୨ ।

ଦିନୁ ଦିନୁ ଖିନ୍ନ କଲାଣି ଅଙ୍ଗ । ସଦା ଲୋଡ଼ୁ ଭୂମିର ସଙ୍ଗ ।
ଅଶନ ନସନ ମଣଇ ବିଷ । ବାଜଣ ପରି ହେଲାଣି ବାଳୀଶ । ୩ ।
ସଜଳ-କମଳ-ଦଳେ ଶୋଇଛି । ଖରଶ୍ୱାସ ନାସିକାରୁ ବହୁଛି ।
ଘଡ଼କେ ହା ବନ୍ଧୁ ବୋଲି କହୁଛି । ଆହା ଧନୀ କେତେ ଦୁଃଖ ସହୁଛି ।୪।
ଅଙ୍ଗେ ଲେପିଲେ କର୍ପୂର ଚନ୍ଦନ । ଶୁଖି ଝଡ଼ି ପଡ଼ୁଛି ସେହିକ୍ଷଣ ।
ଚନ୍ଦ୍ର ଦେଖି ବୋଲେ ଏ ହୁତାଶନ । ମରମେ ଘାରୁଛି ମଦନ ବାଣ । ୫ ।
ମୂର୍ଚ୍ଛିଲା ମାତକୁ ବୋଲଇ ଅହି । ଉପୁପାଇ ଗୋଟା ସ୍ନିଗ୍ଧା ଥରଇ ।
ମୃଦୁମଳୟ ପବନ ବହିଲେ । ସହି ନ ପାରି କାନ୍ଦଇ ବିକଳେ । ୬ ।
କୁସୁମମାଳା ଦେଲେ ତା ଗଳାରେ । ହୁତ ତାତରୁ ଶୁଖିଯାଏ ଖରେ ।
ନିଶିଯାକ ବଞ୍ଚଇ ଉଜାଗରେ । ଅନ୍ଧାର ଦିଶେ ଦ୍ୱିପ୍ରହରେ । ୭ ।
ସେ ବଣା-ଶୀଖକୁରଙ୍ଗୀ ନୟନା । ମୃଗମଦ-ଚିହ୍ନ ପଟକୁ ଘେନ ।
ରୁହିଁ ରୁହିଁ ନିଜ ହୃଦେ ଲଗାଏ । ଭୁନ ଭୁନ ତାକୁ କ କଥା କହେ । ୮ ।
ଦହନ ଜନକ ରସାଣ କୋଷ୍ଠ । ହେଲାଣି ପ୍ରତିପ-ଚନ୍ଦ୍ରମା ସରି ।
କ କହିବ ତାର ଦୁର୍ବଳ କଥା । ବନ୍ଧୁ ନ ପାରଇ ମାଳେ ମୁଲୁତା । ୯ ।
ପିକରବ କର୍ଣ୍ଣେ ଶୁଣି ସୁନ୍ଦରୀ । ମୋହ ହୋଇ ପଡ଼ଇ ବସୁନ୍ଧରୀ ।
ବଞ୍ଚିବ ସତେ ନାହିଁ କା ପରତେ । ଗୁରୁ କବିଚନ୍ଦ୍ର କହଇ ଏତେ । ୧୦ ।

( ରୁହିଁଲ ତ ନାହିଁ – ପ୍ରତି )

— ୦ —

## ରାଧା ଉକ୍ତି

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ଶ୍ୟାମ ନାଚଲ୍ ନୟନେ ।
ଯେତେ ପାସୋରିଲେ ନିହିଲ ଛଡ଼ଯାଏ ମନେ । ଘୋଷା ।
ଗୋପଦାଣ୍ଡେ ସଖାମେନେଲ ନେବାବେଳେ ଧେନୁ ।
ଗବାକ୍ଷ ପୂଡାରେ ଆଡ଼େ ରୁହିଁଲ ସେ ଦିନୁ । ୧ ।
ସଖୀଙ୍କ ଗହଳେ ଲୁଚି ପୂଜଗଲ୍ଲି ଭାନୁ ।
ତା ଦ୍ୱିଜ ବେଶକୁ ଆଡ଼େ ରୁହିଁଲ ସେ ଦିନୁ । ୨ ।
ଯମୁନା କୂଳେ କଦମ୍ବମୂଳେ କଳା ତନୁ ।
ଭଙ୍ଗୀ ହୋଇ ଥିଲ ଆଡ଼େ ରୁହିଁଲ ସେ ଦିନୁ । ୩ ।
ହସି ଖେଳ ଫୁଲ ତୋଳ ଆସୁଁ ବୃନ୍ଦାବନୁ ।
ପଡ଼ଯାନ୍ତେ ଆଡ଼େ ରୁହିଁଲ ସେ ଦିନୁ । ୪ ।

କି କହିବି ସଖି ! ଗୁଡ଼ ଯାଉନାହିଁ ମନୁ ।
ବୋଲେ ବେଣୁଧର ତାକୁ ବନ୍ଧା ଦିଅ ତନୁ । ୫ ।

( ବୁହିଁ ଚମକ ପଡ଼ିଲା—ବୃତ୍ତେ )

—୦—

( ରାଗ—ଶଙ୍କରାଭରଣ ତାଳ—ଆଠତାଳି ).

କିଏ କି ମନ୍ତ୍ର କରିଛି ?

ସେହି ଶ୍ୟାମ ଛବିଟି ମୋ ନୟନେ ନାଚୁଛି ଗୋ । ଘୋଷା ।
ଯେଣିକି ଚାହିଁଲେ ତେଣେ ତା ରୂପ ଦିଶୁଛି ।
ଅଙ୍ଗେ ବସନ ଭୂଷା କିଛି ନ ରୁଚୁଛି ଗୋ । ୧ ।
ଏକାକିନୀ ଦେଖି ମୋତେ ସେହି ନନ୍ଦବହ୍ନି ।
କେଉଁ ଗୁଣେ ଲେଖଇ ସରଣୀ ଓଗାଳୁଛି ଗୋ । ୨ ।
ତା ନାମ ଶୁଣିଲେ କାନେ ମନ ଯା ହେଉଛି ।
କହି ବସିଲେ ବଦନେ କହି ନ ପାରୁଛି ଗୋ । ୩ ।
ଶ୍ୟାମବନ୍ଧୁ ବିନେ ସବୁ ଲାଗେ ବାଇଶଛି ।
ବୋଲେ ବେଣୁଧର ସେ ମୋହିନୀ ଲଗାଇଛି ଗୋ । ୪ ।

(କୁଞ୍ଜେ ମୁରଲୀ ବାଜୁଛି—ପ୍ରଭୃତି)

—୦—

( ରାଗ—କଳହଂସକେଦାର । ତାଳ—ଝୁଲା )

ନୟନେ ନାଚୁଛନ୍ତି କାଳିଆକାଶି ଗୋ, ଜୀବନସାଥି !
ଶୟନେ କି ସ୍ୱପନେ କି ଦିବା ରାତି ଗୋ, ଜୀବନସାଥି । ପଦ ।
ଯେବେ ଚାହିଁଲି ସେହି ଶ୍ୟାମ ମୂରତି ।
ହସି ହସି ଆସିଲା ପ୍ରାଣେ ଦିଶନ୍ତି ଗୋ । ୧ ।
ତୋଳୁଥିଲି ସୁମନମଲ୍ଲୀ ମାଳତୀ ।
କି ରଙ୍ଗେ କଲେ ଆସି ମୋହିତ ବନନ୍ତି ଗୋ । ୨ ।
ସେ ଦିନ ଦେଖିଛ ତ ତାହାଙ୍କ ରୀତି ।
ପଥ ଆଗୁଳି କହିଲେ ଯା ଭାରତୀ ଗୋ । ୩ ।
ମନରୁ ଯାଉନାହିଁ ନଟକ ନଟ ।
ମାପମ୍ଭକ ପ୍ରସଙ୍ଗ ମୁଁ ଚିନ୍ତି ଚିନ୍ତି ଗୋ । ୪ ।
କି ଇନ୍ଦ୍ରଜାଲ ବିଦ୍ୟା ସେ ଗୋ ଜାଣନ୍ତି ।
ଛଟକ ମାତ୍ରେ କୁଞ୍ଜେ ଟାଣି ଆଣନ୍ତି ଗୋ । ୫ ।

ସାକ୍ଷାତ କରାଅ ସେ ମର୍କତ କାନ୍ତ ।
ନୋହିଲେ ନାହିଁ ଆଉ ରାଧାର ଗତି ଗୋ । ୭ ।
ଧଇର୍ଯ୍ୟ ଧର ଧନ ସଖି ସୁକାନ୍ତ ।
ଭେଟିବେ ବନ୍ଧୁ ବେଣୁଧର ବଦନ୍ତି ଗୋ । ୭ ।
( ସ୍ୱପନେ ଦେଖିଲି ଗୋ ମୁରଲୀପାଣି –ବୃ ଉ )

—o—

( ରାଗ—ତୋଡ଼ି ପରଜ । ତାଳ—ତ୍ରିପୁଟା, ଆଠତାଳୀ )

ଅନୁକ୍ଷଣେ କଲା ଅନୁ ମନୁ ତ ନ ଗଲେ ସଖି !
ବନୁ ଆସିବା ଛବିଟି ମର୍ମେ ରହିଛନ୍ତି ଲଖି । ଘୋଷା ।
ଦନୁଜ ଅରିଣ ହର ମୋ ହୃଦ-କୁଞ୍ଜେ ବିହର
ଝୁନୁସୁଚାର ଖରକୁ ବନେ ନେଉଛନ୍ତି ଝିଙ୍କି । ୧ ।
କାହ୍ନୁ ବୋଲି ଦ୍ୱି ଅକ୍ଷର ଅଟନ୍ତି ସର୍ବସ୍ୱ ମୋର
ଅନୁସର ଥିବ ତାର ଛନ୍ଦାଚରଣ-ଦୁଇକ । ୨ ।
ଧେନୁ ପଛେ ବେନୁ ବାଇ କୌତୁକେ ମୋ ନାମ ଗାଇ
ତନୁ ଉଲ୍ଲସାଇବାର ପରକେ ନ ଜାଣୁ କି କ ? । ୩ ।
ଘେନୁଛି ମୋ ହୃତ ଏହି ନନ୍ଦ ଯଶୋଦା ତନୟି
ଯା ବଂଶୀ କରୁଛି ବାଇ ତ୍ରିଜଗତର ସଖିଙ୍କି । ୪ ।
ଧନୁ ଧନୁ ତାଙ୍କ ପ୍ରୀତି— ସମ୍ପତ୍ତି ମୋ ବୁଦ୍ଧି ଅତି
ସେ ନୂଆ ନଟଙ୍କୁ ବେଣୁଧର ବକଛି ମଣ୍ଡଳ । ୫ ।
( ଦେଖିଲେ ଦେଖିଲା ପର—ବୃନ୍ଦେ )

—※—

ରାଗ—ବସନ୍ତ ବରାଡ଼ି । ତାଳ—ଏକତାଳୀ )

ଶ୍ୟାମ ନାମ ଧରି ଜୀବ ଯାଉ ।
ମନ ଧ୍ୟାନ ତାହାଠାରେ ଥାଉ । ଘୋଷା ।
ନାହିଁ କାହିଁ ଆନ ଗତି ସେହି ମୋର ପ୍ରାଣପତି
ମଲେ ଏ ପିଣ୍ଡ କାରଣ ପାଉ । ୧ ।
ଧନ ସମ୍ପଦ କ ଘର କୃଷ୍ଣ ମୋ ଗଳାର ହାର
ଶଷା ବନ୍ଧିଲେ କ ଦେବ ଆଉ । ୨ ।
ଜୀବନ ଯୌବନ ଜାତି ଜଳାଞ୍ଜଳି ଦେଲି ଦୂତି
ବନ୍ଧୁ ମୋ ଲଖି ଦୁଃଖ ନ ପାଉ । ୩ ।

ଯାଇଁ କହିବୁ ମୋହନେ    ରାଧା କି ନ ପଡ଼ଇ ମନେ ?
ଉଚାଟରେ ସେ ମୁରଲୀ ବାଉ । ୪ ।
ଲୋଟାଉଛୁ ପଦେ ଶିର    କର କୋଟିଏ ଯୁହାର
ବେଣୁଧର ଦାସୀ ହୋଇ ଥାଉ । ୫ ।
( ମଧୁକାଳ ହୋଇଲା ସଜନୀ—ବୃତ୍ତେ )

—o—

( ରାଗ—ପାଲୁବରାଡ଼ି । ତାଳ—ଝୁଲା )

ସଜନ ! ମନୁ ପାଶୋରିବ କି ଶ୍ୟାମ ସ୍ନେହ । ଘୋଷା ।
ଡୋଳା ଭିତରେ ମୋର    ସେ ତ କରେ ବିହାର
କାନ୍ତି ନବୀନ ବାରିବାହ । ୧ ।
ନୟନ ମୁଦିଲେ ସେ    ହୃଦ ମଧ୍ୟେ ପ୍ରକାଶେ
ଘୁଞ୍ଚି ନ ଯାଏ ଅହରହ । ୨ ।
ସେ ଶ୍ରୀଅଙ୍ଗ ଆମୋଦ    ଅଗୁରୁ ମୃଗମଦ
ବାସି ଉଠଇ ମହମହ । ୩ ।
ତା ବଂଶୀ ସ୍ୱନ ଶ୍ରୁତି—    ଯୁଗେ ହୋଇ ଭରତି
ଜନମାଉଛି ପରା ମୋହ । ୪ ।
ରସନା ଇଚ୍ଛେ ନିତ୍ୟ    କୃଷ୍ଣ ଅଧରାମୃତ—
ଆସ୍ୱାଦେ ବଳାଏ ଆଗ୍ରହ । ୫ ।
କାହିଁରେ ଅଧିକାର    ନାହିଁଟି ରାଧିକାର
ବନ୍ଧା ନେଇଛି ନନ୍ଦପୁଅ । ୬ ।
ଏଥିକି ସାକ୍ଷୀ ଏକା    ସିନା ଆଗୋ ଦୂତିକା
ଯା ଶିରେ ଶିଖଣ୍ଡି-ବରହ । ୭ ।
ଏକା ରହିବ ବୋଲି    ଯେତେକ ବସ୍ତୁ ଥିଲା
ଯତନେ ଛୁଇଁ ଆସି ଦେହ । ୮ ।
ତାଙ୍କୁ ଗୃହ୍ଣା ନା ବୋଲି    ନିବେଧୁ ଯା ଶିଆଳି
ଶୁଣି ଉଠଇ ମାର କୋହ । ୯ ।
ନାମ ଗୁଣି ତାହାର    ହେବ କୁଳ ବାହାର
ଯେ ଯାହା କହିବ ଗୋ କହ । ୧୦ ।
ମୋ କୃଷ୍ଣ କୃଷ୍ଣ ବୋଲି    ଧନ୍ୟ ଗୋ ମାଳ ଝୁଲି
ବୁହାଉଥିବ ନେତ୍ର ଲୁହ । ୧୧ ।

ଖୋଲ ଦେଖୁଛୁ ଘଟ          ପ୍ରାଣ ଛାଡ଼ୁ ନକଟ
ଏଥିରେ ନାହିଁଟି ସନ୍ଦେହ । ୧୨ ।
ଭଲ ମୁଁ କେଉଁପରି          ମୂର୍ଚ୍ଛିବ ଦେହ ଧରି
ଯାହାର ଏତେ ଅନୁଗ୍ରହ । ୧୩ ।
କହଇ ବେଣୁଧର          ଧନ୍ୟ ପୁଣ୍ୟ ତୁମର
ଲଭିଛ ମୋହନ-ବିଗ୍ରହ । ୧୪ ।
( ହେ ମୋହନ ଚାଲ କୁଞ୍ଜ ସଦନକୁ—ବୃ.ଓ )

—୦—

( ରାଗ—ଦକ୍ଷିଣ କେଦାର । ତାଳ—ଝୁଲ )
ସଙ୍ଗିନି ! ଧରଣୀର ସ୍ୱର୍ଗ ।
ନବରସିକା ପ୍ରେମ ଉତ୍ସର୍ଗ ରେ । ଘୋଷା ।
ଅଶ୍ରୁ କୁସୁମ ତୋଳିଲୁ ନିକୁଞ୍ଜ କାନନେ ।
ନେତ୍ରାରେ ଚାହିଁଲେ ସେ ନବୀନ-ଶାରଦ ଜ୍ୟୋତ୍ସ୍ନା, ସଜୁଛୁ ମଦନେର ରେ । ୧ ।
ତୋ ରୂପକୁ ଭଲ ଭଲ କହୁଥିଲେ ପୁଣି ।
ଆସ ଆସ ନବରଙ୍ଗିନି, ଛଇଳ ରସିକା, ମଞ୍ଜୁଳ ମଣି ରେ । ୨ ।
ଲୀଳା ନିଧି ସଖି ଦେଖି ଆସିଲୁ ଏକ୍ଷଣି ।
କଲବଲ ହେଉଅଛୁ ସେ କାଳିଆ ତୋ ଭାବକୁ ଗୁଣି ଗୁଣି ରେ । ୩ ।
ଚାଲ ଚାଲ ଯିବା ତାଙ୍କ ପାଖେ ଜଣା ଅଛେ ।
ଆହା ବୋଲି ବଂଶୀଧାରୀଙ୍କି ତୁ କୋଳକର, ସେନେହ ବଶରେ ରେ । ୪ ।
ସଖିମାନଙ୍କ ବଚନେ ହସି ଚନ୍ଦ୍ରାନନା ।
ଲାଜେ ମଥା ପୋତି ରହି ଗଲେ ଧ୍ୟାନ ମୀନ ବେଣୁଧର ଭଣି ରେ । ୫ ।
( ରେ ବନ୍ଧୁଆ ! ନକର ନିରାଶ—ପ୍ରତି )

—୦—

( ରାଗ—ଶାରବାଣୀ । ତାଳ—ଆଠତାଳି )
ବନ୍ଧୁ ମୋ ଲାଗି ଗୋ ହେଲେ ଦୁଃଖ ଭାଗୀ ।
ଆହା ମୁଁ କି କରିବିଟି ମୋ ଜୀବନ ସଙ୍ଗୀ । ଘୋଷା ।
ଯାଇଥିଲି ଫୁଲ ତୋଳି          ସଙ୍ଗେ ଥିଲେ ସବୁ ଆଳୀ
ଚାହିଁ ଦେଇଥିଲେ ତା'ର ନେତ୍ରକୁଳ ଫିଙ୍ଗି । ୧ ।
ନବ ଲବଣୀ ପିତୁଳ          ଶିରୀ ସ୍ୱେଗ ବନମାଳୀ
ଆହା କି ସୁନ୍ଦର ତାଙ୍କ ବାଙ୍କ-ଭ୍ରୂଭଙ୍ଗୀ । ୨ ।

ଏ ବ୍ରଜରେ କେତେ ବାଳୀ ନାହାନ୍ତି ମୋଠାରୁ ବଳି
ଏକା ମୋହ ପ୍ରତି କାହିଁ ଏଡ଼େ ଅନୁରାଗୀ । ୩ ।
ସତେ କି ଗୋ ପ୍ରିୟବନ୍ଧୁ ମୋତେ ବସିଛନ୍ତି ଭଣ୍ଡି
ଚଳନ୍ତୁ ନ ସାହି ପୁଣି କହ କନା ବେଗି । ୪ ।
ଶ୍ରୀମତୀଙ୍କ ବାଣୀ ଶୁଣି ଦୂତୀକା ବୋଲିଣ ଭଣି
ବୋଲେ ଦୀନ ବେଣୁଧର ସେ ପଦେ ଲାଗି । ୫ ।
( ମନେ ପଡ଼ୁଛି ମା ସେହି ଚନ୍ଦ୍ରମୁଖ—ବୃତ୍ତି )

—୦—

# ଗୋଷ୍ଠଚାରଣ

## ସଖୀ ଉକ୍ତି

(ରାଗ—ଚୋଖପରଜ । ତାଳ—ଆଡ଼ତାଳୀ )

ରାମ ଗୋବିନ୍ଦ ଯେ, ସଙ୍ଗେ ଘେନି ସଖାଗଣେ ।
ମନୋହର ବେଶେ ଅତ୍ୟନ୍ତ ଉଲ୍ଲାସେ ଚଳେ ଦେଖ ଗୋଷ୍ଠଚାରଣେ ।୦।
ସୁବଳ ସୁଦାମ, ଦାମ ଅନୁଦାମ, ମଧୁମଙ୍ଗଳ ଗହଣେ ।
ଛନ୍ଦଣୀ ବେତ୍ର ବାହୁଙ୍ଗୀ ଶିକା ଘେନି ଆଗଭର ଜଣେ ଜଣେ । ୧ ।
ଶିଙ୍ଗାବେଣୁ ତୁରୀ ପତର ବାହାଳୀ ବେଣୁବଂଶୀ ବାଇ ତାନେ ।
ଉଳୁଟାଇ ତାଳ ଖେମଟା ନାଟରେ ହେଳ ସବେ ଗୀତଗାନେ । ୨ ।
ମଣ୍ଡଳୀ ହୋଇ ଧୀରେ ଧୀରେ ଚାଲନ୍ତି ରଙ୍ଗ ରଙ୍ଗ ସ୍ଥାନେ ସ୍ଥାନେ ।
ଏକକୁ ଆରେକ ଛକାଛକ ହୋନ୍ତି ଲଉଡ଼ି ଖେଳ ବଧାନେ । ୩ ।
ଚଉପାଶେ ବ୍ରଜ ବାଳକ ସମାଜ ଜୋଡ଼ି ଜୋଡ଼ି କି ଯତନେ ।
ମଧ୍ୟରେ ଶ୍ରୀରାମ କହ୍ନାଇଁ ବିଜୟେ ଆହା କି ସୁନ୍ଦରମାନେ । ୪ ।
ଗୋଷ୍ଠ ଯାତ୍ରା ଲୀଳା କଉତୁକ ଖେଳା ନାହିଁ ନା ତ୍ରିଭୁବନେ ।
ଦୀନ ବେଣୁଧର ମନ-ମଧୁକର ତାହାଙ୍କ ପଦ-ନଳିନେ । ୫ ।
( ଉର ନାହିଁ କହ—ବୃତ୍ତି )

—୦—

( ରାଗ—କାଳବାଣୀ । ତାଳ—ଆଠତାଳୀ )

ଧେନୁ ବତ୍ସା ସଙ୍ଗେ, ବିଜୟେ କି ରଙ୍ଗେ, ଦେଖ ସଖି ଏ କହ୍ନାଇ ଗୋ ।
ଗୋପପୁର ଦାଣ୍ଡ ଉଜ୍ଜ୍ୱଳ ପଡ଼ୁଛି, ଆନନ୍ଦ କେ ଯାଉଛି କହି ଗୋ ।
ସଖା ମେଳେ ତଳ ତଳ
ନାଚୁଛନ୍ତି ରାମ ବନମାଳୀ ଗୋ । ୧ ।

କେ ବଜାଉଛି ତାଳ, କେ ବାଏ କାହାଳୀ, କେହୁ ଶିଙ୍ଗା ବେଣୁବଂଶୀ ଗୋ ।
କେ ରାଗ ଉଛାରେ, ରଙ୍ଗେ ନେତ୍ରଠାରେ; ମନ୍ଦେ ମନ୍ଦ ହସି ହସି ଗୋ ।
ଲଉଡ଼ୀ ଖେଳରେ ମାତି ।
କେହୁ ଲଗାନ୍ତି ଘୁଣ୍ଟିକ ଗୁଣ୍ଡ ଗୋ । ୨ ।
କେ ମାଲ ବନ୍ଧାଣ, ପଣେ ରୁଣୁ ଝୁଣ, ବଜାନ୍ତି ଘଣ୍ଟି ଘଘୁଡ଼ି ଗୋ ।
ହୋନ୍ତି ଝକା ଝକ, ଉଠେ ଡ଼କା ଡକ, ବାହୁରେ ବାହୁକୁ ଭିଡ଼ି ଗୋ ।
କରନ୍ତି ବାଦ୍ୟ ଉତ୍କଟ ।
ଆହା କି ଶୋଭା ଖେଳହା ନାଟ ଗୋ । ୩ ।
ଉଡ଼ଣ ଗୋରଜ, ଅପୂରୁବ ତେଜ, ଚର୍ଚ୍ଚିଲେ ସବୁରି ଅଙ୍ଗ ଗୋ ।
ଛଟା ସୁପାଞ୍ଜଣୀ, ଦୋହନ ଛନ୍ଦଣୀ, ଶିଖା ବର୍ହୀଅଡ଼ଙ୍ଗ ଗୋ ।
ଗୋଷ୍ଠସ୍ଥଳେ ଯାନ୍ତି ଚଳି ।
ବେଣୁଧର ଇଚ୍ଛଇ ସେ ଧୂଳି ଗୋ । ୪ ।
( କୁଳାଙ୍ଗମାନଙ୍କୁ ଦୂତି କହ ସଖୀ—ବୃନ୍ଦେ )

—୦—

# ଗୋଷ୍ଠ ଯାତ୍ରା

## ରାଧା ଉକ୍ତି

( ରାଗ—ଶଙ୍କରାଭରଣ । ତାଳ - ଆଠତାଳୀ )
ରୁହାଁ, ରୁହାଁ ଆ ଗ ଆଳି !
ଗୋ-ଗୋଷ୍ଠକୁ ଚଳେ କି ରଙ୍ଗରେ ବନମାଳୀ । ଘୋଷା ।
ସୁବଳ ସୁଦାମ, ଦାମ ବଳରାମ, ମଧୁମଙ୍ଗଳ ସୁମାଳୀ ।
ସର୍ବ ସଖାଗଣ ବନକୁ ଚଳନ୍ତି ଆନନ୍ଦ ହୋଇଣ ମେଳି । ୧ ।
କାହା କରେ ଶିଂଘା, କାହା କରେ ବେଣୁ, କା କରେ ପତ୍ର କାହାଳୀ ।
କେଉଁ ବ୍ରଜସୁତ, ହୋଇ ହରଷିତ, ନାଚୁଅଛି ତାଳ ତାଳ । ୨ ।
କେ ବାଡ଼ି ଲଉଡ଼ି, ଖେଳେ କେ ଦଉଡ଼ି, କରେ ମାରି କରତାଳି ।
କେହୁ ଗାଈମାନଙ୍କର ନାମ ଧରି ଡାକେ ଧଉଳୀ ଶ୍ୟାମଳୀ । ୩ ।
କାର ନୀଳପୀତ, କାହାର ଲୋହିତ, ସୁବେଶ ଭଳକ ଭଳି ।
ଗଳାରେ କାଇଁଚ, ଗରଗଡ଼ ମାଳ ଶିରେ ଶୋଭେ ଜାମୁଡ଼ାଳି । ୪ ।
ରୁଣୁ ଝୁଣୁ କଟି, ଘଣ୍ଟିର ଘାଗୁଡ଼ି ଶବଦେ ଦାଣ୍ଡ ଉଛୁଳି ।
ସଙ୍ଗେ ଧେନୁ ବତ୍ସା ହେମାଗବ ଲକ୍ଷ ବନକୁ ଯାଆନ୍ତି ଚଳି । ୫ ।

ଧସ ଧର ହୋଇ ରହି ଦେଖୁଛନ୍ତି ସକଳ ବ୍ରଜ-ଗୁଆଳୀ ।
ଭନ ବେଣୁଧର କହ ଚନ୍ଦ୍ର ପଞ୍ଚନାମ୍ବୁକ ସେ ପଦେ ଭାଳ । ୭ ।
( ଅହେ ମଦନ ମୋହନ, କସ୍ତନ୍ଦ୍ର ତଳ୍ପଲଙ୍କ ଚେଜ—ବୃନ୍ଦେ)

—୦—

# ଗୋଧନବାହୁଡ଼ା

## ଉତ୍ତର ଗୋଷ୍ଠ

( ରାଗ—ଚୋଡ଼ ସରକ । ତାଳ—ଅଠତାଳୀ )

କି ଶୋଭା ଗୋଧନ ବାହୁଡ଼ା ବେଶ ଗୋ ।
ସଜନି ! ଥରେ ନେହ ନବେଶ । ଘୋଷା ।
ଝୁଲି ଝୁଲି ଗୋପ ଶିଶୁଙ୍କ ମେଳେ ।
ନାଚନ୍ତି କି ରଙ୍ଗେ ଲଉଡ଼ୀ ଖେଳେ ଗୋ । ୧ ।
ସବୁର ଶିରେ ଗୋ ଫୁଲ ଠାଣିଆ ।
ଶ୍ୟାମ ଶିରେ ଶିଖୀ-ଚନ୍ଦ୍ରିକା କିଆ ଗୋ । ୨ ।
ବନ ରଙ୍ଗମାଟି ଶ୍ରୀଅଙ୍ଗ ଦେଶେ ।
ଗମ ଗମ ଝାଳ-ବିନ୍ଦୁ ବଶେଷେ ଗୋ । ୩ ।
ଶିଙ୍ଗା ବେଣୁ ଭେରୀ ପତ୍ର-କାହାଳୀ ।
ବଜାନ୍ତି ଗୋପାଳେ ଅଙ୍ଗୁଳି ଗୁଳି ଗୋ । ୪ ।
ବୋଲେ ବେଣୁଧର ସେ ରୂପ ଶାନ୍ତି ।
ସତେ ଜୀବ ଯିବ ଲଭିବ ଶାନ୍ତି ଗୋ । ୫ ।
[ ସଜନି ! ଶ୍ୟାମ ଶ୍ରୀଅଙ୍ଗ ଠାଣି—ବୃନ୍ଦେ ]

—୦—

( ରାଗ—ଖଣ୍ଡବାଣୀ । ତାଳ—ଏକତାଳୀ )

ଦେଖ ଦେଖ ସଖି ! ଗୋ ନିରେଖି ।
ଢଳ ଢଳ କି ରଙ୍ଗରେ ଆସେ ବଙ୍କା ଆଖି । ପଦ ।
ଆହା କି ମଧୁର ହାସ ନବ ନଟବର ବେଶ
ଶ୍ରୀଖଣ୍ଡ ଚୂଳିଆ ଛବି କେ ପାରିବ ଲେଖି ? । ୧ ।
କୋଟିଏ ମଦନ ଗ୍ରାସ ଶୋଭାକୁ ନୋହିବେ ସାର
ଚଉଦ ଭୁବନ ସାର ପ୍ରତିମା ଏ ଟିକି ? । ୨ ।

ଧେନୁ ପଛେ ବେନୁ ବାଇ ସଖା ମଣ୍ଡଳୀରେ ଥାଇ
କି ଭଙ୍ଗୀରେ ସେ ନାଚଇ ପାଦେ ପାଦ ଯୋଖି । ୩ ।
ଶ୍ରୀଅଙ୍ଗେ ଗୋଧୂଳି ପଡ଼ି କେମନ୍ତେ ଯାଇଛି ନଡ଼ି
ବନ ବେଶ ମନୋହରେ ମର୍ମେ ଯାଏ ଲଖି । ୪ ।
ସଖୀ ସ୍କନ୍ଧେ ରଖି ପାଣି ଭାଷନ୍ତି ଶ୍ରୀ ଠାକୁରାଣୀ
ନ ଥିଆ ଦାସୀ ପଣେ ଭଣେ ବେଣୁଧର ଦୁଃଖୀ । ୫ ।
( ସୁହାଁ ଆଜନମ ସୁକୁମାରୀ—ପ୍ରତି )

—※—

## ଗୋଧନ ବାହୁଡ଼ ବେଶ । ସଖି ଉକ୍ତି

( ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )

ଚଳ ଚଳ କହ୍ନା ଆସନ୍ତି ଗୋ ଅନା ଗୋଧନ ବାହୁଡ଼ା ରଙ୍ଗେ ।
ତମାଳଆ ବଟୁ ସୁବଳ ସୁଦାମ ସବୁ ସଖାଗଣ ସଙ୍ଗରେ ।
କିଶୋରି ! ତାଳ ଅପାଙ୍ଗ ସୁହାଁଣି ।
ତଳାଇ ବଇଅନ୍ତି ପଞ୍ଚବୃତ୍ତ-ମତ୍ତ ମୋହନ ମୁରଲୀ ପାଣିରେ । ୧ ।
ତାଙ୍କ ଓଡ଼ଣାଟି ଅନା ସରୁକଟି କି ମାନୁଛି ତାର ବେଶ ।
ତେଜ ଖେଳେ କିବା ଇନ୍ଦ୍ର ନୀଳମଣି ସାଗରେ ରଜତ ଦୃଶ୍ୟ ରେ ।
କିଶୋରି ! ତଳେ ତାଳ କିନା ଦେହ ।
ତବର୍ଣ୍ଣି ଭୁବନେ ଅଛି କି ଉପମା କିଶୋରୀ ଶ୍ୟାମଳ ଗାତ୍ରରେ । ୨ ।
ଉକ୍ତା ତୋ ନାମରେ ଏ ବ୍ରଜ ଗ୍ରାମରେ ବାଜୁଥାଏ ଯାର ଲାଗି ।
ତେରେ ତ ଶୁଣିଛି ମୋ କାନ ତୋ କାନ କି ନ ଜାଣୁ ଶିଖିଷାଙ୍କିରେ ।
କିଶୋରି ? ତ ଶବଦ ଚଞ୍ଚଳରେ ।
ତମ ଖୁଷୁସ ବଢ଼ାଇ ସାରଅଙ୍କୁ ଯାହା ପ୍ରୀତି ଅନୁରାଗେ ରେ । ୩ ।
ତୋତେ ଖୁଷିବାକୁ ଯା ଅଧରୁ ମଧୁ ବାଇଆଣୀ ହୋଇଯାଉ ।
ତଙ୍କ ରଙ୍ଗ ଦେଖି ଯାହାର ସୁମୁଖି ଚମକିଣ ପଡ଼ୁଥାଉ ରେ ।
କିଶୋରି ! ତିଳ୍ପ ଗବାକ୍ଷରେ ଥରେ ।
ତୂଳ ଲାଗିଲ ପରାଣେ ଆଉ ସୁହାଁ ବେଣୁ ବଦନ୍ତ ଗୀତ ରେ । ୪ ।
( ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର ଶ୍ରମୁଁ ମୋ ଶରଣ ଚଳ—ବୃତ୍ତେ )

—※—

## ଗୋଧନ ବାହୁଡ଼ାବେଳେ ଗୋପୀଉକ୍ତି ।

( ରାଗ—ଦକ୍ଷିଣକାମୋଦ । ତାଳ—ଆଠତାଳୀ )

ବ୍ରଜ ଆସୁଛି ଗୋ କରଙ୍ଗେ କାଳିଆ ହାଣ୍ଡ ।
ନାଲି-ଫୁଟା-କଞ୍ଜଭଳି ପାଦତଳ ଦିଶି ଯାଉଛି କି ଆନ୍ତ । ଘୋଷା
ସିଂହ ଛୁଆ କଟିପରେ ପୀତଧଟୀ ମଣ୍ଡି ଶାର୍ଦ୍ଦୂଳର ଗ୍ରନ୍ତ ।
ଟେରଛ ଚାହାଁଣି ମନେ ଦିଏ ହାଣି ଶାଣିତ ସେ କାମକାଣ୍ଡ । ୧ ।
ସଖା ସଙ୍ଗେ ରଙ୍ଗେ କଥା ପରସଙ୍ଗେ ଲଉଡ଼ି ଖେଳରେ ମାତ୍ତ ।
ବଂଶୀ ବାଇ ବାଇ ଭ୍ରୂଲତା ନଚାଇ ଲୁଟି କରେ ସଣ୍ଡ ଜାନ୍ତ । ୨ ।
ଶିଶୁଟି ଦିନରୁ ପଶୁପୀ ଲମ୍ପଟି ନାଶିଛି ଅନଙ୍ଗ ତାନ୍ତ ।
ଏ ଗୋପ ଯାକର ଦହି ଦୁଧ ସର ମାଗିଥାଏ କରପାନ୍ତ । ୩ ।
ଦାଉ ଦାଉ ତାର ଶ୍ରୀଅଙ୍ଗ ସୁନ୍ଦର ଇନ୍ଦ୍ରନୀଳମଣି-କାନ୍ତ ।
ସେ ଛନ୍ଦାଚରଣେ ବେଣୁଧର ମନ ଲଖିଥାଉ ଦିନରାତ୍ତ । ୪ ।
( ଶ୍ୟାମ ନାଗର ହେ, ଏ ବେଶ ହୋଇବ ନାହିଁ—ବୃତ୍ତେ )

—※—

## ଶ୍ରୀକୃଷ୍ଣ ଉକ୍ତି

### ବୃନ୍ଦାବନ ଭ୍ରମଣ

( ରାଗ—ଖାରବାଣୀ । ତାଳ—ଆଠତାଳୀ )

ସଖା ! ସୁବଳ ହେ; କର ଅନୁମାନ ।
କି ମଞ୍ଜୁଳ ଦିଶୁଅଛି ଏ କୁଞ୍ଜ କାନନ । ଘୋଷା ।
ଦେଖ ନୀପ ଶାଖା ପରେ ଶୁକ ସାରୀ ଗଣ ।
ଆନନ୍ଦେ କରନ୍ତି କି ମଧୁରେ ମୃଦୁସ୍ୱନ । ୧ ।
ପୁଚ୍ଛ ଟେକି କେକୀମାନେ କରନ୍ତି ନର୍ତ୍ତନ ।
ଗାଉଛନ୍ତି ଗୀତ ପିକ ବସନ୍ତ ଖଞ୍ଜନ । ୨ ।
ଫୁଲେ ଫୁଲେ ମଧୁକରେ କରନ୍ତି ଗୁଞ୍ଜନ ।
ଧୀରେ ଧୀରେ ବହୁଅଛି ମଳୟ ପବନ । ୩ ।
ବିଜୟ ସମ୍ଭାର ଦେଖ ବସନ୍ତ-ରାଜନ ।
କରୁଛି ମନ ନୟନ ପ୍ରମୋଦ ବର୍ଦ୍ଧନ । ୪ ।
ଏ ଯମୁନା ପୁଳିନଟି ମୋ ସୁଖ-ସଦନ ।
ବେଣୁଧର କରେ ଛନ୍ଦାଚରଣ ବନ୍ଦନ । ୫ ।
( ଜଣା ପଡ଼ିଲା ମା ଏ କପଟ ଗିରି—ବୃତ୍ତେ )

( ରାଗ—ବସନ୍ତ କେଦାର । ତାଳ ଝୁଲା )

ନବ ବସନ୍ତ ମାଧୁରୀ ।

ଦେଖ ଦେଖ ପ୍ରିୟ ସଖୀ ବୃନ୍ଦାବନ ଶିରୀ । ଘୋଷା ।

ହୋଇଅଛୁ ଦେଖ ନାନା କୁସୁମ ବିକାଶ ।

ମଳୟ ପବନ ସଂଗ ଚହଟୁଛି ବାସ । ୧ (ସଖୀ)

କୋଇଲି ପଞ୍ଚମ ତାନେ ଗାଉଛି ସଙ୍ଗୀତ ।

ପାଳଆ ଶୁକ ସାରିକା ହୁଲରି ବସନ୍ତ । ୨ । (ସଖୀ)

ଅତି ଆନନ୍ଦରେ ନୃତ୍ୟ କରୁଛି ଖଞ୍ଜନ ।

ବଜାଏ ମର୍ଦ୍ଦଳ କୁମ୍ଭାଟୁଆ ଘନ ଘନ । ୩ । (ସଖୀ)

ଭ୍ରମର ଝଙ୍କାର ବୀଣା ଠଙ୍କାରି ନସ୍ୱନ ।

ଅଭିଷେକ ହେଉଅଛି ଏ ଋତୁ-ରାଜନ । ୪ । (ସଖୀ)

କୁଞ୍ଜବନ-କଳାନିଧି ବିହାର ଚରିତ ।

କବି ସୁଧାନିଧି ବେଣୁଧର ବିରଚିତ । ୫ । (ସଖୀ)

( ମାଧୁରୀ ରେ ମାଧୁରୀ ରେ ମାଧୁରୀ—ବୃନ୍ଦେ)



# ନବାନୁରାଗ

## କୃଷ୍ଣ ଉକ୍ତି ।

( ରାଗ—ନଳିନୀଗୌଡ଼ା । ତାଳ—ଝୁଲା )

ଅରେ ରାଧିକେ ! ଯା ଧନ !

ତୋ ମୃଦୁଭାଷା କରି ତୋଷ ମୋ ମନ । ଘୋଷା ।

ଆରେ କନକ ଗୋରୀ ଜବା ଅଧରୀ ।

ନଜଲେ ଅଙ୍ଗୀକାର ଗଲଟି ସରି । ୧ ।

ମୁଁ ତୋର କଣା ଦାସ ହୋଇଲି ବାଳା ।

ପ୍ରକାଶ ଭ୍ରୂଭଙ୍ଗୀ ଖେଳାଇ ଡୋଳା । ୨ ।

ତୋ ମୁଖ ଚନ୍ଦ୍ରକୁ ମୋ ନୟନ ଶଶା ।

ଅତଏବ ବଳାଇ ଅଛୁଟି ଆଶା । ୩ ।

ଯେବେ ନ ଚଖାଇବୁ ଅଧରୁ ସୁଧା ।

ନଶ୍ଚୟ ନାଶ ଗଲି ଡମ୍ବରୁ-ମଧ୍ୟା । ୪ ।

ଝୁଣ୍ଟୁ ଝୁଣ୍ଟୁ ମୋହନ ଝରଣ ଶୁଣି ।
ପଳାଇ ଚଲିଲ ଜୀବ କାନ୍ତୋସ୍ୱାମିନୀ । ୫ ।
ସେ ବ୍ରଜ ମୋହନଙ୍କ ଚରଣ ରଜ ।
ନ ଲଭି ବେଣୁଧର କାଙ୍ଗାଳ ସଜ । ୬ ।

( ଶ୍ୟାମ ଶିଖଣ୍ଡ ଚୂଳ—ବୃନ୍ଦ )

( ରାଗ—ଦକ୍ଷିଣ କାମୋଦୀ । ତାଳ—ଅଠତାଳୀ )

ନ ଯା ଚଳାଇ ଗୋ କୁଞ୍ଚିତ ନୀଳ କୁନ୍ତଳା ।
ଅସ ଜୀବଧନ, ରମଣୀ ରତନ, ଭୁବନଙ୍କ ପ୍ରେମଶୀଳା । ଘୋଷା
କେତେ ଅଶା କରି, ଅଛିଥିଲି ପୋଷି, ରଖିବାକୁ ପ୍ରେମ ଖେଳା
ସଖୀଙ୍କର ମେଳେ, କନ୍ଦୁକ ଖେଳେ, ଦାସୀ ହେବ ବୋଲି କାଳା । ୧ ।
ଏ ନଗି କାହିଁକି, ଅଗୋ ବଧୂମୁଖୀ,— ମାନେ ଭଜୁଛ ଚଞ୍ଚଳା ।
ଜଳେ ବୁଡ଼ି ଉଠି, ମାଲୁଁ ସମ୍ପୃକ୍ତି, ପ୍ରେମ ନଧାଗ ଛଇଲା । ୨ ।
ଭଶୋଗମଞ୍ଜିର, କନକ ରଜତ, ଝର ପଇଶିବା ହେଲ ।
ମିଛ କହୁ ନାହିଁ, ପୁଛ ପୁଛ ସତ୍ୟ, ଭଗ୍ନେକରୁ ତାମଜଲା ।
ଏଥିପାଇଁ ପେବେ; ଦୋଷୀ ହେଲ ତେବେ, ମିଛ ସକଳ ଅବଳା ।
ଯାହା ଇଚ୍ଛା ତାହା, କରରେ ସୁଦସ୍ୟ, ହେବ ଭୁମ୍ଭ ସ୍ୱାବେ ସେବା । ୩ ।
ଭଜନ୍ତୁକ ଭାଇ, ପ୍ରେମଭରେ ମସ୍ତାଇ, ଶ୍ରୀକର ଚମ୍ପକ ମାଳା ।
କେତାଅ ମୋ ଗଳେ, ଏ ଯମୁନା ଜଳେ, ଜ୍ଞାନ୍ ପ୍ରେମ-ସ୍ୱପ୍ନ-ଭେଳା । ୪ ।
ଶ୍ରୀକୃଷ୍ଣଙ୍କ ବାଣୀ, ଶୁଣି ସଖୀ ଶ୍ରେଣୀ, ନମିଷେ ନ କରି ହେଳା ।
ଧୀରେ ଧୀରେ ଆସି, ମୃଦୁସ୍ୱରେ ଭଷି, ଡେଲେ ଅଙ୍କ ହୋଇ ମେଳା । ୫ ।
ସେ ଭାଳର ଭାବ, ଯାହା ଅନୁଭବ-ସୁଧାରେ ଲବଣୀ ଗୋଳା ।
କହେ ବେଣୁଧର, ଭକ୍ତ ବେଣୁଧର, ଗ୍ରନ୍ଥି ବଢ ଫୁଲମାଳା । ୬ ।

(ଶ୍ୟାମନାଗର ମେଷ ଏ ବେଶ—ପ୍ରଭୃ )

—୦—

( ରାଗ—ଶଙ୍କରାଭରଣ । ତାଳ—ଅଠତାଳୀ )

ଅରେ ଚମ୍ପକ ବରନା !
ଯାଉ ଦେଖନ୍ତି ମୋ ଧୂଳ ପୃଷ୍ଠବୃନ୍ଦନା । ଘୋଷା ।
ନ ତୋଳ ନ ତୋଳ ଅଙ୍ଗ ଏ ବନ୍ଧୁ କୁସୁମ ।
କୋମଳତର ପତ୍ରୁ ବ୍ୟଥା ହେବ ଧନ । ୧ ।
ଏ ନକୁଞ୍ଜ ଗଳରେ ସୁଜନା ସୁକୁମାରୀ ।
ମୁହୂର୍ତ୍ତେ ଜଣା ବାଜ ଯିବଟି ସୁନ୍ଦରୀ । ୨ ।

ଏ କଷ୍ଟ ଦେଖି ତୋହର ଆନେ ଜବାଧର ।
ମୋପର ନ ଆକଙ୍କର ସହ୍ନବ କପର ? । ୩ ।
ଅଛୁଟିକ ତୋର ମନେ ସେ ବନର ଭାବ ?
ଶବରଣୀ ବେଶେ ଯା ହୋଇଛୁ ଅନୁଭବ । ୪ ।
ଆଣିଛୁ ମୁଁ ଫୁଲ ସଖି ! କରଦେବ ବେଶ ।
ତୋ ମନ ମାନବା ଭଳ କର ନାଗଖଣ୍ଡଶ । ୫ ।
ଏମନ୍ତେ କହନ୍ତେ ହସି ହସି ବନମାଳୀ ।
ଭଜଲ ରାଧାଙ୍କ ଫୁଲ ତୋଳବା ଗୁତୁରୀ । ୬ ।
ତର ତର ହେଲେ ଧନୀ ଲଜପଙ୍କେ ବୁଡ଼ି ।
ବେଣୁଧର ବୋଲେ ସେ ଚରଣେ କର ଯୋଡ଼ି । ୭ ।
( ବୃନ୍ଦାଁ ଚମକ ପଡ଼ିଲ—ବୃତ୍ତେ )

—o—

( ରାଗ—ଭୂପାଳ । ତାଳ—ଝୁଲ )
ଘନକେଶୀରେ ଲୀଳାବନ୍ତ ରସିକା,
ଚଳାପାଙ୍ଗି ଥରେ ବୃନ୍ଦାଁଯା ଏକା ।
ଚମ୍ପା ଅଙ୍ଗି ମୋର କମ୍ପାଇ ବଦନ ।
ଶମ୍ପା କାନ୍ତ ଦୁଃଖ ନାଶ ବାଳିକା । ଘୋଷା ।
ଆରେ ଧନ ମଣି ତୋପାଇଁ ସିନା ନାନାବେଶ ଧରଇ,
କଳା କେଳ ବେଶ, ହୋଇରେ ନାଗେଶ,
ଆସିଥିଲ ନାଣୀ ମନରୁ ଦକା । ୧ ।
ଜଧି ପ୍ରାପ୍ତ ପରାୟେ ସହି, ମଣିଅଛୁ ତୋ ମୁଖ ବୃନ୍ଦାଁ,
ଆସ ରେ ନଗୀନା, ନ ହୁଅ ବିମନା,
ଦାସ ଜନେ ତୋଷରେ ପ୍ରାଣାଧିକା । ୨ ।
ମନରୁ ଏମାନଙ୍କୁ ମୁଞ୍ଚ, ବରସଙ୍କୁ ଆଉ ନ ସଞ୍ଚ,
କାହାଠାରେ ଆଉ, ଲଜ ଲଜ ହେଉ,
ଖଣ୍ଡା କଣ୍ଠୋବାଣୀ ଗୁଡ ଏ ଶଙ୍କା । ୩ ।
ଶୁଣି ଥରେ ଅମୀୟ ବାଣୀ, କରଭୁରୁ ଭଙ୍ଗି ଗୁହାଣି,
ମନ୍ଦେ ମନ୍ଦେ ହସି, ଛନ୍ଦ ମନୁ ନାଶି,
ତୋ ସ୍ନେହ କାରଣ ବାନାକୁ ଟେକା । ୪ ।

ଗଣ୍ଡେ ମଣ୍ଡି ଯୁଗଳପାଳି, କି ଭାବୁଛୁ ରମଣୀମଣି,
ଘୁଡ଼ ଘୁଡ଼ ଧନ, କିଶୋରୀ ରତନ,
ମୁଁ ପରା ତୋ ପ୍ରେମଧନରେ ବିକା । ୫ ।
ଶ୍ରୀକୃଷ୍ଣଙ୍କ ବଚନ ଶୁଣି, ଠାକୁରାଣୀ ବିମୁଖ ମଣି,
ମୁଖ ଘାଞ୍ଚିଦେଲେ, ବେଣୁଧର ବୋଲେ,
ସେ ଚରଣ ହେଉ ମୋ ହୃଦେ ଅଙ୍କା । ୬ ।
( ରଙ୍ଗରାଜୀବ ମୁଖି—ପ୍ରଭୃ )

—୦—

( ରାଗ—ଖାରବାଣୀ ତାଳ—ଆଠତାଳୀ )
ଢଳି ଯାଉଛିରେ ତୋ ଲାବଣ୍ୟଠାଣି ।
ନୟନେ ନାଚୁଛି ଏକା ତୋ ରୂପ ବଖାଣି । ଘୋଷା ।
ତୋର ସେହି ମୃଦୁହାସ, ତୋର ସେ ମଧୁର ଭାଷ,
ତୋ ସେହି ଭୁରୁବିଳାସ ପୃଷ୍ଠେ ଖେଳାବେଣୀ । ୧ ।
ତୋ ସେହି ନାସିକା ଫୁଲ ଚମ୍ପ ନଥ ମଣି ଝୁଲ
ବୁଲକ ଦୋଳ ଭଙ୍ଗିମା ଯଉବନ ଆଣି । ୨ ।
ଗଣ୍ଡ ଦରପଣ ଶିରୀ ଝଟକ ଟକ ମକର
କର୍ଣ୍ଣେ ଉତ୍ତଂସ ମାଧୁରୀ ଅପୂର୍ବ ନିଶାଣି । ୩ ।
ଜଘ-କଷିଦାରଇକା,— ତଳ ପତ୍ରାବଳୀ ରେଖା
ଜ୍ୟୋତି ମୋତି ହାରାବଳୀ ନର୍ତ୍ତନ ସାଜେଣି । ୪ ।
କବିଚନ୍ଦ୍ର ବୋଲେ ଗିର ନବୀନ କିଶୋର ବର
ଛବି କି ଚିହ୍ନୁଛ ଯାର ପାରୁଛୁ ମୁଁ ଜାଣି । ୫ ।
[ ସଖି ! ଶୁଣିଥା ଗୋ ପାଶୋର ନ ହେବ—ବୃନ୍ଦ ]

—୦—

( ରାଗ—ଶଙ୍କରାଭରଣ । ତାଳ—ଅଠତାଳୀ )
ତାକୁ ଲଭିବ କିପରି ?
ହେବ ସତେ ଏଡ଼େ ଭାଗ୍ୟ ବଳ କି ମୋହର । ଘୋଷା ।
ନେହଗିରି ଦରିରେ କେତକୀ କଳା ସରି ।
ଆହା କି ଶୋଭା ଶ୍ରୀଅଙ୍ଗ ସୁକାନ୍ତି ଲହରୀ । ୧ ।
ମୋ ବିଶାଳ ସ୍ନିଗ୍ଧ ହୃଦେ ସେ ଚଞ୍ଚଳା ଶିରୀ ।
ଝଟକ ଝଟକି ମଣ୍ଡି ହେବ କି ଉଦର । ୨ ।

ଧରଣୀରେ କାହିଁ କାହିଁ ଅପୂର୍ବ ମାଧୁରୀ ।
ମାତ୍ର ମୋ ନୟନ ପାଶେ ଯାଇଛୁ ତା ପୂରି । ୩ ।
ଘାରି ହୋଇ ଶ୍ରୀ କଶୋରୀ ବଇଦେ ଶ୍ରୀହରି ।
କହୁଁ କହୁଁ ମିଳଗଲେ କଣ୍ଠ ଗ୍ରହଣରି । ୪ ।
ପୁଛନ୍ତି ମରମ ଧୀରେ ଆଲିଙ୍ଗନ କରି ।
ବୋଲେ ବେଣୁଧର ଛନ୍ଦା-ପଦ ଅନୁସରି । ୫ ।
[ ଆରେ ସରସ ହୃଦୟା—ବୃତ୍ତେ ]

—❋—

( ରାଗ—ଭଇରବକେଦାର । ତାଳ—ଏକତାଳୀ
କଏ ସେ ସଜନୀ ଆଜ ନୂଆ ଦେଖା ଦେଲା ରେ ।
ଚାରୁ ପ୍ରତିମା ପରାୟେ ହୃଦେ ଲାଗି ଗଲା ରେ । ଘୋଷା ।
ଅଖିଳ ସଂସାର ସାର— ସୁସମା ଛବି ତାହାର
ଦେଖିଲା ବେଳୁଁ ତ ମୋର ନୟନେ ନାଚିଲା ରେ । ୧ ।
ଅକଳଙ୍କ କଳାକର— ଲପନ ହାସ ମଧୂର
କଟାକ୍ଷ ଭଙ୍ଗିରେ ଧନ ମନ କିଣି ନେଲା ରେ । ୨ ।
ମତ୍ତ ଗଜରାଜ ଗତି ଟଳ ଟଳ କରି ଗତି
ବୀଣା ଜିଣା ମୃଦୁ ବାଣୀ ଚିତ୍ତକୁ ମୋହିଲା ରେ । ୩ ।
ଭାଷେ ଲଳିତା ସଜନୀ ଶୁଣ ହେ ମୁରଲୀ ପାଣି
ସେହିଟି ଶ୍ରୀମତୀ ବେଣୁଧର ବଖାଣିଲା ରେ । ୪ ।
( ଯିବରେ ଯିବରେ ଜୀବ ବନେ ବୃନ୍ଦ ଯିବରେ—ବୃତ୍ତେ )

—0—

ରାଗ—କରୁଣାଶ୍ରୀ । ତାଳ—ଆଠତାଳୀ )
ହେ ସଖାଗଣ !
ଯାହା କହୁଛି ମୁଁ ମନ ଦେଇ ଶୁଣ ହେ । ଘୋଷା ।
ସର୍ବଦା ତ ଏହିପରି ଧେନୁ ଏ ବନେ ଚରାଇ
ଯେଝା ସଦନକୁ ଫେରି— ଯାଉଥାଇଁ ହେ ବାହାରି
ଆଜ ଆମ୍ଭେ କରିବା ଏପନ ହେ । ୧ ।
ଆମ୍ଭ ମଧ୍ୟୁ କେତେ ଜଣ ଘେନ ବାଛୁରୀ ଗୋଧନ
କରାନ୍ତୁ ହେ ଜଳ ପାନ ଯମୁନାରୁ ଏହିକ୍ଷଣି
କେତେଜଣ ତୋଳିବା ସୁମନ ହେ । ୨ ।

ଯେଉଁ ଫୁଲ ଯେ ତୋଳିବ ସେ ଫୁଲେ ସେ ଖେଳ ଖେଳିବ
ମାତ୍ର ମୋତେ ସଖା ସବୁ କିଛି ଫୁଲ ଆଣି ଦେବ
ତୋଷେ ଯିବା ଗୋକୁଳ ଭୁବନ ହେ । ୩ ।
ବ୍ରଜ-ବଜାରେ ବିହରି ବାଇବା ବେଣୁ ବାଁଶରି
ଫୁଲ ଜଣ ଜଣ କରି ତୋଳିବା ଅଞ୍ଚଳ ଭରି
ବିଳମ୍ବରେ ନାହିଁ ପ୍ରୟୋଜନ ହେ । ୪ ।
ମୋହନ ମୁରଲୀ ଶୁଣି ଭକ୍ତେ ଏ ମୃଦୁ ବାଣୀ
ସୁଦାମାଦି ସଖା ଶ୍ରେଣୀ କଲେ ସେପରି ତକ୍ଷଣି
ସେ ଚରଣେ ବେଣୁଧର ଧ୍ୟାନ ହେ । ୫ ।
( ରାଧେ ତୋହ ଲାଗି ଶ୍ୟାମ କ ବଞ୍ଚଇ— ବୃତ୍ତେ )

—o—

( ରାଗ—ହିଂଦୋଳ । ତାଳ—ଏକତାଳୀ )
ଆହେ ସୁବଳ ! ସରିଲାଣି ମୋର ସୁଖ ହେ । ପଦ ।
କ କହିବ ପ୍ରାଣମିତ ଯାହା ହୁଏ ମୋର ଚିତ୍ତ
ବଳ ଛାଡ଼ିବାରୁ ଦୁଃଖ ହେ । ୧ ।
ମଧୁମଣ୍ଡନା କଣୋଷ ସଙ୍ଗେ ଯେନ ସହଚରୀ
ମଣ୍ଡିଥିଲୁ ମାପ ପାଖ ହେ । ୨ ।
ଜପବଳପାକ ବୁଲି ନାନା ଫୁଲମାନ ତୋଳି,
କଲେ ରହସ୍ୟ ଅନେକ ହେ । ୩ ।
ଏକା ହୋଇ ନବବାଳୀ ହସି ହସି ଫୁଲ ତୋଳି
ସାରି ଦେଲୁ ମୋ ଭବେକ ହେ । ୪ ।
ଯେତେବେଳେ ତାଙ୍କୁ ମୁହିଁ ଅ.ଙ୍ଗନେହେ ଦେଲି ଗୃହି,
ବାନ୍ଧିଲୁ ଫୁଲ-ଶାସ୍ତ୍ରକ ହେ । ୫ ।
ଦାସଜନ ପରି ହେତେ ଧାଇଁ ଯାଇଁ ତା ଅଗ୍ରତେ
ରଚିଲି ଭଜନ ବାକ୍ୟ ହେ । ୬ ।
ଶୁଣି ମୋର ସ୍ତୁତିଭାଷା ସେବଣା କୁଞ୍ଜଗୀତି,
ପଳାଇଲୁ ଲଭି ଦକ ହେ । ୭ ।
ସେହିକବେଳରୁ ସଖା ମୋ ହୃଦେ ହୋଇଛି ଅଙ୍କା,
ତାର ରୂପାଣି ଚଣ୍ଡ୍ରକ ହେ । ୮ ।

ଜାଣିମାର ସଖୀ ଚନ୍ଦ୍ରି ଭଷିଲେ ଧୀରେ ବୁଝାଇ,
ଭଣେ ବେଣୁଧର ଠିକ କହ ହେ । ୯ ।
( ଭଲ ଭୁଲିଲୁ ତା ପ୍ରୀତିରେ—ପ୍ରଭି)
—o—

## ସଖୀଉକ୍ତି

(ରାଗ—ମାୟୁା । ମାଲବଗୌଡ଼ । ତାଳ—ଆଠତାଳୀ)
ସଖୀହେ ନୁହଁ ଏପରି । ଘୋଷା ।
କାହିଁକି ଏରସ ଭାବ ବହିଛ ମନେ କେଶବ,
କାମ କଳାକୁ ବୋଧିବା କହ ବଚନ ମାଧୁରୀ । ୧ ।
ମୋ ବାଣୀ ଘେନ ମୋହନ ନ ହୁଅ ଲଜେ ଭ୍ରମନ,
ନେତ୍ର ଯୁଗଳୁ ନ ତେଜ ଧାର ଧାର ଅଶ୍ରୁବାରି ।୨।
ଚାଲ ଚାଲ ଗିରିଧାରୀ ମଣ୍ଡିବ ହେ ବନସ୍ଥଳୀ,
ଦୂତିକ ବଚନ କରି କହିବା ଭଷା ଚାତୁରୀ । ୩ ।
ସେ ଦିନ ବୁଝାଇକରି ଆଣିବ ନବକିଶୋରୀ
ରହିଥାଅ ଧୈର୍ଯ୍ୟ ଧରି ମୀପମୂଳଆ ଶ୍ରୀହରି । ୪ ।
ଏହିପରି ସଖୀ ଚନ୍ଦ୍ରି ଭଷିଲେ କୃଷ୍ଣଙ୍କୁ ଚାହିଁ,
ଘେନ ବେଣୁଧର କହ ଯୁଗଳ ପ୍ରୀତି ସୁନ୍ଦରି । ୫ ।
(ବାଜୁଛୁ ଧନ୍ୱ ବାଜାରେ—ପ୍ରଭି)

(ରାଗ—ବସନ୍ତ । ତାଳ—ଝୁଲ)
ଘନଶ୍ୟାମଳ ସୁନ୍ଦର !
ଘେନ ଘେନ ବଚନ ମୋହର ହେ । ଘୋଷା ।
ସଖୀ ସେ ନୁହଇ ପ୍ରେମମୟୀ ରାଈ,
ସୁମଧୁର କଣ୍ଠସ୍ୱର ହେ ।
ଚୂତଡାଳେ କଳା— କୋଇଲି କଳାପ,
ଆଳାପ କଲେ ରୁଚିର ହେ ।୧।
ନୁହେ ଭ୍ରମ ପ୍ରିୟା— ଝମକ ଝୁଣ୍ଟିଆ,
ଏ ସ୍ୱନଟି ଝିଙ୍କାରର ହେ ।
ମଳୟ ପବନ ବହେ ଘନ ଘନ,
ନୋହେ ଅଙ୍ଗ-ଗନ୍ଧ ତାର ହେ । ୨ ।

ନବୀନ ପଲ୍ଲବ— ଚଳୁଅଛି ଭାବ,
ଏ ନୁହେ ଶ୍ରୀମତୀ କର ହେ ।
ତୁମ୍ଭ ଅଧରରୁ ଏ ଭଳି ଲାଗଇ,
ନ ହୁଅ ଏ ପରକାର ହେ । ୩ ।
ସଂଜ ସମୟକୁ ଯେପରି କୁଞ୍ଜକୁ,
ଆସିବ ନାୟିକାବର ହେ ।
ସେହି ଉପାୟଟି ହେ ସଚୁଆକଟି !
କହିବା ନୁହ ଅଧୀର ହେ । ୪ ।
ଏମନ୍ତ କାଳରେ ସୁଭାଗ୍ୟ ବଳରେ,
ଯମୁନା କୂଳେ ସତ୍ୱର ହେ ।
ମିଳଗଲ ଦୁହିଁ.. ତାଙ୍କ ଏ ଭାବଣା,
ଭାଷିଲେ ମୁରଲୀଧର ହେ । ୫ ।
ସେହି ଶ୍ୟାମ ପଦ କରଛି ସମ୍ପଦ
ଧାନ ବେଣୁଧର ସ୍ଥିର ହେ ।
ପାଇବ କି ମୁହିଁ ବ୍ରଜଧାମେ ଯାଇଁ,
ଯୁଗଳ ଚନ୍ଦ୍ର ପୟର ହେ । ୬ ।
( ନବ ବସନ୍ତ ସମୟ, ନବ ବୃନ୍ଦାବନ ରସମୟ—ପ୍ରଭୃତି )

—❋—

( ରାଗ— ଗଉଡ଼ମାଳିଆ । ତାଳ- ଝୁଲା )
ଆସ ହେ କାଳିଆ ହାତୀ । ଆସ ନୀଳ ନବଘନ ମୂରତି ହେ ।
ଆସ ଶାର୍ଦ୍ଦୂଳନଖିଆ ଗ୍ରୀବ ମୋହନ ହେ । ୧ ।
ଯମୁନାର ବାଲି କୂଳେ । ବତ୍ସା ଚରାଇବା ଅତି ଆନନ୍ଦେ ହେ ।
ସର୍ବେ ଭାବ ପ୍ରେମ ଗଦ୍‌ଗଦେ ମୋହନ ହେ । ୨ ।
ବଜାଇ ଶିଙ୍ଗା ବଇଁଶୀ । ନାଚିବା ଗାଇବା ସଙ୍ଗୀତେ ରସି ହେ ।
ହେବା କଉତୁକ ହସି ହସି, ମୋହନ ହେ । ୩ ।
ଗୋଧନ ବାହୁଡ଼ା କରି । ବେଳ ଥାଉଁ ଥାଉଁ ଆସିବା ଫେରି ହେ ।
ଆମ୍ଭେ ଚଉପାଶେ ଥିବୁ ଘେରି, ମୋହନ ହେ ।୪।
ଗୋଧୂଳି ଧୂସର ଅଙ୍ଗେ । ତାଳ ଉଲୁଟାଇ ବିବିଧ ରଙ୍ଗେ ହେ ।
ପୁରେ ପଶିବା ଗୋବତ୍ସା ସଙ୍ଗେ, ମୋହନ ହେ ।୫।

ସଖୀଙ୍କ ବଚନ ଶୁଣି । ଆନନ୍ଦେ ଚଳିଲେ ମୁରଲୀପାଣି ହେ ।
ଗାନ ଧ୍ୟାନ ବେଣୁଧର ଭଣି, ମୋହନ ହେ । ୭ ।
(ଚନ୍ଦ୍ରମାବଦନୀଗଣ—ବୃତ୍ତ)



# ଫୁଲଚୋଳା ଅଭିସାର

## ସଖୀ ଉକ୍ତି

( ରାଗ—ମୋହନା । ତାଳ—ଆଡ଼ )

ଯିବାପର କୁଞ୍ଜବନେ, ଆସ ଆସ ଚନ୍ଦ୍ରାନନେ ! ଘୋଷା ।
ମୋହନ ମୁରଲୀ ସ୍ୱନେ, ମୋହୁଛି ଏ ତ୍ରିଭୁବନେ । ୧ ।
ପିନ୍ଧ ପବନ କନ୍ଦିବା, ବଂଶୀରବ ଶୁଣି କାନେ । ୨ ।
ପାପ ଆଖି ସୁଖୀ ହେବ, ବନମାଳୀ ଦରଶନେ । ୩ ।
ଚଉପାଶେ ହୁଳହୁଳି ଦେବୁଁ ବେଢ଼ି ସଖୀମାନେ । ୪ ।
କପର ଶୋଭା ବଢ଼ିବ ମାଳ ପୀତ ଅପଘନେ । ୫ ।
ହରିବା ବୃନ୍ଦ ଭଜନ, ସଙ୍ଗୀତ ନର୍ତ୍ତନ ଗାନେ । ୬ ।
ଶୁଣି କିଶୋରୀ ଚଳିଲେ ଲଳିତା ସଖୀ ବଚନେ । ୭ ।
ବେଣୁଧର କବିଚନ୍ଦ୍ର ପଞ୍ଚନାପୁକର ଧ୍ୟାନେ । ୮ ।
( ଆସ ଆସ ଆରେ ରସରଙ୍ଗିମା ପ୍ରାଣସଙ୍ଗିମା—ବୃତ୍ତେ )



## ରାଧା ଉକ୍ତ

( ରାଗ—ଲଳିତ କାମୋଦୀ । ତାଳ—ଝୁଲ )

ଉର ନଗୁଛି ଲୋ ନ ଯିବ ମୁଁ ଫୁଲଚୋଳ ।
ଉଜାଇଛ ଶ୍ୟାମ ପାହା କଲ୍ଲି କାଳି ମନରୁ ଗଲକି ଭୁଲି ? । ୦ ।
ଡାକ ହାକ ହୋଇପାଅ ଦୂତୀଆଳୀ ନିକୁଞ୍ଜ ବୃନ୍ଦାବନପିନେ ।
ଡ଼ିବ ଡିବ ଆଉ ନ ବାଜୁ ମୋ ନାମ ନନ୍ଦାବାଳା ଗୋପେ ଦନେ । ୧
ଉବାଳିବ ଲୁଢ଼ କେତେ ନେଇ କହ ଗୁରୁ ଗଞ୍ଜଣାକୁ ସହ ।
ଉକୁଣୀ କୁଟିଳା ନଅ ଛଅ କରି ଦାଣ୍ଡରେ ଯା ଢଏ କହ । ୨ ।
ଉଇଁଲେ ଭରି ଢଅ କଳା ମୋତେ ପ୍ରୀତିଛଡ଼ା ଜଡ଼ ବୁଦ୍ଧୀ ।
ତୋର ଲଗାଇ ତା ପିନ୍ଧିବ ଦେହରେ ନ ମରିବ ମଥା କୁଟି । ୩ ।

କୋଳାରେ ନାଚନ୍ତି ସଦା ଯେ କାଳିଆ ସତେ କି ମୋହିନୀ ଜାଣେ ?
ଡାଳ-ମୁକୁଟିଆ ସୁବଳ ସଙ୍ଗିଆ ଝରେଣ ମୁଁ ରହୁଁଛୁ ଯେତେଣେ । ୪ ।
ଜଳକେ ହୃଦରେ ଅନୁତାପ ଶିଖା ନଠ ସାଠ ପାଦେ ଘଣ୍ଟ ।
ଜଳୁ ଆସ୍ୱ ସୁଖ ଆବର ମୋ ଯେତେ ଅଛୁ ପାଣ୍ଡ ଜଳ ପୋଛ । ୫ ।
ଜେରଦ ନାହିଁ ଶ୍ରବଣ ବଂଶୀସ୍ୱନ ଯେତେ କଲ୍ଲ ଅଭିମାନ ।
ତାହାଣ ବାମ ଦୁଇ ଶ୍ରୁତି ଭଗାଗ୍ ହୋଇ ଶୁଣିଲେ ସେ ତାନ । ୬ ।
ଜେଉଁ ଜେଉଁ ନେତ୍ର ଦୁହେଁ ବାଧା ଦେଲେ କୃଷ୍ଣରୂପ ଦେଖିବାକୁ ।
ଜେମ୍ପ ଜନା ଫୁଲ ଅଛୁ କି ଗୋ ବେଣୁଧର ବୁଝାଏ ସାଧାଙ୍କୁ । ୭ ।
( ଶ୍ୟାମନାଗର ହେ ଏ ବେଶ ହୋଇବ ନାହିଁ—ଝୁଲେ )



## ସଖୀ ଉକ୍ତି

( ରାଗ—ମିଶ୍ର କାମୋଦୀ । ତାଳ—ଝୁଲା )

ତା ସ୍ୱଭିକ ନ ଜାଣୁ ସହି ?
ମାଣ ପକାଉଛୁ ପୂଚନା ଧାଈ । ଘୋଷା ।

ସ୍ୱରଦଣ-ଭୂବନେ କେହ୍ନ ନାସ୍ୱମସ ପସଯ୍ୟେ ନାହିଁ,
ବାରଦ-କୁନ୍ତଳା ସାଣ ଫୁଲତୋଳା
ଝରପିବା ସ୍ଥଳ ଏଥି ନ ରହି । ୧ ।

ପାରବୁକ ତା ପାଲୁ ବଣି ଠାଣ ଦୂରୁ ହରଇ ଧୃତି;
ଗାରମା ଗୁମାନ— ମାନ ଧାନ କରେ
ସାଣଗମ ସ୍ୱରେ ଢଏ ଝଲାଇ । ୨ ।

ହାଣ ତାକୁ ଶୋଭା ଗୁଣରେ ସମ୍ବର ପ୍ରଭୁ ଷଣରେ,
ପାଶାନ୍ତ ମଧ୍ୟରେ ସରଣ ମାଗଇ
ଆଉ ଅନୁଗତ ଭାବ ସୁମୁହିଁ । ୩ ।

ଘାରରୂଢ ତା ନେତ୍ର ଶରେ ବାରଜାକ୍ଷୀ ଚଳ ବାସରେ,
ସାଉ ଶୁକ ଝଳା ଶବସ୍ୱ ନାୟିକା—
ବେଶୀ ପଦେ ବେଣୁଧର ବନ୍ଦଇ । ୪ ।

( ନନ୍ଦସୁତ ମୋର ଜୀବକା—ଝୁଲେ )



## କଳକଣ୍ଠ ଉଦ୍ଭବ ।

( ରାଗ-- ଆଶାବରୀ । ତାଳ  ଖେମଟା । )

ଗୁଡ଼ ଗୁଡ ବାଟ କହ୍ନାଇଁ ମୋ ରଣ ଛୋଡେ । ଘୋଷା ।

ମୁହିଁ କୁଳବଧୂ ଯୋଷା                    କରନା ଉଗାର ହସ,

ରଖ ଏ ଠାକର ଭାଷା, ମୋ ରଣ ଛୋଡେ । ୧ ।

ଆସିଛୁ ମୁଁ ଫୁଲ ତୋଳ                    ପୂଜିବାକୁ କରମାଳ,

ଅଃଡ଼ନ୍ତୁଅ ବନମାଳୀ ମୋ ରଣ ଛୋଡେ । ୨ ।

ଏ ଭଙ୍ଗୀ ସହିବା ଭଳ                    ମୁଁ ନୁହେଁ ସେ ଚନ୍ଦ୍ରାବଳୀ

ଚନ୍ଦନା ପଥ ଓଗାଳ, ମୋ ରଣ ଛୋଡେ । ୩ ।

ଯାଅ ଯା ନ ହସ ଗେଲ                    ନୁହେଟି ଏ କଥା ଭଲ,

ବେଣୁ ବୋଲେ ନନ୍ଦଲାଲ, ମୋ ରଣ ଛୋଡେ ।୪।

( ମୋହନ ବାଂଶରୀ ବଜାଉଥେଁ—ପ୍ରଭୃ )

—○—

## ରାଧା ଉକ୍ତି

( ରାଗ—ତୋଡ଼ିପରଜ । ତାଳ --ଅଡ଼ତାଳୀ )

ଥାଉ ଏତେକ ଗୋ ଫୁଲବନ ବିହରଣ ।

ହାଉ କାଳିଆର କେ ସହିବ ଆଉ, ଚାଲ ଚାଲ ସଖୀଗଣ । ଘୋଷା ।

ଦେଖିଲୁଟିକି ମା, ତା ଛଟା ଭଙ୍ଗିମା, ଯା କଲା ପଥ ଆଗୁଳ ।

ସେ ଷୀରଚୋରକୁ ପାରିଦେବ ନାହିଁ, କରିବ ଯା ପାଳକ ପାଳ । ୧ ।

ଡର ଡର ହୋଇ ଘରୁ ଆସୁଥିଲ, ପାହା ନଟ ଲଗାଉଣ୍ଡେ ।

ହରବର ଏବେ କରାଇଲା ସେଣ୍ଟ୍ର, ମାଡି ପରା ଫୁଲ କାଣ୍ଡେ । ୨ ।

ରଣ ଲଅଁ ମତ ନ ମାନଇ ତଳେ, ଜାଣଇ ସେ କେତେକଥା ।

ପ୍ରାଣେଥିଲେ ମନ୍ଦ ପାପୋର ପିବକ, ମୋହନ ଶିଆଲ ପୋଥା ।୩।

ସବୁ ଚହିଁ ଭଣି ଆଗୋ ଜେମାମଣି, ଯାହାର ଯେଉଁ ସ୍ୱଭାବ ।

କହିଲେ କ ହେବ କଷ ନଶୀଧବ କରଛୁ ତା ଅନୁଭବ । ୪ ।

( ଡର ନାହିଁକ ହେ ପର ତରୁଣୀ ହରଣୁ—ଦୁହେ )

—○—

( ସଖୀ ଉକ୍ତି )

(ରାଗ—ତୋଡ଼ି । ତାଳ—ଆଠତାଳୀ)

କିଶୋରି ! ଲୋକ ଲାଜେ ଲୁଚିଲୁ ।
ଆଚ୍ଛାଫୁଲ ତୋଳିବାକୁ ଆସିଲୁରେ । ଘୋଷା ।
କି ଯୋଗେ ନିକୁଞ୍ଜ-କଳାଦେବତା
ହାବୁଡ଼େ ପଡ଼ିଲୁ କନକଲତା । ୧ ।
କାହିଁ ଶିଖିଛୁ ଯେ କେତେ ଯେ ଛଳ ।
ହଏ ଅପବାଦ-ଫେଣାରେ ଠେଲ । ୨ ।
ଝର ନେତ୍ରୁ ଅଶ୍ରୁ ପୋଛୁ ପଣତେ ।
ଶ୍ୟାମ ନଟ ନିଜ ଗୁଡ଼ିବ ନେତାଁରେ । ୩ ।
ପେଷାହେଲଣି ତୋ ହୃଦର ଦକ ।
ଭଣେ ବେଣୁଧର ପଟ୍ଟନାୟକ । ୪ ।
( ମୁରଲି ! ତୋରେ ଶରଣେଗଲି— ବୃନ୍ଦେ )

୦ –

( ରାଧା ଉକ୍ତି )

କୁସୁମ ତୋଳା ନୋହିଲେ ନୋହୁ ଗୋ ଏଣିକି ।
ଆଣିବ ନାହିଁ ନିକୁଞ୍ଜେ କହୁଛୁ ସଖୀ ଶ୍ରେଣୀଙ୍କି ଘୋଷା ।
ଲଟା ବୁଲି ଅଟା ବାଣୀ,      ଘଟାଏ ଯାହା ମିବଣି !
ଫଟା କପାଳକୁ ପିନା ସବୁ ରହୁଛି ଜାଣିକି । ୧ ।
ହନେ କାଳେ ତ ନୋହିଲା,      କି ନେଷଠାର ସେ କଲା,
ଭଳେ ଭଳେ ଘଣ୍ଟ ବନ୍ଧୁ ସାରଇ ଦମ୍ଭ ଆଣିକି । ୨ ।
ରଥ ପୂଜିବା ସମ୍ଭାର,      ଦଦ୍ଧିଲେ ଦବୁ ଗୋ ମୋର,
ଛୁଟ ଛନ୍ଦ ଭଙ୍ଗି ଆର ଯାକରେ ଯିଦ କେଣିକି ? । ୩ ।
ସଖି ! ସବୁ ବୁଝ ଥାଉ,      ସଖିକ କେ ତାର ଦାଉ ?
ରହିବ ପୂରେ ମଜନେ କ ଚନ୍ତ୍ର ବଂଶୀପାଣିକି । ୪ ।
କହେ କବି ଜଗନ୍ନାଥ,      ନୋହେ ଗୋ ଏହା ଉଚିତ,
ସହେ ସେ ଶ୍ୟାମଲଙ୍ଗି ତ ଶୋଷ୍ଟ ସେହି ଧରଣୀକି । ୫ ।
( ଅନଇଁ ନାହିଁ ନାଗର ମଣିକି ମୁଁ ତାକେ—ବୃନ୍ଦେ )

—୦—

(ସଖି ଉକ୍ତି)

( ରାଗ—କଳଙ୍ଗ କେଦାର । ତାଳ—ଏକତାଳୀ )

ଶୁଣ ରଙ୍ଗିଣୀରେ ! ଆମ୍ଭେ ଯିବା ସଦନକୁ ।
ବାସ ଫୁଲ ଗୁନ୍ଥି ଭେଟି ଦେବା ମୋହନଙ୍କୁ । ଘୋଷା ।
ମିଛେ ଯିବା କଥୁ ଏଠା, ଆରେ ଜମ୍ବୁ-ଦ୍ୱୀପେ ଦେଖା,
କି ଦେଉଥିବ ପଶୁର ପଶ୍ଚାତ୍ ମନକୁ । ୧ ।
ଯାର ଚଉପଟ ଛଇ, ଗୁପତେ ହୃଦରେ-ଧାଇ,
ରଜନୀ ପ୍ରଭାତ ଗୁଣ୍ଡଚ୍ଛକ ସେ ଧନକୁ । ୨ ।
ଯାହାର ଦେଖାନିମନ୍ତେ, ଅଭିସାରିଣୀ ଭୂ ଏଥେ,
ସେ ବେଳା ସବୁ ବୋଲି ଅଜଣା କି ସ୍ୱଜନକୁ । ୩ ।
ଆଜ ରବି ପୂଜା ବେଳେ, ନକ୍ଷିବୁ ଯା ପ୍ରୀତି ଖେଳେ,
ବେଣୁଧର ଚନ୍ଦ୍ରେ ତାଙ୍କ ପଦ-ନଳିନକୁ । ୪ ।
( ତାଙ୍କୁ ଗୁହାଁନା ମୋ ମିତ କଥୁଛୁ ବୃଥା —ବୃନ୍ଦେ )

—o—

# ଯମୁନା ଅଭିସାର

( ସଖୀ ଉକ୍ତି )

ସଙ୍ଗାତ ! ଆସ ଯମୁନାକୁ ଯିବ ।
ଖେଳଥାଉଁ ସେହି କୁଞ୍ଜ ଘାଟରୁ, ଚଞ୍ଚଳ ଫେରି ଆସିବା । ଘୋଷା ।
କାନେ ଶୁଣିଛ ତ, ସେହିକ ଚରିତ,
ଅଧିକ କାଣ କହିବା ?
ମଲ୍ଲ-ଗୋବର୍ଦ୍ଧନ,— ଧରଣୀ ଚନ୍ଦ୍ରାକୁ,
କାଳିଆ ଭୂତ ଲାଗିବା । ୧ ।
କଦମ୍ବ ବନରେ, ସେ ଭୂତ ବସେରେ,
ଏକା ଟିକି ନଶୀ ହବା ।
ସଙ୍ଗ ମେଳ ହୋଇ, ସାବଧାନେ ସହି !
ନୀର ଘେନି ଲେଉଟିବା ।୨।
କାଳେ ଅବା ପଦ୍ମ, ସେ ଭୂତ ହାବୁଡ଼େ,
ଅଖଞ୍ଜେରେ ପଡ଼ିଯିବା ।
କି ଗତି ଅଛୁଟି; ଆଗୋ ସ୍ୱମୁଖୀ !
ସହଜ ନୁହେଁ ବର୍ତ୍ତିବା । ୩ ।

ନିକୁଞ୍ଜ ଦେବତା, ଅକ୍ଷମ କ୍ଷମତା,
ଗୋପେ ଜାଣିନାହିଁ କେବା ?
ବୋଲେ ବେଣୁଧର, ମୋତେ ଲାଗେ ଡର,
ଯା' କରେ କଳା ମଧବା । ୪ ।
(ସଙ୍ଗିନି ! ଲୁଗ୍ଣଇ ଥିବୁଟି ଦେଦେ—ବୃତ୍ତେ)

—୦—

## ସଖୀଉକ୍ତି

( ରାଗ—ଆନନ୍ଦ ଭୈରବୀ । ତାଳ—ଏକତାଳୀ )

ଏଗୋ ଘନ କୁନ୍ତଳା, କାହିଁକି କର ହେଳା, ପିବାପାଣି ଯମୁନା ନୀ । ପଦ
ଆସରେ କୁନ୍ଦନାଙ୍ଗୀ, ମୋହନ ପ୍ରାଣସଙ୍ଗି
ସ୍ୱହାସୀ ରାସ ରଙ୍ଗି ଦେଖିବା ଶ୍ୟାମଭଙ୍ଗି
[ଚଡ଼] ସେ ତରୁବେର ତଳ ସଙ୍ଗେ କୁଞ୍ଜେ ବିହର
ତାଙ୍କ ସେବକପର, ତଡ଼ପାଶରେ ଘେର
ନୃତ୍ୟ ସଙ୍ଗୀତ କର, ମୋହିବା ଏ ଈଶ୍ୱର ( ଏ ନୀ ) । ୧ ।
ଆହା ସେ ନବଘନ- ଜିତ ଶ୍ୟାମ ବରନ—
ମୂରତି କି ଶୋଭନ, ହରେ ନୟନ ମନ,
[ଚଡ଼] ଅଧର ବଂଶୀ ସ୍ୱନ, ହଜାଇ ଦିଏ ଜ୍ଞାନ,
ମାନବତୀ ଗୁମାନ କରି ଦିଅଇ ଶୂନ୍ୟ,
କୁଳବତୀଙ୍କି ସ୍ଥନ, କରେ ଧୈର୍ଯ୍ୟ ଉଚ୍ଛନ୍ନ (ଏ ଗୋ) । ୨ ।
ଆହା ସେ ଶ୍ୟାମଶୋଭା, ଜାତି କୁସୁମ ଗନ୍ଧ,
ଦେଖି କେ ଅବା ଲୋଭା, ନୋହିବ ତା ପ୍ରତିଭା
[ଚଡ଼] ଭାଷଇ ବେଣୁଧର, ତାଙ୍କୁ ହୃଦରେ ଧାର
କରନ୍ତୁ ନିରନ୍ତର, ସେ ଭାଗ୍ୟ କାହିଁ ମୋର
ସେହି ଚ୍ଛନ୍ଦାପଦ୍ମର, ହେବ ଏ ଭବୁଁ ପାର ( ଏ ଗୋ ) । ୩ ।
( ରାସ ରଙ୍ଗିନି ରୁ ଆସ କୁଞ୍ଜକୁ—ବୃତ୍ତେ )

—୦—

## ସଖୀଉକ୍ତି

(ରାଗ—କଞ୍ଚନବରାଡ଼ି । ତାଳ ଖେମଟା )

ପ୍ରାଣ ସଙ୍ଗିନି ! ଆସ ଯମୁନାକୁ ଯିବା ଗୋ ।
କଦମ୍ବ ମୂଳେ ସେ ଦମ୍ପତିଙ୍କୁ ଦେଖିବାଗୋ । ଘୋଷା
ସୁଖେ ଗୋ ରାସ ରଙ୍ଗିନି ଭାଷେ ଜଳ କୁମ୍ଭ ଘେନ,
ସଞ୍ଜ ପୂର୍ବରୁ କଞ୍ଜନୟନା ଫେରିବା ଗୋ । ୧ ।

ଉଠ ଗୋ ବହନ ଉଠ, କାହିଁକି କରୁଛ ମଠ ?
ଘାଟକଗା ନନ୍ଦସ୍ୱକଠୁ ଫାନ୍ଦୁ ଉବୁରିବା ଗୋ । ୨ ।
ଲୀଳାନିଧି ପ୍ରେମକଳା ସହ୍ଣ ! ଖଳାସ ମଞ୍ଜୁଳା,
ଛଳାଛଳ ବାଣୀ ଭଷି ଦୁଃଖ ପାଶୋରିବା ଗୋ । ୩ ।
ରସେ କବଚନ୍ଦ୍ର ବୋଲେ, ହାସ୍ୟ ଲାସ୍ୟ କୁତୂହଳେ,
ଅଶେଷ ଜନ୍ମର କେଶ ହରଣ କରିବା ଗୋ । ୪ ।
( ବରଜଣୀଶ୍ୱ, ସହ୍ୱପିବେହି ସର—ବୃତ୍ତେ )

—୦—

## ରାଧା ଉକ୍ତି

( ରାଗ—ଚକ୍ରକେଳି । ତାଳ—ଖେମଟା )

ନନ୍ଦନନ୍ଦନ ଛନ୍ଦେ ଭୁ ମକା ନା ।
କଳାକହ୍ନାଇଁ ଫାନ୍ଦେ ପକାନା । ଘୋଷା ।
ଧରୁଛ ପାଣିକ ଯମୁନା ପାଣିକୁ,—
ଯିବା ପଥରେ ଅଟକା ନା । ୧ ।
ତାର ବଂଶୀନାଦ ଶୁଣନ୍ତେ ପ୍ରମାଦ—
ଲାଗଇ ମିଛଣି ଚକାନା । ୨ ।
ସେ ଘନକାଳିଆ କାଇଁଚମାଳିଆ
ମୁରଲୀ ସ୍ୱନରେ ଡକାନା । ୩ ।
କେତେ ଟାହି କରି ଡାକୁଛି ସେ ହରି
ବୋଲେ ବେଣୁଧର ନ କାନା । ୪ ।
( ଶଠ ଲମ୍ପଟ କହ୍ନା ଭ୍ର ଯା ନାରେ—ବୃତ୍ତେ )

—୦—

( ରାଗ—ତାଳ ଖେମଟା )

ଯମୁନା ପାଣିକ ଯିବ ନାହିଁ ସହି ରେ ।
ଏ ହଟହଟା ମୁଁ ହେବ କାହିଁପାଇଁ ରେ । ଘୋଷା ।
ଗଲେ ଏ ଜୀବନ ଯାଉ ମାପମୂଳଆକୁ ଆଉ
ଜୀବ ଥିଲେ ଦେଖିବ ନାହିଁ ମୁଁ ଥରେ । ୧ ।
କେତେ ହେବ କଳଙ୍କ ପ୍ରୀତି କରିବାର ଫଳ
ପାଇଲଣି ଯା ତାହା ନୁହେଁ କହି ରେ । ୨ ।
ନୋହୁ ପଛେ ରବ ପୂଜା ଲମ୍ପଟିଆ ଧିଟ ରଜା
ଫାନ୍ଦେ ପଡ଼ି ସରିଲି ଲୋକ ହସାରେ । ୩ ।

ଧାଉ ସନ୍ବଳଣି ଯେତେ ରହିଛୁ ମୋ ଅନ୍ତର୍ଗତେ
ଘାନ ଘାନ ଏ ବେଣୁଧର କହି ରେ । ।
( ଏ ଦେବରାଜଙ୍କ ସଙ୍ଗ ଦେଖ ସଖୀ ରେ — ପ୍ରତି )

—o—

( ରାଗ – ଚକ୍ର କେଦାର । ତାଳ—ରୂପକ )
ସଙ୍ଗିନି ରେ ! ମୋତେ ହେଲାଣି ମନା ।
ଯିବାପାଇଁକ ମୁଁ ଏଣିକ ଯମୁନା । ଘୋଷା ।
ଏ ବ୍ରଜେ ଆଳୀ କେତେ ମୋ ଭଳ —
ନାହାନ୍ତି ମୋର ନାମେ ଉଡୁଛି ବାନା । ୧ ।
ସେ ଶ୍ୟାମ ଲାଗି ହେଲି ଅଭାଗୀ
ନଇନ୍ତରେ ଲଭୁଛି ଏକା ଯାତନା । ୨ ।
କରମ ଉଣା ଗୁରୁ ଗଞ୍ଜଣା
ସହିବା ପାଇଁ ସହି ! ନିତି କାମନା । ୩ ।
କଳଙ୍କ ବାଧା ଲଭୁଛି ରାଧା
ବେଣୁଧର ବଦନ୍ତି କର ଭାବନା । ୪ ।
( ସଙ୍ଗିନିରେ, ମୋର କରମ ମନ୍ଦ—ବୃତ୍ତି )

—o—

( ରାଗିଣୀ—ହରପ୍ରିୟା । ତାଳ—ଆଡ଼ଖେମଟା )
ସେ ଘନକାଳିଆ ସୁନା ।
ତାର ଲାଗି ମୋତେ ଯମୁନାକୁ ମନା । ଘୋଷା ।
ବରଜଳ କୁଳଖିତ ଅରଜଲ ତାରେ ପ୍ରୀତ
ସରଜଲ ଯା ଅପକାରତ ବାନା । ୧ ।
କହିଲେ କ ହେବ ସହି ! ରହିବ କପର ମୁହିଁ
ସହି ନୁହେଁ ଶାଶୁ ନଣନ୍ଦ ଯାତନା । ୨ ।
ଦୂରୁ ଦୂରୁ ନସୁଇଲି ଗୁରୁ ମାନ୍ୟ ଘୁଞ୍ଚାଇଲି
ମୁ ଛୁଟିବ କେ ଛଇଳା ନନ୍ଦକହ୍ନା । ୩ ।
ହସିଲେ ହସନ୍ତୁ ଜନ ବଂଶୀଧାରୀ ମୋ ଜୀବନ
ବସି ଜପୁଥିବ ଅନ୍ତରରେ ତା ନା । ୪ ।
ଧୀର ଶ୍ରୀ ମାନବ କୁଳ — ଶିର ମୁକୁଟ ସୁଶୀଳ;—
* ଗୀରବର କୃଷ୍ଣଚନ୍ଦ୍ରଙ୍କ ଭାବନା । ୫ ।
( ସେ ମୋହନେ ପ୍ରୀତି କରି—ବୃତ୍ତି )

—o—

* ରଣପୁରାଧୀଶ୍ବରଙ୍କ ନାମେ ଭଣିତା ।

# ଘାଟ ଲୀଳା

## କଳକଣ୍ଠୀ ଭାବ

( ରାଗ—ଦକ୍ଷିଣକାମୋଦ । ତାଳ—ଏକତାଳୀ )

ହଟ ଶଠ ନଟ ଧୃଟ ରଟ ଋଟ ଲମ୍ପଟ କହ୍ନା । ଘୋଷା ।

କୂଟ କପଟ ଭଣ୍ଡାରି          ବାଟରେ ହଟ ନ କର
ଅଘଟ ଘଟା ମୋ ଘଟ ଭୁ ଛୁନା ଛୁନା ।
ରଟନା ବଂଶୀରେ ମୋ ନା          ଅଟକ ହେଲ ଜାଣୁନା
ପାଟକ କୂଳରେ ହାଟ ବସିଲଣି ଚୋ ନା ମୋ ନା । ୧ ।
ଝଟା ନମଣ ମୋ ଗିର          କଟାକ୍ଷ ଆଉ ନ କର
ପାଲଟା ଗୋଟା ଏଛଟା ଗୁଡ଼ ରହ ନା ।
ଗଟା ବଟା ବାଣୀ କହ୍ନ          ହଟହଟାରେ ପକାଇ
ଲଟାବୁଲ ବଟା ଦେଇ ଘଟାଅ କେତେ ଯାତନା । ୨ ।
ଲୁଟାଅ ସଙ୍ଗପଣେ          ଭୁଟାଅ ଜ୍ଞାନ ଧନକୁ
କୁଟାଅ ଅପକାରକ ମନ୍ମଥବାଣା ।
ହଟି ଯା ହେ ତୋଟିକଟା          ଗୋଟିକା ଅଧାମ ଚଟା
ଖୋଟିଆ ପଣ ଲୁମ୍ବର ମାଇକିଦନୁ ପୁଚନା । ୩ ।
ନିଘୁଟ ବାଟେ ନପଟ          ଝଞ୍ଜା'ସାଟ'ଙ୍କ ଏ ହଟ-
ନାଟ ନ କର ଏ ଟକା ଚଟ ଯମୁନା ।
କାହ୍ନୁ ଶିଖିଲ ଏ ପାଠ          ନାସ୍ତୁଁ ଖୁଆଇବ ଗୁଟ
ବେଣୁଧର ପଡ଼େ ଶ୍ରେଷ୍ଠ ମଧୁଲିଟର ଭାବନା । ୪ ।

( କାହ୍ନିକି ହେ ଏଡ଼େ ହଠ କରି ମୋତେ—ରଙ୍ଗେ )

—o—

( ରାଗ—ଗୁଜ୍ଜରୀ । ତାଳ—ଖେମଟା )

ଗୁଣ୍ଡ ବାଟ ନନ୍ଦ-ସୁତ ଚଞ୍ଚଳ ନାଗର ।
ଦେଖ ମୋ ହୃଦ୍ଦିନ ଶ୍ୟାମ କହୁଛୁ ଏଥର । ଘୋଷା ।
ନ ଜାଣେ ମୋର ଶାଶୁ ନଣନ୍ଦ ବଷମ ।
ଲଭ ମୁଦ୍ଗଲରେ କମ୍ପ ଧର ମୋର ନାମ । ୧ ।
ଏ ବୁଜ ବଜାରେ ପରା ବସିଲଣି ହାଟ ।
ପଥ ଚଳି କେତେ ମତେ ମାଗୁଥାଅ ଘାଟ । ୨ ।

ରଖ ପୂଜାଫଳ ମୋର ମାଗ ତୁ ନ କର ।
ସ୍ନାନ କରି ଆସିଛୁ ହେ ଶଠ ନଟବର । ୩ ।
ସଖିଏ ଅନ୍ତନ୍ତ୍ର ପଛେ କାହ୍ନିକ ହେ ଖ୍ୟାତ ?
ଉପେ ଭାଷେ ବେଣୁଧର କର ଦଣାପନ୍ତ । ୪ ।
( ଯାଉରେ ଯାଉ ବାଟେ ବାଟେ ସୁମାନ୍ତ ନନ୍ଦନ—ବୃତ୍ତ )

—❋—

( ରାଗ—ଢିପା । ତାଳ—ମେଣ୍ଠା )
ଛାଡ଼ ମୋତେ ବାଟ ମୋହନ ମୋ ଆନ ତୋତେ । ଘୋଷା ।
କେ ଦେଖିଛୁ କେଉଁଠାରେ, ପ୍ରୀତ ପର ପୁରୁଷରେ । ୧ ।
ନିତ ଏ ଯମୁନା ତଟ, ଲଗାଉରେ କେତେ ନଟ । ୨ ।
ମୁହିଁ ବ୍ରଜକୁଳ ଯୋଷା, କରୁ କେତେ ଲୋକହସା । ୩ ।
ଜାଣିଛୁ ତୋ ହାଲଚାଲ, ଥାଉ ଥାଉ ଏ ଖିଆଲ । ୪ ।
ବେଣୁଧର ବୋଲେ ଶୁଣ, ସଖୀବ୍ରତ ଅକାରଣ । ୫ ।
( କାହ୍ନି ଛାଡ଼ିଗଲେ ସେ ମୋ କାଳଆସୁନା—ବୃତ୍ତ )

—❋—

## ରାଧା ଉକ୍ତି

( ରାଗ – ବଙ୍ଗଳାଶ୍ରୀ । ତାଳ – ଆଦିତାଳୀ )

ଘନବରନିଆ ମନମୋହନ ରେ
ଏତେ ହଟା କରୁ କାହିଁକ ?
ଯମୁନା ପାଣିକ ତୋ ଲାଗି ଏଣିକ,
ଆଉ ମୁଁ ଆସିବ ନାହିଁକ ? । ଘୋଷା ।
ରାଧା ରାଧା ବୋଲି ମୁରଲୀ ବାଇ, ଘାଟ ଜଗି ନିତ ନଟ ଲଗାଇ
ବାଳକ ନ ଗଲ ଚୋରି ଏ ବାଇ,
କପାଇଁ ଚେରନ୍ତେ ଘୃହିଁକ । ୧ ।
କଳଙ୍କିନି ହେଲି ବ୍ରଜବଜାରେ, ବାଟ ନ ଚାଲେ ମୁଁ ଭୁଣବଜାରେ
ମଥା ପୋତିଥାଇ ଲୋକ ଲଜ୍ଜାରେ,
ନ ଛାଡ଼ୁ ତୁ କାହିଁପାଇଁ କି ? । ୨ ।
ଡରି ଡରି ମୁଁ ଏଡ଼ରିବା ଦିକୁ, କରିଛୁ ପଥର ପରି ହୃଦକୁ,
ଧରିବ ମୁଁ କେତେ କାହା ପାଦକୁ,
ଯିବ ଆଉ କେଉଁଠାଇଁ କି ? । ୩ ।

ଆଉ କି ରଖିବୁ ନାହିଁ ଏ ଗୋପେ, ଯାଉ ମୋ ଜୀବନ ଶରସନ୍ତାପେ,
କାହାକୁ କହିବି ଅର୍ଜିଛୁ ଆପେ
ବେଣୁଧର କର୍ମେ ଥିଲା ଏହି କି ? । ୪ ।
( ପୀତପଟ ଧୃତ ନଟକୁଟିଆର—ବୃତ୍ତେ )

—o—

## ସଖୀ ଉକ୍ତି

ରାଗ—ପଞ୍ଚମବରାଡ଼ି । ତାଳ – ତ୍ରିପୁଟା )

ସୁହଁରେ ନବକିଶୋର ! ଯମୁନା-ଜଳ ମାଧୁରୀ,
ଆହା କି ସୁନ୍ଦର ଦିଶେ ମିତ ।
ତହିଁ ପୁଣି ମନୋହର ଏ ନଳିନକଢ଼ିବାର,
ତୋ ଉରଜ ଉପମାଟି ସତ ରେ ।
କଞ୍ଜନୟନ ! ଦେଖି କାହା ମନ ନ ଭୁଲିବ ?
ଏ ଶୋଭା ତ ଜନପୂର ଯାକରେ ନ ଥିବ ରେ । ୨ ।
ପୁଣି ଦେଖ ଏ ରୁଚିର ଏ ଯମୁନା କଳାନୀର,
ତୋ କେଶର ଉପମାହୋଇଲ !
ମାନସେ ବହି ପ୍ରମୋଦ ଦେଖ କଳହଂସୀବୃନ୍ଦ;
ଖେଳୁଛନ୍ତି ପହଁରି ପହଁରି ରେ ॥
କଞ୍ଜନୟନ ! ଏହି ଇନ୍ଦୀବର କି ମଞ୍ଜୁଳ ।
ମନ୍ଦ ମନ୍ଦ ସୁଗନ୍ଧରେ ଚହଟେ ଏ ସ୍ଥଳରେ । ୨ ।
ତହିଁ ପୁଣି ମଧୁକରେ, ମଞ୍ଜୁ ମୃଦୁ ଗୁଞ୍ଜନରେ,
ମାତିଛନ୍ତି ହୋଇ ଦଳ ଦଳ ।
ଏ ଫୁଲରୁ ସେ ଫୁଲକୁ ଧାଉଁଛନ୍ତି ଚୁମ୍ବିବାକୁ,
ମତ୍ତହୋଇ ସତତ କେବଳ ରେ ।
କଞ୍ଜନୟନ ! ମକରନ୍ଦ ପାନେ ସେହି ସୁଖୀ ।
କି ଦେଖୁଛୁ ମନ ପ୍ରାଣ ତାହା ଦେଖି ଦେଖି ରେ । ୩ ।
ମୋ କରରେ କର ଧର — ଡେଇ ରେ ନାଗସ୍ୱବର,
ପହଁରି ଏ ଜଳେ ବୁଡ଼ୁବାମା ।
ତୋଳି ତୋଳି ଏ କହ୍ଲାର ଭର ଯମୁନାବଦାର,

ମୁହିଁ ମୋର ଭୁଲେ ଅଛୁ ପୁଣି ରେ ।
କଞ୍ଜନୟନ ! ଶୁଣି ରହିଁ ଭାଷିଲେ କଳେଶା ।
କହେ ବେଣୁଧର ସେବା ପଦାବ୍ଜେ ଯୁହାର ରେ । ୪ ।
( ଆହା ନାଥ ପ୍ରାଣନାଥ ମୋହନମୁରଲୀ ହାତ—ପ୍ରଭୃ )

—*—

( ରାଗ—ଯଥା । ତାଳ—ଝିମଟା )
ସଖି ଗୋ ଫିଙ୍ଗି ଫିଙ୍ଗି ପାଣି ନବରଙ୍ଗେ ।
ଦେଖ କୁନ୍ଦଲତା ଖେଳ କେମନ୍ତ ସବୁରଙ୍ଗେ ଗୋ । ୦ ।
ମୋ ଭୁଲେ ପାରିବୁ ନକ ଏହାର ଦେଖିବା ଦେଖି
ଖେଳରେ ହାରିଲ୍ ପରି ନେହେ ପ୍ରୀତି ଲାଗେ ଗୋ । ୧ ।
ଆଗୋ ମୋ ଅଶୋକା କତି ଆଗୋ ମୋ କଷି କାଳୁଡ଼ି
ଦେଖ କପରି ମୁଁ ଏବେ ଲହଡ଼ିକ ଭାଙ୍ଗେ ଗୋ । ୨ ।
ଜଳରେ ଅଣ୍ଡିବୁ କାହିଁ ଖେଳ ତ ଆସଇ ନାହିଁ
ଦେଖି ଦେଖି ବୁଡ଼ି ଭଲ ଆସ ମୋର ସଙ୍ଗେ ଗୋ । ୩ ।
ଏପରି ପଦ୍ମାରେ ବେଣେ ବଂଶୀଧାରୀ ପ୍ରେମ ରସେ
ଭାଷନ୍ତେଣ ବେଣୁଧର ଦାସୀ ଭାବ ମାଗେ ଗୋ । ୪ ।
( ସହି ଗୋ ଏ ରାଧାର—ପ୍ରଭୃ )

—*—

## ରାଧା ଉକ୍ତି

( ରାଗ—ଲଳିତରଙ୍ଗ । ତାଳ—ଝୁଲ )
ଦେଖ ଦେଖ ଗୋ ସଖି କେଡ଼େ ସାହସୀ ।
ଏ ଚନ୍ଦ୍ରା ସଜନୀ କୁଟିଳ କେଶୀ । ଘୋଷା ।
ମୋତେ ଧରି ଜଳେ ବୁଡ଼ିଲ ଆଜ୍ଞା ଲହଡ଼ିକ ଭାଙ୍ଗିଲ
ବୁକୁ ଦୁକୁଳକୁ ଓଟାରିବା ଶିକ୍ଷା କାହାରୁ ଶିଖିଛୁ ଏ ମଦାଳସୀ ।୧।
ଯୁହାରିଲ ତୋତେ ଏଣିକ ହାରି ତୋ ସଙ୍ଗରେ ପାଣିକ
ଫିଙ୍ଗିବାର ମଜ୍ଜା ବୁଝି ସାରିଲଣି ଯା ଯା ପଳା ପଳା ତୁ ବଡ଼ ଦୋଷୀ ୨।
ଆଗୋ ମୋର ପ୍ରିୟ ସଖିଏ ଧାଇଁ ଆସ ଏ ଗୋ ମା କଏ
ମୋର ସଙ୍ଗ ରଙ୍ଗ ଇଚ୍ଛା କରିବାକୁ ଆସ୍ଥ ମେଳେ ଅଛୁ କପଟେ ପଶି ।୩।
ଶୁଣି ଶ୍ରୀରାଧାଙ୍କ ବଚନ ମେଳ ହୋଇ ସଜନୀଗଣ
ବାସ ଉପରୁ ଓଟାରି ପକାନ୍ତେ ଚନ୍ଦ୍ରା ପଡ଼ିଗଲେ କାଳଅଶଣୀ । ୪ ।

ସବୁ ଜଣା ଗଲାଣି ବୋଲି    କହି କହି ସବୁ ଛଇଳ
ଯାଆନ୍ତେ ପଳାଇ ଭାଷିଲେ କହ୍ନାଇ  ବେଣୁଧର ବନ୍ଦେ ସେ ପଦେ ହସି ।୫।
( ଭଜ ମନରେ ମନ କଳାକହ୍ନାଇଁ—ପ୍ରଭୃ )

—✽—

## କୃଷ୍ଣ ଉକ୍ତି

( ରାଗ—ସାବେରୀ । ତାଳ—ଆଠତାଳୀ )

ପ୍ରାଣ ସଜ୍ଵନୀରେ ! କେତେ ରମେ  କଥା କହିପାରୁ ତୁହି । ଘୋଷା ।
ତୁଟ ସବୁ ଗୁଣେ ଗୁଣବନ୍ତୀ    ଖେଳ ଖେଳ ଥିଲି ତୋର ମତି
ମୋତେ ଉପୁ ହେଉଅଛି ଅତି,
ଝଣ୍ଡ ଦୂରରୁ ଦେଖିଲେ ଥରୁଛି ମୋ ଦେହି । ୧ ।
ତୋଳ ପଛ ତୁ ଏ ଇଢ଼ବର    ଲଗିଲେ ଏ ପାଣି ମୋ ଶରୀର
କେ ଜାଣି କି ହେବ ସଜ୍ଵ ମୋର ।
ଶଉ ବନ୍ଧୁ ନାହିଁ ଆଜ କହିବା ବୁଝାଇ । ୨ ।
ପୂର୍ଣ୍ଣ ହେଉ ତୋ ମନ କାମନା    ତୁ ଏ ଜଳ କ୍ରୀଡ଼ା ଜାଣୁ ସିନା
ମୋର ତେଣିକି ନାହିଁ ଭାବନା ।
ବଳ ଥିଲେ ମୁଁ ସାହସୀ ହୋଇଥାନ୍ତି ତହିଁ । ୩ ।
କୁନ୍ଦଲତା ଲଳିତା ସଜ୍ଵେତେ    ପରିହାସ ବାଣୀ କହି କେତେ
ଜଳ ମଧ୍ୟକୁ ଟାଣି ନିଅନ୍ତେ ।
କି ଗୋ ଏ କଷ ବୋଇଲେ ଶ୍ରୀହରି ଚନ୍ଦ୍ରମୁହିଁ । ୪ ।
ସେ ଚରଣ ଯୁଗ ଅରବିନ୍ଦ    ନିରନ୍ତରେ ଧ୍ୟାଇ ବହି ମୋଦ
କହେ ବେଣୁଧର ଏହି ପଦ ।
ବ୍ରଜ ଧାମେ ସତେ ଗୀତ ଦେବ ମୁଁ ବଜାଇ । ୫ ।
( ବିଚକ୍ଷଣା ରେ, ବନା ତୋ ପ୍ରଭୃ କେ ଗନ୍ତ—ପ୍ରଭୃ )

## ସଖୀ ଉକ୍ତି )

( ରାଗ—ଶଙ୍କରାକେଦାର । ତାଳ—ଝୁଲା )

(ତୋର) କେମନ୍ତେ ସହୁଛି ଦେହ ରେ ସଜ୍ଵ !
କି କହିବି ଧନ, ତୋଠାରେ ମୋହନ
ବଳାଇଛି ଯେତେ ସ୍ନେହ ରେ ସଜ୍ଵ ! ଘୋଷା ।
ଯେବେ ବନ ଉଡ଼ଥା ପ୍ରଜାପତିଟିଏ ଉଡ଼ି ଯାଉଁ ଯାଉଁ ରଙ୍ଗେ ।
କି ଭାବି ମନକୁ, ତାକୁ ଧରିବାକୁ, ଧାଉଁଥିଲେ ଅନୁରାଗେ ରେ । ୧ ।

ଯେବେ ସଖି ମେଳେ, ସ୍ନାନେ ଯିବା ବେଳେ, ଥିଲେ ସେ ତମାଳ ତଳେ
ତୋ ଚରଣଧୂଳି, କାହିଁପାଇଁ ବୋଳି ଦେଲେ ନିଜ ବକ୍ଷସ୍ଥଳେ ରେ । ୨ ।
ଯେବେ ସଖା ହାତ, ଧରି ରେ ସଙ୍ଗାତ, କି କଥା ପଚାରୁଥିଲେ ।
ମୋତେ ଦେଖି ଯେବେ, ନେତ୍ର ଅନଅନ ଭୁଲି ହୋଇ ରହିଗଲେ ରେ ।
ଲଳିତାଙ୍କ ବାଣୀ, ଶ୍ରୀ କିଶୋରୀ ଶୁଣି, ହେଲେ ଅତିହ ବାକୁଳ ।
ଦୁଃଖି ବେଣୁଧର ସଖୀ ଝିଅମାନେ ନିଞ୍ଚାଳେ ଚରଣ ତଳ ରେ, ସହି ।୪।

—୦—

# ପ୍ରେମାନୁରାଗ

## ରାଧା ଉକ୍ତି

( ରାଗ—ଯଥାରାଗ । ତାଳ ଝିପୃଠା )

ସହି ଗୋ ! କପରି ଧରିବି ଏ ଜୀବନ ?
କୃଷ୍ଣପ୍ରେମେ ଆଜନମୁଁ ହୋଇଛି ବନ୍ଧନ ଗୋ । ଘୋଷା ।
କରମ ଅଟକୁ ସିନା ଲଭୁଛି ଏତେ ଯାତନା,
ମୋ ନେତ୍ର ସମ୍ପତ୍ତି ଏକା ସେ ବଂଶୀ ବଦନ ଗୋ । ୧ ।
ଯିବାଘା ଘୁର ନଣନ୍ଦ ଶାଶୁଙ୍କ ଗଞ୍ଜଣା ପଦ,
ନ ଶୁଣି ମୁଁ ଶୁଣୁଥାଏ ସେହି ବଂଶୀସ୍ୱନ ଗୋ । ୨ ।
ତାଙ୍କ ଦରଶନ ଯେବେ ପ୍ରାଣ ଯାଉ ବୃନ୍ଦାବନେ,
ଲଭିବି ଆନ ଜନମେ ଶ୍ରୀ ବ୍ରଜମୋହନ ଗୋ । ୩ ।
ଆକୁଳ ହୃଦ ଏ ଖେଦ ଧୈର୍ଯ୍ୟଧର ଯିବୋଧନ
ବୋଲେ ବେଣୁଧର କୁଞ୍ଜେ ହୋଇବ ମିଳନ ଗେ । ୪ ।
( ନାଥ ହେ ! କାହିଁଅଛ ଯିଅ ଦରଶନ—ବୃତ୍ତେ )

—※—

( ରାଗ—ମଙ୍ଗଳଆସ୍ତ । ତାଳ—ଆଠତାଳୀ, ଝୁଲା )

ସଖି ! ଶୁଣ ମୋର ଗିର ।
ଘବରେ ଯିହ୍ୱଳ ଥାଏ ଯେତେବେଳେ,
ଦେଖା ଦିଅନ୍ତି ଚଉଦ୍ୱାର । ଘୋଷା ।
ଛଟକଣ କରି ଦର୍ଶନ ଦିଅନ୍ତେ,
ହୋନ୍ତି ଆଖି ଅଗୋଚର ଗୋ !
ପୁଣି ନ ଦେଖିଲେ ପରାଣ କାନ୍ଦଇ,
ଦୁଃଖ ବଢ଼େ ବଳାପୁର । ୧ ।

ଜଗତ ଜୀବନ    ସେ ମନମୋହନ,
ଲଗି ତ ସବୁ ଅନ୍ଧାର ଗୋ !
ତାଙ୍କ ବିନେ କେମନ୍ତେ    ବଞ୍ଚିବ ଏ ରାଧା
କହ କିବା ପ୍ରତିକାର । ୨ ।
ନ ସହଇ ଦିନ    ପ୍ରାଣବନ୍ଧୁ ବିନେ,
ନେତ୍ରୁ ବହେ ନୀର ଧାର ଗୋ ।
ଶୟନେ ସ୍ୱପନେ    କିବା ଜାଗରଣେ,
ଭାବନା ମୁରଲୀଧର ଗୋ । ୩ ।
ରସରାଜ ରୂପ    ନାଗରଙ୍କ ଭୂପ,
ମୋ କଣ୍ଠ-ରତନ ହାର ଗୋ ।
ବୋଲେ ବେଣୁଧର    ଆଗୋ ଧୀର ସ୍ୱୀର,
ସେ ତୋହର ତୁ ତାଙ୍କର ଗୋ । ୪ ।
( ହରି ତବ ଲଗି ଏତେ ସହ—ବୃନ୍ଦେ )



( ରାଗ—ଝିଣ୍ଟିଆଶ୍ୱା । ତାଳ—ଏକତାଳୀ )
ଶ୍ୟାମପ୍ରୀତି କଲି ମୋତେ ଏତେ ସହ ।
ଆଗୋ ସହଚରୀ ! । ଘୋଷା ।
ଯାହାପାଇଁ ମୋର ଏ ଦୁର୍ଦ୍ଦଶା,    ଜଗତେ ହେଲି ଉଦାସୀ ଦଶା
ଏ ଗୋପରେ କେତେ    ଯୁବତୀ ନ ଥାନ୍ତି,
କେ ଅଛି ଦୁଃଖିନୀ ମୋହରି ଗୋ । ୧ ।
ଯେଉଁଣେ ଗଲେ ତେଣେ ଅପବାଦ,    ଘୋଟିଆସେ କାହୁଁ ପରମାଦ,
କେତେ କାହା ଦାଉ    ସହୁଅଛି ଆଉ,
ଏ ଘଟେ ଥିର ଜୀବନ ଧରି । ୨ ।
ନଣନ୍ଦ ଗଞ୍ଜଣା ନିତି ନିତି,    ତା ଶୁଣି ପଥର କଲି ଛାତି,
ଶଙ୍କା-ଶତା ଜାଳ    ସଏ ହୃଦସ୍ଥଳ,
ସଭିଙ୍କି ବିନତି କରି କରି । ୩ ।
ରାଧାର ଲଲାଟେ ଥିଲି ଏହା    କାହିଁ ଯିବାକୁ ନ ଦିଶେ ରାହା,
ଯେ ଥିଲୁ ଯମୁନା—    ଘାଟ ହେଲା ମନା,
ସେ ଥିଲୁ ଗଲିଣି ସୁଖ ସରି । ୪ ।

ଲଳିତା ପ୍ରବୋଧି କହେ ବାଣୀ, ଏ ଚିନ୍ତା ହରିବେ ଚିନ୍ତାମଣି

ନ ହୁଅ ଦୁଃଖିନୀ ଆଗୋ ସନୋଦନ,

ବେଣୁଧର କହେ କର ଧଇ । ୫ ।

( ପାଶୋରିବାକୁ ଉପାୟ ଥିଲେ କହ—ବୁଝେ )

—O—

( ରାଗ—ମୋହନା । ତାଳ—ଝୁଲ )

ମୋହ ନାମଟା ! କାହିଁକି ଏ ଗୋପରେ ବସିଛୁ ହଟା ଗୋ । ଘୋଷା ।

କିଏ ନ ଯାଏ ସଖି ନିକୁଞ୍ଜଚୋଟା

କେ ନ ରୁହେଁ ତାକୁ ଯମୁନା ଲେଉଟା ଗୋ । ୧ ।

ମଥୁରା ହାଟକୁ ନ ଯାଏଁ କେଉଁଟା

ରାଧା ଲଲାଟ ମଟେ ଏ ହଟହଟ ଗୋ । ୨ ।

ବନ ନୋହିଲା ମନ ନଣନ ରଟା

ଅସହଣୀଙ୍କ ବାଣୀ କଳକଳଟା ଗୋ । ୩ ।

କେ କେତେ କରୁଥାନ୍ତି ମୋ ନାମେ ଥଟା

ଭଟାବୃରଫଣରେ ଲଗାନ୍ତି ବଟା ଗୋ । ୪ ।

କହଇ ବେଣୁଧର ଏମା କର୍ମ ଫଟା

ଏତକ ଭିଆଇଲେ ପାଲଟା ଗୋଟା ଗୋ । ୫ ।

( ରମାଇତନ, ଆଜତ ବିଶୁନାହିଁ କାଳ ଯତନ—ବୁଝେ )

—O—

( ରାଗ—ଆନନ୍ଦଭୈରବୀ । ତାଳ—ଖେମଟା, ଝୁଲା )

ଶ୍ୟାମବନ୍ଧୁଆ ଫାନ୍ଦକୁ ବର୍ତ୍ତିବ ଲୋ ।

ନାମ ଭଜ ଭଜ ପିନା ପଡ଼ିବ ଲୋ । ଘୋଷା ।

ଦୂରୁ ଭ୍ରୁରୁ ନଚାଇ ସେ କରଦେଲା ସାହା ।

ମୂରୁଛି ପାରିବ କେଉଁ କୁଳବନ୍ତ ତାହା । ୧ ।

ଭଲ ତା ବାଙ୍କଚାହାଁଣି ଛଟକ ଚାତୁରୀ ।

କଲ ହସ୍ୱ (ପତିବ୍ରତା) ଧୈର୍ଯ୍ୟକଟା ଦାଢ଼ ଆକୁରୀ । ୨ ।

ମନ ହାସ ଖଣ୍ଡ ସେହୁ ନନ୍ଦନନ୍ଦନର ।

କନ୍ଦପଣା ଠାରୁ ବଳି ଅହା କି ମଧୁର । ୩ ।

ଭଣେ ବେଣୁଧର ପଦନାପ୍ଲୁକ ସଜନୀ ।

ପାଶେ ଗୁଳପର ଥିବ ଦିବସ ରଜନୀ । ୪ ।

[ ମନ ପୀରତି କରିବୁ ନାହିଁ ସଖି !—ବୁଝେ ]

( ରାଗ – କାମୋଦୀ । ତାଳ – ଏକତାଳୀ )

ଲେଖାଥିଲ କ ଏହା କରମେ ଗୋ
ଲଭିବ ବୋଲି ଦୁଃଖ ମରମେ ଗୋ ॥
ଲଳିତ ଶ୍ୟାମକାନ୍ତ ନିକୁଞ୍ଜ ମାଳତୀ ଗାନ୍ଥି,
ପୀରତି ସରାଇଲ ସରମେ ଗୋ । ଘୋଷା ।
ଲତା ସଦନ ବୁଲି ଲଳନା ମନ ଭୁଲି,
କା ହୃଦମନ୍ଦିରେ ନ ଭରମେ ଗୋ ।
ଲଜ୍ଜା ପତିବରତ ଏଡ଼ି ତା ଫାନ୍ଦେ ମିତ,
ନ ପଡ଼ିଅଛି କେଉଁ ଭରମେ ଗୋ । ୧ ।
ଲଭାଇ ନାହିଁ କେବା ସେ ରସିକ ମଧବା,
ଉରେ ଉରଜ ଯୁଗ ଧରମେ ଗୋ ।
ଲଗାଇ ଏକା ମୋତେ କମ୍ପା କହନ୍ତି କେତେ,
ଅସହ୍ୱଣୀଏ ଥିଲ ଗରମେ ଗୋ । ୨ ।
ଲକ୍ଷ୍ମୀ ପାବଣ ରତ ହେଲେ ହେଁ ସେ ମୂରତ,
ପ୍ରୀତି ନ ଇଚ୍ଛିବେକ କରମେ ଗୋ ।
ଲଲାମ ଭୂଷା ମଣି ନ ମଣି କେ ତରୁଣୀ,
ଅରୁଣୀ ଅଛୁ ବ୍ରଜ ଗିରମେ ଗୋ । ୩ ।
ଲବଣୀ ସ୍ୱେର ଦନ୍ତୁ ଲେଖି ହସିଲେ କାହ୍ନୁ –
ଠାରେ କାହାର ଚିତ୍ତ ନରମେ ଗୋ ।।
ଲଙ୍ଘି ନାହିଁ ଦେହଳୀ କେଉଁ ଗୋପଗୁଆଳୀ,
ମତ୍ତ ନ ଦେଇ ଗୂଢ଼ କରମେ ଗୋ । ୪ ।
ଲୋଚନାନ୍ତରେ ତାଳ ନ ଶୁଣେଁ କେଉଁ ବାଳୀ,
ସେ ଜଗତ-ମୋହନ-ସୁରମ୍ୟେ ଗୋ ।
ଲଳିତା ବୋଲେ ଧୀର ନ ହଜ ଗୋ ଆରତ,
ବେଣୁଧର ସାକ୍ଷୀ ଏ କାରଣେ ଗୋ । ୫ ।

( ଯେନାଇଁ ଆମ୍ଭ ସେତେ କହିଲୁଁ ଗୋ—ବୃନ୍ଦେ )



( ରାଗ—ଚିନ୍ତା କେଦାର । ତାଳ ପହପଟ—ଏକତାଳୀ )

ସେହ୍ମ ଶ୍ୟାମ ଲଗି ହେଲି ଦୁଃଖ ଭାଗି କି କରିବ କହ ସଜନି ।
ଯେଣେ ଅନାଇଲେ, ତେଣେ ସେ ଦିଶିଲେ
ଭଳି ହେଲା ଦିବା ରଜନୀ । ପଦ ।
କି ହେଲା ସେ ମୋହନ ବାଂଶୀ, ଡାକେ ସର୍ବଦା କିଶୋରୀ କିଶୋରୀ,
ଏ ବ୍ରଜ ବଜାରେ ହସିଲେ ଉଗାର କୁଳେ ହୋଇଲି କଳଙ୍କିନୀ । ୧ ।
କେ ସ୍ମୃତ୍ତି ନାହିଁ ସେ କଳା ରୂପକୁ, ନ ଲଭୁଛୁ କେବା କାମ ଚାପକୁ,
ଏକା ମୋହନନାମେ ଅକାରିଁ ଘୋଷଣା ବାଜୁଛି ଏ ଗୋପେ କି ଯେନ ।୨।
ସେ ଶଠ ଲମ୍ପଟ କୁଞ୍ଜବିହାରୀ, କରିନାହିଁ କାହା ଚିତ୍ତକୁ ଦ୍ୱେଷ,
ମୋ ନାମେ ଲଗାଇ କେ କେତେ କହନ୍ତି ହେବ କାହାଠାରେ ଗ୍ଲାନି । ୩ ।
ଏହ୍ମି ଚିନ୍ତାରେ ମୋ ହୃଦୟ ଜଳେ, ଲେଖାଥିଲା ଏହା ବିଧି କପାଳେ,
ସହଚରୀ ଭଣି ନ କର ଭାବେଣି ବେଣୁଧର କରେ ଦଇନ । ୪ ।
[ ବ୍ରଜରାଜସୁତ ଫାନ୍ଦେ ପଡ଼ି ମିତ—ପ୍ରଭ ]

—o—

(ରାଗିଣୀ—ହରିପ୍ରିୟା । ତାଳ ଆଡ଼ ଖେମଟା)

ସେ ମୋହନେ ପ୍ରୀତିକରି, ସଖି ସିନା ହେଲି ଏତେସ୍ୱର । ଘୋଷା ।
ପୋଡ଼ୁ ଏ କପାଳ ଦଶା, ହେଲି ଯା ଉଗାର ହସା,
ନିନ୍ଦା ଅପବାଦରେ ମୁଁ ଗଲି ସରି । ୧ ।
କେ ଜାଣିଥିଲା ଏପରି, କରିବେ ବୋଲି ଶ୍ରୀହରି,
ଦିନ ସରୁନାହିଁ ମିତ ଡରି ଡରି । ୨ ।
ଏ ବ୍ରଜ ବଜାର ଯାକ, ବାଜେ ଅକାରିଁ ଟମକ,
ନିରନ୍ତରେ ନେତ୍ରୁ ବହେ ଅଶ୍ରୁ ବାରି । ୩ ।
କହି ବେଣୁଧର ଭଣି, ଦୁଷ୍ଟ ଭାଷେ ପ୍ରୀତିବାଣୀ
ହେ ଟି ଅଇଲେଣି—ସେ ମୁରଲୀଧାରୀ । ୪ ।
( ସେ ନବ କିଶୋରୀମଣି — ବୃତ୍ତ )

—o—

( ରାଗ — ବରାଡ଼ି । ତାଳ — ଏକତାଳୀ )

ପ୍ରାଣ ସଙ୍ଗିନୀରେ କହ କେଉଁ ବୁଦ୍ଧି କରିବ ।
ଶ୍ୟାମବନ୍ଧୁ ଲାଗି ସଖିରେ ଝୁରି ଝୁରି ମରିବ । ଘୋଷା ।
ଯେଣିକି ଚାହିଁଲେ ତହିଁ, ଦିଶିଲେ ନନ୍ଦ କହ୍ନାଇ,
ଏଥିପାଇଁ କେତେ ମୁହିଁ କାହା କର ଧରିବ । ୧ ।

କରମେ ଥିଲା ଏ ଦଶା, ହୋଇଲି ଉଗାର ଦଶା,
ଯେଣେ ଗଲେ କଣ୍ଠଭୂଷା କେତେ ଧୈର୍ଯ୍ୟ ଧରିବ । ୨ ।
ପିବାକୁ ହେଲେ ଯମୁନା, ଜାତ ପାଠକରେ ମନା,
କେତେ ସହିବ ଯାତନା ଏ ଲାଗି ମୁଁ ମରିବ । ୩ ।
ବୋଲେ ଦୀନ ବେଣୁଧର, ଶ୍ୟାମ ପ୍ରୀତିକ ସୁନ୍ଦର
ଏଣିକ ଗୋଳ ଜହର ମୁଖେ ପିନା ଭରିବ । ୪ ।
( ପ୍ରାଣ ସଙ୍ଗିନୀ କାଲି ମୁଁ କ ଲାଜ ବୁଡ଼ିଲି—ପ୍ରତି )

—o—

( ରାଗ ମଙ୍ଗଳ—ତାଳ ତ୍ରିପୁଟା )

କୃଷ୍ଣ ମୋର ଦେହ ସଖି କୃଷ୍ଣ ମୋ ଜୀବନ ।
କୃଷ୍ଣ ମୋର କୁଳଶୀଳ କୃଷ୍ଣ ମୋର ମନ । ୧ ।
କୃଷ୍ଣ ମୋର ଚିତ୍ତ ସତ୍ତ୍ୱ କୃଷ୍ଣ ମୋର ପତି ।
କୃଷ୍ଣ ମୋ ସର୍ବସ୍ୱଧନ କୃଷ୍ଣ ମୋର ମତି । ୨ ।
କୃଷ୍ଣ ମୋର ଜ୍ଞାନ ଧ୍ୟାନ ମୋ କୃଷ୍ଣ ଜୀବକା ।
କୃଷ୍ଣ ଛନ୍ଦାଚରଣରେ ଏ ପରାଣ ବିକା । ୩ ।
କୃଷ୍ଣ କଳଙ୍କିନୀ ନାମ ମୋତେ ତ ସୁନ୍ଦର ।
କୃଷ୍ଣ ଦାସୀ ବୋଲି ଅଭିମାନ ପିନା ମୋର ଗୋ । ୪ ।
କୃଷ୍ଣ ପଦ ବନ୍ଧୁ ସଖି ପାଇବି କି ଆଜ ।
କୃଷ୍ଣ କୃଷ୍ଣ ବୋଲି ବେଣୁଧର ଜୀବ ଯାଉ । ୫ ।
( ଜୟ ଜୟ ଶ୍ରୀଗୁରୁ ଶ୍ରୀ ଚରଣାରବିନ୍ଦ—ବୃତ୍ତେ )

—o—

## ରାଧା ଉକ୍ତି

( ରାଗ ନାଟ କେଦାର—ତାଳ ଝୁଲା )

କାଳିଆ ଲାଗି ପିନା ସହୁଛି ମୁହିଁ ଗୋ ପରାଣ ସଖି । ଘୋଷା ।
ମାଳୀ କରିଛି ବୋଲି କୃଷ୍ଣର ଗୁଣ ।
କାଳ କେ ଗୋପରେ ନ ଜାଣେ ପୁଣ ଗୋ । ୧ ।
ଝୁରୁଛି ମନ ବୋଲି ମୋହନ ରୂପ ।
ତାଳ ମାତ୍ର ହସନ୍ତି କେ କେତେରୂପ ଗୋ । ୨ ।
କଳା ଲାଗିଲା ବୋଲି ମୋହର କୂଳେ ।
ଗାଳି ଭୁଲେ ଜଉଣି ବେଷ ଗୋକୁଳେ ଗୋ । ୩ ।

ଫାଳଆ ମୁଣ୍ଡି ସେ କୁଟିଳା ବାଉଳୀ ।
ଗାଳ ମେଲଉ କେତେ ତଗତମାନ ଗୋ । ୪ ।
ଜାଳ କୁଳାଭମାନ କୃଷ୍ଣ ଭଜଲ ।
ଆଳ ଯା ବେଳକୁ ଏ ନନ୍ଦା ଅର୍ଜିଲ ଗୋ । ୫ ।
ବାଳକା ବନ୍ଧୁ ଭୁ ତ ସାଥି ମୋହନ ।
ଷାଳ ଥିଲ ଭ ନେତ୍ର କେବେ ଏପର ଗୋ । ୬ ।
ଓାଳ ଚନ୍ଦ୍ର ମୁକୁଟ ନ କଲେ କବା ।
ଭ୍ୱଳ ହୋଇଲ ବସି ରଜମା ଦବା ଗୋ । ୭ ।
ଥାଳ ଘେନ ବାହାରୁ ଇବ ପୂଜାକୁ ।
ନାଳସ୍ୱ କଥା କେତେ ଆସେ କାହାକୁ ଗୋ । ୮ ।
( ସ୍ୱପନେ ଦେଖିଲ ଗୋ ମୁରଲୀପାଣି — ବୃତ୍ତେ )

— o —

## ରାଧା ଉକ୍ତି

( ରାଗ ତୋଡ଼ି ପରଜ । ତାଳ — ଆଡ଼ତାଳୀ )

କାହିଁ ପାଇଁକ ଗୋ ବସିଛୁ ଏ ଦୂର ବଟା ।
ସାହ୍ୱକ ସାହ୍ୱ ମାଁ, ଯହିଁ ଦେଖ ମୋ ନା, ବସ୍ୱର ପଡ଼େ ଭୁଛାଟା । ଘୋଷା ।
କେତେ ଭ୍ରଆଗୁଣୀ ଏ ଗୋପେ ନାହାନ୍ତ କେ ନ ବୁଲେ କୁଞ୍ଜଲଟା ?
କେଉଁ କୁଳବଣ୍ଟ ଅଙ୍ଗକୁ ମୋହନ ମାରନାହିଁ ଆଖି ଛଟା ? । ୧ ।
କେଉଁ ଘଟଟା ଗୋ ସଦନ୍ତେ କହବ ଲଗି ନାହିଁ ବୋଲ ଘଟା ?
କା ହୃଦ ପଥର ଦ୍ରବ ନ ଯାଇଟି ରହିଅଛୁ ହୋଇ ଗୋଟା । । ୨ ।
କେଉଁ ସୁନ୍ଦରଟା ଲେଖି ନ ଦେଇଛୁ ଶ୍ୟାମକୁ ତା ପ୍ରୀତି ପଟା ?
କାହାଠାରେ ଭଲ ନ ଲଗି ଯାଇଛୁ ମୋହନ-ମନ୍ତ୍ରର ଝଠା । ୩ ।
କେଉଁ ଗୁଆଁଳୀଟା ଗରବେ କହବ କହୁ ଅସି ମୋ ଆଗଟା । ।
ବୋଲେ ବେଣୁଧର ଗ୍ରହିଁନାହିଁ ବୋଲ ତାକୁ ଯମୁନା କେଉଟା । ୪ ।
( କଣା ପଡ଼ଲ ରେ କଣା ମୃଗାକ୍ଷୀ ତୋର ଗୁଲି — ବୃତ୍ତେ )

—❀—

( ରାଗ — ଯାନଭୂପାଳ । ତାଳ — ଅଡ଼ଖେମଟା )

ଭ୍ୱଳ ଭ୍ୱଳ ଘନ ମୋର ଅସରନ୍ତ ହେଲଣି ।
ଟାଳ ଟାଳ ନେତ୍ର ନୀର ଧାର ତନ୍ତ ଗଲଣି । ଘୋଷା ।
ପାଳଥିଲ ପ୍ରେମ ପ୍ରୀତି କାମନାକୁ ନ ମାନ ।
ଆଜ ମୋର କପାଳରେ କ ଅଛୁ ବା କେଜାଣି । ୧ ।

ଭାଳିଆ କାଳିଆ ହୋଇ ଗାବଯାଉ ସଜନୀ ।
ଗାଳ ସହିବ ମୁଁ କେତେ ବୋଲଉ କଳଙ୍କିନୀ । ୨ ।
ଜାଳ ଦେ‌ଲ ମୋ ହୃଦକୁ ଚନ୍ଦ୍ରାନନେ ସେ ପୁଣି ।
ଚାଳ ମାର ହସିଲେ ଏ ବ୍ରଜେ ବ୍ରଜକାମିନୀ । ୩ ।
ମାଳ କର ତାଙ୍କ ନାମ ଜପି ହେବା ଭଜନୀ ।
ଘଳ ବେଣୁଧର ଗାବ ଯାଉ ଆଲୋ ସଙ୍ଗିନ । ୪ ।
( କାଢ କାଢି ଆଖି ପାଣି—ବୃତ୍ତେ )

—*—

( ରାଗ—ରସକେଳି । ତାଳ—ଖେମଟା )
ଆଜ କାହ୍ନିକ ସହି ! ଯିବ ଘର ଆଣି ଗୋ ।
(ସବୁ) ସୁଖ ସରିଲାଣି । ଘୋଷା ।
ପ୍ରାଣୁ ଅଧିକ ବୋଲି, ଯାହାକୁ ମଣିଥିଲି,
ମନୁ ପାଶୋରିଲଣି ସେ ମୁରଲୀ ପାଣି ଗୋ । ୧ ।
ଯାହା ଗୋ କଲେ ସେହି, ମୁଁ ବୋଲି ଅଛି ସହି,
ଘଳ କମିଲେ ମୋର ହୃଦ ହୁଏ ହାଣି ଗୋ । ୨ ।
ଲମ୍ପଟ ଦଗାଦାର, କପଟ ଏତେ ତାର,
ଏପରି ହେବ ବୋଲି ନ ଥିଲି ମୁଁ ଜାଣି ଗୋ । ୩ ।
କହିଲେ କସ ହେବ, ଯାହା କରମେ ଥିବ,
ଘୁଞ୍ଚିବ ନାହିଁ ଆଉ ସେ ବିଭଙ୍ଗି ଠାଣି ଗୋ । ୪ ।
ବଦତି କବି ଇନ୍ଦୁ, ନ ଚେତ ପ୍ରାଣବନ୍ଧୁ,
ଯେ ଯେତେ କହୁଥାନ୍ତୁ ଛଳନା କାହାଣି ଗୋ । ୫ ।
[ ଯମୁନା ଯିବ ନାହିଁ—ବୃତ୍ତେ ]

—o—

( ରାଗ—ସାରଙ୍ଗ । ତାଳ—ଦୋପଡି ଖେମଟା )
ମନ ମୋହିନୀମାଁ ବଦନ ଛବି ଘୁଞ୍ଚି ନାହିଁ ଲୋ ।
କଳଙ୍କିନୀ ବୋଲି କହନ୍ତି ମୋତେ କାହିଁପାଇଁ ଲୋ । ଘୋଷା ।
ସଖୀ ହୋଇ କେହି ରହିଛ ଗୋପରେ ।
ଅପବାଦ ଯାକ ଡାଳନ୍ତି ମୋ ପରେ ।
କାଏ ଅବା କେତେ ଯମୁନା ଜଳେ ଯାଉନାହିଁ ଲୋ । ୧ ।

ଗୁରୁ ଗୁରୁଜନ ଗଞ୍ଜଣା ଭର୍ତ୍ସନା ।
ସହି ସହି ସୁନା ଦେହ କଲି ଚୂନା ।
କେଉଁ ଅପରାଧ କରିଛୁ କାହାଠାରେ ମୁହିଁ ଲୋ । ୨ ।
ଲୁଚ୍ଛା ଅପବାଦେ ବଜାର କମ୍ପଇ ।
ଭଲ ମୋର ଦିନ ସରୁ ନାହିଁ ।
ଶାଶୁ ନଣନ୍ଦକୁ ଡର ଦେଇ ଥରୁଥାଇ ଲୋ । ୩ ।
କାହାକୁ କହିବି ମରମ ବେଦନା ।
ଯାକୁ କରି ମୋ ଧେ ଦେଲି ଯାତନା ।
ବେଣୁଧର ବୋଲେ ତବ ଗଳାହାର ସେ କହ୍ନାଇଁ ଲୋ । ୪ ।



( ରାଗ—ରେଗୁପ୍ତ । ତାଳ—ଆଠତାଳ )
ନନ୍ଦସୁତ ଫାନ୍ଦେ ପଡ଼ି ସଂସାରୁ ସରିଲି ସଖି ।
ଶ୍ୟାମ ପ୍ରୀତି ମନ୍ଦ ବୋଲି ଜାଣିତ ନ ଥିଲି ସଖି । ଘୋଷା ।
କେତେ ଅପବାଦ ସହି — ରହିଲଟି ପ୍ରିୟସହି !
ହୃଦୟବେଦନା କିଏ ଜାଣିବ ମୋ ଦଶା ଦେଖି । ୧ ।
ନ ଦେଖିଲେ ତାଙ୍କୁ ଥରେ ଝୁରି ମରେ ନିରନ୍ତରେ
ଦେଖିଲେ କିଆଁ ତାଠାରେ ମନ ପ୍ରାଣ ଯାଏ ଲାଖି । ୨ ।
ଯମୁନାକୁ ଯିବାପାଇଁ ଆକଟ ହୁଏ କିପାଇଁ
ମନ୍ଦ କରମରେ ବିହି ଏହା ନିକି ଥିଲା ଲେଖି । ୩ ।
ଯାହା ଇଚ୍ଛା ତାହା ହେଉ ଜାତି କୂଳ ପଛେ ଯାଉ
ବେଣୁଧର ବୋଲେ ଆଉ ନ ପାରେ ତାଙ୍କୁ ଉପେକ୍ଷି । ୪ ।
( ମନାଇଁ ପାରିଲୁ ନାହିଁ ସେ ନନ୍ଦ କହ୍ନାଇକି—ପ୍ରଭୃ )



[ ରାଗ—କୁମ୍ଭକେଦାର । ତାଳ—ଝମ୍ପା ]
କେତେ କେତେ କଥାମାନ ସହୁଛି ଲୋ ସଜନୀ । !
ଏତେ ହଟହଟାକୁ ମୁଁ ପାଶ ହେବି କି ସେନି । ଘୋଷା ।
ପର କୁହା କୁବଚନ ଦହି ପକାଏ ମରମ
କର କପାଳେ ନିବେଶି ଥାଇ ହବା ରଜନୀ । ୧ ।
ଏ ଗୋପ କଟକ ଯାକ ବାଜିଲା ଢଙ୍କାରି ଟମକ
କେ ବଶୀଭୂତ ନୋହିଛି ଶୁଣି ଶ୍ୟାମ ବଂଶୀ ଧ୍ୱନି । ୨ ।

ଚଟିଗ ଯମୁନା ତଟ      କେ ଅବା ନୋହିଛୁ ଭେଟ
ରଟିଲେ ଡଗାର ରାଧା ହେଲା ବୋଲି କଳଙ୍କିନୀ । ୩ ।
ଯାତନା ସହିବ କେତେ      କହିଲି ତୋହ ଅଗ୍ରେତ
ବେଣୁଧର ବୋଲେ ପ୍ରବୋଧଇ ଲଳିତା ସଙ୍ଗିନୀ । ୪ ।
( ମନାଇଁ ପାରିଲୁ ନାହିଁ କହ୍ନାଇଙ୍କି—ବୃନ୍ଦେ )

—*—

( ରାଗ—ପ୍ରବେଶ । ତାଳ—ଆଠତାଳୀ )
ସହଚରି ! କହ କି କରିବି ଶ୍ୟାମ ଲାଗି କହ ଗୋ, । ସହଚରିଘୋଷା ।
ସେ ନଟନାଗର କପଟ ପ୍ରୀତିରେ      ଚଢ଼ି ପଡ଼ିଗଲିଣି ମୁଁ ଅପକୀର୍ତ୍ତିରେ
ହାଟ ବସିଲାଣି ପାଟକ ଜାତିରେ ହସିଲେଣିଟି ଉଥାରି ଗୋ । ୧ ।
ନିରନ୍ତରେ ଶାଶୂ ନଣନ୍ଦ ଗଞ୍ଜଣା      ବ୍ରଜେ ବାଜେ ଅପକୀରତି ବାଜଣା
ପୂର୍ବରୁ ସଖି ନ ଗଲି ମୋତେ ଜଣା ହେବ ବୋଲି ଏତେ ସରି ଗୋ । ୨ ।
ଭାଳି ଭାଳି ଆଳି ଘରେ ମୋ ମନ      ଦିନୁଦିନୁ ତନୁ ହୋଇଲାଣି କ୍ଷୀଣ
ମନ ବନ୍ଧି ଲଜ୍ଜି ଥିଲି କି ଏମାନ କଉତୁମିକି ମୋହଇ ଗୋ । ୩
ରଣପୁର ମହାମଣ୍ଡଳ ଈଶ୍ୱର      ଭଣନ୍ତି ଶ୍ରୀ ବୀରବର ବଜ୍ରଧର
କୃଷ୍ଣଚନ୍ଦ୍ର ନରକୁଳ ପୁରନ୍ଦର ଶ୍ରୀମନ୍ତଙ୍କି ବୋଧକରି ଥୋ । ୪ ।
( ବଂଶୀଧାରୀ ! ଅରପିବନ ଜୀବନେ କଟୋସ୍ୱ—ବୃନ୍ଦେ )

—*—

( ରାଗ—ବସକଦମ୍ବ । ତାଳ—ଝୁଲା )
ପ୍ରାଣ ହାରିବି ଗୋ କାଳିଆ ଲାଗି ।
ତା ପ୍ରୀତି ଫାନ୍ଦେ ପଡ଼ି ସଡ଼ି ଗଲା ଜୀବନସଙ୍ଗ । ପଦ ।
ଯମୁନାକୁ ଗଲେ ମିତ      ଯଦ୍ଭା କହି ନନ୍ଦସୁତ
ସାରିବ ବୋଲି ମହତ ବସିଥାଇ ଘାଟ ଜଗି । ୧
ଲମ୍ପଟିମାନଙ୍କ ଗୁରୁ      ଦେଖିଲେ ସେ ଯେବେ ଦୂରୁ
କି ରଙ୍ଗେ ନଚ୍ଚାଇ ଭୁରୁ କରୁଥାଇ କେତେ ଭଙ୍ଗି । ୨ ।
ନୋହୁଛି ବୋଲି ସନ୍ତତ      ଏ ବ୍ରଜ ବଜାରେ ଖ୍ୟାତ
ହେଉଛି ମୋ ନାମେ ମୁଁ ତ ନୁହେଁ ପୀରତି ସୁଆଗୀ । ୩ ।
ଏସନ ମତ ହରସେ      କଟୋସ୍ୱ ଦୁଷ୍ଟଙ୍କ ସଙ୍ଗେ
ବେଣୁଧର ବୋଲଇ ସେ ପଙ୍କଜ ପଦେ ଓଲଗି । ୪ ।
( ମୋତେ ସେହି ରୂପ ଦେଖାଅ ହରି—ବୃନ୍ଦେ )

—○—

## ରାଧା ଉକ୍ତି

( ରାଗ—ଭଟିଆରୀ । ତାଳ—ଏକତାଳୀ )

ପ୍ରାଣ ମିତଣୀ ରେ ! ମୋହପର ଦୁଃଖୀ କାହିଁ ନାହିଁ ଜଣେ ।
ମୁଁ ତ କପର ବଞ୍ଚିବ କହ ଶୁଣେ । ଘୋଷା ।
ଅତି ପରପଞ୍ଚ ମୋ ନଣନ୍ଦ  ନରଚେ ମୋ ଭୁଲେ କଲି ବାଦ
ସତ ମିଛ କରି କଥାମାନ କହେ ତାଙ୍କୁ ଯେଉଁଠା ଅପସନ୍ଦ । ୧ ।
ଗଲେ ଫୁଲ ତୋଳି ବୃନ୍ଦାବନେ  ଜଗି ବସିଥାଏ ସେ ଅପ୍ୟନେ
ଯମୁନା ପାଣିକି ଯାନ୍ତେ ଆଣେ ଝିଙ୍କି ନାନା କୁଟ କଟୁ କୁବଚନେ । ୨ ।
ଦିନେ କାଳେ ହେଲେ କ ସହିବ ?  ଏଥିପାଇଁ ପ୍ରାଣ ହରାଇବ
ଏ ବନୁ ମୋହର ଆନ ପ୍ରତିକାର ଦିଶୁନାହିଁ ସହି ! କ କରିବ ? ! ୩ ।
ରାଧା ବାଧା ବାଣୀ ଦୂତ ଶୁଣି  ଭାଷନ୍ତି ଧୀରେ ପ୍ରବୋଧି ପୁଣି
ନୁହ ଗୋ ଦୁଃଖିତା ବୃଷଭାନୁ ସୁତା ଏ ଚନ୍ତା ଫେଡ଼ିବେ ଚନ୍ତାମଣି । ୪ ।
ଏବେ କହି ଦେଇ ମାରଧାର  ପୋଛିଲେ ପଣନ୍ତେ ସଖୀବାର
କହେ ବେଣୁଧର ବ୍ରଜ ଦେବୀଙ୍କର ଯୁଗଳ ପଦ୍ମରେ ଆଶା ମୋର । ୫ ।
( ଶ୍ୟାମବନ୍ଧୁ ପରି କେହି ଦିଶୁନାହିଁ—ବୃତ୍ତେ )

—❀—

( ରାଗ—ପରଜ—ତାଳ—ଅଠତାଳୀ )

ଶ୍ୟାମ ସଙ୍ଗ ରଙ୍ଗ ମୋର ଭଙ୍ଗ ନୋହୁ ଗୋ ।
ନାମ ଜପି ଜପି ତାର ଏ ଜୀବ ଯାଉ ଗୋ । ଘୋଷା ।
କାମ ମୋହନ ମୂରତି  ଦିନା କେବା ଆନ ଗତି
ତା ତାମରସ ପଦେ ମୋ ମତି ଥାଉ ଗୋ । ୧ ।
ରାମ ଅନୁଜଙ୍କ ଗୁଣ  ଗୁଣି ଗୁଣି ନଶିଦିନ
ରାଧା ଜୀବ ଯିବା—ଶୁଭ ପାଞ୍ଚଥାଉ ଗୋ । ୨ ।
ଗ୍ରାମ ପାଟଣା ସହିତେ  ଏ ଗୋପ ନଗରେ କେତେ
ଅକାରି ହାଟ ବସିବ ବସି ଯାଉ ଗୋ । ୩ ।
ଚହିଁକ ନାହିଁ ମୋ ଛଳ  ମୋର ସର୍ବସ୍ୱ କେବଳ
ସୁନ୍ଦର ନନ୍ଦର ସୁତ ବଂଶୀ ବାହୁ ଗୋ । ୪ ।
ବେଣୁଧର ବୋଲେ ସତ  କହିଲ ଶୁଣୁ ଦୁହିତ
ଏ ସୁଭାଗ୍ୟ ଅନ୍ୟକୁ ମିଳବ କାହୁଁ ଗୋ । ୫ ।
( କେ ମୁରଲୀ ବଜାଉଛି ବୃନ୍ଦାବନେ ଗୋ—ବୃତ୍ତେ )

—୦—

( ରାଗ—ତାଳ—ଛପକା )

ଆହା ସେ କାଳିଆ କଥା କେଡ଼େ କର୍ଣ୍ଣ ପ୍ରିୟ ଗୋ ।
କି ମଧୁର ମୁରତିଟି ମଞ୍ଜୁ ମୃଦୁମୟ ଗୋ । ୦ ।
ଅଳି ଭଳି ଜୀବ ଯିବ କାଳିଆ ପିରତି ଥିବ
ମାଳି କରି ଜପୁଥିବ ତା ନାମ ନିଶ୍ଚୟ ଗୋ । ୧ ।
କାଳିଆ କୁଳ କଳଙ୍କା ଯୁବତୀ ଧଇର୍ଯ୍ୟ ରଙ୍କା
ଟିକିଏ ରହିଛି ବଙ୍କା ଚୁହାଁଣୀରେ ଲୟ ଗୋ । ୨ ।
କାଳିଆ ସ୍ନେହ ମୁଁ ଜାଣା ପରସ୍ତ୍ରୀ ଜଣେ ସିନା
ଲମ୍ପଟ କାଳିଆ ବିନା କି ହୁଏ ହୃଦୟ ଗୋ । ୩ ।
କାଳିଆ ପଦକୁ ଭାବ କହେ ବେଣୁଧର କବି
କାଳିଆ ବିନା ମୋ ଅନ୍ୟ ନାହିଁଟି ଆଶ୍ରୟ ଗୋ । ୪ ।
( ମନାଇ ପାରିଲୁ ନାହିଁ ସେ ନନ୍ଦ କହ୍ନାଇକି—ବୃନ୍ଦେ )

—୦—

( ରାଗ—ମଙ୍ଗଳ ଗୁଜ୍ଜରୀ । ତାଳ—ତ୍ରିପୁଟା )

କି କହିବି ସଜନି ଗୋ ମୋର ମନ କଥା ।
ଶ୍ୟାମବନ୍ଧୁ ଲାଗି ସହେ ଏ ଦାରୁଣ ବ୍ୟଥା ଗୋ । ୧ ।
କି ମନ୍ତ୍ର କରିଛି ମୋତେ ସେ କଳା କହ୍ନାଇ ।
ତାର ଗୁଣ ଗୁଣି ହେବା ନିଶି ନ ସରଇ ଗୋ । ୨ ।
ସେ ଯେଉଁ ତ୍ରିଭଙ୍ଗ ଠାଣି ନାଚେ ମୋ ନୟନେ ।
ମନ ପ୍ରାଣ ସମର୍ପିଛି ତା ପଦ ନଳିନେ ଗୋ । ୩ ।
ଏକା ଚିନ୍ତାମଣି ଚିନ୍ତା ହୃଦେ କଲି ଘର ।
କ୍ଷଣେ ଶୂନ୍ୟ ନୋହେ ସଖି ନେତ୍ର ନୀର ଧାର । ୪ ।
ଅବୋଧ ଚିତ୍ତକୁ କେତେ କରି ବୁଝାଇଲି ।
ପ୍ରବୋଧ ନ ମାନି ଝୁରେ ଶ୍ୟାମ ଶ୍ୟାମ ବୋଲି ଗୋ । ୫ ।
ନିର୍ଲଜ ଶ୍ରବଣେ ଘାତ ଚତୁର୍ଗୁଣ ଗୋ ଅଧିକ ।
ଶ୍ୟାମ ବଂଶୀ ସ୍ୱନକୁ ତ ହେବା ହେଲି ରଙ୍କ ଗୋ । ୬ ।
କୁଳ ଶୀଳ ଲଜ୍ଜ ଭୟ ମୁଁ ସବୁ ଛାଡ଼ିଛି ।
ଲୋକ ନିନ୍ଦା ପସରାକୁ ମସ୍ତକ ଆଡ଼ିଛି । ଗୋ । ୭ ।
ଯେ ଯାହା କହନ୍ତୁ ନାହିଁ ସେଥିକି ଶୋଚନା ।
ଜୀବନ ସଙ୍ଖାଳି ମୋର ସେ କାଳିଆ ସୁନା ଗୋ । ୮ ।

ମରମ କହିଲ ସଖି ! ହୃଦୟ ଫିଟାଇ ।
ଶ୍ୟାମ ବିନେ ପ୍ରାଣ ଧରି ରହି ନ ପାରଇ ଗୋ । ୯ ।
ପ୍ରେମ କୁଟିଳତା ଖଣ୍ଡ ଅତି ଚମତ୍କାର ।
ଛଡ଼ାଇଲେ ଛାଡ଼ିବ କି ବୋଲେ ବେଣୁଧର ଗୋ । ୧୦ ।
( ଏକଜାଲା ଘର ହେଲା ଆରକ୍ଷାଲା କାହ୍ନୁ—କାହ୍ନୁ )

—୦—

## ରାଧା ଉକ୍ତି

( ରାଗ—ତୋଡ଼ି ପରଜ । ତାଳ ଆଠତାଳି )

ମାନନ୍ତ ତୋ ଶିକ୍ଷାବାଣୀ ଗୋ, ପ୍ରିୟସହି !
ଧ୍ୟାନ କରେ ଯେବେ ଲଗାଇ ପାରନ୍ତୁ କୃଷ୍ଣକଥା ଛଇ ଠାଣି ଗୋ । ଘୋଷା ।
କାନନ ବିହାରୀ, କାନରେ ମୋହନି, ଦେଇଛି ମୁରଲୀ ଦୀକ୍ଷା ଗୋ ।
ପାନ କରି ସେହି, ଗାନ ପୀୟୁଷକୁ, ଛାଡ଼ିଛି ଜନ ଅପେକ୍ଷା ଗୋ । ୧ ।
ଯା ନବ ନୀରଦ, କାନ୍ତି ଆହ୍ଲାଦ, ମାନସେ ଦେଖିଛି ଆଖି ଗୋ ।
ତା ନ ପାରେ ମୁର୍ଚ୍ଛି, ମାନତ ବଳଛି, ସାନ ହନୁ ଶ୍ୟାମ ସାଖି ଗୋ । ୨ ।
ଦାନ କରି ଶତ୍ରୁ, ମୋ ମାନ ମହତ, କୁଳ ଅଭିମାନ ଶ୍ୟାମେ ଗୋ ।
ଆନ କେ ନ ରୁଚେ, ଥାନ ନ ଲାଗେ ପଛେ, ନ ବିଅନ୍ତୁ ଗୋପ ଗ୍ରାମେ ଗୋ ।
ଧ୍ୟାନ ଏକା ପରମାନନ୍ଦ ମୋହରି, ଅନବରତରେ ଜାଣ ଗୋ ।
ସମ ମାନେ ଲତା, ବିତାନରେ ଟି ତା ଭୁଲେ ମାତି ଯାଉ ପ୍ରାଣ ଗୋ । ୪ ।
ବରଜ ନେହୀଙ୍କ ମନ ଜାଣି ଦୂତୀ ହସିଲା ହୋଇ ହରଷିଲେ ଗୋ ।
ଧନ୍ୟ ରେ ଯଶୋଦା, ତୋର ପୁତ୍ର ଶିଖା, ଗାଇ ବେଣୁଧର ବୋଲେ ଗୋ
( ଯାହା ଇଚ୍ଛା ତାହା ହେଉ ଗୋ, ପ୍ରିୟସହି ! —କୃଷ୍ଣେ )

—❋—

( ରାଗ—ଖାରବାଣୀ । ତାଳ—ଆଠତାଳି )

ଚାହିଁ ଘରକୁ ଗୋ ନାହିଁ ମୋ ଉପୁ ତ ।
ଟାଙ୍ଗଣା ପରି ଝଳଛି ତାଠାରେ ମୋ ଚିତ୍ତ ! ଘୋଷା ।
ଟାଣି ନ ଥିଲେ ପୀରତି ତୋରେ ନନ୍ଦସୁତ ।
ଟପିଥାନ୍ତି କି ଦୁଆର କହ ପ୍ରାଣମିତ ! । ୧ ।
ଟସ୍କର ପଣେ ଏକାକୀ କେଣେ ବଂଶୀ ହାତ ।
ଟାକ ଥାନ୍ତି ମାଘ ମୂଳେ ମୋ ଦେଖାକୁ ସେତ । ୨ ।

ଝାଣ ଖୁଣ୍ଟା ଉଡୁ ଗୋଟେ ଖାଉର ନାହିଁ ତ ।
ଝୋପି ଚନ୍ଦନ ପାଟିଆ ମୋ ନୟନ ହଉ । ୩ ।
ଝିକେ ରଖିନାହିଁ ଲାଜ ବଡ଼ାଇ ମହତ ।
ଝାଳ ଦେଇଛୁ ମୋ ଅଭିମାନ ପରବତ । ୪ ।
ଝମକ ବାଜିଲେ ବାଜୁ ପଡ଼େ ହି ଜଗତ ।
ଝାଉଁଆ ଝୁଲ ମୋ ସବୁ କବି ଚନ୍ଦ୍ର ଗୀତ । ୫ ।
( ଜଣା ପଡ଼ିଲୁ ମାଁ ଏ କପଟ ଗୀର—ବୃତ୍ତେ )

—o—

( ରାଗ—କଲସା । ତାଳ ଝମ୍ପା )

ମରମ ବ୍ୟଥାଟି ମୋର କା ଆଗେ କହିବି ଗୋ ।
କେ ଜାଣିବ ମୋର ଦୁଃଖ ଆଗେ । ବନ ଦେବୀ ଗୋ । ୧ ।
ଝୁରି ଝୁରି କାନ୍ଦେ ମୋର ପରାଣ ପିଞ୍ଜୁଳ ଗୋ ।
ବୋଲାଇଲ କଳଙ୍କିନୀ କେ ଅଛୁ ମୋ ଭଲ ଗୋ । ୨ ।
ଅକ୍ଷରେ ଲେଖିଛୁ ମୋର ହୃଦୟ ଭିତରେ ଗୋ ।
କୁ ବୋଲି ଉଚ୍ଛାର ଆଜ ଉଚ୍ଛାର ନ ପାରେ ଗୋ । ୩ ।
ନିରବଧି ଧାର ହେଲା ନେତ୍ରୁ ବହେ ପାଣି ଗୋ ।
ଦାରୁଣ ଦଇବ ଦେଲା କେତେ ଚିନ୍ତା ଆଣି ଗୋ । ୪ ।
ମନ କଥା ମନେ ମାରି ବଞ୍ଚୁ ଅଛୁ ଧନ ଗୋ ।
ନିମିଷେ ନ କଲି ସଖି ! ଶ୍ୟାମ ଦରଶନ ଗୋ । ୫ ।
ନିଷ୍ଠୁରେ ମରିବି ତାଙ୍କୁ ନ ଦେଖି ନୟନେ ଗୋ ।
ବେଣୁଧର କହେ ସହି ! ରଖିଥାଅ ମନେ ଗୋ । ୬ ।
( ମରିବି ମରିବି ସଖି ! ନିଷ୍ଠୁର ମରିବି—ବୃତ୍ତେ )

—o—

## କୃଷ୍ଣ ଉକ୍ତି

( ରାଗ—ବଙ୍ଗଳାଶ୍ରୀ । ତାଳ ଝୁଲ )

ଦେଖ ଦେଖ ମିତ ! ଆସୁଅଛୁ ଏଥ ମୋ ପ୍ରେମ-କଳାକୁଶଳା ।
ମୋହ ନାମେ ଜସ କହି କହି ପ୍ରିୟା, ସହିଙ୍କି ପଛରେ ବାଳା । ୧ ।
ମୋର ଦୁଃଖ ବାଣୀ ଶୁଣିଲ ପରା ସେ, ନବ ମାରଦ କୁନ୍ତଳା ।
ଅତି କୁତୂହଳେ ଧୀରେ ପଦ ଥିବେ ସଖିଗଣ କରି ମେଳା । ୨ ।

ପ୍ରତି କୁଞ୍ଜେ କୁଞ୍ଜେ ବୁଲି ବୁଲି ସେ ଯେ, ଖୋଜୁଅଛୁ ଭାବ ଭୋଳା ।
ଆନନ୍ଦ ଦାୟିନୀ ମନ୍ଥର ଗାମିନୀ କରିବା ପାଇଁ ସଙ୍ଗୋଳା । ୩ ।
କେଳି ମାତ ବାଟ ହୁଡ଼ି ମୋର ଭେଟ ପାଉନାହିଁ ସେ ମନ୍ଦିଳା ।
ଆହା କି ସୁନ୍ଦର, ତା ମଣି ମଞ୍ଜୀର, ବଜାଇ ଆମେ ଛଇଳା । ୪ ।
କେବେ ରହି ରହି, ଧୀରେ ଧୀରେ ସହି, କରୁଅଛୁ ଗତି ଲୀଳା ।
ତୁମ୍ଭେ ମୋର ସଙ୍ଗେ, ଅଛ ବୋଲି ରଙ୍ଗେ, ସଖିଙ୍କୁ ଠାରି କହିଲ । ୫ ।
ତରେପୁ ପରତେ, ଦେଉଅଛୁ ମୋତେ, ଭ୍ରୂଭଙ୍ଗୀ ତୋଳା ଖେଳା ।
ଏଣୁ ସେ ନଆଳୀ, ଲତା କୁଞ୍ଜେ ଆଳି, ଶ୍ରୀକର ଉଲ୍ଲବ ଚଳ । ୬ ।
ଦେତ୍ରା ଦେଦ୍ବାସୀ, ନିକୁଞ୍ଜବିଳାସୀ, ସୁନ୍ଦରୀ ନବ ଅବଳା ।
ଅତି ଲଜବତୀ, ମୋ ପ୍ରାଣ ସଙ୍ଗତି, ଲାଜ କରୁଅଛୁ ହେଳା । ୭ ।
ଯାଅ ଯାଅ ସଖୀମାନେ ମୋ ପାଶକୁ ଭେଟୁ ମୋ ପ୍ରୀତି ଚପଳା ।
ଏମନ୍ତ ବଚନ, ଶୁଣି ମଧୁ ପୂର୍ଣ ଭାଷିଲେ ବାଣୀ ମଞ୍ଜୁଳା । ୮ ।
କହେ ବେଣୁଧର, ଶମ୍ଭୁ ବେଣୁଧର, ପାଦପଦ୍ମ ଯୁଗ ଧୂଳା ।
( କି ନାମ ବୋଇଲୁ ଭୂଷି—ବୃତ୍ତେ )

—୦—

( ରାଗ—ମାୟା ମାଳବଗୌଡ଼ା । ତାଳ ଝୁଲା )

ରେ ଧୀର ସ୍ଥିର, ସୁମନ ବଚନା ଜବାଧର । ଘୋଷା ।
ତୁ ତ ଥିବୁରେ ଜାଣି, ଏ କୁଞ୍ଜବନ ଶ୍ରେଣୀ, ମୋହର ଅଟେ ପ୍ରେମ କାର ରେ
ଦିନେ ନୂଆଇ ଯତ୍ନ, ନିତି ନିତି ଆସଇ, ଏହିଠାକୁ ମୁଁ ରାଳି ଘର ରେ । ୨ ।
ଭ୍ରମଣ କରି, କରି ମନ ସୁଖ ମୋହରି, ବସିଥିଲିଟି ଦମ୍ଭ ହରି ରେ । ୩ ।
ଏ ଯମୁନାର ଜଳ, ଅଟେ ଅତି ଶୀତଳ, ମୋହର ତୃଷା ଦୂର କରେ ରେ ।୪।
ଏଣୁ ମୁଁ ବସିଥିଲି, ଏକ୍ଷଣିରେ ଛଇଳ ! ଏକ ସୁନ୍ଦରୀ ସ୍ବର୍ଗ ତାର ରେ । ୫ ।
ଏହି ମାତ ନିକୁଞ୍ଜ, ପଶିଲ, ସଖୀ ସମାଜ ମଧ୍ୟରେ ଗଲୁ ଧୀର ଧୀର ରେ । ୬ ।
ତା ଶୋଭାକୁ ଅନାଇଁ, ଧୃତି ଦେଲି ହଜାଇ, ହମସ୍ତୀ ହେଲି କେତେ ପର ରେ
ମୋ ବଚନ ନ ଶୁଣି, ସେହି କଳଶୋଭମଣି, ପଳାଇଗଲା ହୋଇ ଲୁରା ରେ ।୮
ସେତିକବେଳୁ ମୋତେ, କାମ ଦଣ୍ଡୁଛି ଯେତେ, ହେଲିଣି ଏବେ ଦରମର ରେ
ନରଖିବୁ ତୁ ଯେବେ, ଏବ୍ରଜପୁରେ ତେବେ; ମୋ ନାମହୋଇବ ପାଶୋରରେ
ଶ୍ରୀକୃଷ୍ଣଙ୍କ ବଚନ, ଶୁଣି ସଖି ରତନ, ବେଣୁଧର ହୃଦୟ ହାର ରେ । ୧୧ ।
( ଆଜ ତ କେଶ ବଡ଼ ଚୋର—ବୃତ୍ତେ )

—୦—

( ରାଗ—ଚକ୍ରକେଳି । ତାଳ ଝୁଲା )

କେତେ ଆଣ୍ଟ ସଖୀ ! ପ୍ରେମ ଦଉଡ଼ି ! ।
କେଉଁ କାରାଣି ସେ ଅଛୁ ନବାଡ଼ି ? । ୧ ।
କପର ମରମେ ଗାଏ ହେ ଜଡ଼ି ?
ଛୁଡ଼ି ଗଲେ ନିକ ହୁଅଇ ଯୋଡ଼ି ? । ୨ ।
କି ପ୍ରକାରେ ଥାଏ ସେ ଗଣ୍ଠି ପଡ଼ି ?
ଯେତେ ଚେଷ୍ଟା କଲେ ନୁହଇ ଫେଡ଼ି । ୩ ।
ବାନ୍ଧି ହୁଅଇ କେ ତାହାକୁ ଭିଡ଼ି ?
ବୋଲେ ବେଣୁଧର ନ ମିଳେ ଲେଡ଼ି । ୪ ।

( ବନ୍ଧୁ ହନ ପରେ ବନ୍ଧୁଆ ଏଲ୍—ବୃତ୍ତ )

—*—

( ସଖୀ ଉକ୍ତି )

( ରାଗ—ରସକେଳି । ତାଳ—ଆଠତାଳୀ )

ଅନାଇଲ କିଆଁ କଦମ୍ବ ମୂଳକୁ
( ସଙ୍ଗିନ) କଜ୍ଜଳ କାଳିଆ ଶିଖଣ୍ଡ ଚୂଳକୁ । ଘୋଷା ।
ନୂଆ ତୁନ୍ଦିଆ ପୀତ ଦୁକୂଳକୁ । ଖଞ୍ଜନ ଗଞ୍ଜନ ନୟନାଞ୍ଚଳକୁ । ୧ ।
ମଦନ ମୋହନ ଯଶୋଦା ବାଳକୁ । ସଖା ଧୃତ ହସ୍ତ ଗୋପ ଦଳକୁ । ୨ ।
ମୂରଲୀ ମନଇଁ ଯା କରତଳକୁ । ନ ଲଖେ ଯେ ପଣ୍ଡିତ କୁଳକୁ । ୩ ।
ବୋଲେ କବିଚନ୍ଦ୍ର ତୁ ଏତେ ବେଳକୁ । ଲଭିବୁ ନାହିଁକି ତା ପ୍ରୀତି ଫଳକୁ ।୪

( ଗ୍ଲହିଲ କାହିଁକି କାଳିନ୍ଦୀ ତଟକୁ—ପ୍ରଭ )

—o—

( ରାଗ—ଭାଟିଆରି । ତାଳ—ଏକତାଳୀ )

ଆରେ ସାବଧାନ ! ପ୍ରୀତି ରୀତି ଗତି ଅତି ଅକଥନ । ଘୋଷା ।
ଯେତିକି ହୁଅଇ ମନେ ସୁଖ ତହୁଁ କୋଟି ଗୁଣେ ବଳ ଦୁଃଖ
ହସାଏ କନ୍ଦାଏ, ନବଢ଼େ ବନ୍ଧାଏ, ଚିତ୍ତକୁ କରାଏ ଦକ ଦକ ।୧।
ଧନ୍ୟ ଧନେ ପ୍ରାଣ ସହିଁ ଧକା ସଂସାର ସୁଖ ସାମାନ୍ୟ ଏକା
ଯେ ପ୍ରୀତି କରଛୁ, ସେ ସିନା ଜାଣିଛୁ, କି କହିବ ତୋତେ ମୁଁ ଅଧିକା ।୨।
କେଳୁ ବେଳ ସେତ ଆନ ଆନ ନହିଁ ତାହାଠାରେ ବଡ଼ ସାନ
ମିଳନ ବିଚ୍ଛେଦ, ମହାନନ୍ଦ ଖେଦ, ଜନମାଇବା ତା ଆଚରଣ ।୩।
ପାଳଥାଏ ଯେ ଯାହାର ପ୍ରୀତି ସେ ତାକୁ ହଣଇ ଚଞ୍ଚଳିତ
ଲବଣୀଠାରୁ ତ କୋମଳ ପଦାର୍ଥ ବଜ୍ରୁ ତୁଁ କଠିନ ଭବେ ଖ୍ୟାତ ।୪।

ଅନୁଭବ ବିନା ପ୍ରୀତ ଭାବ ଇତର ଜନ ତା କ ଜାଣିବ
ଧର ଧନପାଣି, ବିଶାଖିକା ଭଣି, କହେ କବ ନଶୀଧବ । ୫ ।
( ଆଗୋ ଶ୍ୟାମ ସ୍ନେହ ପାଶୋରିବାକୁ ଉପାୟ—ବୃତ୍ତ )

—o—

## (ପରସ୍ପରେ ସଖୀ ଉକ୍ତି)

( ରାଗ—ପୁନ୍ନାଗ । ତାଳ—ଏକତାଳୀ )

ସେ କାଳିଆ ଲଗି ଅମ୍ଭ କିଶୋରୀ ସରିବ ଗୋ ।
ଲଳାଟରେ ଯାହା ଅଛି କେ ଆନ କରିବ ଗୋ । ଘୋଷା ।
କରି ଶ୍ୟାମ ସଙ୍ଗେ ପ୍ରୀତି ଲଭିଲା ଏ ଅପକୀର୍ତ୍ତି
ପାଞ୍ଚ ମୁଖେ ଚନ୍ଦ୍ରାବଳୀ ନିନ୍ଦରେ ଭରିବ ଗୋ । ୧ ।
ନ ମାନଣ ଗୁରୁଜନ କଲା ତାକୁ ଗଣ୍ଡି ଧନ
ଏବେ ଭାଳୁଅଛି କେମନ୍ତେ ପ୍ରୀତି ପାଶୋରିବ ଗୋ । ୨ ।
ଯିବାକୁ ଯମୁନା ଘାଟ ହେଲଣି ତାକୁ ଆକଟ
ମୋହନ ବଂଶୀସ୍ୱନ ସେ ସହି କ ପାରିବ ଗୋ । ୩ ।
ଭାଷେ ଦୀନ ବେଣୁଧର ରାଧାକୁ ପ୍ରବୋଧ କର
ତୁମ୍ଭେ ପ୍ରିୟ ସଖି ! ତାର ଦୁଃଖକୁ ହରିବ ଗୋ । ୪ ।
( ପଡ଼ିଯିବ ଶ୍ୟାମ ଫାନ୍ଦେ—ବୃତ୍ତେ )

—o—

## ସଖୀ ଉକ୍ତି ।

( ରାଗ—କେଦାରଗଡ଼ । ତାଳ – ଏକତାଳୀ )

ଭଲ ରସିଲୁ ଗୋ, ଘନକାଳିଆ ପ୍ରୀତିରେ ।
ଏବେ ଯା କିଶୋରୀ ଅପକୀର୍ତ୍ତିରେ ଭାସିଲୁ । ପଦ ।
ଉଗାର ହସିଲେ ଗୋପ ମଜ୍ଜିଲୁ ଶୋକ ସନ୍ତାପେ
ମଦନ ବିଷମ ଶର ଶ୍ରୀଅଙ୍ଗେ ଭୁଷିଲୁ ରେ । । ୧ ।
ସେ ନଟନାଗର ଫାନ୍ଦେ ପଡ଼ିଗଲୁ ଯାହା ବାଦେ
ଏବେ ନିନ୍ଦା ଅପବାଦ ହରଷେ ବସିଲୁ ରେ । ୨ ।
ହୋଇଲୁ ମହତ ସଙ୍ଗ ମୋହିଲୁ ମୁରଲୀ ଧର
ତପନ ତନୟାକୂଳ ଆସ୍ତ ଭରସିଲୁ ରେ । ୩ ।
କଳାକାହ୍ନୁ ଘର ବୁଡ଼ା ପ୍ରୀତି ଲଗି କୁଳ ଛଡ଼ା
ତେଜିଲୁ ଯା ବେଣୁଧର ବ ଣୀ ନ କଷିଲୁ ରେ । ୪ ।
[ ତାକୁ ଗୁହାଁ ନା ଲେ ମିତ ! କହୁଛୁ ତୋ ହିତ – ବୃତ୍ତେ ]

—❊—

( ରାଗ—ଚକ୍ରକେଦାର । ତାଳ—ଖେମଟା )

ମନ୍ଦ ପୀରତି କରନା ପ୍ରିୟସଖି !
ନନ୍ଦସୁତର ଛନ୍ଦ କ ଜଣାନାହିଁ । ପଦ ।
ରସିକ ମୁକୁଟମଣି ସେ କାଳିଆ କହ୍ନା ।
କସି ନାହୁଁ କ ତା ମନ କନକବରନା । ୧ ।
ପରମାଦ ଅତି ପରା ତା ମୁରଲୀ ଦାଉ ।
ହରବର କରେ କେତେ ତା କ ଜାଣିନାହୁଁ ? । ୨ ।
ଯେତେ ମନାକଲେ ତୋତେ ହୁଏ ଦୁଗୁଣାଇ ।
କେତେ ମତେ ନଏ ଶ୍ୟାମ ନାମଟି ଗୁଣାଇ । ୩ ।
କହେ ରସେ ବେଣୁଧର କହ ନଣାପତି ।
ରହେ କାହାର ଆବୃତ୍ତ ପ୍ରେମମଣ୍ଡଳେ ମତି ? । ୪ ।
( ପର ପୀରତି ପାସୋରା ଯାଏକ—ବୃତ୍ତ )

—o—

( ରାଗ—କଳସା । ତାଳ—ଖେମଟା )

କିଶୋରୀ ଗୋ ! ମୋହରାଣୀ ।
କପାଇଁ ଗୁନ୍ଥୁ ଛୁ କହ ଏ ଚମ୍ପାହାରଟି । ଘୋଷା ।
ଝାଳେ ଜର ଜର କେଣେ ତୋ ସୁନା ଦେହଟି ।
କାହାଭଳେ ଭୂଷେଣ ପରି ଭୁ ବସୁ ହଟି । ୧ ।
କର୍ପୂର ଚନ୍ଦନ ବାସ ପଡ଼ୁଛୁ ଚହଟି ।
ବେଣୀରେ ଖଞ୍ଜି ଛୁ ଗୋଟି ଚମ୍ପା ଗୋଟି ଗୋଟି । ୨ ।
ନ କହିଲେ ନାହିଁ ସବୁ ଜଣା ପଡ଼ୁଛୁନ୍ତି ।
କାଳିଆ ପ୍ରେମ ତୋ ଶଗ୍ଧ କରିଅଛୁ ଲୁଟି । ୩ ।
ତୋ ପଥକୁ ଚାହିଁଛନ୍ତି ସେ ସନ୍ଧ୍ୟାକଟି ।
ବେଣୁଧର ବୋଲେ ତାଙ୍କୁ ସଙ୍ଖାଳ ଆସଟି । ୪ ।
( କାହିଁକ ଗୋ ମୋହନାମଟା—ବୃତ୍ତ )

—o—

( ରାଗ—ବସନ୍ତ । ତାଳ—ଏକତାଳୀ )

ଭଲ ସେ ମନମୋହନ ପୀରତିକ ରସିଲୁ କ ଗୋ ।
କାଣି ଶୁଣି ଯାହା ରାଧେ ଅପବାଦେ ଭସିଲୁ ଗୋ । ପଦ ।
ସେ ଶ୍ୟାମ ପ୍ରେମ ଗଞ୍ଜାଇ ମାଦକ ହେଲୁ ଗଞ୍ଜାଇ,
କହୁଥିଲି ସମଜାଇ ତା ମନେ ନ କସିଲୁ ଗୋ । ୧ ।

ବାମନଯୁନା ତ ମନା ନ ଘେନଲୁ ରେ ସୁମନା,
କାମ ଅସି ଧାରକୁ ଯା ହେମ ଅଙ୍ଗେ ଘଷିଲୁ ଗୋ । ୨ ।
ସିଦ୍ଧ ହେଲା ଏକ ଗଇ, ବୁଦ୍ଧି ବିବେକ ହରାଇ,
ନଧି ଭୁଟିଲା ପରାଇ ମୁଖପୋତ ବସିଲୁ ଗୋ । ୩ ।
ବୋଲେ ବେଣୁଧର କବ ସେ ଘନକାଳିଆ ଛବ,
ଦେଖିବା ଆଶାରେ ଭବ ସୁତାକୁ ଭରସିଲୁ ଗୋ । ୪ ।
( କାଏ ସେ କେଳିକଦମ୍ବ ତରୁତଳେ ବଂଶୁଚ୍ଛି—ବୃତ୍ତେ )

—o—

( ରାଗ—ଝିଂଝଟ । ତାଳ—ଝୁଲା )
ପ୍ରୀତି ପରମ ସୁଆଦ ।
ପୁଣି ଏଡ଼କ ତା ପରମାଦ (ସଖି) । ଘୋଷା ।
ନୂଆବେଳେ କେଡ଼େ— ଆଦର କରଣ,
ଭଞ୍ଜୁଥାନ୍ତି ସ୍ବାଦୁ ବାଦ ଟୋ ।
ପୁରୁଣା ହୋଇଲେ ଦର୍ଶନ ନ ମିଳେ;
ଜାତ ହୁଏ ଅବସାଦ । ୧
ନଇଲେ ପାଶକୁ ଝଙ୍କାର କରଇ,
ସବୁ ନୁହଇ ବିଚ୍ଛେଦ ଗୋ ।
ଅନୁକ୍ଷଣେ ଚିନ୍ତା— ନଳ ଜଳୁଥାଇ,
ପୋଡ଼ ଯାଉଥାଇ ହୃଦ । ୨ ।
ଅନୁରାଗେ ପୁଣି, ଅନୁରୋଧ କଲେ,
ଯେବେ ନ ଘେନଇ ସାଧ ଗୋ ।
ମରଣରୁ ବଳ ବାଧଇ ସେ କଥା,
ଅନୁତାପେ ମନ ଖେଦ । ୩ ।
ଧିକ ପର ପ୍ରୀତ ନ ଜାଣି କେ କରେ,
ଯାତନା ପର ସମ୍ପଦ ଗୋ ।
ବେଣୁଧର କବ୍ବ ମିଛ ନୁହେଁ ସତ୍ୟ, !
ପରୀକ୍ଷା କର ତୁ ଜଦ ପ୍ରୀତ ଯେଡ଼କ ସୁଆଦ । ୪ ।
( ଶ୍ୟାମ କେଡ଼େ ଅବୁଝାଣ—ବୃତ୍ତ )

—o—

( ରାଗ—ଭଟିଆରୀ । ତାଳ—ଏକତାଳୀ )

ଅପ୍ରାକୃତ କୃଷ୍ଣପ୍ରେମ ଅନଲ୍ପକତ ରେ ପ୍ରାଣମିତ ! । ଘୋଷା ।
ଜନ୍ମୁ ନବ ସ୍ନେହାଠାରୁ ଝଳ ।
ନବ ଅହ୍ଲାଦ ମାଦକ ସ୍ଥଳୀ ।
ସୁଖ ଦୁଃଖ ଜାଣ ଏଦନ୍ତ ମିଳନ,
ପୁଣି ବିଷାମୃତ ରସାବଳୀ । ୧ ।
କୃଷ୍ଣ ପ୍ରେମରତି ଏ ଲକ୍ଷଣ ।
ହସାଏ କନ୍ଦାଏ କ୍ଷଣ କ୍ଷଣ ।
ପରମ ପଦରେ, ବସାଇ ତାପରେ,
ଅତି କଲ ବଲ କରେ ପ୍ରାଣ । ୨ ।
ନିନ୍ଦା କଳଙ୍କ ପସରା ମୁଣ୍ଡେ ।
ଥୁଆଇ ବୁଲଏ ଦାଣ୍ଡେ ଦାଣ୍ଡେ ॥
କେତେ ପରିହାସ, ଟମାଳୀ ବଚନ,
ଶୁଣାଉ ଥାଏ ବଇରୀ ତୁଣ୍ଡେ । ୩ ।
ସଖୀ ଭାଷନ୍ତେ ଏପରି ବାଣୀ ।
କୃଷ୍ଣ ଭାବନା କଠୋଗ୍ରମଣି ! ॥
ବୋଲନ୍ତ ଆହା କ, ଅଖଞ୍ଜି ପଡ଼ିଲୁ,
ରସେ କବ ନଣା ନାଥ ଭଣି । ୪ ।
( ଶ୍ରୀମଦନ୍ଦ ପର କେହ୍ନ ଦଶ୍ଚୁନାହିଁ— ବୃନ୍ଦେ )

—*—

# ଦୂତୀ ପ୍ରେଷଣ

## ରାଧା ଉକ୍ତି । ( ବହ୍ଲର୍ପୀ )

( ରାଗ—ଭୂପାଳ । ତାଳ—ଆଠତାଳୀ )

ଦୂ-ଣ୍ଡି ଗୋ ଏବେକ, ନେଇ ଶାଳହାଣ୍ଟଙ୍କି, କହିବୁ ମୋପାଇଁ କରଧରି ।
ତି-ସ ବୃନ୍ଦାବନ, ବଣରେ ବାହାର, କରିଦେଲେ ମୋତେ ଏତେସର ।ଘୋଷା
ଜ-ରମରେ ଏହା, ଥିଲ କ ମୋହର, ଲଭିବାକୁ ସହି ! ଦୁଃଖ ଶିରି ।
ଲେ-ଚେତ କରୁଣା, ନ ବହିଲେ ବନ୍ଧୁ ନିଷ୍ଠୁରତା ଭାବ ହୃଦେ ଧରି । ୧ ।
ହ-ଜାର ମୁଖରେ ନିନ୍ଦା ଶୁଣାଇଲେ, ହାଟ ବସିଲା ଏ ଗୋପପୁରୀ ।
ରି-ଷା ବହି ମନେ, ଜଞ୍ଜାଳ ନଣନ୍ଦ, କୁଟିଳା କ ଚନ୍ଦ୍ର ଚନ୍ଦ୍ର କରି । ୨ ।

ମ-ଞ୍ଜୁଳ କୋମଳ, ଚରଣ କମଳ ଆଶ୍ରେ କଲି ବୋଲି କି ତାଙ୍କର ?
ନେ-ସମାରେ ନିରନ୍ତରେ ମୁଁ ଭସିଲି ସାହା ନ ହୋଇଲେ ବେଣୁଧାରୀ ॥
କ-ଣାଦାସୀ ବୋଲି ଗୁମାନ କରିବା ପ୍ରତିଫଳ ଏହ୍ବି କି ତାହାର ।
ଈ-ଶ୍ବର କରିବେ ସୁଚିତ୍ତେରେ ଏହା ସେ ପର ଗୋପର ଉପକାରୀ । ୪ ।
ସ୍ବମର କୁନ୍ତଳା ରାଣ୍ଡ ବାଣୀ ଶୁଣି ଦୁଷ୍ଟ ଚିତ୍ତେ ହୃଦେ ଦୁଃଖ ଭରି ।
ରି-ଝାଇ କୃଷ୍ଣଙ୍କୁ ବୁଝାଇଲା ସବୁ ଦୁଃଖୀ ବେଣୁଧର ଜରି ଜରି । ୫ ।
[ କହରେ ଜୀବନ ସଙ୍ଗିନି ! ତୋମନ—ବୃତ୍ତେ )

—❀—

( ରାଗ—ଉଚ୍ଛାଟ ସାରଙ୍ଗ । ତାଳ—ଆଦ୍ଧ )

ଚଞ୍ଚଳ ମୋତେ ବଣା ଲୋ ମିତଣି !
ନପାଇ ଶ୍ୟାମ ଠିକଣା ।
ଚଞ୍ଚଳେ ତୁ ଯାଇଁ ଜଣାଇଁ ମଣାଇଁ
ମୋ ପାଶକୁ ତାଙ୍କୁ ଅଣା । ଘୋଷା ।
ହଜ ତ ଯାଉଛି ବୁଦ୍ଧି ଲୋ ସଜନି !
ନ ଥିବାରୁ ଗୁଣନିଧି ।
ନିକୁଞ୍ଜ ସଦନ କେଡ଼େ ଅଶୋଭନ,
ଅନା କନା ତୁ ଅବଧି । ୧ ।
ନ ଜାଣୁ କି ମନ— କଥା ଲୋ ସଙ୍ଗିନି !
ଲଭୁଥାଇଁ ଯେତେ ବ୍ୟଥା ?
ନ ରୁଚେ ଅଶନ ଲଭେ ଦରଶନ,
ହନେ ସ୍ତେ ଚନ୍ଦ୍ରିକାମଥା । ୨ ।
ଏବେ ଧରୁଛି ତୋ କର ଲୋ ବାନ୍ଧବ ।
ଏବେ ଧରୁଛି ତୋ କର ।
ମୋତେ ମାଳମଣି— ରତନକୁ ଦେଇ
ହୃଦର ବେଦନା ହର । ୩ ।
ବେଣୁଧର କହେ ଗୀତେ ରେ କିଶୋରି !
ରହୁଥାଅ ତୁ ନିଶ୍ଚିନ୍ତେ ।
ଭେଟାଇବ ଆଣି ସେ ମୁରଲୀ ପାଣି,
ସିହାଣିମଣି ତୋ ହିତେ । ।
( କି ସୁନ୍ଦର ମଧୁକାଳ ଲୋ ସଜନି ! -- ବୃତ୍ତେ )

—❀—

( ରାଗ—ଶୋକବରାଡ଼ି । ତାଳ—ଏକତାଳୀ )

ଶ୍ୟାମ ଲାଗି ମୋର ଜୀବ ଯିବ ଗୋ, ପ୍ରିୟସଖି !
ଏତିକ ତାହାଙ୍କୁ ଜଣାଇ ଗୋ, ପ୍ରିୟସଖି । ପଦ ।

ତାଙ୍କୁ କରି ଗଳାହାର କୁଳରୁ ହେଲି ବାହାର
ଜାଣି ନ ଥିଲି ତା କୁଟଭାବ ଗୋ । ୧ ।
ତାଙ୍କୁ କରି ଗଳାହାର କୁଳରୁ ହେଲି ବାହାର
ଜାଣି ନ ଥିଲି ତା କୁଟଭାବ ଗୋ । ୧ ।

ସେ ନଟନାଗରବର କଣ୍ଠଦେଲେ ମନୁ ପର,
ମଦନ ହେଉଛି ପରାଭବ ଗୋ । ୨ ।

ସଖି ସେ ମୁରଲୀଧାରୀ କରିବେ କୋଳ ଏପରି,
କାହା ମନେ ଥିଲା ଭାବ ଗୋ । ୩ ।

କବି ବେଣୁଧର ଭଣି କେ ଆଉ କରିବ ପ୍ରୀତି,
କପାଳରେ ଯାହା ଲେଖା ଥିବ ଗୋ । ୪ ।

( ଶ୍ୟାମବନ୍ଧୁ ମୋ କେଣ୍ଠ ସଙ୍ଗାତ ଗୋ—ବୃତ୍ତ )

—*—

## ବନ୍ଧଲିପି

( ରାଗ—ଗଉଡ଼ମାଳଆ । ତାଳ—ଚଦପଟ ଝୁଲା )

କୃ-ଷ୍ଣ କି ନ କଲେ ସଖି !
ପା-ଶୋରି ସେ କାହିଁ ରହିଲେ ଯାଇଁ ଗୋ ।
ସ୍ୱ-ର ପାଷାଣ ମୋ କର୍ମକୁହିଁ, ସଜନି ଗୋ । ୧ ।
ନ-ନନ୍ଦନଙ୍କ ଛନ୍ଦ ।
ନ-ଜାଣି ମୁଁ କଲି ପ୍ରୀତି ସମ୍ବନ୍ଧ ଗୋ ।
କ-ଲବଲ ମୁରଲୀ ସ୍ୱନେ ।
ରି-ଝାଇ ମୁରଲୀ ସ୍ୱନେ ।
ବେ-ଶରେ ମୋହିଲେ ରଜନୀ ଦିନେ ଗୋ ।
କ-ଳା କାହ୍ନୁ ଶୟନେ ସ୍ୱପନେ, ସଜନି ଗୋ । ୩ ।
ସ୍ୱ-ଆରେ କପଟ ରଖି ।
ବୁ-ଣିଲେ ସେନେହ ଖାଳ କାହ୍ନିକ ଗୋ ।
ଦୁ-ରକଲେ ତ ବେଳକୁ ଦେଖି, ସଜନି ଗୋ । ୪ ।
ଷ୍ଟ-କ୍ଷଣ ମାର ଶର ଦାଉ ।
କେ-ସନେ ସମ୍ଭାଳି ରହିବ ଆଉ ଗୋ ।
ଶ-ବ ପ୍ରାପ୍ତ ହେଲି ଝୁରିଁ ଝୁରିଁ, ସଜନି ଗୋ । ୫ ।

ବେ-ଣୁଧର ବୋଲେ ରଣ୍ଡ ।
ଆ-ଦ୍ୟ ବର୍ଣ୍ଣେ ଯାହା ଦେଲ ବୁଝାଇ ଗୋ ।
ଯ-ତ୍ନେ ଦୁଃଖ ଜଣାଇବେ ଯାଇ, କଶୋର ଗୋ । ୬ ।
( ରାଧା ଧର ସଖି କର—ବୃତ୍ତ )

—୦—

( ରାଗ—ତୋଡ଼ି । ତାଳ – ଆଡ଼ )
ରାସ ରସିକ ନିକୁଞ୍ଜବିହାରୀଙ୍କି—
ମୋହ ପାଇଁ ପଦେ କହୁଅଛି ଗୋ ! ଘୋଷା ।
ବାସରେଶ୍ୱର ମନେ ଏହା ଥିଲା ବୋଲି
ଅନୁଯନ୍ତ୍ର ତନ୍ତ୍ରେ ରହୁଅଛି ଗୋ ।
ନାଗିକଲେ ଦାସୀ କାହାର ହୋଇବ ?
ବୋଲି ବାରେ ଦସ୍ତ୍ରା ବହୁଅଛି ଗୋ । ୧ ।
ହାସ ପରିହାସେ ଛଳାଇ ଲଳିତା,
ପଞ୍ଚିଲେ କହିଲେ ହସୁଅଛି ଗୋ ।
ପାଶରେ ତାଙ୍କ ମୋ ଦୁଃଖଯୋଗ ଶୁଣି,
ବାରମ୍ବାର ସମଜାଇଅଛି ଗୋ । ୨ ।
ଆଶା ତୁଟିଲା କି ରାଧାଠାରୁ ବୋଲି,
ଶ୍ରୀକର ଧରି ଜଣାଇଅଛି ଗୋ ।
ଦାସବତ୍ସଳ କି ଯଶ ଅରଜିଲ ?
ଏତେକ ବିନୟୀ ହୋଇଅଛି ଗୋ । ୩ ।
ତ୍ରାସ ବୋଧହେଲେ ପ୍ରାଣବନ୍ଧୁ ମନେ,
ମୋ ସଖି ! ସରସ ନୋହୁଅଛି ଗୋ ।
ଭାଷଇ ଏତେ ଏ ଗୀତେ ବେଣୁଧର,
ଆଣି ମୋ ହଟୋ ଦେଖାଇଅଛି ଗୋ । ୪ ।
( ଘନ ବରନ ମଦନ ମୋହନଙ୍କୁ—ବୃତ୍ତ )

—୦—

( ରାଗ—ମୃଗାବତୀ । ତାଳ—ଆଠତାଳୀ )
ହଜମା ! କେଉଁ ମୋ ଜନକକ ... ।
ସେ ମନମୋହନେ କହ ଏତେକ ରେ । ଘୋଷା
ତାଙ୍କପାଖେ ହେଉ ଚରଣ ଚକ ?
ବୁଡ଼ାଇଛୁ କୁଳ ଲଜ ଶୀତଳ ରେ ସଜନ ।

କାହୁଁ ଶିଖିଲେ କପଟ ଯତନ ?
କେମନ୍ତେ ପାସୋରି ଦେଲେ ପ୍ରୀତିକି ରେ, ସଜନି ! । ୨ ।
ଡର ନ ଥାଏ ମୋ ଅଭାଗିନୀକି ।
ତାଙ୍କ ଲାଗି ଲୁହା କରି ଗୁରୁଜନେ, ସଜନି ! । ୩ ।
ହସନ୍ତୁ କିଶୋରୀମଣି ଦୁଷ୍ଟଙ୍କି ।
କହିବୁ ନି ଏତେ ସେ ଶ୍ରୀପତିଙ୍କି ରେ, ସଜନି ! । ୪ ।
ହେଲେଣି କି ନାରୀ ଆତ୍ମଘାତକ ?
ଦୂର କଲେ କିବ ମହାପାତକ ରେ, ସଜନି ! । ୫ ।
( ମୋହନ ! ତୁମ୍ଭେ ବଡ଼ ଦାରୁଣ—ବୃତ୍ତେ )

—o—

( ରାଗ—ମଲ୍ଲାର । ତାଳ—ଆଠତାଳୀ )
ସେ ମଦନମୋହନେ ସହି ! ଏତିକ ତୁ କହିବୁ ଗୋ । ଘୋଷା ।
କାହୁଁ ଶିଖିଲେ ଏ ରୀତି ବଂଶୀରେ ଭୁଲାଇ ମତି,
ମରନ୍ତିଲେ ବୋଲି ଦୁଃଖ ଏତିକ ତୁ କହିବୁ ଗୋ । ୧ ।
ତାଙ୍କ ଲାଗି କଳଙ୍କିନୀ— ହୋଇଲି ମୁହିଁ ଦୁଃଖିନୀ,
ଧରି ତାଙ୍କ ପାଦେ ବନ ଏତିକ ତୁ କହିବୁ ଗୋ । ୨ ।
ସେ ନଟନାଗରବର କାହିଁକି କଲେ ଅନ୍ତର,
ଶୁଣନ୍ତେ ସଜନି-ମର ଏତିକଳୁ କହିବୁ ଗୋ । ୩ ।
ପ୍ରୀତି ରସେ ଭସାଇଲେ ନିନ୍ଦାହାଟ ବସାଇଲେ,
ଶେଷେ ଲୋକ ହସାଇଲେ ଏତିକ ତୁ କହିବୁ ଗୋ । ୪ ।
ଭାବ ନ ଥିଲା ଏପରି କରିବେ ବୋଲି ଶ୍ରୀହରି,
ଏ ବେଣୁଧର ଗୁହାରି ଏତିକ ତୁ କହିବୁ ଗୋ । ୫ ।
( ନ ମାନିଲୁ ମନା ରାଧେ ! ମନେ ମାନ ବହିଲୁ ଗୋ—ବୃତ୍ତେ )

—o—

( ରାଗ—ଝିଂଝିଟ । ତାଳ—ଏକତାଳୀ )
ଆଗୋ ଲଳିତେ, କହିବୁ ଏତେ,
ସେ ଶ୍ୟାମସୁନ୍ଦର ପାସୋରିଲେ କି ମୋତେ ?
କରୁଣା ଭଣା, ପରଶେ ଜଣା,—
ଯାଉଛୁ ନୋହୁଛୁ ତଥ୍ୟା ତା ଠାରେ । ଘୋଷା ।
କେଉଁ ରମଣୀ ମଣି ଶିଖାଇ ପୁଣି
ରଖିଲା ଗୋ ଆଜ ରଜନୀ ସଜନି !
ତାର ପ୍ରେମବାଣୀ ଯାଦେ ଚନ୍ଦ୍ରାମଣି !
ଝଡ଼ଣ ଜଡ଼ଣ ଗଲେକି ସତେ । ୧ ।

ରତ୍ନ ଦୀପାବଳୀ ଚଉପାଖେ ଜାଳି,
ବସିଥିଲି ଭାଳି ଆଗୋ ପ୍ରିୟଆଳି !
ସେ ଆସିବେ ବୋଲି, ଉଜାଗରେ ଥିଲି,
ନ ଆସି ରସିଲେ କାହା ସଙ୍ଗତେ ? । ୨ ।
ସେ ନାଗରବର, କରିଦେବେ ପର,
ନ ଥିଲା ଗୋ ମନେ ଏରତେ ମୋହର !
ସେ ମୁରଲୀଧର, ବଡ଼ ଦଗାଦାର,
ନଇଲେ ରହିଲେ କପଟ ଚଟ୍ଟେ । ୩ ।
ତାଙ୍କ ଲାଗି ସିନା ଲଭିଲି ଏ ଦଶା,
ନରତେ ହୋଇଲି ମୁଁ ଭଗାର ହସା ।
ଚିନ୍ତାମଣି ଚିନ୍ତା ହୃଦେ କଲି ବସା,
କବିଚନ୍ଦ୍ର ଭାବ କହଇ ଗୀତେ । ୪ ।
( ବୃନ୍ଦ ନଶାରେ କ ସୁଖକରେ—ବୃତ୍ତେ )



## ସଖୀ ଉକ୍ତି ।

( ରାଗ—ମାଳବଗୌଡ଼ା । ତାଳ—ଖେମଟା )

କଶୋରମଣି ! ଆଉ ନ କର ଭାବଲେଣି ଗୋ ।
ତୋର ବନ୍ଧୁଙ୍କୁ ଆଜ ଦେବି ମୁଁ ଆଣି ଗୋ । ଘୋଷା ।
ଜାତର ହୁଅନା, ପୂର୍ଣ୍ଣଚନ୍ଦ୍ରାନନା,
ଆଜନମ ସୁଖି ବୀଣା ବାଣି ଗୋ । ୧ ।
ନୀପକୁଞ୍ଜେ ମୁଁ ଯେ ଭେଟାଇବି ସଞ୍ଜେ,
ନଟନାଗର ମୁରଲୀପାଣି ଗୋ । ୨ ।
ଘେନ ମୋ ବଚନ, ସ୍ଥିର ହୁଅ ଧନ,
ଆଜ ବୁହାନା ନୟନୁ ପାଣି ଗୋ । ୩ ।
ତୋ ବିରହ ବ୍ୟାଧି ଆରେ ରସନିଧି
ଗୁଞ୍ଜିବ ବୃହିଁ ଧ୍ୟାନ ଠାଣି ଗୋ । ୪ ।
ସଖି ପ୍ରବୋଧିଲେ, ନିକୁଞ୍ଜେ ଚଳିଲେ,
ଧ୍ୟାନହୀନ ବେଣୁଧର ଭଣି ଗୋ । ୫ ।
( ବରଜଣିର ସଖି । ଯିବେକି ଘର ଗୋ—ବୃତ୍ତେ )



## ଦୂତୀ ସଙ୍କେତ

( ରାଗ—ସାରଙ୍ଗ । ତାଳ— ଆଠତାଳୀ )

ଆଣିଛୁ ଏ ହାର ବନ୍ଧୁ ! ଆଣିଛୁ ଏ ହାର ହେ ।
ଦେଇଛୁ ତବ ପ୍ରେୟସୀ ସ୍ନେହ ଉପହାର ହେ । ଘୋଷା ।
କହିଅଛୁ କଣ୍ଠେ ଦେଇ — ରହିଁ ଲୁ ରହିବୁ ନାହିଁ
(ଏଥି) ହୋଇଅଛୁ କି ବିରହ ବେଦନା ତାହାର ହେ । ୧ ।
ଯତନରେ ଅତି ସ୍ନେହେ — ଗୁନ୍ଥୁ ଗୁନ୍ଥୁ ଧନି ! କହେ
ମଲ୍ଲି ଗୋ ସଙ୍ଗିନ ରହିଁ ମଲ୍ଲୀଫୁଲ ହାର ହେ । ୨ ।
ହସୁଛୁ ତା ମନେ ମନେ — କହୁ ନାହିଁଟି ସରମେ
କରିବାକୁ ହେ ଭୁଲେ ନିକୁଞ୍ଜ ବିହାର ହେ । ୩ ।
ତମକ ଚନ୍ଦ୍ରଆନନା — ଲଭୁଅଛୁ କି ଯାତନା
କରୁଛୁ ଏ ବେଣୁଧର କୋଟିଏ ଜୁହାର ହେ । ୪ ।
( ମୋହ ଜାଣିବାରେ ଅପରାଧ କରିନାହିଁଟି—ବୃନ୍ଦେ )

—○—

## ଦୂତୀ ସମ୍ବାଦ

( ରାଗ—ବସନ୍ତବରାଡ଼ି । ତାଳ—ଆଠତାଳୀ )

ହେ ନୀଳ ମୂରତି, ଏବେ ସରିଲାଟି ସେ ନବୀନ କାଶୋରୀଟି ହେ ।
ଆଜ୍ଞ କେତେ ଦୁଃଖ ସହିବ ଏଣିକି, ଆଜନ୍ମ ସୁକୁମାରୀଟି ହେ ।
ଆହେ ଗୋକୁଳ ଚନ୍ଦ୍ରମା ।
ସେ ତ ଅଲ୍ୟଳୀ ନୃପତି ଜେମା ହେ । ୧ ।
ଆମ୍ଭମାନେ ଯେବେ ପ୍ରତିହାର ଦେଶ ଆଶଙ୍କା ମନରେ ଧରି ।
ରୋଧେ ନ କରନ୍ତୁ ହୃଦୟେ ମାଧବୀ ଗନ୍ଧ ବାରିଯାଏ ଥିରି ।
ଆହେ ଗୋକୁଳ ଚନ୍ଦ୍ରମା ।
ସେ ତ ଅଲ୍ୟଳୀ ନୃପତି ଜେମା । ୨ ।
ଚନ୍ଦ୍ରକାନ୍ତ ମଣି, ମପୂ ଅଳିନ୍ଦରୁ ପ୍ରସରିବାଉଟି ବାରି ।
ରହିଁ ଏଣିକେନିଶୀ ମୂର୍ଚ୍ଛା ପାଉଛିଟି ତଳ ପଡ଼ିବ ସୁନ୍ଦରୀ ହେ ।
ଆହେ ଗୋକୁଳ ଚନ୍ଦ୍ରମା ।
ସେ ତ ଅଲ୍ୟଳୀ ନୃପତି ଜେମା ହେ । ୩ ।

ନାହିଁ ପ୍ରତିକାର ତୁମ୍ଭ ବିନେ ତାର ଦଶା କହିଲେ ନ ସରି ।
ପାଣି ଧରି ବେଣୁଧରି ଜଣାଉଛି ଦନ୍ତରେ ତୃଣ ଧରି ହେ ।
ଆହେ ଗୋକୁଳ ଚନ୍ଦ୍ରମା ।
ସେ ତ ଅଲ୍ପଳୀ ନୂତନ ଜେମା ହେ । ୪ ।
( ମାଧବୀ ଫୁଲକୁ ଦେଖି ଗୋ ବିଶାଖେ—ବୃତ୍ତେ )

—୦—

## ସଖୀ ଉକ୍ତି

( ରାଗ—ମାରୁଆ । ତାଳ—ଆଠତାଳୀ )
ମନ ମୋହନ ହେ, ଶ୍ୟାମ ମୁରଲୀଧର !
ଏକି ରୀତି କଲ ପର ? । ଘୋଷା ।
ସେ ବୃଷଭାନୁକୁମାରୀ ତୁମ୍ଭ ସଙ୍ଗେ ପ୍ରୀତିକରି,
ହେଲା ଯାହାଟି ହେ ହରି ! ମହତ ସର । ୧ ।
ଏ କେଉଁ ବିବେକପଣ, ଅରିକଲଟି ଆପଣ,
ବ୍ରଜେ ବାଜିଲଣି ଅଖ୍ୟାତି ନାଗର । ୨ ।
ଏବେ ସେ କିଶୋରୀମଣି, ! ଲାଜରେ ସଡ଼ିଗଲଣି,
ନିରନ୍ତରେ ବହେ ନେତ୍ରୁ ସଲିଳ ଧାର । ୩ ।
ଯେବେ ଏପରି ମନରେ, ଥିଲା ମୁରଲୀ ସ୍ୱନରେ,
କିମ୍ପା ବାଇ କରାଇଲ ସୁବର୍ଣ୍ଣାମର ? । ୪ ।
ଭାଷେ କବି ବେଣୁଧର, ଜଣା ଗଲଣି ଏଥର,
ହଟିଆ ନାଗର ସୁରସିକ ପସର । ୫ ।
( ପ୍ରାଣ ସଙ୍ଗୀମାନେ ନେତ୍ରାନନ୍ଦ ପସର—ବୃତ୍ତେ )

—※—

( ରାଗ—ଚୋଡ଼ପରଜ । ତାଳ—ଏକତାଳୀ )
କାହା ପ୍ରେମ ରସେ ବୁଡ଼ି ଲଭିଲ ଏ ଦଶାଟି ।
କାହିଁପାଇଁ କଲ ଶ୍ୟାମ ଏଡ଼େ ବଡ଼ ଆଶାଟି । ଘୋଷା ।
ସେ ମାଘ ଉପବନରେ ଆସି ତୁମ୍ଭର ଆଗରେ
କେତେ ଛୁରି ଦେଲା ଭୁକ୍ଷି କେଉଁ ମୃଗତୃଷାଟି । ୧ ।
ଜାଣିଲଣି ହେ ମୋହନ ! ସେହି କିଶୋରୀ ରତନ
ଘୁଡ଼ ଘୁଡ଼ ମନ୍ଦୁ ତାକୁ ପାଇବା ଭରଷାଟି । ୨ ।

ଯାହାର ଶାଶୁ ନଣନ୍ଦ          ଅତ୍ୟନ୍ତ ହେ ବଡ଼ ମନ୍ଦ
ପରାନ୍ତ ନରତେ ହାନ୍ଦ କହ୍ନି କଟୁ ଭାଷାଟି । ୩ ।
ହୃଦ ଷରେ ଟେକ ମଥା          ସେ ପଦେ ନ କହେ କଥା
କମର କହ୍ନି ତାକୁ ତୁମ୍ଭ ପ୍ରୀତି ମିଶାଟି । ୪ ।
ଅଜ ନ କହ ଏପରି          ଗୁଡ଼ ଗୁଡ଼ ବଂଶୀଧାରୀ
ନିଜ ପୁରେ ଚଳିଯାଅ ତେଜି ଏ ତାମସାଟି । ୫ ।
ଦୁଷ୍ଟ କଂସ ନରବର          ଶୁଣିଲେ ଏହୁ ଖବର
ବନ୍ଧ କରି ଦେବ ନେଇ ଜଡ଼ିପିବ ହସାଟି । ୬ ।
କାମ କାଣେ ହୋଇ ଖିନ୍ନ          ନ ଭାଗ ଏହୁ ବଚନ
ବ୍ରଜେ ହାଟ ନ ବସାଅ ନୋହି ଲୋକ ହସାଟି । ୭ ।
ସଖୀର ବଚନ ଶୁଣି          ଛଳ ଛଳ ନେତ୍ରୁ ପାଣି
ଧାରି ଧାରି କରି ଶ୍ୟାମ କରିଲେ ବରଷାଟି । ୮ ।
ସେବ୍ୟ ଗୋପ ଯୁବରାଜ          ଯୁଗଳ ଚରଣ କଞ୍ଜ
ଚିନ୍ତି ଚିନ୍ତି ବେଣୁଧର କରୁ ବ୍ରଜେ ବସାଟି । ୯ ।
( ଅତସୀ କୁସୁମ ସମ—ପ୍ରଭ )



( ରାଗ—ବସନ୍ତ । ତାଳ—ଝୁଲା ଓ ଖେମଟା । )
ସତେ ହେଲକ ପାଶୋର ?
ଆହା କି ନ ହେଲଟି କଶୋରୀ । ଘୋଷା ।
ସେ ରାଜକୁମାରୀ, ସବୁ ଗୁଡ଼ କରି, ଭଜିଲ ମୁରଲୀଧାରୀ ।
ହସାଇ ରସାଇ, କେଉଁ ସୁଖ ପାଇଁ, ପୋଛୁଥିଲ ନେତ୍ର ବାରି । ୧ ।
ପ୍ରିୟ ମିତଣୀଙ୍କି, ଘେନ ସେ ପାଣିକ, ଯମୁନା ଯାଏ ବାହାର ।
ତେଣୁ ଯା ବୋଲଣା, ଶୁଣେ ସୁଲକ୍ଷଣା, ନଣନ୍ଦ ମୁଖୁଁ ତାହାର । ୨ ।
କେ କେତେ ଗଞ୍ଜନ୍ତ, କେତେ ତରଜନ୍ତ, ସବୁ ସହି ସୁକୁମାରୀ ।
ସ୍ମୃତିକ ପଥର, କରି ନିରନ୍ତର, ତୁମ୍ଭ ପ୍ରେମେ ଥୁଏ ଧାରି ।୩।
ଏବେ ସେ ନଗ୍ନା, ତବ ସ୍ନେହ ବିନା, କପାଳରେ କର ମାରି ।
ହା ହା କୃଷ୍ଣ ବୋଲି, ଧରାରେ ଗଡ଼ୁଛି, ଏ ବେଣୁଧର ଗୁହାରି । ୪ ।
( ହରି ତବ ଲାଗି ଏତେ ସରି—ଭୁଲେ )



( ରାଗ—ମଙ୍ଗୁଆ । ତାଳ—ଆଠତାଳୀ । )

ନଟନାଗର ହେ, ଶ୍ୟାମ ମୁରଲୀଧର !
ହେଲ କି ଏଡ଼େ ନିଷ୍ଠୁର ? ! ଘୋଷା ।
ସେ ଆଜନ୍ମ ସୁକୁମାରୀ ହେଉଛି ଜରହେ ଝୁରି
ବେଳୁଁ ବେଳ ଦଶା ତା'ର ବୃଦ୍ଧି ଅପାର । ୧ ।
ଗଳା ଗଳ ନଶି ଧନ ତନୁ ତା ହେଲାଣି କ୍ଷୀଣ
ନୟନରୁ ବହି ଯାଉଛି ଲୋତକ ଧାର । ୨ ।
ଆଉ ନାହିଁ ପ୍ରାଣେ ଆଶା ମୁଖୁଁ ନ ସ୍ଫୁରଇ ଭାଷା
ଲଭୁଛି ଦାରୁଣ ଦଶା କି ନାର ଗାର । ୩ ।
କାହିଁକି ଏ ଅବସ୍ଥାର କଲଟି ନନ୍ଦ କୁମର
ସହିବ ସିନା କିଶୋରୀ କି ଯିବ ମାରି । ୪ ।
ବେଣୁଧର ବୋଲେ ଭାଳ ଆହେ ଶଠ ବନମାଳୀ
ଦୁଃଖ ଜଳଧିରୁ ମୋ ସଖୀକି ଉଦ୍ଧାର । ୫ ।
( ପ୍ରାଣ ସଙ୍ଗିମାରେ ନେହାନନ୍ଦ ପସରା—ବୃତ୍ତେ )

( ରାଗ—ଚିନ୍ତା କେଦାର । ତାଳ—ଝୁଲା । )

ହେ ମୁରଲୀଧର ମୋହନ ସୁନ୍ଦର ହୋଇଲ କି ଏଡ଼େ ଛଳ ।
ଯେଉଁ ଅପରାଧ ଦେଖି ମୋ ସଖୀକି, ଏତେ ସବ କରିଦେଲ ହେ, ଶ୍ୟାମ !
ତାକୁ ଘୋଟିଛି ବିରହତମ ହେ, ଶ୍ୟାମ ।
ବଳ ପଡ଼ୁଛି ବ୍ୟାଧି ବିଷମ ହେ, ଶ୍ୟାମ । ୧ ।
ନ ଦିଶେ ଭରଷା, ସତେ ମୃଗଦୃଶା, ବଞ୍ଚିବ ଆଉ ପରାଣେ ।
କେତେ ଉପଚାର ବୃଥା ହୋଇଲାଣି ତା ଦୁଃଖ ସେ ସିନା ଜାଣେ ହେ, ବନ୍ଧୁ
ତୁମ୍ଭେ ପରା ଅଟ କୃପାସିନ୍ଧୁ ହେ, ବନ୍ଧୁ !
ରାଇ ଜନ ଯାଏ କାନ୍ଦି କାନ୍ଦି ହେ; ବନ୍ଧୁ । ୨ ।
ଆହା କି ହେଲାଟି, ଗୁରୁ ନିତମ୍ବିନୀ, କାହା ଆଗେ ଗୁଣ କହିବୁଁ ।
ଆଠ ସଖୀ ଯାକ, ଝରାଇ ଲୋତକ, ଦିବାନିଶି ବସି ଝୁରୁଁ ହେ, ହରି, !
ଆମ୍ଭ ସମ୍ପତ୍ତି ଯାଉଛି ସରି ହେ, ହରି !
ଲଭି ନ ଥିଲା ଦଶା ଏପରି ହେ, ହରି । ୩ ।
କାହାକୁ ଏ ନିନ୍ଦା ହେବଟି ହେ ଛନ୍ଦାଚରଣ ବସ୍ତ୍ର ଚୋରେ ।
ରାଧା ବାଧା ଯଦି ତୁମ୍ଭେ ନ ହରିବ ଅନାଥ ହେଲୁ ସମସ୍ତେ ହେ, କାହ୍ନୁ !
ଅଛି କି ଗତିଟି ତୁମ୍ଭ ବିନୁ ହେ, କାହ୍ନୁ !
ଚିନ୍ତା ହର ବେଣୁଧର ମନୁ ହେ, କାହ୍ନୁ । ୪ ।
( କିଶୋରୀ ଉଦ୍ଧାରେ—ବୃତ୍ତେ )

# ଦୂତୀ କଥନ

( ରାଗ—ଚୋଡ଼ପରଜ । ତାଳ—ଅଠତାଳୀ )

ମୋ ସଙ୍ଗଟି, ସରମେ ପୋଡ଼ୁଛି ହରି ।
ନରମେ ତା ଚିତ୍ତ କାଚିଁରେ କଞ୍ଚିତ, ହେ ଶ୍ୟାମ ରଖ ଉଦ୍ଧରି । ଘୋଷା ।
ସେଁ ଝରବରନା, ହେବ କାହାର ନା, ଭ୍ରମେ କଲେଟି ଏପରି ।
କେବଳ ଅଙ୍କାରୀ, ନେବ ଶିରିପତି, ନର୍ଦ୍ଧସୁ ଧର୍ନ୍ତି ଆଚରି । ୧ ।
ବରଜ ବଜାରେ, ନିରଜ ନୟନା, ମୁଖଟି ତଳକୁ କରି ।
ସରଜଇ ଗତି, ତରଜଇ ନତି, କୁଟିଳା ଚାହୁଁଲି ମାରି । ୨ ।
ଏକେ ରଜବାଳା, ସେ କେଶମଞ୍ଜୁଳା, ଆଜନମ ସୁକୁମାରୀ ।
କେ କେତେ ଭର୍ତ୍ସନା, କରନ୍ତି ତା ପିନା, ସହୁଛି କର୍ମ ଅନ୍ତରି । ୩ ।
ଏଣିକ ତା ଦଶା, କେଣୀକ ହୋଇବ, ? ନ ପାରୁଛୁଁ ଅନୁ କରି ।
ହେ ନୀଳ ମୁରତି, ଘେନ ମୋ ବିନତି, ଚଳ ବେଣୁଧର ଶିରୀ । ୪ ।
( ରେ କଟଶାରୀ ! ପଦେ·ଛୁଇଁବୁ—ବୃନ୍ଦେ )

—o—

# ସଖି ଉକ୍ତି

( ରାଗ—ଖଣ୍ଡ ବଙ୍ଗଳାଶ୍ରୀ । ତାଳ—ସରିମାନ )

ନଟନାଗର ହେ ! କେଡ଼େ ନାରଖାର ହେଲ ?
ମାରଦଣ୍ଡେ ପଡ଼ି ଗଲ ସାହା ସତି ଲମ୍ପଟବର ଛଇଳ । ଘୋଷା ।
ସଖୀଙ୍କ ସଙ୍ଗରେ, ରହସ୍ୟ ରଙ୍ଗରେ, ସେ ବୃଷଭାନୁ ଦୁଲାଳୀ ।
ଏହି କାନନକୁ, ଆସିଥିଲେ ବୁଲୁ ଦମ୍ଭ କରି ଫୁଲ ତୋଳି । ୧ ।
ତା ଶୋଭାକୁ ଚାହିଁ, ହୋଇଗଲ ବାଇ, କେଉଁଣ ଚେତନେ ଦେଲ ଦୃଷ୍ଟି ।
ଏବେ ମାର ଶରେ, ନୀଳ ଶ୍ରୀଅଙ୍ଗରେ, କଲଣି ଅନେକ ବୃଷ୍ଟି । ।
ବାପି ନୀଳକଣ୍ଠି, ପରି ହେ ମାଧୋଇ, ସୁଷମା ଚଳଣି ଢଶୀ ।
ସହୁନାହିଁ ଦେହ, ଦେଖି ନେହ ଲୁହ, ଧାଉଁକୁ ହେ କଳାଶଶୀ । ୩ ।
ସେତ କୁଳନାରୀ, ଆହେ ବଂଶୀଧାରୀ, ତୁମ୍ଭ ପ୍ରୀତିରେ କେପରି ?
ବଳିବ ତା ମନ, ହେଉଛ ଉଛନ୍ନ, ବୃଥାଟାରେ ଭ୍ରମ କରି । ୪
କେଡ଼େ ମୁଁ ତାହାକୁ, ତୁମ୍ଭ ନିକଟକୁ, ଆଣିବି ପ୍ରବନ୍ଧରେ ।
ଢଶୁନାହିଁ ବୁଦ୍ଧି, ଲାବଣ୍ୟ ଜଳଧି, ଲାଗୁଛି ମୋ ମନେ ଶଙ୍କା । ୫ ।
ଚଳିଟି ଏଥର, ଆହେ ଚଉଁରେବର, ମଣ୍ଡିଥାଅ କୁଞ୍ଜବାସ ।
ଆଜ ରଜନୀରେ, ପ୍ରଥମ ପ୍ରହରେ, କହିବ ସବୁ ସନ୍ଦେଶ । ୬ ।

କହ୍ବଣ ଏ ବଧି, ସଖି ଲୀଳାନିଧି, ମିଳନ୍ତେ ଆଳୀଙ୍କ ମେଳେ ।
ସେ ସ୍ୱଷ୍ଟଳ ବାଣୀ, ବେଣୁଧର ଭଣି, ଧ୍ୟାଇ ତାଙ୍କ ପାଦ ତଳେ ।୭।
(ଢ଼ର ନାହିଁକ ହେ ପରତରୁଣୀ ହରଣୁ—ବୃତ୍ତେ )

—❋—

## ଦୂତୀ ସମ୍ବାଦ

ରାଗ—ଖମ୍ବାଜ । ତାଳ—ଝମ୍ପା )

ସଇପିବଟି ଧନ୍ୟ ! ଆହେ ମୁରଲୀପାଣି । ଘୋଷା ।
ଅଶନ ବସନ, ଗରଳ ସମାନ, ମଣୁଛ ଚନ୍ଦ୍ରବଦନୀ, ମୁରଲୀପାଣି । ୧ ।
କୋକିଳ ବଚନ, ବଜ୍ର ପର ଜାଣ, ତାହାକୁ ଏବେ ହେଲଣି, ମୁରଲୀପାଣି ୨
ଚନ୍ଦନ କର୍ପୂର, ସୁବାସ ଅତର, ଲାଗି ନୁହେ ମୋ ସଙ୍ଗିମା, ମୁରଲୀପାଣି ।୩।
ବଞ୍ଚିବ କ ସତେ, ନାହିଁ ମୋ ପରତେ, ମୁଖୁଁ ତା ନଷ୍ଟୁରେ ବାଣୀ, ମୁରଲୀପାଣି
ଲଳିତାର ବାଣୀ, ଶୁଣି ବଂଶୀପାଣି; ବଳପେ ଯହିଁ ଠାକୁରାଣୀ ମୁରଲୀପାଣି ।୪।
ସେ ଯୁଗଳପଦ, କରଣ ସମ୍ପଦ, ଅଧମ ବେଣୁଧର ଭଣି, ମୁରଲୀପାଣି ।୭।
( ରାଧେ ଶ୍ରୀରାଧେ ବୋଲି, ବାଜ ବାଜ ମୋ ବଂଶୀ—ବୃତ୍ତେ )

—୦—

## ଦୂତୀ ସମ୍ବାଦ

( ରାଗ—ଭୈରବ । ତାଳ—ଏକତାଳୀ )

ଆହେ ମଦନ ମୋହନ !
ତବଲାଗି ଶ୍ରୀମତୀ ଟଳନ୍ତି ସର ହେ । ପଦ ।

ପୂର୍ଣ୍ଣଚନ୍ଦ୍ରମା ବଦନୀ ଦିନେହେ କ୍ଷିଣ ହେଲଣି
କୃଷ୍ଣପକ୍ଷ ଶଶୀ ଦିଶୁଛି ଗୋସାଇଁ ।
ଅନବରତେ ଅନଙ୍ଗ ଦହେ ତା ଲାବଣ୍ୟ ଅଙ୍ଗ
ଆତା ଦିଶୁନାହିଁ ସତେ ବଞ୍ଚିବ ରାଜକୁମାରୀ । ୧।
ଶୀତଳ ଅଏସେ ଧମାର ଅଙ୍ଗେ କର୍ପୂର ଫମାର
ଚନ୍ଦନାଦି ମାର ନେଇ କଲେ ଲେପନ ।
ଅନଳ ଭଳେ ତପୁର ନାହିଁ ଅନ୍ୟ ଉପଚାର
ଶତପ୍ରେ ବାଳାମଣି କରୁଛି ଶପନ । ୨ ।
ଶଶୀଙ୍କ ମଣେ ଦିନେଶ ସମୀର ଘାରୁ କୁଳିଶ
ସଜଳ କମଳ ଦଳ ହୁଏ ହୁତାଶ ।
ସନ୍ଧ୍ୟା ସଦନ ତାର ରତ୍ନ-ନନ୍ଦନ ମନ୍ଦର
ସିଂହୀନ ଅମ୍ବର ମଣେ କାମରାଜ ବନ୍ଧ ପାଶ ।୩।

ଅଧର ଭୂଷଣ ମନ                ତାକୁ ଭୁଜଙ୍ଗ ସମାନ
ଅମୃତ ସମ ଅଞ୍ଜନ ହେଲାଣି ବିଷ ।
ଖଞ୍ଜନ ଗଞ୍ଜୀ ନେତ୍ରମା                ହଜ ଯାଉଛି ପାତନା
ଦେଖନ୍ତି ତାହାଙ୍କୁ ଯେତେ ଯାମିନୀ ଉତ୍କଣ୍ଠେବଶ । ୪ ।
ସଖୀମାନେ ବେଢ଼ିକରି                ହା ରାଧେ ପୁଚ୍ଛନ୍ତି ପୁଣି
ଲଗିଥିଲେ ରସବଶ ସେବାରେ ସଙ୍ଗେ ।
ଏଷଣି ଅଇଲା ଦେଖି                ବଞ୍ଚିଥିବ ନାକ ସଖୀ
ବେଣୁଧର ବୋଲେ ତାକୁ ଏ ଦଣ୍ଡ ହେଲା କ ଘଟେବ ।୫।
( ଆରେ କୁଟିଳ ହୃଦ ତୋ ବୁଦ୍ଧି ଜାଣିଲଣି—ବୃନ୍ଦେ )

—୦—

## ଲଳିତା ଉକ୍ତି

( ରାଗ—ଧନାଶ୍ରୀ । ତାଳ—ଏକତାଳି )

ହେଲା କ ଦୋଷୀ ହେ, ଶ୍ୟାମ ! ଏଣିକ କେଶୋଶ୍ରୀ । ଘୋଷା ।
ନୟନୁ ନିରନ୍ତେ ତାର                ନୀର ବହେ ଧାର ଧାର
ହାର ହେବାରୁ କୁଚ ଉପରେ ବର୍ଷି ବର୍ଷି । ୧ ।
ଷ୍ଟାଳ ତବ ପ୍ରୀତିକ                ଜାଳ ରତ୍ନ-କଣ୍ଠିକ
ମାଳ କରନ୍ତୁ ନାମ ଏକା ଜାନନେ ଆସି । ୨ ।
ରତ୍ନ ରଙ୍ଗରେ ପଢ଼                ସଞ୍ଚ ଧରମ ଗ୍ରୁଢ଼
ଜାଣ ଘନ ମହତ ତେଜିବାରୁ ସୁକେଶୀ । ୩ ।
ଜାମ ଦେଇଯାତର                ଭ୍ରମ ହେବାରୁ ତାର
ଦାମ ହେଲ ଏ ବେଣୁଧର ଗୀତରେ ଭାଷି । ୪ ।
( କାହ୍ନିଁକ ମାନ ରେ, କହ କହ ଗାବଧନ—ବୃନ୍ଦେ )

—୦—

## କୃଷ୍ଣ ଉକ୍ତି

ରାଗ—ଭାଟମାରୀ । ତାଳ—ଆଠତାଳୀ )

ହେ ସଖି ଲଳାନିଧି, ହଜଇ ମୋର ବୁଦ୍ଧି ।
ଧୀରି ବଞ୍ଚନା ତମ୍ଭ ଏଣିକ କରେ । ୦ ।
ଦୁଃଖ ସିନ୍ଧୁରେ ଭାସି                ଚଳିଟିରେ ସୁକେଶୀ
ରଖ ମୋ ଜନ୍ମଲବ ବାଣୀଜରେ ।
ଏ କେଳ ମାଗ ଭଳ                ଭଜଇ ମୁଁ କେବଳ
ଛୁଟାଇ ଦେଇ ମୋର ଆଣିକ ରେ । ୧ ।

ଗଡ଼ୁଅଛୁ ଧୂଳିରେ ଚରଣ ସଙ୍ଗିନି ରେ
ନ ଯାଇ ଯିବ ଆଜ କେଣିକ ରେ ।
ତୁ ଯିନା ମୋତେ ସୁଖ ଦିଆଜ ରେ ଅନେକ
ସମର୍ପି ପ୍ରେମ ସୁଧା ଗୁଣିକ ରେ ।
ମନ ଶୁଖାଇ କଥା— ନ କହ ଆଜ ବ୍ୟଥା
ବଳ ପଡ଼ୁଛୁ ତୋଠୁଁ ଶୁଣିକ ରେ ।
କୃପାକଟାକ୍ଷ ତାଳ ଏହି ପ୍ରସଙ୍ଗ ଝାଳି—
ଦିଏ କହି ତା ସଖୀ ଶ୍ରେଣୀକ ରେ । ୩ ।
ସମସ୍ତେ ସମଜାଇ ପଦେ ଦ୍ୱି ପଦ କହି
ଭେଟାଅ ଶ୍ରୀ କତେଶୋଭାମଣିକ ରେ ।
ତୋ ଲେଉଟିବା ଯାଏ ମୋ ପ୍ରାଣ ରଖି ଥାଏ
ଗୁହିଁଛୁ ଶିରେ ମାର ପାଣିକ ରେ । ୪ ।
ଯେପର ଚନ୍ଦ୍ରମୁହିଁ ଆସିବ ସ୍ନେହ ବହି
ସାର୍ଥକ କର ଏ ରଜନୀକ ରେ ।
ନ କଲେ ତୁ ଏମନ୍ତ ନଷ୍ଟେ ଏ ପ୍ରାଣକୁ ତ
ହାରିବ ଏହା ଥାଅ ଜାଣିକରେ । ୫ ।
ଶ୍ରୀକୃଷ୍ଣ ବଚନ ଶୁଣି ସଖୀ ଭାରତୀ
ନବୀନ ଘନ ନୀଳମଣିକ ରେ ।
କହଇ ବେଣୁଧର ସେ ପଦ ଗୁଣି·ଗୁଣି
ଲଭିବ ବରଜ ତରୁଣୀକ ରେ । ୬ ।
( ସଜନୀ ଆଜ ରଜନୀ ରେ—ବୃନ୍ଦେ )

—o—

( ରାଗ—କେଦାର । ତାଳ ଝୁଲ )

ଆରେ ମୋ ସହି ! ଲଳା ନଧି ଚତୁର ।
ଦେଖ ମୋ ଧୂର୍ତ୍ତ ଏବେ ଯାଉଛୁ ସରି ରେ । ୧ ।
କୃପା କଟାକ୍ଷେ ମୋତେ ଅନାଅ ଥରେ ।
ସେ ଧନୀ ପାଶେ ଯାଅ ବୁଝାଇ ବାରେ ରେ । ୨ ।
ରାଧା ଛାବକରେ ମୋତେ ମନ୍ଦାଇବାକୁ ।
ତୁମ୍ଭମାନଙ୍କ ଭଳି ସଖୀ ଥିବାକୁ ରେ । ୩ ।
ଏ କୁଞ୍ଜ ପଟେ ଯିବା ଭରଷା କରି ।
ରହିଛି ମୋର ପିଣ୍ଡ ଚରଣ ଧରି ରେ । ୪ ।

ଲେଉଟି ଆସିବାର ପର୍ଯ୍ୟନ୍ତ ଭୁଲି ।
ପଥ ଚାହିଁ ରହିଛୁ ଜାଣିଥା ସଜନି ରେ । ୫ ।
କହିବୁ କଠୋରିକ ଏତିକ ଦିନ ।
ବଞ୍ଚିବ ନାହିଁ ଶ୍ୟାମ ଦନ୍ତ, ତୋ ବିନା ରେ । ୬ ।
ଶୁଣି ଏ ବାଣୀ ନନ୍ଦସୂନୁଙ୍କଠାରୁ ।
ସଖି ମନରେ ଦୁଃଖ ହୋଇଲା ଗରୁ ଯେ । ୭ ।
ଭାଷିଲା ଆହା ବୋଲି ସେ ଗୁଣନିଧି ।
ବେଣୁଧର କହଇ ରସେ ପ୍ରବୋଧି ଯେ । ୮ ।
( ଶ୍ରବଣେ ଧାନକର ରସିକ ଭକ୍ତ—ବୃନ୍ଦେ )

—0—

( ରାଗ—ସିନ୍ଧୁଡ଼ା । ତାଳ—ରୂପକ )

ପଦ୍ମନୟା ପଦ୍ମମାଳି !
ପଦ୍ମବାସିନୀ ମୋ ପ୍ରିୟଥାଳୀରେ । ଘୋଷା ।
ଛୁଦ୍ର ନନନ୍ଦ କନ୍ଦ ଥରେ ମନ୍ଦାର-ଅଧର ପରଶ ଆଳ ରେ ।
ସଦ୍ଧୁ କାରଦ୍ୱାର କଞ୍ଚ ମଦନର ବେଫଣ୍ଡ଼େଲ୍ କ ଦୁଗାଲ ରେ । ୧ ।
ଆଜନମ ସୁଖୀ ରାଜ ଜେମାମଣି କଂଶୋଘ୍ନ ନୂଆ ଛଇଳୀ ରେ ।
ରାଜହେଲଟି ? ଆଜ ଏ କୁଟୀକା ରାଜବାକୁ ନୋହୁ ଚଳ ରେ । ୨ ।
ଚଖାଇ ମଧୁର ଧର ସୁଧାବାଶ ରଖଇବ ଦାସ ଭଳ ରେ
ଶିଖାଇବ ମୋତେ ତା ପ୍ରେମସଙ୍ଗୀତ କରୁଣା କଟାକ୍ଷ ତାଳ ରେ ।୩।
ଦଣ୍ଡିଦିବ ସତେ ମୋର ଏ ବେଦନା ଖଟି ତା ଚରଣ ତଳ ରେ
କଟିମଧ୍ୟା କ କ ତୋତେ କହୁଛୁ କ । ଜଟି ନ ଦେଇଣ ବାଳୀ ରେ ।୪
ଅଧଦୁର୍ଦ୍ଧ ଆସୁ ଆସୁ ମୁଁ ତାହାକୁ ମାଗୁଣ୍ଠିବ କର ଅଳ ରେ ।
ନଧଳ ମନରେ ପୁରୁବ ଭାବକୁ ବୋଲି ଦେବ ଜାଣ ତୋଳ ରେ ।୫।
ଚଳମ୍ବ ନକର ଶୁଭ୍ର ସମାଗ୍ଲର ବଢାଅ ଦୁଲ୍ଲ ନ ଛଳ କେଉ ।
ତିଳଫୁଲ ନାସା ମାଳତୀ ଫୁଲ ଦେଖିବ ନକ ସମ୍ବାଳ ରେ । ୬ ।
ଏପରି କହନ୍ତେ ସଫଳ ନେସକୁ ମାଗଲ ଦାନମାଳୀ ଯେ ।
ଜପନ୍ତ ନରେଖି ସଜନା ଭାଷିଲା ଇଷିତେ ଭ୍ରୂବଲ୍ଲୀ ଚାଳି ଯେ । ୭ ।
ସେ ଭାବ ରସିକ ବ୍ରଜ ଯୁବରାଜ ରାଜୀବ ପଦ ଯୁଗଳ ଯେ ।
ନଶୀ ଭବସରେ ମନ ବେଣୁଧର କରନ୍ତୁ ପ୍ରାଣ ସଙ୍କାଳ ଯେ । ୮ ।
[ ଆଜନମ ସୁକୁମାର ! ରାଜନନ୍ଦନା କଡ଼ ବନ୍ତ ରେ —ବୃନ୍ଦେ )

—0—

## କୃଷ୍ଣ ଉକ୍ତି

(ରାଗ—ନଳିନୀ ଗୌଡ଼ା । ତାଳ—ଝୁଲ )

ଦୂତୀ କହୁଛୁ ଏବେ ।

ମୋ ପ୍ରାଣ ପ୍ରତିମାକୁ ଆଜ ଏକାନ୍ତେ ।   ଘୋଷା ।
ଘୁଇ ପରାସ୍ତେ ଠୋର ମୋ ନଜରକସ ।
ଢଳଛୁ ଦେହ ପ୍ରାଣ ପଦେ ତାହାର । ୧ ।
ତା ନାମ ଗାଇବାକୁ ଏଣ୍ୱ ମୁରଲୀ ।
ଧରି ବୁଲଇଁ ସଦା ଯମୁନାକୂଳ । ୨ ।
ତାର ବରନେ ରସି ରଜନୀ ଦିନ ।
ପିନ୍ଧୁଛୁ ସିନା ଏଣ୍ୱ ପୀତବସନ । ୩ ।
ତା ରୂପ ଗୁଣମୋର ଭଜନ ମାଳୀ ।
ମୋର ସର୍ବସ୍ୱ ବୃଷଭାନୁ ଦୁଲାଳୀ । ୪ ।
ଏଣୁ ମୋ ନାମ ଆଦ୍ୟେ ତା ନାମ ଲେଖା ।
ଯୁଗେ ଯୁଗେ ରହିବ ପ୍ରେମ ପଞ୍ଜିକା । ୫ ।
ସଞ୍ଜେ କଞ୍ଜାନନୀକ କୁଞ୍ଜକୁ ଆଣ ।
କହଚନ୍ଦ୍ର ମେଳଣି ମାଗେ ତକ୍ଷଣ । ୬ ।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେ )

—o—

## ଦୂତୀ ଉକ୍ତି

( ରାଗ—ମାୟାମାଳବ ଗୌଡ଼ା । ତାଳ—ଆଠତାଳୀ )

ଧର୍ମପାଶେ ଯାଉଛୁ ହେ, ମୁରଲୀପାଣି !
ତୁମ୍ଭ ଦୁଃଖ ତାରେ ଯମ ଯାଉଛୁ ହେ । ଘୋଷା ।
( ଏ ) ଅଙ୍ଗ ଲଗି ମାଳା   ପାଇଲେ ଛଇଳା,
ନ କରିବ ହେଲା ଯତ କହୁଛୁ ହେ । ୧ ।
ଆହେ ଶଠଶେଖର,   ରସିକ ଭ୍ରମର,
ସୁଖେ ଥାଅ ମୁଁ ମେଲାଣି ହେଉଛୁ ହେ । ୨ ।
ବରାଙ୍ଗଣୀ ଗଣ;   ଥିବ ପଥ ଚାହିଁ,
ଦେବ ଏ ସଙ୍କେତ ନେଇ ଶ୍ରୀବଂଶୀ ହେ । ୩ ।
ମୋର ଦୁଃଖପଣେ,   ଦେଖିବ ଏକ୍ଷଣେ,
ଭଣେ ବେଣୁଧର ଧ୍ୟାନ, ଯାଉଛୁ ହେ । ୪ ।
( ବରଜଶୀଷ, ସଖି ଯିବେଟି ସରି—ବୃତ୍ତେ )

—✿—

( ସଖୀପ୍ରତି ଶ୍ରୀରାଧା )

( ରାଗ—ଦକ୍ଷିଣକାମୋଦ । ତାଳ—ଝୁଲା )

ଆସ ଆସ କନା ସଖୀ ପ୍ରାଣକୁ ମୋହର ।
କସ କସ କହୁଛନ୍ତି ସେ ମୁରଲୀଧର । ଘୋଷା ।
ଢଣି ଢଣି ଯାଉଛନ୍ତି ଶୁଭଇ ସଙ୍କୁଳ୍ୟ ।
ରସି ରସିକ ଚନ୍ଦ୍ରକ ଆସିବେ ସଦନ । ୧ ।
ପର ପରମ କଷଣ ଦେଉଛି ନରତେ ।
ସହି ସହୁଛି ମୋହନ ଆସିବା ପର୍ଯ୍ୟନ୍ତେ । ୨ ।
ଦର ଦର ଧର ସତେ ନାଶିବେକ ଆଜ ।
ମରମର କଷ୍ଟ ସହି କହିବାକୁ ଲାଜ । ୩ ।
ସେବ ସେବ ସେ ଯୁଗଳ ପଙ୍କଜ ଚରଣ ।
ଭାବ ଭାବ ବେଣୁଧର କରଇ ରଚନ । ୪ ।
( ଯାରେ ଯା ଲୁ ବାଟେ ବାଟେ ସୁମାଣ୍ଡ ନନ୍ଦନ—ବୃନ୍ଦେ )

—❀—

# ଦୂତୀ ସମ୍ବାଦ

## ସଖୀ ଉକ୍ତି

( ରାଗ—ଲଳିତରଙ୍ଗ । ତାଳ—ଝୁଲା )

ଜ ଜହ୍ନିବ ଗୋ, ଶୁଣ ଆଜନ୍ମ ସୁଖୀ !
ଅକଳଙ୍କ ପୂର୍ଣ୍ଣଚନ୍ଦ୍ରମା ମୁଖି ! ଘୋଷା ।

ଯାହା ଦେଖି ଆସିଛି ମୁହିଁ    କାହା ଦେହ ସହିବ ସହି !
କେଶର ନକୁଞ୍ଜ    କଳେଲ୍ପ ଶୋଷ,
ଗଡ଼ୁଥିଲେ ଝୁରି ତୋ ରୂପଟିକ । ୧ ।

ଭୁଜେ ଶ୍ୟାମ ନରଣଧନ,    କେଉଁପରି ବୁଝେ ତୋ ମନ,
ହା ହା ରାଧେ ବୋଲି    ଦୁଃଅନ୍ତ ବାଉଳ,
ଘୁଞ୍ଚିରେ ଲଦ ତୋ ଚନ୍ଦ-ପଟିକ । ୨ ।

ନନ୍ଦକୁଳ ପୁନଅଁ ଶଶୀ,    କ ଅଶୋଭ ଗଲେଣି ଢଳି,
ଆହା ବୋଲି ଥରେ    ନ ବୋଲୁ ମୁଖରେ,
ଦରୁଟି କୁହା ସରୁଆଜଟିକି । ୩ ।

ପ୍ରାଣବନ୍ଧୁ ଦଶା ଯେପରି, ନେଷ୍ଟୁ ନେଷେ ନରହେ ବାରି
ବୋଲେ ବେଣୁଧର, ମାନସେ ବିସ୍ମର,
ଏକଥା ସୁନ୍ଦର ହେଉଛି କି ? । ୪ ।
( ହେଉ ନନ୍ଦା ହେ, ଆଜ ନକର ଛନ୍ଦ—ବୃତ୍ତେ )

—❋—

## ଶ୍ରୀରାଧାଙ୍କ ପ୍ରତି ଦୂତୀ ଉକ୍ତି

( ରାଗ—ଆଷାଢ଼ଶୁକ୍ଳ । ତାଳ—ଝୁଲ )

ଆହା ! ମରି ମରି ! କି ଦୁଃଖ ଲଭିଲେ ମୁରଲୀଧାରୀ ଗୋ । ଘୋଷା ।
ଶୁଣ ଶୁଣ ଆଗୋ କିଶୋରୀମଣି । ନୀପମୂଳେ ଶ୍ୟାମ ତ୍ରିଭଙ୍ଗୀଠାଣି ।
ତୋ ରୂପକୁ ବସି କରନ୍ତି ଧ୍ୟାନ । କେତେବେଳେ ହଜାଉଛନ୍ତି ଜ୍ଞାନ ଗୋ ।
ଆହା ମରି ମରି ! କି ଦୁଃଖ ଲଭିଲେ ମୁରଲୀଧାରୀ ଗୋ । ୧ ।
ବୋଲୁଛନ୍ତି ମୁଖେ ହାହା ରାଧିକେ ! ରଖ ରଖ ଆସି ମୋ ପ୍ରାଣାଧିକେ ॥
ନେତ୍ର ନେଇ ନୀର ଯାଉଛି ବହି । ଗଦ ଗଦ ବାଣୀ କଣ୍ଠ ଆସଇ ଗୋ ॥
( ଆହା ମରି ମରି ) । ୨ ।
ବିଭଙ୍ଗ ଦିଶୁଛି ଶ୍ରୀଅଙ୍ଗଶିରୀ । ଚଳେ ଗଡ଼ୁଛନ୍ତି କୁଞ୍ଜବିହାରୀ ॥
ବୋଧନ୍ତି ସଖୀମାନେ ପାଶେ ଥାଇ । ସଚେତା କରନ୍ତି ହୃଦେ ଲଗାଇ ଗୋ ।
( ଆହା ମରି ମରି ) । ୩ ।
ସଖି ! ତୋ ବିରହେ ମନ ମୋହନ । ଅଛନ୍ତି କ୍ଷୀଣ କ୍ଷଣକୁ କ୍ଷଣ ॥
ଛାଡ଼ି ଦିଅ ରୁଷା ତୋ ଧନି । ଘେନ ବେଣୁଧର କରେ ଦହନ ଗୋ
( ଆହା ମରି ମରି ) । ୪ ।
( ଧୀରଚନ୍ଦ୍ର ହୃଦପଦ୍ମ ମିହିର — ବୃତ୍ତେ )

—❋—

## ସଖୀ ଉକ୍ତି

( ରାଗ—ରସକାମୋଦ । ତାଳ—ଆଠତାଳୀ )

ହଟି ନ ବସ ମୋ କିଶୋରୀ ଗୋ ।
ନଟୀ ଶିରୋମଣି ଈଶ୍ୱରୀ ଗୋ । ପଦ ।
ହଟିଅନାଗର ଶ୍ୟାମସୁନ୍ଦର • ତଟିନୀତଟରେ ଜପୁଛି ଧୀର,
ରଟିବାରେ ବଂଶୀ— ହୃଦେନ ନାମ ତୋର,
କଟିମଧ୍ୟ କିଣା କେଶରୀ ଗୋ । ୧ ।

ଖଟିଛୁ ଯା କଞ୍ଜଚରଣେ ଉମା, ଘଟିଛୁ ସେ ତୋର କରମେ କେମା,
ଜଟିଳା କୁଟିଳା ଆକଟ ନ ମାନ,
ଯା ନାମ ନ ପାରୁ ଶୁଣି ଗୋ । ୨ ।

ସେ ଟିକାକ ଦୋଷ କରନ୍ତୁଁ ବୋଲ, ଏଟିକ ଉଚିତ କହ ଛଇଳ,
ଭେଟି ମାପମୁଳେ ସଙ୍ଗୋଳ ଆସ ଭ୍ରୁ,
ଯେତିଁ ଦୁଷ୍ଟକଲ୍ପ ବାଂଶଣ ଗୋ । ୩ ।

କୋଟି କାମ ଯେ ଗୋଟିକ ମୂରତି, ତୋ ଟିକାକ ପ୍ରୀତିରଙ୍ଗା ସେ ଅତି
ଯୋଟିଛୁ ଏକ ତୋ ଆନ ଆନ ସ୍ତତି,
ଲେଖି ପଦେ ବେଣୁ ସଞ୍ଚାର ଗୋ । ୪ ।
( ମୁଁ ଦାଣଲିଁ ଦେଇଁ ଏଣକ ଗୋ— ବୃତ୍ତେ )

—o—

( ତାଳ—ଝୁଲ )

ଆସ ଗୋ ଶ୍ୟାମ ପାଶକୁ ସୁସରଙ୍ଗିଣୀ ନେତ୍ର ମାନ ରେ ।
ମନମୋହନ କାମେ ତପନ ହେଲଣି ତୋର ଧ୍ୟାନ ରେ । ୧ ।
ବେଳକୁ ବେଳ ତନୁ ଦୁର୍ବଳ ଦଣୁଛୁ ଅନ ଆନ ରେ ।
କଲେଣ ହରଷ ନାହିଁ ସେ ସୁସଲପିକ ତାନ୍ଧାନନ ରେ । ୨ ।
ହୃଦପୃ ଘନ ଘନେ ଚକିତ, ଟଳେଜନେନ ବନରେ ।
ଭ୍ରମର ସ୍ୱନ ଶୁଣି ଭ୍ରମରେ, ଉଠି ବସନ୍ତ ଛନ୍ଦ ରେ । ୩ ।
କାମେ ଆକୁଳ ହୁଅନ୍ତ କଳ-କଣ୍ଠର କୁହୁସ୍ୱନ ରେ ।
କୁଞ୍ଜରେ ଫୁଲ ମେଳରେ ନେତ୍ର ! ଅଛନ୍ତି ନନ୍ଦନନ୍ଦନ ରେ । ୪ ।
ମୃଣାଳମାନେ ଜପି ତୋ ନାମ, ଶ୍ରୀଅଙ୍ଗେ ନାହିଁ ଜ୍ଞାନ ରେ ।
ଶ୍ରୀ ବେଣୁଧର କଵନଦ୍ଧୁ ତେଷ ତୋ ସନ୍ନିଧାନ ରେ । ୫ ।
( ନେ ମତ୍ତଗଜଗାମିନ— ପ୍ରିତ )

—o—

## ସଖୀ ଉକ୍ତି

( ରାଗ—ଝିଂଝଟ । ତାଳ—ଏକତାଳୀ )

ଗଜଗତି ସଜହୁଅ କୁଞ୍ଜ ଅଭିସାରକୁ ଗୋ ।
ଖଞ୍ଜ ମାଳ ବେଶଭୂଷା ବହୁଅଳଙ୍କାରକୁ ଗୋ । ଘୋଷା ।
କେଶରୀ କଟିରେ ଭିଡ଼ ପିନ୍ଧ ମାଳ ସୁରୁ ଶାଢ଼ୀ,
ବେଣ ପଧାନ ପାଇଁକ କହ ସଖୀବାରକୁ ଗୋ । ୧ ।

ଚନ୍ଦନ କୁଙ୍କୁମ ଚୂଆ ପକ୍ୱ ତାମ୍ବୁଳ ବଟିଆ

ସଜଡ଼ାଅ ବିନୋଦିଆ ଖଟଣି ଧମ୍ମାଲିକୁ ଗୋ ।୨।

ସୁଷମ କୁସୁମ ହାର ଗୁନ୍ଥାଅ ଗୋ ମନୋହର,

ବିଷମ ବିରହ ତାପ ନାଶ ଉପଚାରକୁ ଗୋ ।୩।

ମରକତ ମାଳମଣି କାନ୍ତିଆ ମୁରଲୀପାଣି,

ଚାହିଁ ବସିଛନ୍ତି କୁଞ୍ଜେ ହଟାଇବେ ମାରକୁ ଗୋ ।୪।

ବେଣୁଧର ଗୀତେ ବୋଲେ ଆଜ ପ୍ରାଣବନ୍ଧୁ ଭୁଲେ,

ନିଧୁବନେ ବିଧୁମୁଖୀ କର ସୁରତରକୁ ଗୋ ।୫।

( ନିଷେଧ କରୁଛୁ ଧନ ମନ ଛନ୍ଦି ମଜ୍ଜାନା—ବୃତ୍ତେ )

—୦—

( ରାଗ—ଦକ୍ଷିଣକେଦାର । ତାଳ—ଝୁଲ )

ଗଜପତି ସଜ ହୋଇ ଥା ଆଜ ସୁମଞ୍ଜୁଳ ସାଜକୁ ।

ରଞ୍ଜ ଗୋ ସଜନୀ ସଜଙ୍କାନନୀ ରତ୍ନାବଳୀ ତେଜକୁ । ଘୋଷା ।

ସଞ୍ଜ ସମସ୍ତ ଗଢ଼ିଲେ ଖଞ୍ଜନନେନୀ ଶ୍ୟାମଭୁଲେ,

ସଜନୀଏ ସଙ୍ଗେ ଆନନ୍ଦ ଉତ୍ସବେ ଦେବୁଁ ରସରାଜଙ୍କୁ ।୧।

କଜ୍ଜ୍ୱଳ କସ୍ତୁରୀ ଘେନ ସିନ୍ଦୂର ବିନ୍ଦୁ ଚନ୍ଦନ,

ରଜନୀରେ ଆଜ କଳାବେଶ ସାଜ ଚଳିବୁ ନିକୁଞ୍ଜକୁ ।୨।

ବ୍ୟାଜ ନ ମଣ ମୋ ବାଣୀ, ତେଜ ଏ ଭରସ ଠାଣି

ମଲ୍ଲି ଜାଇ ଯୂଈ ଦେବୁଁ ଗୋ ବିସ୍ତାରି ବିଳସିବା ଶେଯକୁ ।୩।

ରାଜନନ୍ଦିନୀ ଗୋ ରାଈ ପଦନୂପୁର ବଜାଇ,

ଲାଜ ଦୂରେ ଥୋଇ ଚଳ ବେଶଠାଇଁ ଘେନି ବିଧୁରାଜକୁ ।୪।

ସଜନୀ ବୃନ୍ଦାବଚନ ଶୁଣି ରାଧା ମୋଦ ମନ,

ବ୍ୟଜନ ହସ୍ତରେ ଭାଷେ ବେଣୁଧର ଚିନ୍ତ ପଦକଞ୍ଜକୁ ।୫।

( ଦୁଖ ଭେଟାଇ ପାରିବୁ କି ଶ୍ୟାମବନ୍ଧୁଙ୍କୁ—ବୃତ୍ତେ )

—୦—

## ଦୂତୀ ଉକ୍ତି

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ଧରାମଣ୍ଡନା, ଧୀର ସ୍ଥିର ପ୍ରେମପସରା ।

ପରାଣବନ୍ଧୁ ବିଚ୍ଛେଦେ ଧରାରେ ନ ଜାଉ ଗିରା । ଘୋଷା ।

ସଞ୍ଜବେଳୁ ସଜବାଜ— ହୋଇ ଥା ସଜନ ଆଜ,

ବ୍ରଜରାଜଙ୍କ ତନୁଜ ବିଜେସ୍ୱେ କରିବେ ପରା ।୧।

ବନ୍ଧୁ ତୋର ଅନୁରାଗ ଜନ୍ମିଛନ୍ତି ସେ ଶ୍ରୀଅଙ୍ଗ
ସଖି ! ମୋର କର ଯୁଗ ଧଟଣ ମୁରଲୀ ଧର । ୨ ।
ଆନ ଦେଇଛନ୍ତି ଯେତେ କାନନ ତମାଳ ପଟେ
ଗାନ ପଣ୍ଡିତା ମୁଁ କେତେ କହିବ ତୋ ଆଗେ ସାର । ୩ ।
ସଙ୍କେତ ମାଧବୀ କୁଞ୍ଜ ଅଙ୍କେ ସଜ୍ଜ ଫୁଲ ସେଜ,
ରଙ୍କେ ଧନ ପ୍ରାପ୍ତି ପରି ମଣିବୁ ଜବ'ଅଧର । ୪ ।
କନକ ଚମ୍ପା ବରନା ଧନମଣି ସୁଲୋଚନା,
ସନମତ କଲେ ସିନା ଜଣାଇବ ଶ୍ୟାମେ ଭଲ । ୫ ।
ଦରଦାସ ପରକାଶି ସରମ ଶତ୍ରୁକୁ ନାଶି,
ବରଣମାଳାଟି ଦିଅ ବେଣୁଧର ଦିନ ସର । ୬ ।
( କୁଞ୍ଜବନରେ କାଳିଆ ଦେବତା—ବୃତ୍ତ )



## ସଖୀ ସାନ୍ତ୍ୱନା

( ରାଗ—ଧନାଶ୍ରୀ । ତାଳ—ଆଡ଼ଖେମଟା । )

ଆସ ଆସ ରସେଶ୍ୱରୀ ଆସ ମୋ ସଙ୍ଗର ।
ଦାସକୁ ପ୍ରକାଶି କୁଞ୍ଜେ କର ଅଭିସାର । ଘୋଷା ।
ନ ହୁଅ ମାନିନୀ ଆଗୋ ଚନ୍ଦ୍ରାନନୀ,
ତାଙ୍କ ଲାଗି ଆଜ ମୁଁ କରୁଛି ଦଇନୀ,
ପ୍ରାଣବନ୍ଧୁ ଠାରେ ରାଧେ ! ଏକ ଅଭିସୁର ? । ୧ ।
ଚେତନା ହଜାଉ, ଯେଉଁ ରୂପ ଦେଖି,
ଏବେ ତାଙ୍କୁ ପର ନ କର ସୁମୁଖୀ,
ଧରୁଛୁ ତୋ କର ଦୋଷ ମାଗୁଛି ତାଙ୍କର । ୨ ।
ଯା ମୁରଲୀ ସ୍ୱନେ କର୍ଣ୍ଣେ ଡେରି ଥାଉ,
ଛଳେ ସଖୀମେଳେ ରଖି ପୂଜ ଯାଉ,
ତାହା କେମନ୍ତେ ମାନସରୁ ହେଉଛି ପାସୋର ? । ୩ ।
ଦୂତୀ ବାଣୀ ଶୁଣି ଶ୍ରୀ କିଶୋରମଣି,
ମନୁ ମାନ ତେଜି ଚଳିଲେ ସେକ୍ଷଣି,
ଭଣନ୍ତି ଶ୍ରୀ କୃଷ୍ଣଚନ୍ଦ୍ର ନରେନ୍ଦ୍ର ଏ ଗୀର ।



# ଅଭିସାର ସମ୍ଭାର

## ସଖୀ ଉକ୍ତି

(ରାଗ—ଭୈରବ । ତାଳ—ରୂପକ)

ଜଇଁଲେଣି ଶୁକ୍ରତାରୀ ଫୁଟିଲେଣି ତାରା ।
(ରାଧେ) ପ୍ରେମ ଫୁଲହାର ପିନ୍ଧି କୁଞ୍ଜେ ଯିବା ପର । ଘୋଷା ।
ବଜାଉଛି ଗୋ ବଂଶୀ ସ୍ୱନେ ତୋ ନାମର ସୁଧୀର ।
ଶୃଙ୍ଗାର-କୁସୁମ ବନେ ଛନ୍ତି ଶଉରେଶ୍ୱର । ୧ ।
ପ୍ରୀତି ଚନ୍ଦ୍ରାମଣି ତୋର ସେ ମୁରଲୀଧର ।
ବଢ଼ାଅ ମିଳନ-ସୁଖ ବଧିଲ୍ଲି ଅଧର । ୨ ।
ଗୁନ୍ଥ ଅଛୁ ମନ ଜାଣି ଯତନେ ଫୁଲହାର ।
(ଛଳେ) ଉପହାର ଦେବାକୁ ଗୋ ହେଉଛୁ ଅଧୀର । ୩ ।
ଅଭିସାର ସମ୍ଭାର ଗୋ ସାଜ ନାରୀ ଧୀର ।
ବୋଲେ ବେଣୁଧର ଚନ୍ଦ୍ର ତୋ ପ୍ରେମ ପସର । ୪ ।
( ବୁଡ଼ିଲାଣି ନିଶାମଣି ପାହିଲାଣି ରାତି — ବୃତ୍ତେ )

— ❋ —

## ସଖୀ ଉକ୍ତି

( ରାଗ — ଦେଶାକ୍ଷ । ତାଳ — ଏକତାଳୀ )

ଆସ ଗୋ ନବ କିଶୋରୀ କୁଞ୍ଜରେ ହରି ତୋ ଲାଗି ଗଲେଣି ସରି ।
ଦଳିତାଞ୍ଜନ ମୂରତି ଲଳିତାଙ୍ଗୀ ତୋତେ ଚିନ୍ତି,
ବଳିତା ବ୍ୟାଧି ଶ୍ରୀମତୀ ଭଳି ଏ ଦିଶୁଛି ଗୋରୀ । ୧ ।
ମୃଣାଳ ମାଳେ ତୋ ନାମ ଜପନ୍ତି ଶ୍ୟାମ ମଦନେ ନିନ୍ଦାଇଣ ଧାମ ।
ଶ୍ରୀକରୁ ମୋହନବଂଶୀ ଖେଳି ସେ ମୋହନ ବସି,
ରାଧେ ରାଧେ ଘୋଷି ଘୋଷି ନେତ୍ରୁ ବହେ ଅଶ୍ରୁଧାର । ୨ ।
ତାର କେଉଁ ଦୋଷ ଦେଖି ବାଳକ ମୁଖି ତାଙ୍କୁ କରୁ ଏତେ ଦୁଃଖୀ ।
ସଖି ଧରୁଛି ତୋ କର ତାରେ ଗୁମାନ ନକର,
ଆସ ମୋର ସଙ୍ଗତର ଭେଟିବା କୁଞ୍ଜବିହାରୀ । ୩ ।
ଏନେ ବାଣୀ ଶ୍ରୀମତୀ ଶୁଣିଣ ଗ୍ରନ୍ଥି କୁଞ୍ଜେ ବଜପୁ ଝଟତ ।
ଭାଷନ୍ତି ସମର ପୁର ମହୀ ମଣ୍ଡଳ ଈଶ୍ୱର ।
ଶ୍ରୀକୃଷ୍ଣଚନ୍ଦ୍ର ନରେନ୍ଦ୍ର ଯୁଗଳ ପାଦେ ଯୁହାର । ୪ ।
( ଆସ ଗୋ ବ୍ରଜରାଜ ନାଗର — ବୃତ୍ତେ )

—୦—

( ରାଗ—ଗୁର୍ଜ୍ଜରୀ । ତାଳ—ଝୂଲା )

ଆସ ସଖି ! ଶ୍ୟାମସୁନ୍ଦର ହୃଦର ଝିଣ୍ଡି ଝୁଲାଇବା ଗୋ । ପଦ ।

କେତେ ରଙ୍ଗୀ ଜାଣେ କାଳଆମୁନା । ରସିକନାଗର ଛଇଳ କହ୍ନା ॥

ନାରୀ ଚିତ୍ତ ଚୋର ସେ ଦୁଃଖ ପାସୋର,

ଦର୍ଶନେ ମନକୁ ଚୋରାଇବା ଗୋ । ୧ ।

ନଟବର ବେଶେ କଦମ୍ବମୂଳେ । ଉଭାହୋଇ ଲଟ୍ପଟିବ ନଷ୍ଟୁଳେ ॥

ଦେଖି ସେ ସୁହାଣି, ଛଟା ଠିଆ ଠାଣି,

ହୃଦେ ଚଉପଟ ଗଢ଼ାଇବା ଗୋ । ୨ ।

ଛଳ ପରିହାସ ବାଣୀକି ଗୋ ଶୁଣି । ସଫଳ କରିବା ଶ୍ରବଣ ବେନି ॥

ଅଳପ ଅଳପ, ହସିବା ଭଙ୍ଗୀରେ,

ଅଙ୍ଗ ପୁଲକରେ ଜଡ଼ାଇବା ଗୋ । ୩ ।

ବେଣୁଧର କବିଚନ୍ଦ୍ର ରଚିତ । ଭକ୍ତ ହୋଇ ତାରେ ଅର୍ପିବା ଚିତ୍ତ ॥

ଗୁଞ୍ଜା ଫୁଲ ହାରେ, ସ୍ନେହ ଉପହାରେ

ପୀରତି ପତାକା ଉଡ଼ାଇବା ଗୋ । ୪ ।

( ଆଜ ଗଜରାଜ ଗମନୀ ସ୍ୱପନରେ ଥରେ—ବୃତ୍ତେ )

—o—

## ଦୂତୀ ସନ୍ଦେଶ

( ରାଗ—ସାରଙ୍ଗ । ତାଳ—ଆଡ଼ )

ଆସ ଆସ ସଖୀ ନିକୁଞ୍ଜ କାନନେ ।

କାହିଁପାଇଁ ତୁମେ ସହି ବସିଛୁ ଗୁମାନେ । ଘୋଷା ।

ସେ ନନ୍ଦନନ୍ଦନ ମୁରଳୀ ବଦନ

ବସି ତୋ ନାମ ଜପୁଛନ୍ତି କୁଞ୍ଜ ନିକେତନେ । ୧ ।

ଚେ ଲଗି ମୋହନ ମଦନେ ଦହନ—

ହେଲେ କସ ଅରଜବୁ ବସୁର ଭୁ ମନେ । ୨ ।

କଣୋଗ୍ର ଉଚନ ଚେଜ ଅଭିମାନ

କଞ୍ଜଚେ ସୁଚରେ ଗୃହାଁ ଗୁରୁ ଚନ୍ଦ୍ରାନନେ । ୩ ।

ମାନ ଚେଜ କୁଞ୍ଜେ ଶ୍ରୀ କଣୋଗ୍ର ଭଜେ

କବିଚନ୍ଦ୍ର ବେଣୁଧର ବିନୟ ବଚନେ । ୪ ।

( ଦେଖ ଦେଖ ସଖି ! କାଳ ବଂଶୀଧର—ବୃତ୍ତେ )

—※—

( ରାଗ—ବସନ୍ତ । ତାଳ—ଏକତାଳୀ )

ରାସ ରଙ୍ଗିନରେ; ଆସ ଏ ବିଳମ୍ବ କାହିଁକ ?
ବାସନ୍ତୀର ମୋହନ ତୋ ମନେ ପଡ଼େ ନାହିଁକ ? । ଘୋଷା ।
ହାସ ମଞ୍ଜୁଳା ସୁଷମା    ବୃଷଭାନୁ ରାଜଜନମା,
କେତେଗୋଜତ ମଧ୍ୟମା ଦେଖିବା କହ୍ନାଇଙ୍କ । ୧ ।
ପାଶରେ ତାଙ୍କର ସଖୀ    ଭାଷ ମୃଦୁବାଣୀ କହି,
ନାଶ ମନୁ ମାନ ବହି-କୃପା ଆସ ରୁହିଁକ । ୨ ।
ବସନ୍ତ କୋଇଲ ସ୍ୱନ    ରସମତ୍ତ ବୃନ୍ଦାବନ,
କେଶର କୁଞ୍ଜ ଯେପରେ ପଦ୍ମଡ଼ ଭୁ ଯାଉଁକ । ୩ ।
ଭଣଇ ବେଣୁ ଅଜ୍ଞାନ    ତୋଷ ହେବ ସତେ ମନ,
ଦର୍ଶନ କରି ଯୁଗଳ ଶ୍ରୀରାଧା ମାଧୋଇଙ୍କି । ୪ ।
( ପ୍ରାଣ ଧନି ନରେ, କାଲ ମୁଁ କ ଲଜେ ବୁଡ଼ିଲା—ବୃତ୍ତ ]

—୦—

( ରାଗ—ପରଜ । ତାଳ—ଆଠତାଳୀ )

ଆସ ଗୋ ନାଗ ହାର ! କୁଞ୍ଜକୁ ଯିବା ପରା ?
କି ରଙ୍ଗେ ନାମ ଧରି ଡାକେ ମୁରଲୀଧର । ଘୋଷା ।
ଆହା ସେ ବଂଶୀ ଗୀତ,—    ଶୁଣି କାହାର ଚିତ୍ତ ?
ନୋହିବ ଉନ୍ମାଦିତ, ସେ ଯେଉଁ ଧୃତିଧର । ୧ ।
ଆଗୋ ଘନକୁନ୍ତଳା !    କାହିଁପାଇଁକି ହେଲା ?—
କେଳି କଳାକୁଶଳା ନୋହୁଛ ତୁ ଆତୁର ? । ୨
ସେ ମନ ମୋହନଙ୍କୁ,    ବରଣ କରିବାକୁ,
ଯେବେ ସଖୀମାନଙ୍କୁ ଗୁନ୍ଥିବା ଫୁଲହାର । ୩ ।
ଭଣଇ ବେଣୁଧର    ନିକୁଞ୍ଜରେ ବିହାର—
କରିବା ସେ କିଶୋର ଚନ୍ଦ୍ରଭୁଲେ ତୋ ଧୀର । ୪ ।
( ପର୍ବର ପ୍ରିୟସଖି ! ସର୍ବ ଦରପନେ କ ବୃନ୍ତ )

—*—

( ରାଗ—ରସକଦମ୍ବ । ତାଳ ଖେମଟା )

ସ୍ୱସ ରଙ୍ଗିଣୀ । ଆସ ନିକୁଞ୍ଜବନେ । ଘୋଷା ।
ତୋ ପ୍ରାଣବନ୍ଧୁ,    ଶ୍ୟାମଳ ଇନ୍ଦୁ,
ଡାକୁଛନ୍ତି ବଂଶୀସ୍ୱନେ ( ନିକୁଞ୍ଜବନେ ) । ୧ ।

ହେ କୁଞ୍ଜେଶ୍ୱର ! ନବ କିଶୋର,
ବଂଶୀ ଗାଅ କି ଯତନେ (ନିକୁଞ୍ଜବନେ) । ୨ ।
ରାଧା ଚନ୍ଦ୍ରମଣି— ନେହ୍କୁ ଆଣି,
ରଖ ଅଙ୍କ ସିଂହାସନେ (ନିକୁଞ୍ଜବନେ) । ୩ ।
ଦେଖାଇ ହରଷ, ସାଜ ସୁବେଶ,
ବେଣୁଧର ନିବେଦନେ (ନିକୁଞ୍ଜବନେ) ।୪।
(ଚଣ୍ଡୀ ଯାମିନୀ ହସି କି ଶୋଭାପାଏ—ବୃତ୍ତ)

— ❊ —

## ସଖୀ ଉକ୍ତି

( ରାଗ—ପରଜ । ତାଳ—ଆଡ଼ତାଳି )
କିଶୋରୀମଣି ମୋ ଜୀବଧନରେ ।
କୁଞ୍ଜ ଅଭିସାରେ ବଳାଅ ମନରେ । ଘୋଷା ।
କଳାକାହ୍ନୁ ତୋର ପଥ ନିରେଖି ।
କହୁଥିଲେ ଚନ୍ଦ୍ରା ଆଜନ୍ମ ସୁଖୀ ନରେ । ୧ ।
କନ୍ଦର୍ପ ସୁନ୍ଦର ଶ୍ୟାମଙ୍କ ରୂପ ।
କହିଲେ ଶୁଣିବୁ ମୁଁ ଦେଖାଇ ଦେବ ରେ । ୨ ।
କନକଲତିକା କି ଲଭୁ ଆଜ ।
କର ଗତି ଶ୍ୟାମ କକ୍ଷକୁ ଯାଅ ରେ । ୩ ।
କମ୍ବୁକଣ୍ଠୀ ରୂପ ହୃଦପଦ୍ମ ।
କହେ ବେଣୁଧର ପଞ୍ଚମାପୂର ରେ । ୪ ।
( ଝିଣ୍ଟି ମାସ ଫୁଲ ହେ ଶ୍ୟାମ—ବୃତ୍ତ )

—○—

## ଅଭିସାର

( ରାଗ—ଦେଶବରାଡ଼ି । ତାଳ—ଏକତାଳୀ )
ଗୋ ରାଧେ ଆସ କୁଞ୍ଜ ସଦନେ ।
ଆସ କିଏ ମନମୋହନ,
ବସିଛନ୍ତି ଜାନ ଶରଦ ବଦନେ । ୦ ।
ବଂଶୀ ଶୁଣିବୁ ଖସି ଯିବାରୁ
ଧରିବାକୁ ବଳ ନାହିଁ ଅପଘନେ । ୧ ।

ରାଧେ ଶ୍ରୀରାଧେ    ବୋଲକ ସାଧେ
ଧୀରେ ଧୀରେ ଗାଉଛନ୍ତି ମନେ ମନେ । ୨ ।
ସଙ୍ଗୀ ସ୍ୱରଙ୍ଗୀ,    ଶୁଣି ଶ୍ରୀମଙ୍ଗୀ,
ଆହା ବନ୍ଧୁ ବୋଲି ବଜେ ବୃନ୍ଦାବନେ । ୩ ।
ଏ ବେଣୁଧର,    ସେହୁ ପସୂର,
ଧାଇବ କି ରହୁ ସଙ୍ଗେ ବ୍ରଜ ଧାମେ । ୪ ।
( ହେ ଶ୍ୟାମ ରାଧା ସଙ୍ଗେ ବଞ୍ଚିବ—ପ୍ରଭୁ )

—✻✻—

( ରାଗ—ମାରୁଆ । ତାଳ—ଅଠତାଳୀ )
ଚଳ କୁଞ୍ଜକୁ ରେ ଖେଳ ଖଞ୍ଜନେକ୍ଷଣି ।
ନାଗରୀର ସୁଲକ୍ଷଣି । ଘୋଷା ।
ସେ କଳା କଞ୍ଜ ବଦନ,    କହୁଛନ୍ତି ଜୀବନଧନ,
ସଞ୍ଜରୁ ସୁବେଶ ହୁଅ ରସିକାମଣି । ୧ ।
ମୁରଲୀ ଛୁଇଁ ଶ୍ରୀହସ୍ତେ,    ଆନ ଦେଉଛନ୍ତି ଯେତେ,
ତୋ ଅଭିସାର ନିମନ୍ତେ ଆରେ ସୁବେଣି ।୨ ।
ଦେଖ ଏ କୁସୁମ ଝର,    ନିଜେ ଗୁନ୍ଥିଥିଲେ ପରା,
ନ ମଣ ଲେଶେ ଝାପରା ପ୍ରପଞ୍ଚ ବାଣୀ । ୩ ।
ଘେନ ଗୋ ସରାଗ ମନେ,    ନ ବସ ଆଉ ଭବନେ,
କହଚନ୍ଦ୍ର ବେଣୁଧର ଗୀତରେ ଭଣି । ୪ ।
( ପ୍ରାଣ ସଙ୍ଗିମାରେ ନେହାନନ୍ଦ ପସରା—ବୁଝି )

—✻—

ରାଗ—ପୁନ୍ନାଗ । ତାଳ— ଝେମଟା )
ବଂଶୀଧାରୀ ' କୁଞ୍ଜେ ତୋତେ ଛନ୍ତି ଅନୁସରି ଗୋ ।
ମୋହନ ମୋହନୀ ହେବୁ ବୋଲି ଅଭିସା ଗୋ । ୦ ।
ତନୁଟି ଝଣି ଗଲାଣି କେତେ ହରଷୀରି ।
ଅନୁମାନ କରି ପରା ଆସିଲ କିଶୋରି ଗୋ । ୧ ।
ଶିଳୁ କେମାମଣି ଆଜ ଦୁଃଖେ ଲୁହ ଧାର ।
କାହ୍ନୁ ସ୍ନେହ ପାଳ ଜଣାଉଛୁ କରଧରି ଗୋ । ୨ ।
ମନୁ ସିବେକ ତୋହର ଦନୁଜ ଅରି ।
କନୁ ଫୁଲତୋଳା ବନ୍ଧି ଦେଲୁ ଯା ପାଶୋରି ଗୋ । ୩ ।

ମାନୁଛ କ ଏ ଗୁମାନ ଛୋଟେ ଗୀତବେଣୁଷ ।
ପାନୁଛି ଛନୁ ସେ ଚୋର କୁ ମିନା ତାହାର ଗୋ । ୪
ଯା ନୁପୁର ଧ୍ୱନ ରହୁଥାଉ କର୍ଣ୍ଣେ ଜର ।
ବେଣୁ ବୋଲେ ତା ଚରଣେ ବାନ୍ଧବୁ କପଟ ଗୋ । ୫ ।
( କହ ସଖି ମୁଁ ଶ୍ୟାମ ଲଗି—ବୃତ୍ତ )

—୦—

# ଅଭିସାର ବେଶ ।

( ରାଗ—ବୃନ୍ଦାଗ । ତାଳ—ଖେମଟା )

ଆସ ଗୋ ଆସ । ସାଜବା ବେଶ ।
ନକୁଞ୍ଜ ମିଳନେ ତୋଷ ହେବେ ପୀତବାସ ( ସାଜବା ବେଶ )
ଘନ କୁନ୍ତଳରେ ବେଣୀ, ସାଜ ଗୋ ଜନମ ଶ୍ରେଣୀ,
ମିଶାଇ ଖଞ୍ଜ ଗୋ ସର୍ବେ ନାନା ଜାତ ପୁଷ୍ପ । ୧ ।
ସୁନୀଳ ରଙ୍ଗ ଘାଗରା, ପିନ୍ଧାଅ ଗୋ କର ତ୍ୱରା,
ଢାଅ ଗୋ ନୀଳ ଓଢ଼ଣୀ ନୀଳଚେଳ ବାସ । ୨ ।
ନାସାରେ ଗଜ ବସଣୀ, ଚଞ୍ଚ ଗୋ ପ୍ରାଣମିତଣୀ
କଟିରେ ରତ୍ନ କଙ୍କିଣୀ ପାଜ ଗୋ ପ୍ରକାଶ । ୩ ।
ମାଳେନ୍ଦ୍ର ମଣି ମୁକୁତା,— ହାର ଦଶୁ ଗୋ ଶୋଭିତା,
ଶ୍ରୀପଦେ ନୂପୁର ଲଗି କର ହୋଇ ତୋଷ । ୪ ।
ତାମ୍ବୁଳ ତଳପାଅର, ସେହ୍ୟା ସେବା ଯେ ଆଦର
ଖଟିବାରେ ଖଟଣୀରେ ସକଳେ ଉଲ୍ଲାସ । ୫ ।
ଶ୍ରୀ ପଦାବ୍ଜଧାରେ ଲାଷା, ରଞ୍ଜିବାକୁ ଧରି ଘାଷା,
ଲଭ ବେଣୁଧର ସଙ୍ଗେ ହେବ ହସ ହସ । ୬ ।

—୦—

( ରାଗ—ରସମଞ୍ଜରୀ । ତାଳ—ଆଡ଼ାଖେମଟା । )

ଏ ବେଶ ଠାଣିକ, ସଖି ରେ !
କ ଜାତ ମାନଲ ଦେଖ କଣୋଗ୍ରାମଣିଙ୍କି । ଘୋଷା ।
ମସ୍ତୁଣିର ଚମ୍ପା ଗନ୍ଧ,— ରାଜନଢମାଭ ଶୋଭ
ଆଜ ବଶ କରବ ଗୋ ମୁରଲୀପାଣିଙ୍କି । ୧ ।
ମନ ଅଙ୍କୁରତେ ସିନା ସଜ ହୋଇଛୁ ନବୀନା
ଘନ ସହର ଦେଖିଲେ ନୋହିବେ କଣିକ ? । ୨ ।

ମାଳରତ୍ନ ଅଳଙ୍କାର ସୁନା ଅଙ୍ଗେ କି ସୁନ୍ଦର
ଜଡ଼ି ଯାଇଛି ଯତନେ ନିକୁଞ୍ଜ ରାଣୀଙ୍କି । ୩ ।
ଧନ୍ୟ ଆମ୍ଭ ସଖୀଗଣ ସାର୍ଥକ ହୋଇବ ଜାଣ
ଯେତେବେଳେ ମଣ୍ଡାଇବା ବନ ସରଣୀକି । ୪ ।
କରାଅ ଗୋ ଅଭିସାର ବ୍ୟର୍ଥେ ବେଳ ନ ସାର
କହେ ଦୁଃଖୀ ବେଣୁଧର ସଜନୀଶ୍ରେଣୀଙ୍କି । ୫ ।
( କୁଞ୍ଚିତ କୁନ୍ତଳା ଆସ ରେ ରାସ ରଙ୍ଗିଣୀ—ବୃତ୍ତେ )

—*—

( ରାଗ— ହୀଡ଼ା କାମୋଦୀ । ତାଳ—ଆଠତାଳୀ )
ଅମଳ କମଳ ବଦନାରେ ଚଳ ଅପାଙ୍ଗୀ-ଚଞ୍ଚଳ ଚଳ କୁଞ୍ଜ ।
ଯେ ଶ୍ୟାମଳ ଜଳଧର କଳାକାର ଅନୁସରିଛନ୍ତି ପଥ ନିଜେ । ଘୋଷା ।
ଅବକଳ କଳ ଧଉତ ବରନା ସକଳ ସମ୍ପଦ ତୁ ତାହାଙ୍କ ପିନ୍ଧା
ସୁ-କଳକଣ୍ଠ ବାଣୀ ଜଣା ବଚନା—
ନିକର ଯେନ ଚନ୍ଦନା ଲାଜେ । ୧ ।
ବଳ ଅନୁଜଙ୍କ ବଳ ତୁ କେବଳ ଚଳଚଳନେତ୍ରୀ ସଖୀଙ୍କ ସମ୍ମୁଖ
ହୁଅନା ଦୁର୍ବଳ ମନା ଆଉ ବଳ—
ଉରଜ ବିଭୂତି ତାନେ ବ୍ୟାଜେ । ୨ ।
ସୁବଳ ସଙ୍ଗିଆ କବଳ ବସନ୍ତ ଆଦର ଭୁଞ୍ଜାଇ ବସିଛି ତୋବନ୍ତୁ
କି ବଳବନ୍ତ ଫୁଲରେ ଘାତକ
ଦୁର୍ଦ୍ଦାନ୍ତ ମୋହନ ମୁଖ ଗଞ୍ଜେ । ୩ ।
ଟା ତଳେ ପାତଳ ଅଳତାକୁ ଦେଇ ଯତନରେ କହ ସୁଧାନିଧି କହି
ସଭଳାଚ ବେଶ, ଏତେ ଲାଜ କସ
ପାଇଁ ଆଗୋ ଧନି ! ଏ କି ସାଜେ ? ୪ ।
( ନଟ ଖଞ୍ଜନୟନପ୍ରିୟାରେ ନଟ ହଟ ନାଗରଙ୍କୁ ରସିଲୁ କି—ବୃତ୍ତେ )

—*—

## ସଖୀ ଉକ୍ତି

ରାଗ — ତୋଡ଼ି । ତାଳ — ତିପୁଟା )
ଏବେଶରେ କଟୋଗ ତୁ ଶ୍ୟାମ ମନ ମୋହିବୁ ଗୋ ।
ନିକୁଞ୍ଜ ବିହାର ଅନ୍ତେ ହୃଦ ପେଡ଼ି କହିବୁ ଗୋ । ଘୋଷା ।
ଏ ଯେ କସ୍ତୁରୀ ତିଳକ ଛଡ଼ାଇବ ଶ୍ୟାମ ରଙ୍କ
ତାଙ୍କ ଅଙ୍କ ପଲଙ୍କରେ ବନ୍ଧୁ୍ୟପର ଶୋଇବୁ ଗୋ । ୧ ।

## ଶ୍ରୀ ରାଧଙ୍କ ପଞ୍ଚସ୍ପୃହା ।

( ସ୍ୱର—ମଙ୍ଗଳଗୁର୍ଜ୍ଜରୀ । ତାଳ—ଝିଙ୍ଗଟା )

ଯେ ଜନ୍ମର ଧନକ ତୋ ମେ ମରଣ ପରେ ।
ମୋମନରେ ହାର ପାଏ ସେ ତାହୁର ବଂଶୀ ଗୋ । ୧ ।
ଯେ ନେତ୍ରକ ଯୋଗେ ପ୍ରଭୁ ! ଏହ ଚନ୍ଦ୍ରବଦନ ।
ଏ ଜନ୍ମରେ ଦେଖାଉ ଯେଉଁ ଜନ୍ମାନ୍ତରେ ଗୋ । ୨ ।
ଯେ ବୁଦ୍ଧିର ଯୋଗେ ତାଙ୍କ ମୃଦୁ ବାଣୀ ଶୁଣ ।
ଏ ଜନ୍ମ ଜୁଡ଼ଇ ଯେ ପୂର୍ବ ଜନ୍ମ ଗୋ । ୩ ।
ଯେ ଦେହ ଅଙ୍ଗୁଳି ଧନ ଶ୍ୟାମ ଅଙ୍ଗ ଛୁଏ ।
ସେ ଭାଗ୍ୟ ପାଇବା ବୁଝିଲେ ମୋତେ ଯ ଅମୃତ ଗୋ । ୪ ।
ଅଶ୍ରୁଜଳ ଦର୍ଶି ଯେବେ ସେ ଅଧରାମୃତ ।
ହେତୁ ଏ ରସନା ଅଛି ଯ ଦେହ କେତେ ଗୋ । ୫ ।
ହୁ ହୁ ଏ ଚେତନ ଶୁଣ ବାହାରି ରହିଛି ?
କୃଷ୍ଣ ଅଙ୍ଗଜନ ଦେଖା ଫାଟି ନ ଯାଉଛି ଗୋ । ୬ ।
ଶୁଣି ଶ୍ରୀରାଧାଙ୍କ ପଞ୍ଚସ୍ପୃହା ଅନୁଭବ ।
ଶ୍ରୀବାସ ପଣ୍ଡିତ ଧୀରେ କହେ ଲକ୍ଷଣା ଗୋ । ୭ ।
ଲକ୍ଷ୍ୟ ତୋ ଗଦାଧର ! ଶୋ ଚନ୍ଦ୍ରାମଣିଙ୍କି ।
ବୋଲେ ବେଣୁଧର ଦେହ ନ ବୁଝା ଭାଷିବ ଗୋ । ୮ ।
( ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧା ହରି — କୃଷ୍ଣେ )

—o—

## ସଖୀ ଭକ୍ତି

( ଯଥା ସ୍ୱର — ତାଳ ଝିଙ୍ଗଟା )

ସଖୀରେ ! ଗଦାଧର ଭକ୍ତଙ୍କୁ ଏତେ ।
ଜଗତେ ପାଇବ ତୁମ୍ଭ ଦୃଢ଼ ସମ୍ପତ୍ତି ଗୋ । ଘୋ ।
ଚନ୍ଦ୍ରା ଭଲେ ଜଣ ଦେବ ଆଗୋ ଉପେକ୍ଷା ।
ସବୁ ପାଇବ ସର୍ବସ୍ୱ ସେ ମୁରଲୀଧାରିଣି ଗୋ । ୧ ।
ଧନ ମନ ଜୀବନ ଯୌବନ ଦେଇ ଜାଣ ।
କୁଳଶୀଳ ଲାଜ ଭୟ ଗୁଡ଼ଇ ଶ୍ରୀମତୀ ଗୋ । ୨ ।

ଯେବେ ଏ ସବୁ ଆଡ଼କୁ ତୁମ୍ଭ ଲକ୍ଷ ନାହିଁ ।
ଶ୍ୟାମ ପ୍ରେମ ମଜ୍ଜି ସବୁ ହେଉଇଛ ହଜାଇ ଗୋ । ୩ ।
ଆଜ ଦାହାକୁ ଗୋ ଏତେ କରୁଅଛ ଭୟ ?
ବୋଲେ ବେଣୁଧର ଏବେ ଶଉ କର ଥୟ ଗୋ । ୪ ।
( ସଜନ ! ଶୁଣ ମୋର କଥା—ପ୍ରଭ )

—❋—

## ଶ୍ରୀକୃଷ୍ଣଙ୍କ ପ୍ରତ ଦୂତୀ କଥନ

( ରାଗ— ହଂସପ୍ରିୟା । ତାଳ—ପହପଟ ଝୁଲ )

ହେ ମୋହନ ! ଚାଲ କୁଞ୍ଜ ସଦନକୁ ।
ପ୍ରୀତିରେ ରସାଇ ବନ୍ଧୁ, ତୋଷିବ ରାଧା ମନକୁ ( ଚାଲ ) । ଘୋଷା ।
ବସିଅଛୁ ପଥ ଚାହିଁ, ଘଡ଼ିଏ ହେଲ ସୁମୁହିଁ,
ରସିକ ନାଗର ତୁମ୍ଭେ କଷିବ ତାର ମନକୁ ( ଚାଲ ) । ୧ ।
ମଣ୍ଡିଅଛୁ କେଳିବାସ, ବଳାଇ ତୁମ୍ଭରେ ଆଶ,
ସଙ୍ଗିମାଏ ଛନ୍ତି ପାଶ, ପ୍ରବୋଧି ଜୀବନକୁ ( ଚାଲ ) । ୨ ।
ଖଟାଇଛୁ ତାର ମନ୍ତ, ତୁମ୍ଭ ଚରଣେ ଶ୍ରୀପତ,
ପଠାଇଛୁ କରି ଦୂତୀ,ମୋତେ ଏ ମାଚ ବନକୁ ( ଚାଲ ) । ୩
ଘର ବର ଦୂର କରି, ଜଳ ମନୁ ପରିହରି,
ମରକତକେଶୀ ଧାମ ଯଥା ଚାତକୀ ଘନକୁ ( ଚାଲ ) । ୪ ।
ନ କର ତାକୁ ନିରାଶ, ନଟବର ପୀତବାସ,
ଏ କରଣ ବେଣୁଧର ଧ୍ୟାନ ପଦ ନଳିନକୁ ( ଚାଲ ) । ୫ ।
( ରେ ସଜନ ଶ୍ୟାମେ ତୁ କହ ଏଡିକ—ବୃନ୍ଦେ )

—❋—

## କୁଞ୍ଜଦ୍ୱାରେ ସଖୀଉକ୍ତି ।

( ରାଗ— ପୂରବୀ । ତାଳ—ଝୁଲ )

ଅଇଲେଣି ବଂଶୀଧାରୀ ରେ, କିଶୋରୀ । ଘୋଷା ।
ନୂହ ତୁ ଆତୁର ଆରେ ମୋ ବର,
ପ୍ରୀତିରେ ଭେଟିବୁ ଗୋରୀରେ । ୧ ।
ସେ ନନ୍ଦନନ୍ଦନ ମୁରଲୀ ବଦନ,
ସଙ୍ଗ ପାଇବ ଶରୀରେ । ୨ ।
ସେ ବରଜରାଜ ନ ରଖିଣ ଲାଜ,
ଘେନଯିବେ କୋଳ କରି ରେ । ୩ ।

ବେଣୁଧର ବୋଲେ          ଦେଖ କୃଷ୍ଣଙ୍କେ
ଚାଖିବୁ କି ପିବୁ ଦାଣ ରେ । ୪ ।
( ଦୁରବଳକୁ କି ବସ୍ତ୍ର ରେ ଜଣୋଣ – ବୁଲେ )

— ✽ —

## କୃଷ୍ଣ ଉକ୍ତି

( ରାଗ – କୁସୁମ କେଦାର । ତାଳ – ଖେମଟା । )

ଫୁଲ ଫୁଲ ଜବାଅଧରା !
ମଣ୍ଡିତ ଧନ୍ୟ ନିକୁଞ୍ଜଧରା । ଘୋଷା ।
ଦେଖ ଏକ୍ଷ ବଧୂଯାମିନୀ          କି ଶୋଭାରେ ନାଚୟମଣି ।
ମନ୍ତ୍ର ପିକଜଣା –          ବଚନା ନବୀନା
ଢଳିସିବା ଆଜ ଆନନ୍ଦେ ପରା । ୧ ।
ଆରେ ଖେଳ ଖଞ୍ଜନନେତ୍ରୀ          କମ୍ବୁକଣ୍ଠ କନକଗାତ୍ରୀ,
ଅନା ଅନା କନା          ଏ ମଲ୍ଲୀ ସୁମନା
ଚମ୍ପି ଅଙ୍ଗଣେ କେମନ୍ତ ଦୋରା । ୨ ।
ବାସ ଫଳ ଚଳପେ ତୋଷ          ମାନସରେ ପ୍ରମୋଦ ଭରି,
ବଶଷ କେଶରେ          କୁଞ୍ଜ ତୋରଣରେ
ଝୁଲଇବା ଚମ୍ପା କେତକୀ ହାର । ୩ ।
କୁନ୍ଦହାସ ପ୍ରକାଶି ଥରେ          କୁନ୍ଦବଲ୍ଲୀ ମୃଦୁ ମଧୁରେ,
କଳାନିଧି ଶୋଭା          ସମ୍ପତ୍ତି ଲୁଟାଅ
ଦୃଢମାନ ନେହାନନ୍ଦ ପସରା । ୪ ।
ଶ୍ରୀକୃଷ୍ଣଙ୍କ ବଂଶୀ ଗିରେ          ଶୁଣି ରାଧା ହସିଣ ଧୀରେ,
ପୁଷ୍ପଶେଯ ପରେ          ବସିକଳେ କରେ
ଧରି ଫୁଲ ଜଳ ସୁନ୍ଦର ଥିବ । ୫ ।
ଘନ ବେଣୁଧର କହଇ          ସେ ଯୁଗଳ ଚରଣ ଧ୍ୟାଇ
ଜତେ ଶ୍ରୀ ଗୁରୁଙ୍କ          ଆଜ୍ଞା ଶିରେଧେନ
ଗୁନ୍ଥି ବ ନିକୁଞ୍ଜେ କୁସୁମ ଝରା । ୬ ।
( ନନ୍ଦସୁତ ମୋର ଜୀବନା—ବୁଲେ )



( ରାଗ—ସୁରଟ । ତାଳ—ଝୁଲା )

ତୁ ମୋର ପ୍ରାଣ ଈଶ୍ୱରୀ ରେ କିଶୋରି ! । ଘୋଷା ।

ନାହିଁ ମୋର ବଳ ସତ୍ତୁ କେବଳ,
ତୋତା ଡକାଇ ସୁନ୍ଦରୀରେ । ୧ ।

ଅରେ ରସପିଛ ତୋ ଅଧରୁମଧୁ—
ଦେଇ ଜୀଆଅ ଚକୁରୀରେ । ୨ ।

ସତେ ଆଜ ତୋର ଦୟାର ଭଣ୍ଡାର,
ଫଟାଇଲୁ ବମ୍ଭାଧରୀ ରେ । ୩ ।

ବନ୍ଧୁ ହୁତେ ମାଗୁଅଛୁ ଏତେ,
ଏ କଷ୍ଟ ନଅ ଉଦ୍ଧରି ରେ । ୪ ।

ମୋହନଙ୍କ ବାଣୀ ଶୁଣି ଠାକୁରାଣୀ,
ଡାଳ ଦେଲେ କୃପାବାରି ରେ । ୫ ।

ସେ ଯୁଗଳ ପଦ— ଯୁଗ ଅରବିନ୍ଦ,
ବେଣୁଧର ସେବାକାଙ୍କ୍ଷୀରେ । ୬ ।

( ଦୁର ଚଳୁ କ ବଣ୍ଟନ ରେ, କିଶୋରି — ବୃନ୍ଦେ )

—❀—

( ରାଗ — ମଧ୍ୟମାରଙ୍ଗ । ତାଳ — ଆଠତାଳୀ )

ଚନ୍ଦ୍ରାନନ ! ତବ ପ୍ରୀତି ଲଗି ଭ୍ରମେ ବୃନ୍ଦାବନେ ଗୋ ଘୋଷା ।

ତନୁ ଅନୁରାଗେ ପୀତଦୁକୁଳକୁ,
ଅନୁକ୍ଷଣ ପିନ୍ଧ ବଞ୍ଚଇ କାଳକୁ,
ଆଶ୍ରୟ କରଛୁ କଦମ୍ବ-ମୂଳକୁ ତବମୁଖ ଦର୍ଶନେ ଗୋ । ୧ ।

ବହୁଛୁ କେବଳ ହିଭଙ୍ଗ ମୂର୍ତ୍ତି କେବଳ,
ଚାହିଁଥାଇ ବଙ୍କା ନୟନ ଯୁଗଳ,
କରଇ ଏ ଗୋପଛିରେ ବିହାର ତେଜି ଗୋଲକ ଭୁବନେ ଗୋ । ୨ ।

ବସି ଗାଇବାକୁ ତୋ ନାମ କିଶୋରି !
ବଂଶୀଠାରେ ଏତେ ସ୍ନେହ ଅଛୁ କରି,
ଚରି ଚରାଉଛୁ କାନନେ ବହୁରୀ ଶିଶୁ ସଙ୍ଗ ହୃଷ୍ଟମନେ ଗୋ । ୩ ।

❀ ଭଣିଲେ ବରଞ୍ଜନାରାୟଣ ଦେବ,
ଶୁଣି ହରିବାଣୀ ଆନନ୍ଦ ଉଦ୍ଭବ,
ବଜେ କୁଞ୍ଜଦ୍ୱାରେ ଶ୍ରୀରାଧା ମାଧବ ରମ୍ୟ ଯମୁନା ପୁଲିନେ ଗୋ । ୪ ।

( ବଂଶୀଧାରୀ, ସରସିବନ୍ଧ ଜୀବନେ କିଶୋରୀ — ବୃନ୍ଦେ )

—❀—

---

❀ ବରଞ୍ଜନାରାୟଣ ସିଂହଦେଓ ( ରଣପୁର ଯୁବରାଜ ) ଙ୍କ ନାମେ ଭଣିତ ।

## ସଖୀ ଉକ୍ତି

( ରାଗ— ଭୂଚମଧାର । ତାଳ—ଖେମଟା । )

ରାଧେ ପ୍ୟାରୀ, ମୋ ଗିରିଧାରୀ ।
ରାଧିକା ନାମଟି ମଧୁ ଶାକର କହ୍ନାଇଁ ସୁବାସ କାର । ଘୋଷା ।
ରାଧେ ତୁମ୍ଭେ କାଞ୍ଚନ ଗୋ, କହ୍ନାଇଁ ନୀଳମଣି ।
ରାଧିକା ହୋଇଲେ ଥିର ବିଜୁଳି କହ୍ନାଇଁ କାଦମ୍ବିନୀ । ୧ ।
ରାଧେ ତୁମ୍ଭେ ନାଚୁଣୀ ଗୋ, କହ୍ନାଇଁ ନାଟର ଗୁରୁ ।
ରାଧିକା ହୋଇଲେ କୁସୁମଲତା କହ୍ନାଇଁ ତମାଳତରୁ । ୨ ।
ରାଧେ ତୁମ୍ଭେ କ୍ଷୀରସା ଗୋ, କହ୍ନାଇଁ ତହିଁରେ ଖଣ୍ଡ ।
ରାଧିକା ହୋଇଲେ ସରୁସୁଆଳ କହ୍ନାଇଁ ମଟାଚଗୁଣ୍ଡ । ୩ ।
ରାଧେ ତୁମ୍ଭେ ଚନ୍ଦନ ଗୋ, କହ୍ନାଇଁ ତହିଁରେ ଚୂଆ ।
ରାଧିକା ହୋଇଲେ ସୁନା ପଞ୍ଜୁରୀ କହ୍ନାଇଁ ତହିଁରେ ଶୁଆ । ୪
ରାଧେ ତୁମ୍ଭେ କୁମ୍ଭ ଗୋ, କହ୍ନାଇଁ ତହିଁରେ ନୀର ।
ରାଧିକା ହୋଇଲେ ଛେନାକାକର କହ୍ନାଇଁ ତହିଁରେ ପୂର । ୫ ।
ରାଧେ ତୁମ୍ଭେ ନଳମା ଗୋ, କହ୍ନାଇଁ ତହିଁ କେଶର ।
ରାଧିକା ହୋଇଲେ ସୁନା ଫରୁଆ କହ୍ନାଇଁ ତହିଁରେ ହାର । ୬
ରାଧେ ତୁମ୍ଭେ ଜଗନ୍ମୋହିନୀ, କହ୍ନାଇଁ ଜଗତ ଜିତା ।
କହେ ବେଣୁଧର ଅଧମ ପାମର ଏକା ମୋ ଯୁଗଳ ଚିନ୍ତା । ୭

( ରାଧା ବଂଶୀଧାରୀ—ପ୍ରଭୁ )

—o—

## କୁଞ୍ଜମିଳନ

( ରାଗ—ଶଙ୍କରାଭରଣ । (ତାଳ—ଆଠତାଳୀ )

ନିକୁଞ୍ଜ ବନନ୍ତେ ରାଧା ନିକୁଞ୍ଜବିହାରୀ ।
ଆହା କି ଶୋଭା ମାଧୁରୀ । ଘୋଷା ।
ପାରିଜାତ ବରଷନ୍ତି ଅମର ସୁନ୍ଦରୀ ।
ବାଜେ ଦୁନ୍ଦୁଭି ବାଜଣା କମ୍ପେ ଭୁବନପୁରୀ । ୧ ।
କଳା ଗୋରା ବେନି ତନୁ କିଶୋର କିଶୋରୀ ।
ସ୍ମିତହାସ ହେରନ୍ତି ବୃନ୍ଦାବଣି ମନୋହାରୀ । ୨ ।
ଡାଳେ ବସି ମଙ୍ଗଳ ଗାଆନ୍ତି ଶୁକ ଶାରୀ ।
ପିକ ଭୃଙ୍ଗ କାହାଳୀଆ ଶଂଖୁଆ ବିଭୁରୀ । ୩ ।

ନୃତ୍ୟ କରୁଛନ୍ତି ପ୍ରେମେ ମୟୂର ମୟୂରୀ ।
ଝୁମ୍ପାଟିଆ ତବଲ ବାଜୁଛି ତାନ କରି । ୪ ।
ଖଞ୍ଜଣି ବଜାଏ ଗିନି ରାଗିଣୀ ଉଚ୍ଚାରି ।
ସୀତାର ଧରିଛି ଦେଖ ବସନ୍ତ କୁରରୀ । ୫ ।
ନଦଲିଆ ବଜାଉଛି ମଙ୍ଗଳ ମଧୁରୀ ।
ମଲନାଗଣେ ବହନ୍ତି ପ୍ରେମେ ଢୁଳଢୁଳ । ୬ ।
ଶ୍ରୀରାଧା କୃଷ୍ଣ ମିଳନ ଶୋଭା ହେର ହେର ।
ସଖୀଗଣ ସଙ୍ଗେ ଖେଳେ ବିନୋଦ ମଞ୍ଜରୀ । ୭ ।
( ଭଜମନ ରାଧେକୃଷ୍ଣ ବୋଲ—ବୃତ୍ତେ )

—※—

( ରାଗ—ଗୁଞ୍ଜକଣ୍ଠ । ତାଳ—ଆଠତାଳୀ । )
ଗାଅ ଲୋ ଆନନ୍ଦେ ଆଜ ପରାଣ ସଜନୀ !
ଯୁଗଳ ମିଳନ ରାଧା ରାଣୀ ବଂଶୀପାଣି । ଘୋଷା ।
ଜୟ ବୃନ୍ଦାବନେଶ୍ୱରୀ ଜୟ ନିକୁଞ୍ଜ ବିହାରୀ ।
ଜୟ ଜୟ ବୃଷଭାନୁ ଜେମା ନୀଳମଣି । ୧ ।
ଜୟ କାଞ୍ଚନ ବରନୀ ଜୟ ଶ୍ରୀ କାଳିଆସୁନା ।
ଜୟ ଜୟ ଭୁବନ ମୋହନ ଗୁରୁ ଠାଣି । ୨ ।
ଜୟ ଶ୍ରୀମତୀ ଶ୍ରୀପତି ନବଲାବଣ୍ୟ ମୂରତି ।
ଜୟ ଜୟ କୋଟିକାମ ରତି (ପ୍ରତିମୂର୍ତ୍ତି) ଆଣି । ୩ ।
ଜୟ ଶ୍ରୀରାଧା ଗୋବିନ୍ଦ ଯୁଗଳ ପଦାରବିନ୍ଦ ।
ଜୟ ଜୟ ଗୀତେ ଦୁଃଖୀ ବେଣୁଧର ଭଣି । ୪ ।
( କହ ଲୋ ସଜନୀ ସେ କଦମ୍ବ ମୂଳେ—ପ୍ରତି )

—o—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )
ସଖି ! ଦେଖ କି ଶୋଭନ ( ସଖି )
କୋଟି ରବି ଶଶୀ ଆଭା ଏ ପ୍ରେମ ମିଳନ ଘୋଷା ।
ଜମୁନତ ନୀଳମଣି—ବାହୁ ଆଲିଙ୍ଗନ ।
ଆହା କେଡ଼େ ମନୋହର ମୂରତି ଲାବଣ୍ୟ । ୧ ।

ତାମେଳେ ଚମ୍ପକଲତା ହେଲା କି ମଣ୍ଡନ ।
ନବଘନେ ସୌଦାମିନୀ କିବା ସ୍ଥିର ଘେନ । ୨ ।
ନୀଳଉତ୍ପଳ କେତକୀ ମେଳେ ଏକ ସ୍ଥାନ ।
ଜଡ଼ାଇଲା କେ ବଛାଣି ମର୍କତେ କାଞ୍ଚନ । ୩ ।
ଶ୍ରୀରାଧା ଗୋବିନ୍ଦ ପଦ ଯୁଗଳ ନଳିନ ।
ସେବାକୁ ହେବକି ଯୋଗ୍ୟ ବେଣୁଧର ହୀନ । ୪ ।
( ଆହା ମାଧୁରୀ ରେ ମାଧୁରୀ—ଧ୍ରୁବ )

— ❊ —

( ରାଗ— ଚନ୍ଦ୍ରବଙ୍ଗଳାଶ୍ରୀ । ତାଳ— ଝମ୍ପତା । )
ଆଜ କି ଆନନ୍ଦ, ଦେଖ ସଖୀବୃନ୍ଦ, ଯୁଗଳ ମିଳନ ଠାଣି ।
ଦକ୍ଷିଣେ ମଦନ-ମୋହନ ମୂରତି ବାମେ ଆମ୍ଭ ରାଧା ରାଣୀ ।
କେତେ ଶୋଭା ଦିଶେ । ନୀଳଘନେ କିବା ବିଦ୍ୟୁଜ୍ଜ୍ୟୋତି । ୧ ।
କି ଅବା ତମାଳେ କନକ ଲତିକା ଅଙ୍ଗେ କି ହରତାଳ ।
କିବା ନୀଳମଣି ରଚନେ କାଞ୍ଚନ ଯତନେ ହୋଇଛି ମେଳ ।
ମନୋହର ଆହା । କଳା ଗୋରା ଜକ ଜକ ପ୍ରଭା । ୨ ।
କି ଦେବା ଉପମା, ଏତ ଅନୁପମା, ନବଲାବଣ୍ୟ ପ୍ରସଙ୍ଗ
ମନ୍ଦ ମନ୍ଦ ହାସ, ବାଙ୍କ ଚାହାଁଣିକି ମଣ୍ଡି ଦେଉଅଛି ଧରା ।
ଆଗୋ ପ୍ରିୟଆଳି । ଗାଅ ଜୟ ରାଧେ ବନମାଳି । ୩ ।
ବାଇ କରତାଳି, ନାଚ ତଳି ତଳି, ଯୁଗଳ ରୂପକୁ ଚାହିଁ ।
ପ୍ରେମେ ଢଳଢଳ ହୁଅ ସର୍ବ ଆଳୀ, ଏ ଭାଗ୍ୟରୁ ଭାଗ୍ୟ ନାହିଁ ।
ବେଣୁଧର କହେ । ସତେ ସେବା ଯୋଗ୍ୟ ହେବ ମୁହିଁ । ୪ ।
( ଆଗୋ ସହଚରୀ କାଲି ବଂଶୀଧାରୀ—ବୁଲେ )

—୦—

( ରାଗ—ନାଟକୁରଙ୍ଗ । ତାଳ—ଏକତାଳୀ )
ମଧୁର ମିଳନ, ଆହାକି ଘଟନ, କଳା ଗୋରା ତନୁ ସୁନ୍ଦର ଗୋ ।
କୋଟି ରତି କାମ, ନ ହୋଇବେ ସମ, ଅନା ଅନ ଏକ ହୃଦର ଗୋ । ୦ ।
ଚରଣ ତମାଳେ କନକ ଲତିକା, ବେଢ଼ାଇଛି ଅଙ୍ଗ ତାହାର ଗୋ ।
ମକରେ କାଞ୍ଚନ ଜଡ଼ି ରହିଛି କି ଆହା କେତେ ମନୋହର ଗୋ । ୧ ।
ନବୀନ ନୀରଦ, କୋଳେ କି ବିଜୁଳି, ଖେଳୁଛି ହୋଇ ଧୀରେ ଧୀରେ ଗୋ ।
ଧନ୍ୟ ଧନ୍ୟ ଅମ୍ଭ ନୟନ ମାନସ ଧନ୍ୟ ପୁଣ୍ୟ ଫଳ ଆମ୍ଭର ଗୋ । ୨ ।

ଶତ ଶତ ସଖି ପ୍ରେମେ ଢୁଳଢୁଳ ବଦାଂଶ ମଞ୍ଜମା ଭଜନ୍ତ ଗୋ ।
ପ୍ରେମାନନ୍ଦେ ନାଚ, ପ୍ରେମ ଗୀତ ଗାଇ ଯାଆ କୁଞ୍ଜାଳୟକୁ ମାନସେ ଗୋ ।୩।
ଶ୍ରୀରାଧା ମୋହନ ଯୁଗଳ ଚରଣ ଶାନ୍ତ ଚିନ୍ତ ହସି ବାସନ୍ତ ଗୋ ।
ଯତେ ବୈଣୁଧର ଅଧମ ପାମର ସେବା ଦେବ ସଖି ପାଖେ ଗୋ । ୪ ।
( ଛନ୍ଦ ଦେଖ ସଖି ! ଶ୍ୟାମ ଛବି ଦେଖି—ବୃନ୍ଦା )
—୦
( ରାଗ—ବସନ୍ତ । ତାଳ—ଝମ୍ପତାଳ )
ଆସ ଆସ ସଖି, ଯିବା ଚାଲ ଦେଖି ଶ୍ରୀରାଧା ମାଧବ ମିଳନ । ଘୋଷା ।
ଫୁଲ୍ଲଛନ୍ତି ରଙ୍ଗେ କୁଞ୍ଜେ ରାଧାଶ୍ୟାମ ।
ଆହା କି ସୁନ୍ଦର ବେଶ ଅନୁପମ ।
ସେ ମନମୋହନ ଛବି ମନୋରମ, ଦେଖି ସାର୍ଥ ହେବ ନୟନ । ୧ ।
ଅସି ହେଲା ମିତ ! ପ୍ରଭାତ ରଜନୀ ।
ହେଲା ନ କରରେ ଚରଣ ସଙ୍ଗିନୀ ।
ସରୋବରରେ ବିକଶିତ କୁମୁଦିନୀ, ଶଶୀ କରେ ଧରି ଶୋଭନ । ୨ ।
ମୃଦୁ ବଂଶୀ ସ୍ୱନ କରେ ବିମୋହିତ ।
ପଶୁ ପକ୍ଷୀ ଆଦି ହେଲେଣି ପୁଲକିତ ।
ଶ୍ରବଣେ ସବୁଛି ସଖୀ ପତିବ୍ରତ ବାମଣରେ କରେ ଉଲ୍ଲଙ୍ଘନ । ୩ ।
ଭ୍ରମରେ ଭ୍ରମରେ, ସୁମନେ ସୁମନେ—
ମତ୍ତହେଲେ ମାତିଛନ୍ତି ମଧୁପାନେ ।
ଧ୍ୟାନ ବେଣୁଧର ଯୁଗଳ ଚରଣେ, ସତେ ସମର୍ପିବ ଜୀବନ । ୪ ।
( ବ୍ରଜରାଜ ସୁତ ଫାନ୍ଦେ ପଡ଼ି ମିତ—ବୃନ୍ଦେ )
—୦—

## କୁଞ୍ଜ ଭଙ୍ଗ ।

ଶ୍ରୀ ଶ୍ରୀ ଯୁଗଳ କିଶୋରଙ୍କ ପ୍ରତି ବନଦେବୀ ଉକ୍ତି ।
( ରାଗ—ଭୈରବୀ । ତାଳ—ଏକତାଳୀ )
ଉଠ ଉଠ ଫୁଲ ଶେଯୁଁ ରାଈ ମାଳତୀ ।
କେତେ ନିଦ୍ରା ଯାଅ ନିଶି ହେଲଣି ପାହାନ୍ତି । ୧ ।
କଲେଣି ମଧୁରେ ସ୍ୱନ ପକ୍ଷୀ ନାନା ଜାତି ।
ପୂରୁବ ଦିଗରେ ଦେଖ ଅରୁଣର ଭାତି । ୨ ।
ଶୀତଳ ପବନ ଉଲ୍ଲସାଇ ବହେ ଗୁନ୍ତି ।
ଶବ୍ଦ ଉନମାଦେ ଭୃଙ୍ଗ ଝଙ୍କାରନ୍ତି ମାତି । ୩ ।

ବିନୋଦ ଅଳସ ତେଜ ଘନ ବିଦ୍ୟୁ କାନ୍ତି ।
ଡାକ ଦେଲଣି କଖଟୀ ଡାଳେ ଭାନ ଫିଟି । ୪ ।
ବନଦେଶ ଜାଗରଣେ ଶ୍ୟାମ ହେମ ଗାତ୍ରୀ ।
କୁଞ୍ଜରୁ ଜାଗିଲେ ବେଣୁଧର ପ୍ରାଣସାଥି । ୫ ।
( ବହ୍ନିଲଣି ଶୀତ ବାତ ପାହିଲଣି ରାତି—ବୃତ୍ତେ )

— ✽ —

## ( ମେଲାଣି )

( ରାଗ – ସିନ୍ଧୁକାମୋଦ । ତାଳ—ଝୁଲ )
ବନ୍ଧୁ ! ମୋତେ ଦିଅ ମେଲାଣି ।
ହେ ମୋହନ ମୁରଲୀପାଣି ପତି ।
ନୂତନ କ ଛବି ବୋଧ ଶ୍ୟାମଚନ୍ଦ୍ର ଅଧରୁ ମଧୁ କୁ ପିଉଛ ଘୁଣି ।
ପକାଇଲେ ଆନ ତେବେ ଭରି ପାନ ଚିବୁକଟି ଧରି ହେ ମାଳମଣି । ୧ ।
ଲେଖିଦିଅ ମୋର ମୃଗମଦ ଭଲେ ଏ ମନସ୍ତ ପତ୍ରାବଳୀକ ପୁଣି ।
ରଖିଦେବେ ନାହିଁ ସଙ୍ଗିନୀ ସମାଜ ଦେଖିଲେଷଣି ହେ ଲାବଣ୍ୟ ଠାଣି । ୨ ।
ଶ୍ରୀଚରଣେ ଛନ୍ଦେ ବଜାଉ ହୋଇଛୁ ଏ ଅଧୀନୀ ତବ ସେବାକାରିଣୀ ।
ଜଗତ୍ତ ଜଟିଳା ନ ଦେଖ ଏ ରଙ୍ଗ କହୁଅଛୁ ନାଥ ଧରି ମୁଁ ପାଣି । ୩ ।
ଶ୍ରୀରାଧାଙ୍କ ମୁଖ ଏ ବଚନ ସୁଧା ଶୃଙ୍ଗାରେ ବୃଷ୍ଟି ସେ ମାଳମଣି ।
ଭାଷିଲେ ମଧୁରେ ମୃଦୁମନ୍ଦ ସ୍ୱରେ ଘନ ବେଣୁଧର ଏ ଗୀତେ ଭଣି । ୪ ।
( ତପନ ଭାତିକ ଏତେ – ବୃତ୍ତେ )

— ✽ —

## କୃଷ୍ଣ ଭକ୍ତି

( ରାଗ – ଛଟିଅଙ୍ଗ । ତାଳ – ଏକତାଳୀ )
ଆରେ ପ୍ରାଣଧନ ! ହୃଦ ମନ୍ଦିରେ ମୋ ନାଚନ୍ତ ରତନ । ଘୋଷା ।
ଛୁଡ଼ିବାକୁ ମୋ ନ ବଳେ ଚିତ୍ତ ଦେଖିଲେ ଶ୍ରୀମୁଖ ଜଳଦ ମିତ
ସାଜିଦେବ ଅଙ୍ଗେ, କପାଳ ଲଲାଟେ, ସୁନ୍ଦରଶରେ ତୋର ହିଁ ଘଟନ । ୧ ।
ଲେଖିଦେବ ଚନ୍ଦ୍ରେ ଦେଶେ ପୁଣି ମନସ୍ତକ ଅଙ୍ଗେ ଘୋଷାମଣି
ସୁରୁ ପତ୍ରାବଳୀ, ଉଜ୍ଜଳ ଭାଳ, ରଖିବେ ନ ଦୁଅ ଜଳ ଜଳ । ୨ ।
କେଣେ ଲଭୁ କରୁ ଜଳାଧର ଶିଖି ମଧ୍ୟମା ଗୋ ଗଳାହାର
ମୋର ବଦନା ମୋ ମନ୍ଦିରକ ଚଳ ବାନ୍ଧିଣ ନ ଚଳ ଚନ୍ଦ୍ରାନନ । ୩ ।

ଏକାଳେ ଖମ୍ପକଲତା ତଳେ ଜଣେ ସଖୀ ଡାକେ କୁତୂହଳେ

ଭପ୍ତ ରଶ୍ମି ଚନ୍ଦ୍ରେ, ଉଚ୍ଚାରୁ ପ୍ରଭାତେ, ଯେଉଁକାଳେ ହୃଦରେ ଶ୍ୟାମଘନ । ୪ ।

ଧାନ ଧ୍ୟାନ କର ଭଜମାଣ ସେ ଯୁଗଳ ପଦେ କରିଆସ

କହେ ଶ୍ରୀରାଧାଙ୍କ, ଗମନ ପାଇଁକ, ଆଜ୍ଞା କଲେ ସେ ମନ ମୋହନ । ୫ ।

( ଶ୍ୟାମବନ୍ଧୁ ପର କେନ୍ଦ୍ର ଦର୍ଶନାର୍ଥି—ଦ୍ରଷ୍ଟ )

—**—

# କେଳିବାହୁଡ଼ା

## ସଖୀ ଉକ୍ତି

( ରାଗ—କୌଶିକ । ତାଳ—ଝୁଲ )

ନବଘନ ଶ୍ୟାମ ମୂରତି

ପ୍ରେମେ ଗୋ ଚିତ୍ତ ମଜ୍ଜାଇଲେ କି । ପଦ ।

ସଜ କଞ୍ଜଦଳ ନୟନା ଆଜ ଲଜ ତେଜିଲୁ କିନା,

ବ୍ରଜ ଯୁବରାଜ ମନସିଜ-ଶରେ

ଦମ୍ଭ—ଦ୍ରୁମ ତୋର ଭଞ୍ଜାଇଲେ କି । ୧ ।

କୁଞ୍ଜେ ଗୁଞ୍ଜ ମାଳିଆ ତୁ ଯେ କାଳେ ମାତିଲୁ ରଙ୍ଗେ,

ଭୁଜେ ଭୁଜେ ବନ୍ଧ ବର୍ତ୍ତୁଳ ଉରଜେ

ସଦୃଢ କରଜ ବଜାଇଲେ କି । ୨ ।

ଲୋଧ ଅଧରୁ ଲୁଟି ସୁଧା ହରି ହରି ଅନଙ୍ଗ ବାଧା,

ରତିପତି ଭୂଲେ— ସମର ଆରମ୍ଭି

ଜ୍ଞାନ-ଦୁର୍ଗ ତୋର ହଜାଇଲେ କି । ୩ ।

ଗୀତେ ବେଣୁଧର ବଦତି କରେ ଗୋପୀଙ୍କି ବୋଲନ୍ତୁ ଦୂତୀ,

କୋଟି ରତିପତି— ମୂରତି ଶ୍ରୀପତି

ପ୍ରୀତି ପସରକୁ ସଜାଇଲେ କି । ୪ ।

-୦—

ଆଜ ବ୍ରଜରାଜନନ୍ଦନ ସ୍ୱପନରେ ଦେଖେ—ବୃନ୍ଦେ )

ରାଗ—ମାରୁଆ । ତାଳ—ଆଠତାଳ )

ଜଣାଗଲା ଗୋ ଏଣିକ ।

ମଣାଇଲୁ ଗୁପତରେ ମୁରଲୀପାଣିକ । ଘୋଷା ।

ଉଚ୍ଚ କୁଚ ପରେ ତୋର ଦଶୁଛି କରଜ ଗାର,

ଶିବଶିରେ ଶୋଭେ ଉଙ୍କ ରଜନୀ ମଣିକ ? । ୧ ।

ଫିଟି ପଡ଼ୁଛୁ କେଶ ବଢ଼ଙ୍ଗ ହୋଇଛୁ ବେଶ,
ହଜିଗଲଣି ତ ଶ୍ରୀମୁଖ ସୁଷମା ଶ୍ରେଣୀକ । ୨
ଢଳ ଢଳ ଶ୍ରମଝାଳ ବହୁଛୁ ତୋର ଶରୀର,
ଫିକା ପଡ଼ୁଛୁ ଅଧର ରଙ୍ଗିମା ଠାଣିକ । ୩ ।
ଭଯେ ଭାଷେ ବେଣୁଧର ଭୁଟିଅଛୁ ମୋତିହାର,
ଉଡ଼ୁଛୁ କଙ୍କଣ ଦାଗ ଧଇଲେ ଟାଣିକ । ୪ ।
( ପ୍ରାଣସଙ୍ଗୀରେ କେଶାନନ୍ଦ ପସରୁ—ବୃତ୍ତେ )

—o—

## ଝୁଲଣ

( ରାଗ—କେଦାର । ତାଳ—ଝୁଲ । )

ଦେଖ ଦେଖ ପ୍ରିୟ ସଜନି କ ଶୋଭାବନ ।
କୁଞ୍ଜେ କୁଞ୍ଜେ ଝୁଲୁଛନ୍ତି ରାଧାମୋହନ । ୧
ଶ୍ୟାମ ଗୌର ବେନି ଅଙ୍ଗ ହେଲେ ମିଳନ ।
ଘନ କୋଳେ ବିଦ୍ୟୁତ ପରି ରମାରଞ୍ଜନ । ୨ ।
ସୁଖୀ ହୋଇ ପକ୍ଷୀକୁଳ କରନ୍ତି ସ୍ୱନ ।
ଆକାଶରୁ ଦେଖ ବରଷିଲେ ସୁମନ ।
ଶ୍ରୀରାଧା ମାଧବ ପଦଯୁଗ ନଳିନ ।
ଚିନ୍ତି ବେଣୁଧର ପଦ କରେ ରଚନ । ୪ ।
( ଆସ ଆସ ପାଶକୁ ମୋ ରା ରସରଙ୍ଗିନି – ବୃତ୍ତେ )

—o—

## ଝୁଲଣ ସଙ୍ଗୀତ

( ରାଗ—କଳହଂସ କେଦାର । ତାଳ—ଝୁଲ । )

କୁଞ୍ଜେ ଝୁଲନ୍ତି ରଙ୍ଗେ କୁଞ୍ଜବିହାରୀ ।
ବାମେ ବାମା ଶ୍ରୀମତୀ ନବକିଶୋରୀ ଯେ ।
ଆହା କ ଶୋଭା ବୃନ୍ଦାବନ ମାଧୁରୀ ।
ଚଉପାଶେ ଅଛନ୍ତି ବ୍ରଜନାରୀ ଯେ । ୧ ।
ନାନାରଙ୍ଗେ ମଣ୍ଡିତ ଝୁଲଣ କୁଞ୍ଜ ।
ଫୁଟି ଉଡ଼ି ପଡ଼ୁଛୁ କୁସୁମ ରଜ ଯେ ।
ଗୁଣୁ ଗୁଣୁ ଶବଦେ ଭ୍ରମରପୁଞ୍ଜ ।
ଚୁମ୍ବନ୍ତି ପୁଷ୍ପମଧୁ ପ୍ରେମରେ ମାତି ଯେ । ୨ ।

ଶୁକ ସାରୀ କୋକିଳ ବସନ୍ତ ପକ୍ଷୀ ।
ପାରା କପୋତ ଭଦ୍ର ଭଦ୍ରାଦ କେକୀ ଯେ ।
ମୃଦୁସ୍ୱନେ ଡାକନ୍ତି କ ମଧୁମୟ ।
ଜୟ ଶ୍ରୀ ରାଧେ ରାଧେ ଗୋବିନ୍ଦ ଜୟ ଯେ । ୩ ।
ସଙ୍ଗିନୀମାନେ ଦ୍ୟନ୍ତି ଯେ ହୁଳହୁଳି ।
ନାନାଦ ବାଦ୍ୟନାଦ ପଡ଼େ ଉଚ୍ଛୁଳି ଯେ ।
ସଙ୍ଗୀତ ତାନେ ଚରୁ ହୁଏ ମୋହିତ ।
ନାନା ରାଗ ରାଗିଣୀ ମଙ୍ଗଳଗୀତ ଯେ । ୪ ।
ସ୍ୱର୍ଗୁଁ ଅପସରାଏ କୁସୁମାଞ୍ଜଳି ।
ରାଧାମାଧବ ଶିରେ ଢାଳନ୍ତି ଡାଳି ଯେ ।
ସଖୀବୃନ୍ଦେ ଭକତ ଅନନ୍ତ ରଙ୍ଗିଁ ।
ସେ ଶୋଭା ବେଣୁଧର ଦେଖିବ କାହିଁ ଯେ । ୫ ।
( ଦିକ୍ଷାସ୍ଥା ଯାମିନୀରେ ମୋ ପ୍ରାଣସଖି—ବୃନ୍ଦେ )

—❋—

( ରାଗ – ହଂସକାମୋଦୀ । ତାଳ – ମିଶ୍ରରୂପତାଳ )

କୁସୁମ ହାଣ୍ଡୋଳା ଝୁଲଣ ଗୋ ସଖିଗଣ ।
ଯୁଗଳ ମିଳନେ ରାଧା ମଦନ ମୋହନ ।ଘୋଷା।
ଗୋଲକ ସାର ସମ୍ପତ୍ତି ଭୁବନ ମୋହନ ।
ହାସେ ହାସ ମିଶାମିଶି ନୟନେ ନୟନ । ୧ ।
ବନମାଳା ବୈଜୟନ୍ତୀ ମୋତିହାର ମାନ ।
ଦୁହିଁଙ୍କ ଗଳାକୁ ବଶୁଅଛି କ ଯତନ । ୨ ।
ଶିଖି ପୁଚ୍ଛ ଫୁଲ ଗଭା ଆହାକି ଶୋଭନ ।
ଗଣ୍ଡେ ଗଣ୍ଡ ମଣ୍ଡନ ଗୋ ମଧୁରେ ଚୁମ୍ବନ । ୩ ।
ଝୁଲଣ ଡୋଳି ଉତ୍ସବ କର ଦରଶନ ।
ପ୍ରେମାବ୍ଧିରେ ବୁଡ଼ି ରହୁ ବେଣୁଧର ମନ । ୪ ।
( ମାଧୁରୀରେ ମାଧୁରୀ—ବୃନ୍ଦେ )

—o—

( ରାଗ—ତୋଡ଼ି । ତାଳ—ଝୁଲା )

ଦେଖ ଗୋ, ସଖି ! ସଙ୍କେତ ବୃନ୍ଦ !
ଝୁଲୁଛନ୍ତି କୁଞ୍ଜେ ରାଧା ଗୋବିନ୍ଦ । ଘୋଷା ।
ଆହା କ ସୁନ୍ଦର ମୋହନ ବେଶ ।
ବୃନ୍ଦିଁ କାହା ଚରୁ ନୋହିବ ବଶ । ୧ ।

ବଣସ୍ତ ସାଜନ୍ତି କୁସୁମ-ଦୋଳ ।
ଡାଳ ଡାଳ ବସେ ଶିଖ-ଆବଳୀ । ୨ ।
ବାଜୁଛି କ ରଙ୍ଗେ ମର୍ଦ୍ଦଳ ବୀଣା ।
ଗୀତ ଆଳାପନ୍ତି ସୁଖୀ ପ୍ରବୀଣା । ୩ ।
ବେଣୁଧର ବୋଲେ ମୋ ଭାଗ୍ୟ ନାହିଁ ।
ନକୁଞ୍ଜ-ଉତ୍ସବ ଦେଖିବ କାହିଁ ? । ୪ ।
( କାହିଁକ ଶ୍ୟାମ ବନ୍ଧୁ ମୁରଲି—ବୃତ୍ତ )

—o—

(ରାଗ—ଚୋଡ଼ପରଜ । ତାଳ—ଆଡ଼ତାଳୀ )
ଆହା କ ଶୋଭା ଗୋ ଆଜ ଏ ଝୁଲଣ କୁଞ୍ଜ ।
ନାନା କୁସୁମରେ ମଣ୍ଡପି ହୋଇଛି ମୋହୁଛି ନୟନ କଞ୍ଜ । ଘୋଷା ।
ବୃଷଭାନୁ ଜେମାମଣିଙ୍କ ସଙ୍ଗରେ ବଜେସ୍ବ ରସିକରାଜ ।
ହସ ହସ ମୁଖ ହରୁଅଛି ଦୁଃଖ ବାଳକ ସଖୀ ସମାଜ । ୧ ।
ଏହ୍ବ ଫୁଲ ଦେ ଳ କେଉଁ ଶ୍ରମ ଭଳ ରଚିଛନ୍ତି ବୃନ୍ଦା ଆଜ
ମଞ୍ଜରୀମାନଙ୍କ ହସ୍ତରେ ଗୁନ୍ଥାଇ ହାର ଝାଡ଼ିଆ ନରଜ । ୨ ।
ମାଳତୀ ମଲ୍ଲୀକା ଚମ୍ପକ ଯୂଥିକା ଜାତି କୁରୁବକ ବ୍ରଜ ।
ମନ୍ଦ ମନ୍ଦ ବାସ ଚଳନ୍ତି ପଡ଼ୁଛି ଝଡ଼ ପୁଣି ପୁଷ୍ପରଜ । ୩ ।
ଝୁଲାଅ ଗୋ ସଖି ! ଧୀରେ ରହି ରହି ଚେଜ ଘୁଣା ଭୟ ଲାଜ ।
ସଖୀ ସଖୀ ମିଳ ଦେଇ କରତାଳ ଯୁଗଳ ପ୍ରେମରେ ମଜ୍ଜ । ୪ ।
ନକୁଞ୍ଜ କାନନ ଉତ୍ସବ ବଧାନ ନାହିଁ ନ ଥିବା ମଜଜ ।
ଦେଖି ବେଣୁଧର ଆନନ୍ଦ ଲୋଚନେ ଭସି ପିନ୍ଧ ସଖୀ ସାଜ । ୫ ।
( ଡର କାହିଁକ ହେ ପର ତରୁଣୀ ହରଣୁ—ବୃତ୍ତ )

—o—

# ବରହୋତ୍କଣ୍ଠା

## ରାଧା ଉକ୍ତି

( ରାଗ—ଖଣ୍ଡ ବଙ୍ଗଳାଶ୍ରୀ । ତାଳ—ଆଠତାଳୀ )
କ କରିବ ପ୍ରିୟଆଳୀ !
ଏଥିପାଇଁ ଦେଉଅଛି ଗାଳ ଗୋ । ଘୋଷା ।
ଶ୍ୟାମ ନେତ୍ରଭଙ୍ଗୀ ଚଳନ ଭୁଜଙ୍ଗ—
ସ୍ବଭୁଷ ଅତ ବଷମ ଗୋ ।

ମୋ ଗୁଣମାନଙ୍କୁ          ନିମିଷକ ମାତ୍ରେ,
ପାଶୋରିଦେଲା ସଖୀ ଜାଣ ଗୋ । ୧ ।
ତାଙ୍କ ମୁଖଚନ୍ଦ୍ର          ଗୋ ସନ୍ତାପ୍ତ ଧର୍ମ,
ନଳିନ ମଳିନ କଲା ଗୋ ।
ତାଙ୍କ ବେନ ଭୁଜ          ମୋ ପ୍ରବଳ ଲାଜ,—
ଗଣ୍ଠି ଫିଟାଇ ଦେଲା ଗୋ । ୨ ।
ତା କଳା ବିଶାଳ          ଶୋଭା ବକ୍ଷସ୍ଥଳ,
ଧୈର୍ଯ୍ୟନଦୀ ରୋଧିବାରେ ଗୋ ।
ଅଟେତ ଚତୁର—          ବନ୍ତ ନିରନ୍ତର,
ଉପାୟ ନାହିଁ ଫସାରେ ଗୋ । ୩ ।
ତାଙ୍କ ନାମମାଳ          କରଣ ସଙ୍ଗାଳ,
ଜୀବନ ଯାଉ ବାହାର ଗୋ ।
କହେ ବେଣୁଧର          ନ ହୁଅ ଅସ୍ଥିର,
ଭେଟିବେ ମୁରଲୀଧାରୀ ଗୋ । ୪ ।
( ଯାଅ ଯାଅ ଗୋ ଲଳିତେ—ବୃନ୍ଦେ )

—❀—

( ଯଥାରାଗ ତାଳ—ତ୍ରିପୁଟା )
ସଙ୍ଗମାନେ ଗୋ !
ଗୋବିନ୍ଦଚନ୍ଦ୍ର ଦର୍ଶନ ବିନା । ଘୋଷା ।
ଶୁଣ ଆଗୋ ପ୍ରାଣମିତେ !          କିସ ପଚାରୁଛ ମୋତେ ?
ଶ୍ୟାମବନ୍ଧୁ ଲାଗି ଜୀବ ଯିବ ।
ଜଳ ବିନା ଯଥା ମୀନ,          ଭାସ୍କର ବିନା ନଳିନ,—
ତଥା ମୋତେ ଦେଉନାହିଁ ଠାବ ଗୋ ।
ସଙ୍ଗମାନେ ଗୋ ! ଗୋବିନ୍ଦଚନ୍ଦ୍ର ଦର୍ଶନ ବିନା ।
ଏ ପୂର୍ଣ୍ଣିମା ଚନ୍ଦ୍ର ମୋତେ ଦେଉଛି ଯାତନା ଗୋ । ୧ ।
ଏ ଯେ ମଳୟ ପବନ,          ହେଲାଣି ଅଗ୍ନି ସମାନ,
ଏ କରିବ କେଉଁକଣ ଯିବ ?
ବିଷମ ବିରହାନଳ,          ବେଳକୁ ବଢ଼େ ପ୍ରବଳ,
କହ କେଉଁପରି ମୁଁ ବଞ୍ଚିବି ଗୋ ।
ସଙ୍ଗମାନେ ଗୋ ! ଗୋବିନ୍ଦଚନ୍ଦ୍ର ଦର୍ଶନ ବିନା । ୨ ।

ଜଳଦଗ ଶ୍ୟାମମୟ, ଝରୁଛି ପୂର୍ଣ ହୃଦୟ,—
ଛପିରେ ତ ସେହି ଶ୍ୟାମ ମୋର ? ।
ଜୀବନେ କେବା ଦୁଃଖିନୀ, ମୋହ ପରି ସଜନ !
ଅଛି କହ କିଏ ଏ ସଂସାରେ ଗୋ ।
ସଖିମାନେ ଗୋ ! ଗୋବିନ୍ଦଚନ୍ଦ୍ର ଦର୍ଶନ ବିନା । ୩ ।
ସେହି ମର୍କତ ପିତୁଳି, ମୋ ନୟନେ କରି କେଳି,
ଯାଇ ପାଉନାହିଁ କେଉଁଣେ ତାଙ୍କୁ ।
ଏକ ପରମାଦ ଆହା, ବୋଇଲେ ବେଣୁଧର ତାହା,
ନାମ ଧରି ହାରିବି ପ୍ରାଣକୁ ଗୋ ।
ସଖିମାନେ ଗୋ ! ଗୋବିନ୍ଦ ଚନ୍ଦ୍ର ଦର୍ଶନ ବିନା । ୪ ।
( ପ୍ରାଣବନ୍ଧୁ ହେ କାହିଁ ଅଛ—ବୃତ୍ତେ )

—୦—

( ରାଗ—କଳସା । ତାଳ — ଆଠତାଳୀ )

ପ୍ରିୟସଖି ! କହ କି ଉପାୟ କରିବଇଁ ମୁହିଁ ଗୋ । ଘୋଷା ।
ଗୋବିନ୍ଦ ବଦନଚନ୍ଦ୍ର ଦରଶନ ବିନା ।
ପୂର୍ଣ୍ଣଚନ୍ଦ୍ର ଏତେ ଦୁଃଖ ଦେଉଛନ୍ତି ପିଡା ଗୋ । ୧ ।
ଦେଖ ଏ ମନ୍ଦ ପବନ ବହି ମନ୍ଦ ମନ୍ଦ ।
ଅଦ୍ଭୁତ ହୋଇତ ଦହି ଦେଉଛି ମୋ ହୃଦ ଗୋ । ୨ ।
କି ଦୋଷ ମୁଁ ତାଙ୍କର କଲି କୁହୁସ୍ୱରେ ପିକ ।
ଶିରେ ବଜ୍ରପାତ ପରି କରେତ ଅଧିକ ଗୋ । ୩ ।
ଏଡିକି ବେଳକୁ ଭୃଙ୍ଗ ହୋଇଛି ବଇରି ।
ଝଂକୃତ ସ୍ୱନେ ମୋ ଧୃତି ଦେଉଛନ୍ତି ହାରି ଗୋ । ୪ ।
ବୋଇଲେ ବେଣୁଧର ଆଗୋ ଧନି ଧୀରସ୍ଥିର ।
ଏ ଦୁଃଖ ହରିବେ ହରି ନହୁଅ ଅଧୀର ଗୋ । ୫ ।
( ଦେଖ ଶ୍ୟାମବନ୍ଧୁ ଆସିଲେ ତ ନାହିଁ — ବୃତ୍ତେ )

— ❀ —

( ରାଗ — ଶୋଭସାରଙ୍ଗ । ତାଳ — ଏକତାଳୀ )

ନୀଳ ମୟୂଖ ଚନ୍ଦ୍ରମା ମୁଖ ନ ଦେଖି ଏତେ ଦୁଃଖ ପାଉଛି ଗୋ ।
ତାଠାରେ ସ୍ନେହ ବଳାଇ ଦେହ ବନ୍ଧେଇଦାନରେ ଭଜି ଯାଉଛି ଗୋ ।
ଘୋଷା ।।
ଯେ ଦେବ ଅଛି ମୁରଲୀପାଣି ଯାହାଙ୍କୁ ମନ ସଦା ଧ୍ୟାଉଛି ଗୋ ।
ଯାହାର ବଂଶୀ ଉଜାଣ ନଦୀ ଶ୍ରୀରାଧେ ରାଧେ ବୋଲି ଗାଉଛି ଗୋ ।୧।

ପରାଣମିତେ ! ମୋ ରାଣ ସତେ ଯେ ଏତେ କଷଣ ଦିଆଉଛୁ କି ଗୋ ।
ନୋହିଲେ ଭେଟ ସେ ନନ୍ଦସୁତ ରାଧିକା ମରଣ ମୂଳଉଛୁ ଗୋ । ୨ ।
ନିନ୍ଦା କଳଙ୍କ ଝଙ୍କାରି ପଙ୍କ ଲେପ ଲେପ ଯେ ବୋଳାଉଛୁ ଗୋ ।
ସେ କଳାଚନ୍ଦ୍ର ଲଗି ଅଚନ୍ଦ୍ର ବାଣରେ ହୃଦ ଜଳାଉଛୁ ଗୋ । ୩ ।
ଯଥା ବଳ୍ପିତ କର ମୋହିତ ବନସୁ ବଚନେ ବଳାଉଛୁ ଗୋ ।
କହଇ ବେଣୁ ମୁଁ ପର ଏଣୁ ସେବାକୁ ମାନସ ଝୁଲାଉଛୁ ଗୋ । ୪ ।
( କହ ଗୋ ସଖି ! କାହିଁକି ଦୁଃଖୀ—ବୃତ୍ତେ )

—❋—

( ରାଗ—କଳସା । ତାଳ—ଆଠତାଳୀ )
ଯାହାଙ୍କୁ ଦେଖିବା ପାଇଁ ରଙ୍କ ମୋ ନୟନ ।
ଯାହାଙ୍କ ମୁରଲୀ ସ୍ୱନେ ଜେଉଥାଏ କାନ । ୧ ।
(ମୋର ହୃଦୟ ଉପରେ ଯେ ଗୋ କରନ୍ତି ଶୟନ ।
ଆଲିଙ୍ଗନ କାଳେ ଯେହୁ ଦିଅନ୍ତି ଚୁମ୍ବନ । ୨ ।
ଯାହାଙ୍କ ଅଧରାମୃତେ ତୋଷ ହୁଏ ମନ ।
ଅଙ୍ଗ ଗନ୍ଧ ଯାହାଙ୍କର ଗୋ ସର୍ବସ୍ୱ ଧନ । ୩ ।
ଏମନ୍ତ ସୁନ୍ଦରବର ମଦନ ମୋହନ ।
ତାଙ୍କ ସଙ୍ଗେ ମୋତେ ସଖି କରାଅ ମିଳନ । ୪ ।
ଲଳିତା କହନ୍ତି ରାଧେ ସ୍ଥିର କର ମନ ।
ଭେଟାଇବି ଶ୍ୟାମ ବେଣୁଧର ନିବେଦନ । ୫ ।
( ନବୀନ ଘନ ଏ କେବେ ନୁହନ୍ତି ମାନବ—ବୃତ୍ତେ ]

—❋—

(ରାଗ—ଦେଶାକ୍ଷ । ତାଳ—ଝୁଲ )
ପ୍ରାଣସଜନି ! ତୋର ଧରୁଛୁ ପାଣି ।
ଶ୍ୟାମସୁନ୍ଦରଙ୍କୁ ମୋର ବହନ ଦିଅ ଗୋ ଆଣି । ପଦ ।
ସଖି ! ସହି ନୁହେ ବିରହ ଦାଉ ।
ଅଙ୍ଗ ଗରଳ ପରସେ ଘୋଟିଯାଏ ସ୍ୱର୍ଣ୍ଣ ସ୍ୱର୍ଣ୍ଣ । ୧ ।
ଆହା ! କି କଷ୍ଟ କେଣିକି ଯିବି ?
ବନ୍ଧୁଙ୍କୁ ମୋ ନ ପାଇଲେ ନିଶ୍ଚେ ଜୀବନ ହାରିବି । ୨ ।
ଯାଇଁ, କହ ତାଙ୍କୁ ମୋ ଦୁଃଖବାଣୀ ।
ଦୟା ନ କରିବେ କି ସେ ମୋହନ ଲାବଣ୍ୟ ଠାଣି । ୩ ।

ଡାକୀ, କଣାଅାସି ଦେଖନ୍ତୁ ଥରେ ।
ନ ସହେ ବିଳମ୍ବ, ତାଙ୍କ ପାଶକୁ ଚଳ ଗୋ ଖରେ । ୩ ।
ଶୁଣି, ଶ୍ରୀମତୀଙ୍କ ବଚସ୍ତ ଗିର ।
ହଳତା ଚଳିଲେ କୃଷ୍ଣ ପାଶେ ଭଣେ ବୈଷ୍ଣବର । ୪ ।
( ମଦନ ନନ୍ଦିକା ପରେ ବସାଇ ଉପାଇ ଦେଲୁ—ଭୂପେଶ୍ )

—୦—

( ରାଗ—ସାରଙ୍ଗ । ତାଳ— ଏକତାଳୀ )
ମୋ ପ୍ରାଣବନ୍ଧୁ ! କାହାନ୍ତି କହ ପ୍ରିୟସହ ।
କୁଞ୍ଜର ଶୋଭା ନ ହରେ ( ମୋ ପ୍ରାଣ ବନ୍ଧୁ ! ) । ପଦ ।
ମୋହନ ଚନ୍ଦ୍ରାନନ ସତେ ନବ ଦର୍ଶନ—
ପାଇବ ମନେ ପ୍ରତେ ନାହିଁ ମୋ । ୧ ।
ଅବା କେଉଁ ରମଣୀ କହ କପଟ ବାଣୀ,
ତାହାଙ୍କୁ ନେଲ କ ଭୁଲାଇ ମୋ । ୧ ।
ଦେଇଥିଲେ ସଙ୍କେତ—ପଦ ମୁରଲି ହାତ,
ଏବେ ସେ ନଇଲେ କପାଇଁ ମୋ । ୩ ।
କହଇ ବୈଷ୍ଣବର ଧୀମା ହୁଅ ଗୋ ସ୍ଥିର
ଏକ୍ଷଣି ଦେବ ମୁଁ ଭେଟାଇ ସେ । ୪ ।
( ସେ ଶ୍ୟାମବନ୍ଧୁ ଅସିଲେ ନାହିଁ—ବୃନ୍ଦେ )

—୦—

( ରାଗ— ସାରଙ୍ଗ । ତାଳ—ତ୍ରିପୁଟା )
ସୁକୁମାର ମାଳମଣି ମୋ ହୃଦ ଚନ୍ଦନ ।
ଅକରୁଣ ହୋଇ ଯେବେ ନ ଦେବେ ଦର୍ଶନ ।
ସଖି ! କ ଜାଣିଁ ଗୀବନେ । ଝାସିବ ଯମୁନାଗର୍ଭେ ନଶ୍ଚେ ତାଙ୍କ ବନେ । ୧ ।
ଦେଖ ଗୋ ପ୍ରହରୁ ବଳ ହୋଇଲାଣି ନଶି ।
ଏ ସବୁକ ନଇଲେତ ସେ କ କଥା ଶଶୀ ।
ସଖି ! କ ବୁଦ୍ଧି କରିବ । ପ୍ରାଣବନ୍ଧ ବଚନ ମୁଖେ କହର ଭରିବ । ୨ ॥
ଲଜ ଭଯ୍ ଏଡ଼ ଦେଇ ଏଥକୁ ଅଇଲ ।
ମଣିହବ ପାଣିପର ଏବେ ମୁଁ ହୋଇଲ ।
ସଖି ! ମନ ହୁଏ ଯାହା । ମୁଁ ବିନା ଜଣାଇଁ ଆନ କେ ଜାଣିବ ତାହା । ୩ ।

କେତେ କଥା ନ କଲେଟି ସେ ଶଠନାଗର ।
ନାଶ୍ରମଶ୍ର ଧୈର୍ଯ୍ୟହରା କପଟୀଙ୍କ କଳ !
ସଖି ! ସରଲଟି ଜାଣ । ବୋଲେ ବେଣୁଧର ସ୍ଥିରହୁଅ ଶାବଧନ । ୪ ।
( ଦୁଃଖକର ଧନ ହର—କୃଷ୍ଣେ )

—•—

## ଉତ୍କଣ୍ଠିତା ରାଧା ଉକ୍ତି

( ରାଗ—ପିକବାଣୀ । ତାଳ—ଏକତାଳୀ )

ବ୍ରଜରାଜ ତନୁଜ ଅଜ ଆସିବେ କି ?
ସେ ନଟନାଗର ହରି ପାଶେ ରଙ୍ଗ ହାସପରି,
କେତେ ରସେ ମଞ୍ଜୁ ବାଣୀ ଭାଷିବେ କି ? । ୧ ।
ଗଳିଲମ୍ବେ ବନମାଳୀ ନାନା ବନ୍ଧେ କରି କେଳି,
ମନସିଜ ତାପ ମନୁ ନାଶିବେ କି ? । ୨ ।
ହସି ରସି କାନ୍ତ ପାଟଣ କସି ଶ୍ୟାମ ନଶୀ ଶେଷେ,
ମୋ ଅଙ୍ଗ ମଲ୍ଲଙ୍କେ ଥରେ ବସିବେ କି ? । ୩ ।
ଯାର ପ୍ରବଳ ପ୍ରତାପ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ନୃପ
ମତ ଦରଶନେ ସତେ ତୋଷିବେ କି ? । ୪ ।
( ଶ୍ୟାମ ବନେ ସଜନୀ ଆସେ—କୃଷ୍ଣେ )

—※—

ରାଗ—କର୍ଣ୍ଣାଟକ । ତାଳ—ଏକତାଳୀ )

ବ୍ରଜଯୁବରାଜ ଆଜ ଆସିବେଟିକି, କେଳି କୁଞ୍ଜକୁଟୀକି । ଘୋଷା ।
ସଂତ କି ସହଚରି ମୋହନ ବଂଶୀଧାରୀ
ସଙ୍ଗତରେ ଶଙ୍କାରି ପାଇବି ହରି ଅରି—
ପାମର ଦଣ୍ଡୁ ପାରି କରିବେ ନ ପାସେରି ପ୍ରୀତିରୀତିକି । ୧ ।
ସନ୍ତାପ ସରତରେ ଭାସୁଛି ତା ଲାଗିରେ
ଶ୍ୟାମନାଗର ବନା ଗତିକି ଆନ ମୋରେ
ଦେଖାଇବେ କି କଳା— ଚନ୍ଦ୍ରବଦନ ଥରେ ଦେବ ମୁକ୍ତିକି । ୨
କଞ୍ଜଦଳ ନୟନ ନବଘନ ବରନ
ହୋଇ ହରଷ ମନ ଗଣ୍ଡେ ଦେବେ ଚୁମ୍ବନ
ଭାଷି ମୃଦୁ ବଚନ ତୋଷିବେ ମୋର ମନ ଆଜ ରାତିକି । ୩ ।

କହଇ ବେଣୁଧର — ପଟ୍ଟନାୟକ ଧର—
ଧାରେଣ ଛଳ ଲଗି ଗୋପେ ନନ୍ଦ କୁମର
ନକର ଚିନ୍ତା ରାଧେ ! ଆସିବେ ଶ୍ରୀ କିଶୋର-ଚନ୍ଦ୍ର ଜଳଦ । ୪ ।

( ଝୁହାଁ ଝୁହାଁ ଗୋ ଦୁଷ୍ଟ—ବୃନ୍ଦେ )



( ରାଗ—କାନଡ଼ ଗୌଡ଼ା । ତାଳ—ଏକତାଳୀ )

ନେତ୍ରାନନ୍ଦ ମୂରତିଙ୍କି ଦେଖିବି କି ସତେ ଗୋ !
ପ୍ରେମାଳିଙ୍ଗନେ ମଜ୍ଜିବି ତାହାଙ୍କ ସଙ୍ଗତେ ଗୋ ! ଘୋଷା ।
ସ୍ନେହାଧୀନା ମୁଁ ତାଙ୍କର ଅଟଇ ନିରତେ ଗୋ !
ବସ୍ତ୍ରାଞ୍ଚଳେ ଚକ୍ଷୁଜଳ ନିକୁଞ୍ଜେ ପୁଛନ୍ତେ ଗୋ । ୧ ।
ଲଜାଭୟମାନକୁ ତାଳେ ରଖିନାହିଁ ଚିତ୍ତେ ଗୋ !
ଶ୍ୟାମଙ୍କ ଶୋଭା ମାଧୁରୀ ଦେଖିବା ନିମନ୍ତେ ଗୋ ! ୨ ।
ଗୁଞ୍ଜାବଳୀ ଶିଖିପୁଚ୍ଛ ମଞ୍ଜୁଳ କେମନ୍ତେ ଗୋ !
କଞ୍ଜାନନ-ମୃଦୁହାସ ଝୁହଁଣି ଇଷିତେ ଗୋ ! । ୩ ।
ଭାନୁଜା ଶ୍ରୀରାଧାରାଣୀ କହନ୍ତି ଲଳିତେ ଗୋ !
କୁଞ୍ଜାଳୟକୁ ମଣ୍ଡିବା ବେଣୁ କହେ ଗୀତେ ଗୋ ! ୪ ।

( ଏ କାଳରେ ଘନଘୋଟି କି ଆଚ୍ଛନ୍ନ କଲା ଗୋ—ବୃନ୍ଦେ )



( ରାଗ—ସାରଙ୍ଗ । ତାଳ—ଏକତାଳୀ )

ଲଳିତେ ! ବନ୍ଧୁ ମୋ ଆସିବେ କେତେ ?
ଦଶୁଛି ଅଶୁଭ ଚିହ୍ନ ମନରେ ନାହିଁ ପରତେ । ଘୋଷା ।
ତାହିଁକି ଏତେ ବିଳମ୍ବ— କଲେ ଗୋ ସେ କେଶବ,
ଆନନାରୀ କେ ଭୁଲାଇ ରଖିଲା କି ଅବା ପଥେ । ୧ ।
କାହିଁ ଉଠୁଛି ପବଣ ସ୍ଥିର ହେଉ ନାହିଁ ମନ,
କମ୍ପି ଉଠେ ଘନ ଘନ ଦକ୍ଷିଣାଙ୍ଗ କି ନିମନ୍ତେ ? । ୨ ।
ସେ ଗୁରୁଜନାଚରଣ ହେଲେ ସବୁ ଅକାରଣ,
ଏ ବାସ ଚୂଆ ଚନ୍ଦନ ବାସୀହେବ କି ଗୋ ଏଥେ । ୩ ।
ଏ ଗୁଞ୍ଜା କୁସୁମ ହାର ବୃଥା ହେବ କି ମୋହର,
ବୋଧି ବୋଲେ ବେଣୁଧର ଆକୁଳ ହୃଦ ଗୋ ଏତେ । ୪ ।

( ଏଡ଼େ ପରିବାଦ କାହିଁକି— ପ୍ରଭୁ )



( ଯଥାରାଗ । ତାଳ—ଝିମ୍ପତା )

ପ୍ରିୟସଖି ଗୋ, ପ୍ରିୟ ସଖି ଗୋ ! !
ଦେଖ ଶ୍ୟାମ ଅସିଲେ ତ ନାହିଁ ଗୋ ! । ଘୋଷା ।
କହିଲେ ଝୁରି ମୁରଲୀ ସଙ୍କେତେ ଆସିବେ ବୋଲି,
ଏବେ ଦେଲେ ଭଗାରି ଦୟାଇ ଗୋ । ୧ ।
ଶଠ ନଟବର ଖଟ ଫଳେ ଯେସନେ ମଧୁଲଟ,
ତାଙ୍କ ଗୀତ ସେସ୍ୱପରି ହୋଇ ଗୋ । ୨ ।
ନବୀନ ଘନସୁନ୍ଦର ଯୁବାପୁଂସ ପୁରନ୍ଦର,
ଏ ନିର୍ଦ୍ଦୟ ହେଲେ ମୋହଠାଇଁ ଗୋ । ୩ ।
କହୁଁ କହୁଁ ଶ୍ରୀ କଳେଶ୍ୱରୀ ନେତ୍ରେ ପଣ୍ଡି ଅଶ୍ରୁବାରି,
ବେଣୁଧର କହଇ ବୁଝାଇ ଗୋ । ୪ ।
( ଦେଖ ସଖି ଗୋ ! ଶ୍ୟାମଚନ୍ଦ୍ର ଆଜ ଏଥି ନାହିଁ ଗୋ — ବୃତ୍ତେ )

— ୦ —

( ରାଗ—ତୋଡ଼ି । ତାଳ—ଏକତାଳୀ )

ଆରେ ସଜନୀ ଆଜ ରଜନୀ କାହିଁକି ଆରେ ଶ୍ୟାମ ନଇଲେ ।
କା ପୁରେ ରତି-ଉତ୍ସବେ ମାତି ମନ ମୋହନ ରହିଲେ ! ପଦ ।
ପ୍ରାଣମାଧବ ଗଣ ପଠାଇ ନିୟମ କରି କହିଲେ ।
ନନ୍ଦନନ୍ଦନ ବଂଶୀବଦନ କେତେ କପଟ ଧରିଲେ । ୧ ।
ଶଠ ଲମ୍ପଟ ପ୍ରୀତି ଜାଣି ନଥିଲି ମଜିଲେ ।
ନଟନାଗର କଣ୍ଠ ଦେଇଣ କଣ୍ଠ ପରକୁ ବାନ୍ଧିଲେ । ୨ ।
ଚନ୍ଦ୍ର ଚନ୍ଦନ ବୃଥା କରାଇ ମଦନବାଣେ ଦହିଲେ ।
କେଉଁ ନାଗରୀ ରସସାଗରୀ ମାନସରସେ ମୋହିଲେ । ୩ ।
ଶ୍ରୀ ବେଣୁଧର କହ ଚନ୍ଦ୍ରରେ କି ଦୋଷ ଦୂର ହୋଇଲେ ।
ଝଣୀ ପାହିଲେ ଦହିବ ସିନା ମୋ ପ୍ରାଣେ ଶ୍ୟାମ ଅଇଲେ । ୪ ।
( ଆଜ କି ଶ୍ୟାମ ଆସିବ—ବୃତ୍ତେ )

— * —

( ରାଗିଣୀ—ଝିଂଝୋଟ । ତାଳ—ଅଠତାଳୀ )

* କାହିଁକି ସଖି ! ଶ୍ୟାମ ଅସିଲେ ନାହିଁ ଗୋ !
ମ-ନ କେ ମୋହିଲା ତାଙ୍କ ରସେ ରସାଇ ଗୋ ! ଘୋଷା ।
ଶ-ରଣବତ୍ସଳ ବୋଲି ଭରସା ମୁଁ କରିଥିଲି,
ରେ-ସଙ୍ଗେ ମା ଦେଲେ ଏବେ ଦୁଃଖ ଭସାଇ । ୧ ।

---

* ଏ ଗୀତର ପ୍ରତିଧାଡ଼ି ପ୍ରଥମ ଅକ୍ଷର ମାନ ପାଠ କଲେ ବାହାରିବ ।
( କାମଶରେ ଘାରିହେଲି ମୋହନ ଲଳିତ )

ଘା-ଉଥା ହରଣୀ ପଣ ସ୍ମୃତ ହେଉଛୁ ବଦାଗ,
ଷ-ଷାବଣ୍ଡ କେ ହୋଇଲା ମୋହର ଠାଇଁ ଗୋ ୨ ।
ହେ-ଳ ନ ପାଇଲି ମୁଁ ତ ଶଠ ପ୍ରେମେ ହେଲି ରତ,
ଲ-ତାଏ ଯା ଠାରେ ବିଶ୍ୱାସ ତ ନାହିଁ ଗୋ । ୩ ।
ମୋ-ଦେହ ଛୁଇଁ କହିଲେ କାହା କୁଞ୍ଜେ ନିଶି ନେଲେ
ହ-ରକତ କେତେ କେତେ କଲେ ପ୍ରାଣ ମାଧୋଇ ଗୋ । ୪ ।
ନ-ଟବର ବଂଶୀପାଣି କୂଟ ମୁଁ ନ ଥିଲି ଜାଣି,
ଲ-ବଣ୍ୟ ତ୍ରିଭଙ୍ଗ ଠାଣି ଭବିଲେ କାହିଁ ଗୋ । ୫ ।
ଗୀ-ତେ କହେ ବେଣୁଧର ରାଧିକେ ଧଇର୍ଯ୍ୟ ଧର,
ତ-ବ ଭଲା ଚନ୍ଦ୍ରାମଣି ଚନ୍ଦ୍ରା କୁଞ୍ଜରେ ଯାଇଁ ଗୋ । ୬ ।
( ପଶ୍ଚିର ସଖି ! ତାଙ୍କୁ ଆନକୁ ଦେଇ— ବୁଝେ )

—❀—

( ରାଗ — ମତ୍ତଆର । ତାଳ — ଝୁଲ ପହପଟ )

କାହିଁପାଇଁ ସଖି ଗୋ ! ଶ୍ୟାମ ଆସିଲେ ନାହିଁ ?
କି ଦୋଷ ମୋହର ଦେଖି ବଂଶୀଧର ଏ ନିଶି ରହିଲେ ଅବା ସେ କାହିଁ ।
( ଘୋଷା )

ବଡ ଅଭାଗିନୀ ଅଟଇ ମୁହିଁ,
ତାଙ୍କ ସେବା ଯୋଗ୍ୟହୀନା ହେଲଇଁ ।
ବାଙ୍କଚୂଳିଆ ଜା ପ୍ରେମେ ବନ୍ଧ ହେଲେ,
ଧନ୍ୟ ଧନ୍ୟ ସେହି ମୋହନସ୍ନେହୀ । ୧ ।
ରସିକ ରତନ ବଦନମଣି,
ଅଦର୍ଶନେ କେହ୍ନେ ବଞ୍ଚିବ ଧନୀ ।
ଆଗୋ ପ୍ରାଣସଖି ! ଜରମାଖୀ
ହୃଦୟ ଭିତର ହେଉଛୁ ଦହି । ୨ ।
ବୃଥା ହେବକି ଏ ଏ ଚୂଆ ଚନ୍ଦନ
ବାସ ଫୁଲହାର ବଡ଼ଆପାନ ।
ନୟନ ସଙ୍ଗାନ ମୋର ବନମାଲୀ
କହିଥିଲେ ପଗ-ମୁହଁଲି ଛୁଇଁ । ୩ ।

ଦେଖ ବଳିଲାଣି ଅର୍ଦ୍ଧ ରଜନୀ,
ପୂର୍ବଦିଗେ ବଧୂ ଉଦେ ହେଲେଣି ।
ନେମଲ୍ଲୀ ପର ଦୁର୍ଦ୍ଦଶା ନୋହନ୍ତ,
ଲେଖିଥିଲା କ ଗୋ ଦାରୁଣ ବହ୍ମ । ୪ ।
ଧୀର ଧ୍ୱନ ବୈଶୁଧର କହଇ,
ଅଧୈର୍ଯ୍ୟ ନ ହୁଅ ଶ୍ରୀ ମଣ୍ଡି ସଇ ।
ଅବଶ୍ୟ ଆସିବେ ତୁମ୍ଭ ପ୍ରାଣବନ୍ଧୁ,
ଅବଶ୍ୟ ଆସିବେ ତୁମ୍ଭ ପ୍ରାଣବନ୍ଧୁ,
ବୃନ୍ଦାବନଇନ୍ଦୁ କଳା କହ୍ନାଇଁ । ୫ ।
( ଜଣାଗଲା ଶ୍ୟାମ ହେ, ତୁମ୍ଭ କପଟ ଶଠ – ବୃତ୍ତେ )
– ❀ –
ରାଗ—ମଲୁଆ । ତାଳ – ଏକତାଳୀ । )
ମୋ ପ୍ରାଣବନ୍ଧୁ ' ଆସିଲେ ନାହିଁ କମ୍ପା ସଖି ?
ଏ ଶ୍ୟାମଇନ୍ଦୁ, ଅଟକ ରହିଲେ ଗୋ କାହିଁ ? । ଘୋଷା ।
କହିଥିଲେ ବଂଶୀ ଛୁଇଁ ପରା ସେ ଶଠ ମାଧବାଇ,
ଏବେ କାହାମନ ନେଲେ ମୋହି ? । ୧ ।
ସେତ ଶାଠକର ଖଣ୍ଡ ନାଗର ହଟିଆ ଧୂର୍ତ୍ତ
ହୋଇଲେଣି ଆନ ନାରୀ ସ୍ନେହୀ । ୨ ।
ପରତେ ନାହିଁ ମୋ ମନେ ଆଜ ଏ କୁଞ୍ଜ ସଦନେ
ଆସିବେ ବୋଲି ଗୋ କହ୍ନାଇଁ । ୩ ।
ବୈଶୁଧର ବୋଲେ ସଖି ! ଅଧୀର ହୁଅ କପାଇଁ ?
ଖୋଜିଆଣି ଦେବ ମୁଁ ଭେଟାଇ । ୪ ।
( ସେ ଶ୍ୟାମବନ୍ଧୁ ! କାହିଁକି – ବୃତ୍ତେ )
( ରାଗ—ବଙ୍ଗଳାଶ୍ରୀ । ତାଳ—ଆଠତାଳୀ । )
ବନ୍ଧୁ ଲାଗି ସଖି ତଳପ ସଜାଇ,
ଗୁନ୍ଥିଲି କୁସୁମହାର ଗୋ ।
ପଦ୍ମ ନାଗବଲ୍ଲୀ ଭଙ୍ଗ ରଖିଥିଲି,
ମଣ୍ଡାଇ କୁଞ୍ଜମନ୍ଦିର ଗୋ ।
ଜାଳି ରତ୍ନ ଦୀପାବଳୀ ।
ଚୂଆ ଚନ୍ଦନକୁ ଥିଲି ଗୋଳି ଗୋ । ୧ ।

ହେ ରସ-ଶେଖର କାହିଁକି ଉଚ୍ଛୁର—
କଲେ ନ ପାରୁଛୁ ଜାଣି ଗୋ ।
କେମନ୍ତ ପ୍ରବୋଧିବ ଅବୋଧ ମନକୁ,
ହୃଦୟ ଦେଉଛୁ ହାଣି ଗୋ ।
କାହିଁକି ନଇଲେ ଶ୍ୟାମ ।
କବା ମୋହଠାରେ ହୋଇଲେ ବାମ ଗୋ । ୨ ।
ଶାଶୁ ନଣନ୍ଦଙ୍କୁ ବଞ୍ଚନା କରେ ମୁଁ
ଆସିଲି ଗହନ ବନେ ଗୋ ।
ଏ ଦେହ ଜୀବନ ଯାହାଙ୍କୁ ବଳିଛି,
ତାଙ୍କୁ ଭେଟିବା କାରଣେ ଗୋ ।
ବଳାଇ ଅଛ ରେଖା ।
ଯାହା ଲଭୁଛି ଏ ଦୁଃଖ ବାଧା ଗୋ । ୩ ।
ପଥ ଅନୁସରି କେବେ ବା ବସିବ
ଚଉ-ବଉଦ୍ରେବ ଆଶେ ଗୋ ।
ପ୍ରେମ ଚନ୍ଦ୍ରାମଣି ଆସିବେ ଗୋ ଧନ
ବୋଧି ବେଣୁଧର ଭାଷେ ଗୋ ।
ଶ୍ରୀ ବୃଷଭାନୁ ନନ୍ଦିନୀ ।
ଏଥିପାଇଁ ହୃଦ ଚନ୍ତାର୍ଥିନୀ ଗୋ । ୪ ।
( କୃଷ୍ଣନାମ ଆଛୁଠାରୁ—ବୃନ୍ଦେ )

—※—

( ରାଗ—ଚୋଖି । ତାଳ—ଆଠତାଳୀ )

ଗୋକୁଳ ନନ୍ଦାର ହୃଦ-ନିଧିଙ୍କି ମୋର,
କେ ଗଥ ବଣା ଚଲ୍ କହ ସଖି ? ଘୋଷା
କେତେ ଶ୍ରମେ ମୁଁ ଆଜ, ସଜିଲି କେଳି କୁଞ୍ଜ,
ମୋ ଆଶା ଦ୍ରୁମ ଦେଲ କେ ଟଳାଇ ? । ୧ ।
ଫୁଲ ଶେଯ ଅନଲେ, ମୋର ମରମ ଜଳେ,
ସେ କାଳା ସୁଖାନନ୍ଦ ନୁଟିଲା କହି । ୨ ।
କୃଷ୍ଣଙ୍କୁ ଘେନ ଅଙ୍କେ, ବସି ଦେଲ ନିଃଶଙ୍କେ
ଧନ୍ୟ ଧନ୍ୟ ସୌଭାଗ୍ୟ ବତୀ ସେହି । ୩ ।

ମୁଁ କି କଳମନ୍ତ୍ରୀନା, କାହ୍ନୁଁ ମୋ ନଦ କହ୍ଲା,
କୃପା ଲଭିବ ଚେତେ ପୁଣ୍ୟ ନାହିଁ । ୪ ।
କହଇ ବେଣୁଧର, ସାଧ ! ଚିନ୍ତା ନ କର,
ନିଶ୍ଚେ ଆସିବେ ବନ୍ଧୁ ସ୍ନେହ ବନ୍ଧ । ୫ ।
( ସଜନି ! ଆଜ ରଜନୀରେ ନଈକୂଳେ—ପ୍ରଭୃ )

—*—

( ରାଗ—ଭାଟିଆରୀ । ତାଳ—ଏକତାଳୀ )

ଆଗୋ ପ୍ରିୟସଖି ! ଶ୍ୟାମବନ୍ଧୁ ନ ଆସିଲେଟି କାହିଁକି ? । ଘୋଷା ।
ମଦନ ଶାୟକେ ହେଲି ଘାରି, କି କଲେ ମା ଗିରିବରଧାରୀ,
କେବଣ ଯୁବତୀ ନେଇ ଗଲେ ମାତି ମୋତେ କରାଇ ସେ ଏତେହତି । ୧ ।
ସଞ୍ଜେବେଳୁଁ କୁଞ୍ଜ କେଳି ବାସେ, ଜଗାଇ ଦେଇ ଗୋ କେଉଁ ଦୋଷେ,
ନ ବଲେ କରୁଣା କଣ୍ଟକ ଚିତ୍ତରେ ଲୁହ ପୋଛୁଇଲେ ବାସଶେଷେ । ୨ ।
କିସ ହେବ ଆଜ ଏ ଶେଜିଆ, କିସ ହେବ ଏ ଚନ୍ଦନ ଚୁଆ ?
ଫିଙ୍ଗି ଦିଅ ନେଇ ସଜନି ! ନଈକୂଳେ ସବୁ ଦହନାଦିଆ । ୩ ।
ଛିଣ୍ଡାଇ ଦିଅ ଏ ଫୁଲହାର ଏଥିରେ ନାହିଁ ଗୋ ଦରକାର,
ସବୁ ସୁଖ ସରିଲାଣି ମା ଏଥର ଝୁରି ଝୁରି ନିତି ହେବା ସାର । ୪ ।
ଦେଖ ପିକା ହୋଇଲାଣି ପାନ, ତାରା ଏ ହେଲେଣି ମାଁ ମଳିନ,
ଏ ମଞ୍ଜୁଳ ମୋତିହାରରେ ମୁଁ ଦେଖି ' ଲଭିଲାଣି ଶୀତଳତା ପୁଣ । ୫ ।
ଦେଖ ପଙ୍କଜରେ ମଧୁକର, ମାତିଲାଣି କରି ସେ ଝଙ୍କାର,
ଜାଣି କରି ଦେଲେ ସବୁଦୁଃଖ ମୋର କପଟିଆ ଶ୍ୟାମ ବେଣୁଧର । ୬ ।
ଏହାକାଳେ ତହିଁ ଲୀଳାନିଧି, ପ୍ରବେଶିଲେ ସାଧଇ ଏ ବିଧି,
ସେ ନାଗରୀ ହୋଇ ଶ୍ରୀମନ୍ତଙ୍କ ପଦେ ବନ୍ଦେ ବେଣୁଧର ହୀନବୁଦ୍ଧି । ୭ ।
( ଆରେ ବିଚକ୍ଷଣା, ବନ୍ଧୁରହିଁ, ମୋ ଭରମ ବଡ ଜଣା—ବୃତ୍ତେ )

— * —

( ରାଗ—ଖାରବାଣୀ । ତାଳ—ଆଠତାଳୀ

ଧିକ ଧିକ ଏ ଜୀବନେ ।
ବନ୍ଧୁ ନ ଦେଲେ ପାଦ ଦରଶନ ଗୋ ଘୋଷା ।
ଅରୁଣ ଉଦିଲ ରାତି ପାହିଗଲା,
ନଇଲେ ମୋ ପ୍ରାଣଧନ ଗୋ ।
ମରମ ବେଦନା, ମରମରେ ଥିନା,
ରହିଲ ଜାଣ ସଙ୍ଗାତ ଗୋ । ୧ ।

ଆଜ କାହିଁପାଇଁ, ରହିବ ଚକାଇ,
ପୂରଲ ସବୁ ବାସନା ଗୋ ।
ବୃଥା ଏ ଭୂଷଣ, ଫୁଲହାର ମାନ,
ଘୁର ଖାର ହେଉନକନା ଗୋ । ୨ ।
ନେଇ ଯାଅ ମୋରେ, ଯମୁନା ଗର୍ଭରେ,
କାନନା ଦେବ ଜଳାଇଁ ଗୋ ।
ଆଜ କାହିଁ ପାଇଁ, ପୂରକୁ ଯିବଇଁ,
ଟିକେ ପ୍ରୟୋଜନ ନାହିଁ ଗୋ । ୩ ।
ଏ ସବ ସମ୍ଭାର, ଫିଙ୍ଗି ଗୋ ସଙ୍ଗତ,
କସ ହେବ ଅବା ଥାଇ ଗୋ ।
ନକୁଞ୍ଜ ନବାସୀ, କସାଇବେ ବାସି,
ସଂକେତ ଏକା ଜଟାଇ ଗୋ । ୪ ।
କହୁଁ କହୁଁ ଧନୀ ଢଳିଲେ ଅବନୀ,
ସଖିଏ ଧଇଲେ ଟେକି ହେ ।
ବେଣୁଧର କହି, ଆହେ ଠାକୁରାଣୀ,
ଅଧୈର୍ଯ୍ୟ ନୁହ ଏ ଭଳି ଗୋ । ୫ ।
( ଯାଅ ଯାଅ ଗୋ ଲଳିତେ—ଘୃଣ )

—❁—

( ରାଗ—ଧନାଶ୍ରୀ । ତାଳ—ଝୂଳା )

କଣ୍ଠକଣ ହେଲେ କେଉଁ ଶ୍ୟାମ ସୁନ୍ଦର
ମୋ ହୃଦୟହାର ।
କେଉଁ ନାରୀ ପାଦରେ ପଡ଼ି ଭୁଲିଗଲେ ଧନୀ !
ମୋ ଚଉଦ୍ୱାର । ପଦ ।
ନାନାଜାତି ପୁଷ୍ପହାର, କୁଙ୍କୁମ ପୀତାମ୍ବର,
ଏ ସବ ପଦାର୍ଥ ହୋଇବ ବ୍ୟର୍ଥ
ନ ଆସିଲେ କମା ନନ୍ଦନାଗର । ୧ ।
ଅତି ଯତ୍ନ କରଣ, ସଜିଲି ବଡ଼ଆସନ,
ଚନ୍ଦନ କର୍ପୂର ସୁବାସ ଅଗର,
ରୋଳି ବୋଳିଥାନ୍ତି ତାଙ୍କ ଅଙ୍ଗର । ୨ ।

ହୋଇଥିଲି ମୁଁ ସୁବେଶ, ଆସିବେ ଯେ ପୀତବାସ
ତନୁଘାପାବଳୀ ଉଜାଗର ଜାଳି
ଖଣ୍ଡପଣ କଲେ ମୁରଳୀଧର । ୩ ।
ଯାଅ ଯାଅ ଗୋ ଲଳିତା, କହିବୁ ତାଙ୍କୁ ଏ କଥା,
ସେହି ପାଦପଦ୍ମ ହୃଦାକରି ଧ୍ୟାନ
ଗାଏ ଯାଉ ଗାନ ବେଣୁଧରର । ୪ ।
( ଯମୁନେ ! କହ ଗୋ ମୋର ପରାଣମଣି—ବୃତ୍ତେ )

— ❀ —

( ରାଗ—ବଙ୍ଗଳାଶ୍ରୀ । ତାଳ—ଏକତାଳୀ )

ପ୍ରାଣ ସଜନୀ ରେ ଆଜ ରଜନୀରେ କା ନ କଲେ ମୋହନ ।
ସେ ଶଠ ଲମ୍ପଟ କପଟ ପ୍ରୀତିରେ ତାପେ ହେଲି ଦହନ । ଘୋଷା ।
ଦେଇଥିଲେ କଣ୍ଠ ସେ ନାଗର ଖଣ୍ଡପଣ ଜାଣି ନ ଥିଲି ।
ମଣ୍ଡି କୁଞ୍ଜପୁର ହୋଇ ଉଜାଗର ଜା ଆଶାରେ ମୁଁ ଥିଲି । ୧ ।
ନାନା କୁସୁମରେ ଶେଯ ସଜାଇଣ ଜାଳି ଦୀପାବଳୀକି ।
ଭଙ୍ଗି ପକ୍ୱ ନାଗବଲ୍ଲୀ ଭାଳି ବସିଥିଲି ବନମାଳୀଙ୍କି । ୨ ।
ଏ ଯେତେ ପଦାର୍ଥ ହେଲା ବ୍ୟର୍ଥ ଶ୍ୟାମବନ୍ଧୁ ନଇଲେ ।
କେଉଁ ରସବତୀ ସଦନେ ଶ୍ରୀପତି ମତି ଅଟକାଇଲେ । ୩ ।
ଶ୍ରୀ କଶୋରମଣି ଏସନ ମିନତି କର ଧରି କହନ୍ତି ।
ପ୍ରବଳ ପ୍ରତାପ ବୀରବର ନୃପ କୃଷ୍ଣଚନ୍ଦ୍ର ବଦନ୍ତି । ୪ ।
( ଗୋପ ଯୁବରାଜ ଯାହା କଲେ ଆଜ—ବୃତ୍ତେ )

— ❀ —

( ରାଗ—ସାରଙ୍ଗ । ତାଳ—ଝୁଲା )

❀ କହ ସଖି ! କାହିଁପାଇଁ ମୋହନ ନ ଆଇଲେ ଗୋ ?
ପ୍ରହରୁ ଚଳିଲା ନିଶି କାହିଁ ସେ ରହିଲେ ଗୋ । ପଦ ।
ଦହଇ ବିରହା ନଳ କେତେ କହି କବଳ,
ସହଇ କେମନ୍ତ ଏହା ସେ ଭେଟ ନ ନାହିଲେ ଗୋ । ୧ ।
ବହନ ଯାଅ ଗୋ ଆଳି ଆଣ ତାହାଙ୍କୁ ସଙ୍ଗେ ନି,
ଜହର ଗିଳିବି ନିଶ୍ଚେ ତୋ ଦୟା ନୋହିଲେ ଗୋ । ୨ ।
ସ୍ୱପ୍ନରେ ଭୁଲାଇ କେହି ରଖିଲା କି ଅଟକାଇ,
ଦେହ ତ ମୋ ସହୁନାହିଁ କି ଦଣ୍ଡ ବହିଲେ ଗୋ ।

---

❀ ଏହି ଗୀତ ବଡ଼ଖେମଣ୍ଡି ଅଧୀଶ୍ୱର ୬ କୃପାମୟ ଦେବଙ୍କ ନାମେ ଭଣିତ ।

କହଇ ଶ୍ରୀ କୃପାମୟ— ଦେବ ଶତ୍ରୁ କର ଥୟ,
ଆଣିବ ନନ୍ଦ ତନୟ ଯାଉଛୁ ମୁଁ ହେଲେ ଗୋ । ୪ ।
( ନ ଦେଖି ତୋ ମୁଖ-ସୁଧାମୟୂଖ ଏ ବାଧା—ବୃତ୍ତେ )

—o—

## ବାସକଶଯ୍ୟା ।

( ରାଗ — ଲଳିତା । ତାଳ — ଏକତାଳୀ )
ସଖି ମୁଁ ଜାଣିଲି ଶ୍ୟାମ ସ୍ୱଭଟି ଲୋ ।
ଜାଣିଲି ଜାଣିଲି ଶ୍ୟାମସ୍ୱଭଟି ଲୋ । ଘୋଷା ।
ଯାହା କରି ହେଲେ ସେନ୍ତ — ଜା ମନେ ଥିଲା ଲୋ ସନ୍ତ !
ଲମ୍ପଟିଆ କପଟିଆ ପ୍ରୀତିଟି ଲୋ । ୧ ।
ସହୁଛୁ ଯେତେ ଯାତନା — ନୋହୁ ମୋର ସେ କାମନା,
ପଥର କରିଛୁ କେତେ ଛାତିଟି ଲୋ । ୨ ।
ଦହୁଛୁ ମରମଯାକ — କହୁଛୁ ଏତେ ମାତ୍ରକ,
ତା ଠାରେ ନ ହେଉ ଆଉ ମତିଟି ଲୋ । ୩ ।
ଧାନ ଧ୍ୟାନ ବେଣୁଧର — କରୁଛୁ ଲାଜେ ଜୁହାର,
ଥୁଚୁଛି ନନ୍ଦାକୁ ମୋର ଛାତିଟି ଲୋ । ୪ ।
( ସଖି ? ମୁଁ ଦେଖିଲି ଘନଶ୍ୟାମକୁ — ବୃତ୍ତେ )

—o—

( ରାଗ — ମାଳଶ୍ରୀ । ତାଳ — ଏକତାଳୀ )
ସଜନି ଗୋ ! ଏବେ ଗଲାତ ସରି ।
କି ନ କଲେ ମୋତେ ସେ ମୁରଲୀଧାରୀ । ଘୋଷା ।
ଯମୁନା ତଟେ — ଏ କଣ୍ଠା ବାଟେ,
କେତେ ହଟ ହଟା ହେଲା ଆସି କରି । ୧ ।
ବୃଥା କଥାରେ — ପଡ଼ି ଭ୍ରମରେ,
କପଟ ତ ବୁଝି ନ ପାରିଲି ଗୋରି । ୨ ।
ମୁଁ ଜାଣି ଜାଣି — ପ୍ରାଣ ମିତଣି !
ବୁଡ଼ ଗଲି ସିନା ବୋଲି କରି । ୩
ଲକ୍ଷ୍ମୀ ପ୍ରଭୃତି — ହୋଇଲା ମିତି !
ମାର ଘରେ କୁବ୍ଜାଟାରେ ହେଲା ଧାରି । ୪ ।

ସଞ୍ଜ ସକାଳ ହେଲା କେବଳ
କଞ୍ଜ ଫୁଟିଲାଣି ଦେଖ ସହଚରୀ । ୫ ।
ସ୍ମଲ ଗୋ ସ୍ମଲ ନାହିଁ ମା ଭଲ,
ବଡ ଅବିଶ୍ୱାସୀ ଅଟେ ବଂଶୀଧାରୀ । ୬ ।
ଗଲେ ଜୀବନ— ଯିବ ରେ ଧନ !
ଶଠ ଶ୍ୟାମ ପ୍ରୀତି ଦେବ ମୁଁ ପାଶୋର । ୭ ।
ଏମନ୍ତ କହି ଚଳଲେ ସଖି,
ବେଣୁଧର ବୋଲେ ସେ ପଦ ସୁମର । ୮ ।
( ସଜନିରେ ! ଭଲ ଥିଲା କରମେ—ବୃତ୍ତେ )

—❋—

( ରାଗ— କାଳୀ । ତାଳ—ଝୁଲା )
ଜାଣିଲ ଜାଣିଲ ଶ୍ୟାମ ଗୁଣ ପ୍ରାଣ ସଙ୍ଗିନ ରେ । ଘୋଷା ।
ଶଠ ଧିଠ ସେ ଯା କଲା ସେହି କାଳ ରଜନୀରେ ।
ସଙ୍କେତ କୁଞ୍ଜରେ ବସାଇ ମୋତେ ବୃଥା ସଜନୀରେ । ୧ ।
ସେ ଚନ୍ଦ୍ରାବଳୀକ କରନ୍ତୁ ପ୍ରୀତି ପାଇଁ ଦର୍ପିରେ ।
ଯିବି ନାହିଁ ସେ କାଳିଆ ରୂପକୁ ଆଜ ମୁଁ ପୁଣିରେ ।
ତା କଥା ତୁ ମୋତେ କହ ନା ମୁଁ ତ ଶର ଦୁଃଖିନୀରେ ।
ରହିବ ପଛକେ କମ ଆଦର ହବା ରଜନୀରେ । ୩ ।
ସହିଲେ ସହିବ ବିରହ ବାଧା ହୋଇ ଗୁମାନ ରେ ।
ଏ ବେଣୁ ଧରକୁ କରନ୍ତୁ ପଛେ ଅପରାଧିନୀ ରେ । ୪ ।
( ଛାଡ଼ିବି ନାହିଁ ମୁଁ ଶ୍ୟାମ ପୀରତି—ବୃତ୍ତେ )

—o—

( ରାଗ—ଶୋକ କେଦାର । ତାଳ — ଖେମଟା )
ଆଜ ଗୋ ! ଶ୍ୟାମ ପୀରତି ଜଣାଗଲା ।
ପୀରତି ଜଣାଗଲା, ଯାରତି ଜଣାଗଲା । ଘୋଷା ।
ଚନ୍ଦ୍ରାବଳୀ ପୁରରେ ରଣି କେଳି ସୁରତେ
ମୋତେଟି ଗୋ ଶଠ ଲମ୍ପଟ କ କଲା ? । ୧ ।
ଦଗାବଅଟା ବୋଲି ମୁଁ ତ ଜାଣି ନ ଥିଲି,
କପାଇଁ ଗୋ ଏତେ କପଟ ପାଞ୍ଚିଥିଲା ? । ୨ ।

ଭୃଙ୍ଗପର ଯା ସ୍ୱଭ                ତା ସଙ୍ଗେ କି ପୀରତି, ?
ଏଣିକି ଗୋ ସବୁ ଭରସା ତୁଟିଗଲା । ୩ ।
ବେଣୁଧର ବଦତି                ହଜାଇ ଜାତିପତି,
ସଙ୍ଗିନି ଗୋ ! ରାଧା କରମେ ଏହା ଥିଲା । ୪ ।
( ମୋହନ ହେ ! ସତେ କାଳି କି କି ନ କଲ—ବୃତ୍ତେ )

—o—

ରାଗ—ଲୋଢ଼ ପରଜ । ତାଳ—ଏକତାଳୀ )
ମରମ ଭିତର ହଣାହେଲା ସଙ୍ଗିନି ! ମରମ ଭିତର ହଣ ।
ଅନୁଭବ ବିନା କେ ତାହା ଜାଣିବ କିଏ ସେ ଯେତେ ଯନ୍ତ୍ରଣା । ଘୋଷା ।
ନନ୍ଦସୁତ ସଙ୍ଗେ ପ୍ରୀତି କରିବାର ସମୁ ଗଣ୍ଣି ଗୋ ଜଣା ।
ଆଜ କାହିଁପାଇଁ ଏ ଛାର ଦେହକୁ କରୁଛି ବେଶ ମାଜଣା । ୧ ।
ଲମ୍ପଟ ପୁରୁଷ ମାନଙ୍କର ସଖି ଭୃଙ୍ଗପରି ବୁଝାମଣା ।
କପଟ ପେଟରେ ଏତିକି ତାଙ୍କର କରି ନ ଥାନ୍ତି କଳଣା । ୨ ।
ମୃଦୁ ମୃଦୁ ହୋଇ ଭାଷୁଥାନ୍ତି ସତେ ବଚନ ଅମିୟ ପଣା ।
ବିଷମିଶା ଭାଷା ପରାଣ କରୁଷ ଧାର ପରି ଗଲା ଜଣା ।
ଧାଁଉଛି ବେଣୁଧର ନ ବାଜ୍ ଲେ ଅଙ୍ଗିରି ବାଜଣା ।
ଥାଉ ତାହାଙ୍କର ପୀରତିଆ ପଣ ଦାସୀରେ ଗଣା । ୪ ।
( ଗଲାଣିତ ଗଲା କଥାରେ ସଙ୍ଗାତ—ବୃତ୍ତେ )

— * —

( ରାଗ—ମୁଖବାରି— । ତାଳ—ଆଠତାଳୀ )
( ଠକ ଚିନ୍ତାମଣି କି ଗୋ ସଜନୀ ।
ଠକିଲେ କେ ବିଶ୍ୱାସ ଯିବ ଏଣିକି ଗୋ । ଘୋଷା ।
ଠାଣି ତ୍ରିଭଙ୍ଗିଆ ମୁରଲୀପାଣି ।
ଠାବ କଲେ ଚନ୍ଦ୍ରା ନିକୁଞ୍ଜେ ପୁଣି ଗୋ । ୧ ।
ଠାକୁର ଶ୍ରେଷ୍ଠ ମଣିକର ଶ୍ରଦ୍ଧା ।
ଠଣପଦେ ପ୍ରାଣ ଦେଲି ମୁଁ ବନ୍ଧା ଗୋ । ୨ ।
ଠିକେ ତାଙ୍କ କଣା ସେବକା ହେଲି ।
ଠକ ହେବେ ବୋଲି ଜାଣି ନ ଥିଲି ଗୋ । ୩ ।
ଠାରି ଅଙ୍ଗୁଳି କହେ ବେଣୁଧର ।
ଠାକୁଆ ଶ୍ୟାମକୁ ମୋ ନମସ୍କାର ଗୋ । ୪ ।
( କଳାନା ସ୍ନେହ କଲା ନାଗର—ବୃତ୍ତେ )

—*—

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲା ପଢ଼ମଠ )

ଆଗୋ ସହଚରି          କାହ୍ନ ବଂଶୀଧାରୀ
କଲେ କେଉଁ ଅବସ୍ଥାର ।
ଚନ୍ଦ୍ରାବଳୀ ପ୍ରେମ          ତାଙ୍କୁ କଲା କାମ
ବଣିଜରେ କାରବାର ।
ମୋତେ କି ନକଲେ ।
କେଉଁ ଦୋଷ ଦେଖି ପାଶୋରିଲେ । ୧ ।

ଆଜ ଗୋ ଲଳିତେ          ଯାଇ ତୁ ଏକାନ୍ତେ,—
କହିବୁ ଶ୍ୟାମଚନ୍ଦ୍ରଙ୍କୁ ।
ଆଶା-ନାବ ଦେଇ          ବୁଡ଼ାଇ ଦେଲେ ଯା,
ମୋ ପ୍ରୀତି ରସ-ସିନ୍ଧୁକୁ ।
ଏ କି ଭଲମଣ ?
ଜ ଗଲା ଲମ୍ପଟ ଆଚରଣ । ୨ ।

ଅଳି ପରିମଳ          ଅଟନ୍ତି ଶ୍ରୀପତି,
ନାନା ସୁମନା ଚୁମ୍ବନେ ।
କଳି ନଥିଲି ମୁଁ          ମାନସ ତାର,
ଏହା ଥିଲା ନଜ ମନେ ।
ମୁହିଁ ଅଭାଗିନୀ ।
ଚିରପ୍ରୀତି କରାଇଲେ ଦାନ । ୩ ।

ତେଜି କୁଳଖ୍ୟାତି          ପରେ ଅପଖ୍ୟାତି,
ଲଭି ତାହାଙ୍କୁ ରସିଲି ।
ନ ହେଲା କାମନା          କରି ଏ କାମନା,
ସନ୍ତାପ-ସାଗରେ ଭାସିଲି ।
ବେଣୁଧର ବୋଲେ ।
ବ୍ରହ୍ମ ଲେଖିଥିଲା ଏହା ଭାଲେ । ୪ ।
( ଆଗୋ ଚନ୍ଦ୍ରାବଳୀ—ବୁଝେ )

—❀—

( ରାଗ – କାମୋଦୀ । ତାଳ – ଆଠତାଳି )

* ଫ-ଳ ପାଇଲ ଗୋ ! ଯା, ଶ୍ୟାମେ ପ୍ରୀତି କଲି ।
ଟା-ଣ୍ଡୁଟାପରି ବାଣୀକି ଶ୍ରବଣ ହୋଇଲି ( ଫଳ ପାଇଲି ଗୋ ) । ପଦ
କ-ରୁଣା ମୋଠାରୁ କଣା କରିବେ ସେ ବୋଲି ।
ପା-ଶ୍ରୁ ନ ଥିଲି ମାନସେ ଏତେ ସରି ହେଲି । ୧ ।
ଲ-ବଣୀ କୋମଳ ହୃଦ ବୋଲି ମଣିଥିଲି ।
ରେ-ସଖି ! ଏବେ ମୁଁ ସବୁ ଅଙ୍ଗେ ଲଗାଇଲି । ୨ ।
ଏ-ଡ଼ିଦେଲେ ଛେଡ଼େ ପ୍ରୀତି କି ଆଶ୍ରିତା ହେଲି ।
ହା-ଟରେ ବାଟରେ ଭଲେ ନ ପାରିଲି ଭୁଲି । ୩ ।
ଲେ-ଶେ କେ ବିଶ୍ୱାସ ଯିବ ଯା କଲେ ସେ କାଳି ।
ଖା-ର ମିଶାଇଲେ କ୍ଷୀରେ ମୁଁ ବୋଲି ସହିଲି । ୪ ।
ଥି-ଲେ ଏ ଜୀବନ ଆଉ ନ ଛୋଳିବ କଳାମଲ୍ଲୀ ।
ଲ-ଭ ହେଲା ଏହି ବେଣୁ ବୋଲେ ଯା ପଡ଼ିଲି । ୫ ।
( ଜଣା ପଡ଼ିଲା ମା ! ଏ କପଟଗିରି – ବୃତ୍ତେ )

— * —

( ରାଗ – ରସକେଦାର । ତାଳ – ରୂପକ )
କାହିଁକି ପଡ଼ିବ ମନେ ମୂର୍ତ୍ତି ତାଙ୍କର ।
କଲେ ତ ଅନ୍ତର ମନୁ ଶ୍ୟାମ ସୁନ୍ଦର । ପଦ ।
ଜାଣି ନ ଥିଲି ରେ ସଖି ହେବ ବୋଲି ନଶ୍ୱମାଣ୍ଡୀ,
କେଉଁ ଦୋଷ ମୋର ଦେଖି ହେଲେ ନିଷ୍ଠୁର । ୧ ।
ପୁରୁଣା ହୋଇଲେ ପ୍ରୀତି ଦେଖି ମୁଖ ମୋଡ଼ୁଥାନ୍ତି,
ନୂଆ ପୀରତିରେ ଯିନା ସବୁ ଆଦର । ୨ ।
ଚନ୍ଦ୍ରାବଳି ପ୍ରେମରସ— ତାଳ ଦେବାରୁ ବଶେଷ,
ଭୁଲି ମୋତେ ମଜ୍ଜିଗଲେ ପ୍ରୀତିରେ ତାର । ୩ ।
ବେଣୁଧର ବୋଲେ ସଇ ଅଧୀର ହୁଅ କପାଇଁ ?
ଧକୁଛି ଅଟନ୍ତି ଶ୍ୟାମ ଗଳାର ହାର । ୪ ।
( କାହିଁକି ଗୁମାନ ଧନ ମାନ କରଇ—ବୃତ୍ତେ )

— * —

* ଏ ଗୀତର ପ୍ରତ୍ୟେକ ପ୍ରଥମ ଅକ୍ଷର ପାଠକଲେ
( ଫଟାକପାଳରେ ଏହା ଲେଖାଥିଲା ) ବାହାରିବ ।

# ସ୍ୱାଧୀନଭର୍ତ୍ତୃକା

( ରାଗ—ସାବେରୀ । ତାଳ—ଝୁଳ )

ଦୁଃଖ ଲଭିଲ ବନ୍ଧୁ କେତେ ମୋ,
ଶ୍ରୀଅଙ୍ଗେ ସତେ ? ଘୋଷା

ଆହା ପରାଣ ନାଥ ? ଘର ଦାସୀ ଏମନ୍ତ,
ଦେଖିଲ ଯାହା ନେତ୍ର ପଥେ । ୧ ।

ବଳେକ ମୋ ସାହସ ହୋଇ ଯାଉଛି ଧ୍ୱଂସ,
ସେ ତେଜ ମାଣ୍ଡି ମାଳଗାତେ । ୨ ।

ନେତ୍ର ଅଶ୍ରୁ ଧାରରେ ଶ୍ରୀଖଣ୍ଡ ଶେଣ୍ଡ ପରେ,
ବୁହାଅ ଆହା କ ନିମନ୍ତେ ? । ୩ ।

ଏବେ ଶ୍ରୀପଦ ସେବା— ପାଇଁ କରିବି ମଧବା,
ଦାସୀ ଆସିଛି ପିନା ଏଥେ । ୪ ।

ଆଶ୍ୱାସପ୍ରଦବାଣୀ କ୍ଷମ ହେ ବେଣୁପାଣି,
ଅପରାଧ ମୋ ସବୁ ଯେତେ । ୫ ।

ଶ୍ରୀରାଧାଙ୍କ ବଚନ ଶୁଣି ହସିଲେ ଶ୍ୟାମ,
ବଦଇ ବେଣୁଧର ଗୀତେ । ୬ ।

( ତୋ ଲାଗି ଗୋପଦାଣ୍ଡ ମନାରେ କାଳଆସୁନା—ବୃଂଭ )

—:*:—

( ରାଗ—ପରଜ । ତାଳ—ଝୁଳ )

ପ୍ରିୟସଖି ! ପଗୁଣବତୀ ? ।
କାଲ କେଉଁ କୁଞ୍ଜ ଥିଲେ ଲକ୍ଷ୍ମୀ । ଘୋଷା ।

ଯେବେ ଏହା ଥିଲା ସେ ଶଠେ କଥା ଅଣାଇଲେ ସଙ୍କେତେ ?

ବୃଥା କୁଞ୍ଜେ ବସି କାହିଁପାଇଁ ଏ ଦଇବଣ,
ଠଗାଇଅ କାହ୍ନୁ ଏକେ କପଟୀ ? । ୧ ।

ପୁଛ ତାଙ୍କୁ ଦେଇ ମୋରାଣ, କାହିଁପାଇଁ ଏ ଦଇବଣ,
ମଦୁଛୁ ବଚନ ଯଦ ଦେଲ ଆନ
ଏ ଭବଣେ କେଉଁ ସୁଖ ଅଛୁଟି । ୨ ।

ଯାହା ପ୍ରେମ ଡୋରଣ ବଶ ଯଶୋଦାଙ୍କ ସେ ପୀତବାସ,
ତା ପାଖେ ଚଳ— ଯାନ୍ତୁ ସେ ଟଙ୍ଗାଳ—
କର ଅଞ୍ଚଳରେ ବାନ୍ଧ ନେବଟି । ୩ ।
ଓହେ ବେଣୁଧର କରଣ ତା ପାଦେ ନଅନ୍ତୁ ଶରଣ,
ଲେଉଟାନାହିଁ ମୋର ଶଠ ପ୍ରୀତି ଘୁର
ଜାଣୁ ଜାଣୁ ଯାହା କାଟିଲେ ଚୋଟି । ୪ ।
( କାହା ମନ କାହାକୁ ଜଣା— ଆଠତାଳି )

—୦—

ରାଗ — ଖଣ୍ଡକାମୋଦ । ତାଳ — ଆଠତାଳି

ସଜନି ! ତାଙ୍କୁ ମନାକର । ( ସଜନି )
ମୁଁ ନୁହଇ ଚନ୍ଦ୍ରାବଳୀ ସୁମନାରେ । ଘୋଷା ।
ସତ ନାହିଁ ଯାର କେତେ କଥାରେ ।
ତା ସଙ୍ଗେ ମୁଁ ପ୍ରୀତିକଲା ବୃଥାରେ ରେ ।
ଚେତିଲି ଚେତିଲି ଏଣିକି ସଖି !
ନ ହୋଇବ ଶଠ କଳିଆ ସ୍ନେହୀ ରେ । ୨ ।
ଦଗାଲଗା ସେ ମୋହନ ସ୍ବଭୁସ୍ତ ।
ପରଖେ ମଲ୍ଲିନାସ୍ତ ଚକ୍ଷୁସ୍ତରେ । ୩ ।
ଛଳସନ୍ତୁ ଶ୍ୟାମ ରଙ୍ଗଣୀ କୁଞ୍ଜେ ।
ଦୂରୁ ସୁହାଇ ମୋ ସେ ଶଠସଙ୍ଗ ରେ । ୪ ।
ପରତେ ନ ଯିବ ଆଜ୍ଞ ଏଣିକି ।
କୁଟ କପଟିଆ ଚଲା ମଣିକ ରେ । ୫ ।
ବୋଲେ ବେଣୁଧର ଆଗୋ କଶୋରି ।
ସତେ କ ବନ୍ଧୁଙ୍କୁ ଦେବୁ ପାଶୋରି ରେ । ୬ ।
( ମୁରଲୀ ତୋରେ ଶରଣ ଗଲି—ପ୍ରଭୃତି )

—*—

( ରାଗ—ଦକ୍ଷିଣ କେଦାର । ତାଳ—ଝୁଲା )

ଶ୍ୟାମଳ ଅଙ୍ଗ ଭ୍ରମଙ୍ଗ ମୋତେ ଭୁ କହନାରେ ।
ଜଳନ୍ତା ଅନଳେ କୁଟା ପକାଇ ଦହନାରେ । ଘୋଷା ।
ଉଭାର ହସାରେ ପଡ଼ି ସଜନି ମୁଁ ଗଲି ସତି,
କବାଡିଆ ପ୍ରୀତି ଲେଡ଼ି ହେଲି ଏତେ ଅନାରେ । ୧ ।

କୁଟିଳାର କଟୁଭାଷା, ଆବର ସାନ୍ତ୍ୱ ପଢ଼ଣା,
ଚାଳମଗ୍ନ ଥଣ୍ଡା ମିଶା ପ୍ରବୋଧନା ଢଅନା ରେ । ୨ ।
ହଟ ହଟା କୁଆ କୁଟା, ପର ପଦେ ଶୀର ଲୁଟା,
ବୋଲାଇବାର କୁଳଟା ନରଚେ ସହନା ରେ । ୩ ।
ତୁ ଯେବେ ଶ୍ୟାମ ସୁଆଗି, ଯାଅ ମୋ ଆଗରୁ ବେଗି,
ଏତେ ପ୍ରକାରେ ତା ଲାଗି ଫନ୍ଦୋଳ ହୁଅନାରେ । ୪ ।
ମନ୍ଥି ହୋଇଯାଏ ଗ୍ଲାନ୍ତ ଶୁଣି ତୋର ଏ ଭାରତୀ,
ନପାରେ ମୁଁ ଉଠେ ଦୁଷ୍ଟା ଏଥି ତୁ ରହନା ରେ । ୫ ।
ଶଠ ଶିରୋମଣି ହରି ହରାଠ ବଂଶୀ ଧାରୀ,
ଘଟରୁ ଜୀବନ ନେବ ମୁରଲୀ ବାହାନାରେ । ୬ ।
ଶ୍ରୀମତୀଙ୍କ ଏଡୁ ଗିରେ, ଦୁଷ୍ଟା ଚଳେ କୃଷ୍ଣଠାରେ,
ବେଣୁଧର ସେ ପଦ୍ମରେ କଣାଦାସୀ ସିନାରେ । ୭ ।
( ଏ ବପୁସେ ତେଜ ଧନ ବଦେଶେ ରହିଲ — ପ୍ରଭୁ )

— ୦ —

( ରାଗ—ମୋହନା । ତାଳ—ଖେମଟା )
କହନା ଲୋ ତା କଥା ମୋତେ ।
ରହନା ମୋଭୁଲେ ଯାଯା କହ'ରୁଛୁ ତୋତେ । ଘୋଷା ।
ସହି ! ତାମଧୁର ବାଣୀ ଶୁଣିଛୁ ସଷାତେ ।
କହି ହଟ ହଟ କଲ ଜଗାଇ ସବୁଙ୍କତେ । ୧ ।
କପଟ ନ ଥିଲପରି ହେଉଥିଲ ପ୍ରତେ ।
ନପଟ ଜାଣିଲ ତାର ହୃଦେ କୂଟ ଏତେ । ୨ ।
ନନ୍ଦା ଶୁଣାଇଲ ଦାରୁଣ ହାଟେ ବାଟେ କେତେ ।
ଫନ୍ଦା ଧନ ବୋଲି ସିନା ପାଉଥିଲ ଚତେ । ୩ ।
ପୀତବାସ ଗଳେ ଦେଇ କରଯୋଡ଼ କତେ ।
କେତେ ବ ଗୁଣ୍ଠ କୁହାଟା ବୁଝିଛୁ ପ୍ରଭାତେ । ୪ ।
ଭାଷ କବ ଇନ୍ଦ ବନ୍ଧୁ ଜ ନକଲେ ସତେ ।
ଭାଷ ରାଜ ଦୁଃଖ-ମାରେ ତାଙ୍କର ନମନ୍ତେ । ୫ ।
ଜାହ୍ନିକ ଗୋ, ମୋହନାମଠା—ବୁଝୈ )

— ୦ —

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )
(ମୋ) ଦେହ ଜଳାନା ଲୋ, ସେ ଲମ୍ପଟ କଥା କହ ।
ଯାହା କଲା ମୋତେ କାଲି କ କହିବା ସହି ! ଘୋଷା ।
କଣ୍ଠ ଦେଇ ଥିଲା ସେହି ମୋ କୁଞ୍ଜେ ଆସିବା ପାଇଁ
ସୁଖେ ନିଶି ପୁହାଇଲା ଚନ୍ଦ୍ରାପାଶେ ରହି । ୧ ।
ନ ଗ୍ରହିବି ତାର ମୁଖ ଦେଲା ମୋତେ ବହୁ ଦୁଃଖ,
ଗଳାହାର ମଣିଥିଲି ଏହା ହେବା ପାଇଁ । ୨ ।
ସାକ୍ଷାତେ ଦେଖିଅଛୁ ତ କପଟିଆ ଶଠ ଧୂର୍ତ୍ତ
ପ୍ରଭାତେ ଆସିଣ କେତେ ହୋଇଲା ବିନୟୀ । ୩ ।
ଏ କଥାରେ କଥାଏ ଯାହାର ସତ ନ ଥାଏ,
ତା ପ୍ରୀତିରେ କେଉଁଲାଭ କହ କନା ଭୂଇଁ । ୪ ।
ଶ୍ରୀମତୀଙ୍କ ବାଣୀ ଶୁଣି ପ୍ରିୟ ସହଚରୀ ଭଣି,
ରହିବକ ଏ ରୁଷାଣୀ ବେଣୁଧର କହି । ୫ ।

—*—

(ଏତେ ବେଳକୁ ହେ, ମୁଖ ଦିଶିଲା କି ଆଜ ? ବୃନ୍ଦା)
( ରାଗ—ଖଣ୍ଡକାମୋଦୀ । ତାଳ – ଆଠତାଳୀ )
ଜଳାନା ମୋତେ ଆଉ ଏଣିକରେ ।
ବିଶ୍ୱାସ ନାହିଁ ସେ ବଂଶୀପାଣିକରେ । ଘୋଷା ।
ଚନ୍ଦ୍ରକ ଚୂଳିଆ ସେ ମିତପଟ ।
ପେଟେ ଅଛି ପୁଣି ଏତେ କପଟରେ । ୧ ।
ଚନ୍ଦ୍ରା ପ୍ରୀତି ରଙ୍କା ଶୀଟ ମୁକୁଟ ।
ଶଠଙ୍କର ସରଦାର ଲମ୍ପଟ ରେ । ୨ ।
ଚେତିଲଣି ସଖି ମୋ ମନେ ମନେ ।
ନ ଦେବି ଦୃଷ୍ଟି ସେ କଳା ବଦନେ ରେ ୩ ।
ସ୍ତୁତି କର ନ କହ ତା କଥା ।
ଗ୍ଲଲ ଯା ପଛେ ତୁ ମୋ ପାଶେ ନ ଥାରେ । ୪ ।
ଚରଣ ଧରି ବେଣୁଧର ବୋଲେ ।
ଚନ୍ଦ୍ରାମଣି କାର ହେବେଟି ଭଲେ ରେ । ୫ ।
( ମୁରଲୀ ତୋରେ ଶରଣ ଗଲି—ବୃନ୍ଦେ )

—o—

( ରାଗ—କେଦାର । ତାଳ—ଆଠତାଳି )

କାହିଁକି ? ଗୋ ଲଳିତେ ବଳାଇ କହୁ ମୋତେ
ମୁଁ ସେ ମୋହନ ରୀତ ଜାଣିଛୁ ଗୋ । ଘୋଷା ।
ସେ କଳାକାହ୍ନୁ ପ୍ରୀତି ଫାନ୍ଦେ ପଡ଼ି ଅହୋରାତ୍ରି,
ପସରା ମସ୍ତକକୁ ଆଣିଛୁ ଗୋ । ୧ ।
ଶଠ ଲମ୍ପଟ ନଟ ନାଗରବର ଖଣ୍ଡ,
ଆଚରଣ ମୁଁ ବହୁ ମଣିଛୁ ଗୋ । ୨ ।
ତା କଥା ମୋର କାନେ ପକାନା ବୋଲି ମନେ—
ନାହିଁକି ପର ଥରେ ଭଣିଛୁ ଗୋ । ୩ ।
ତା ଲାଗି ଅପବାଦ ଯାହା ଶାଶୁ ନଣନ୍ଦ—
ଭଗାରଙ୍କ ମୁଖରୁ ଶୁଣିଛୁ ଗୋ । ୪ ।
କୃଷ୍ଣଚନ୍ଦ୍ର ନୃପତି ଭାଷେ ଯୁବତୀ ମତି,
ସେ ପର ବଂଶୀ ସ୍ୱନେ କଣିଛୁ ଗୋ । ୫ ।
( କହୁଲେ ହେଲେ କେତେ କେଣ୍ଟ ଯିବ ପରତେ—ବୃନ୍ଦେ )

—*—

( ରାଗ—ଖଣ୍ଡ ବଙ୍ଗଳାଶ୍ରୀ । ତାଳ—ଆଠତାଳି

ନ କହ ସଜନୀ ଶଠ କେଣ୍ଟୁପାଣି
କଥା ମୋ ଆଗରେ କହ୍ନ ଗୋ ।
ନ ଯିବ ପରତେ କାଲିଆକୁ ଚିତ୍ତେ
କ ନ କଲେଟି ମାଧୋଇ ଗୋ ॥
ସଙ୍କେତ କୁଞ୍ଜେ ବସାଇ, ଦେଲେ ମେତେ ଭଗାର ହସାଇ ଗୋ । ୧ ।
ଜାଳି ରତ୍ନଦୀପ ଟାଣି ଚନ୍ଦ୍ରାତପ,
ମଣ୍ଡିଥିଲି କେଳିପୁର ଗୋ ।
ନାନା କୁସୁମରେ ଶେଯକୁ ସଜାଇ
ନିଶି ହେଲି ଉଜାଗର ଗୋ ।
ନଇଲେ ସେ ଦଗାଦାର, ରହ୍ନ କେଉଁ ରମଣୀ ପାଖର ଗୋ । ୨ ।
ବୃଥା ହେଲା ମୋର ଚନ୍ଦନ ଅଗର
କର୍ପୂର ଖଡ଼ୁଆ ପାନ ଗୋ ।
ନେଇ୍ ଘାର ବର- ଷାଇ କେଉଁ ସୁଖ
ଲଭିଲେଟି ଶ୍ୟାମଘନ ଗୋ ॥
ଏହା ଥିଲା ତାଙ୍କ ଚିତ୍ତେ, ମନୁ ପାଶୋରି ଦେଲେ ଯା ମୋତେ ଗୋ । ୩ ।

ଜୀବନ ଯୌବନ                    କଲି ସମର୍ପଣ
ଘର ବର ଦର କରି ଗୋ ।
ସେ ନଟକୁଟିଆ                    ଛଳ ତ୍ରିଭଙ୍ଗିଆ
ଆହା କ ଥିଲେ କସୁର ଗୋ ?
ହୀନ ବେଣୁଧର ଭଣି, ସ୍ଥିର ହୁଅ ବ:ନାଦମା ଧମା ଗୋ । ୪ ।
( କୃଷ୍ଣ ନାମ ଆଜଠାରୁ ମୋ ଶ୍ରବଣେ—ପ୍ରଭୃ )

— ❊ —

( ରାଗ - ଆନନ୍ଦ ଭୈରବୀ । ତାଳ—ଏକତାଳୀ )
ଆଜ କହନା ଗୋ ! ସଖି ଶଠକଥା ମୋତେ ।
ଜଣାପଡ଼ୁଛି ତା ଭାବ ଯାହା କଲା ସତେ । ଘୋଷା ।
ସେ ଚନ୍ଦ୍ରା-ସଜନୀ କୋଳେ                    ବଞ୍ଚୁ ଗୋ ଯାଇଁ ଚପଳେ
ମୁଁ ଲୁହେଁ ତା ଭଲ କହୁଥିଅ ଯା ସାକ୍ଷାତେ । ୧ ।
ମନେ ପଡ଼ିଲେ ସେ ରାତି                    ହୃଦୟ ହୁଏ କରନ୍ତ
ଯିବ ପଳେ ଜୀବ ଆଜ ନ ଯିବ ପରତେ । ୨ ।
କରମରେ ଥିଲା ମୋର                    ହୋଇବାକୁ ନାରଖାର,
ବଳାନ! ବଳାନା କଲା ଶ୍ୟାମ ଲାଗି ଏତେ । ୩ ।
ଏପରି କଣୋଗ୍ରମଣି                    ଲୀଳା କଥି ଆଗେ ଭଣି
ସେ ଚରଣ ଶନ୍ତ ବେଣୁଧର କହେ ଗୀତେ ।   ।
( ମୋତେ ଲଗାନା ରେ ସଖି ! ବ୍ରଜବଧୂ ନଟ—ବୃତ୍ତେ )

—୦—

( ରାଗ—ମାଳଶ୍ରୀ । ତାଳ—ଖେମଟା )
ତଟାଲୁଗା ମୋହନ କଥା କହନା ।
ମୋର ଅନ୍ତର ଭିତରକୁ ଦହନା । ଘୋଷା ।
ସେ ଶଠ ଖାଟ-ଶେଖର                    କପଟୀ ଲମ୍ପଟୀ ବର,
ତା ଲାଗି ଭୁ ଅପମାନ ସହନା । ୧ ।
ଯାହା କରିଦେଲା କାଳ                    ମୁଁ ବୋଲି ସିନା ସହିଲି
ସହିଥାନ୍ତା ଆଜ କାହା ବେଦନା । ୨ ।
ସେ ଚନ୍ଦ୍ରା ପ୍ରୀତି ସୁହାଗୀ                    ସହିଗଲି ମୁଁ ତା ଲାଗି,
ଝୁରି ଝୁରି ନେତ୍ରୁ ବହେ ଲୁହ ନା । ୩ ।
ବେଣୁଧର ବୋଲେ ଶୁଣ                    ମନେ ଧରି ଅବଣଗୁ
ଆଗୋ ଧନ ! ଏତେ ରୋଷ ବହନା । ୪ ।
( ପ୍ରୀତ କେତେ କରିଛି ରସି ପରକ—ବୃତ୍ତେ )

—୦—

( ରାଗ—କଳସା । ତାଳ—ଖେମଟା )

କହନା ଲୋ ! ତା କଥା ମୋତେ ।
ମୋ ଆଗେ ରହନା ଯା ଯା କହାରୁଛୁ ତୋତେ । ଘୋଷା ।
ସବୁ ତା ମଧୁର ବାଣୀ ଶୁଣିଛୁ ସାକ୍ଷାତେ ।
କହି ହଟହଟା କଲୁ ଜଗାଇ ସଙ୍କେତେ । ୧ ।
କପଟ ନ ଥିଲା ପର ଦେଉଥିଲା ପ୍ରତେ ।
କପଟ ଜାଣିଲି ତାର ହୃଦେ କୁଟ ଏତେ । ୨ ।
କଦା ଶୁଣ ଇଲା ଦାନ୍ତେ ହାଟେ ବାଟେ କେତେ ।
ଫନ୍ଦା ଧନ ମୋର ବୋଲି ପାଞ୍ଚଥିଲି ଚିତ୍ତେ । ୩ ।
ପୀତବାସ ଗଲେ ଦେଇ କର କୋରକତେ ।
କତବ ବୁଝି ଭରଷା ବୁଝିଛୁ ପ୍ରଭାତେ । ୪ ।
ଭାଷେ କବି ଇନ୍ଦୁ ବନ୍ଧୁ କି ନ କଲେ ସତେ ।
ଭାସେ ଗଲି ଦୁଃଖ ସାରେ ତାଙ୍କର ନିମନ୍ତେ । ୫ ।
( କାର୍ତ୍ତିକ ଲେ ମୋହ ନାମଟା—ବୃତ୍ତେ )

—୦—

( ରାଗ—ଖଣ୍ଡ ବଙ୍ଗଳାଶ୍ରୀ । ତାଳ—ଅଠତାଳୀ )

ଆଗୋ ସଖିଗଣ ତୁମ୍ଭଙ୍କୁ ମୋ ରଣ—
ପଚାରି କହୁଛୁ ଶୁଣ ଗୋ ।
ମୋ ଶ୍ରୁତିରେ ଥରେ ଆଜ ଶ୍ୟାମନାମ,
ନ ଶୁଣାଅ ଜଡାଚନ ଗୋ ।
ଧରୁଅଛୁ ତୁମ୍ଭ କର । କୃଷ୍ଣନାମ କରିଦିଅ ଦୂର ଗୋ । ୧ ।
ସେ ଶଠ ନାଗର ପୀରତିକ ମୋର,
ଅର୍ଦ୍ଧ କୋଟିଏ ଯୁହାର ଗୋ ।
ନ ପିନ୍ଧ ନିକୁଞ୍ଜ— ବନେ ଫୁଲତୋଳି,
ଏହି ହୃଦ୍‌ବୁଲ ମୋର ଗୋ ।
ଏ ପେତେଳ ଅଳଙ୍କାର । ଲେଖାନ କହିଁ ଭୂଷଣ ଦେବାର ଗୋ । ୨ ।
ଏ ମକର ଚୂଡ଼— ବାହାର କର ମା,
ପିନ୍ଧବ ନାହିଁ ମୁଁ କରେ ଗୋ ।
ସୁବର୍ଣ୍ଣ ଚୂଡ଼କ— ମୋର ପ୍ରାଣସଖି !
ପିନ୍ଧାଇ ଦିଅ ସକୁରେ ଗୋ ।
ଏହି ସାଳ ମଣିହାର । ମୋର ଗଳାରୁ କର ବାହାର ଗୋ । ୩ ।

କଅଁଳ ତମାଳ,— ଡାଳ କେଶ୍ବ ଆଉ,
ଟୋଳି ନ ଦେବ ମୋ ହାତେ ଗୋ ।
ନୀଳ ଇନ୍ଦୀବର, ମୋ ଦୃଷ୍ଟି ଗୋଚର,
କରାଅ ନାହିଁ କଷ୍ଟତେ ଗୋ ॥
ଭାଙ୍ଗି ହେମ ପଞ୍ଜରାକ । ଉଡ଼ାଅ ଏ ଶୁକ ଶାରିଙ୍କି । ୪ ।
ଲେପିଦିଅ ମୋର, ସବନେ ଏଥର,
ହଡ଼ତାଳ ରଙ୍ଗ-ମାଟି ଗୋ ।
ମୋର କଳା କେଶ ଦୃଢ଼େ ବାନ୍ଧ ସଖି !
ଆଜ ଫେଡ଼ିବ ନାହିଁଟି ଗୋ ।
ନାହିଁ ଏ ଜୀବନେ ଆଶା । ଭଣେ ବେଣୁଧର ସାଙ୍ଗ ଭାଷା ଗୋ । ୫ ।
(ନାଗମଣି ଗିରଧାରୀଠାରେ—ବୃନ୍ଦେ)

—*—

( ରାଗ—ଲଳିତ କାମୋଦୀ । ତାଳ—ଏକତାଳୀ )
ଆଗୋ ପ୍ରିୟ ଆଳି !
ହେନ ସରୁ ନାହିଁ ମୋର ଭାଳ ଭାଳ ଧେଷା ।
ଶ୍ୟାମ ଯେବେ କଲେ ଅନାଦର, ଏ ଜୀବନେ କାର୍ଯ୍ୟ ନାହିଁ ମୋର,
ଯାହା ଲାଗି କୁଳ ମହତ ଛାଡ଼ିଲି,
ତା ମନେ ଥିଲା କି ଏ ଅନ୍ତର । ୧ ।
କୂଟ କପଟିଆ ବେଣୁପାଣି, କେତେ ଚିନ୍ତା ଦେଲେ ଚିନ୍ତାମଣି,
ଗୁରୁଜନେ ଖତ, ପରୁବରୁ ଦୁଖ—
ନ ଗଲା ହୋଇଲି କଳଙ୍କିନୀ । ୨ ।
ଆଜ କେତେ ହେନ ପ୍ରାଣ ଥିବ, ଯାଜ ତାଙ୍କ ଲାଗି ଛାର ଜୀବ,
ରାଧା କରମରେ ଏତେ ହଟହଟା,
ଲେଖିଥିଲା ଗୋ ମନ୍ଦ ଦଇବ । ୩ ।
ଘେନ ହାନ ବେଣୁଧର ଭଣି, ନ ଭାଳ ଆଜ କଶୋରୀମଣି !
ନିଶ୍ଚୟ ଆସିବେ ତୁମ୍ଭ ପ୍ରାଣବନ୍ଧୁ,
ବ୍ରଜପୁର ପୂର୍ଣ୍ଣ ଜଶାମଣି ଗୋ । ୪ ।
(ବିଷ ପୀୟୂଷ ବୋଲି ମୁଁ ହେଲି ସୁଖି—ବୃନ୍ଦେ)

—*—

# ଖଣ୍ଡିତା

( ରାଗ — ଶଙ୍କରାଭରଣ । ତାଳ — ଝିପତା । )

ଛଇଳ ନାଗର ଆହେ ଲମ୍ପଟି କପଟି ।
ଛାଡ଼ ଏ ଦସ୍ୟୁନବାଣୀ ଯାଅ ପାଶୁଁ ହଟି ।
ତୁମ୍ଭେ ବଡ଼ ଦଗାଦାର ।
ଜଣା ଗଲାଣି ତୁମ୍ଭର ପୀରତି ବେଭାର । ୧ ।
ଯେଉଁ ମନୋହାରୀ କରି ଦେଇଛ ଏ ବେଶ ।
ଚଳ ତା ପାଶକୁ ନଟବର ପୀତବାସ ।
ମୁଁ ନୁହଇ ତୁମ୍ଭ ଭଳି ।
ଭାଗ୍ୟବନ୍ତ ଚନ୍ଦ୍ରା ଆଗେ କର ଯାଇଁ ଅଳି । ୨ ।
ଲୁଚାଇଲେ ଛପିବ କି ହେ ଶଠ-ପ୍ରବୀଣ ।
ଚିହ୍ନାଇ ଦେଉଛି ସର୍ବାଙ୍ଗରେ ଚିହ୍ନମାନ ।
ଭଲ ଚତୁରୀ ସେ ବାଳୀ ।
କେତେ ପ୍ରେମରସ-ଘଣା ଦେଇଅଛି ଢାଳି । ୩ ।
ରଖିଲଣି ବନ୍ଧୁ ମୋର କରମ ଆଦର ।
ନ ବଢ଼ାଅ ମୋ ସନ୍ତାପ-ସାଗର-ଲହରୀ ।
ଆହେ ନାରୀ-ଚିତ୍ତଚୋର !
କହୁଛି କୋଟି ଜୁହାର ଦୁଃଖୀ ବେଣୁଧର । ୪ ।
( ଯାଅ ହେ ଲମ୍ପଟ ଶ୍ୟାମ—ପ୍ରଭୃତି )

—❀—

( ରାଗ — କଳସା । ତାଳ — ଝିପତା )

ଯାଅ ହେ ନିଷ୍ଠୁର ଶ୍ୟାମ ଲମ୍ପଟ ଶେଖର
କାଲି ନିଶି ଥିଲ ଯହିଁ ଯାଅ ତା ପାଶରେ ହେ । ୧ ।
ଲଲାଟରେ ଶୋଭୁଛି ଯା ସିନ୍ଦୂର-ଅଳକା ।
କୋମଳ କରଣ ତାକୁ କହ ଯା ଏ କଥା ହେ । ୨ ।
ଯା ଅଙ୍ଗଛଡ଼ା ଚନ୍ଦନ ହୋଇଅଛି ବୋଳ ।
ତାହା ନିକଟରେ ଏବେ କର ଯାଇଁ ଅଳି । ୩ ।
ମୁଁ ନୁହଇ ତୁମ୍ଭ ଭଳି ଆହେ ନଟବର ।
ଚନ୍ଦ୍ରାବଳୀ ପାଖେ ଚଳ ଭାଷେ ବେଣୁଧର ହେ । ୪
( ଅଇଲ ବସନ୍ତରାଜା ଶ୍ରୀ ବୃନ୍ଦାକାନନ — ପ୍ରଭୃତି )

—❀—

( ରାଗ—କେଦାରଗୌଡ଼ । ତାଳ—ଆଡ଼ତାଳୀ )

ଚନ୍ଦନ ବନେ ଯାହା କଲ ଭାଲ ରଜନୀ ।

ରାଧେ ଜାଣ ସିନା କେ ବୁଝିବ ବେଣୁପାଣି । ପଦ ।

ଗଣ ରସିକା ଚନ୍ଦ୍ରାଭ ପ୍ରେମେ ହୋଇ ଜର ଜର,

ମୋତେ ଭଲ ପାଇଥାଅ, ହେ ଶଠ ମୁକୁନ୍ଦ ମଣି । ୧ ।

ତତ କଥା ମନେ ହେଉ ଲମ୍ପଟ ନାଗର ରାଜ,

କେତେ ତୁମ୍ଭେ କହୁଥିବା, କଥା ପାଶୋରିଲ ପୁଣି । ୨ ।

ରଜନୀ ହେଲ ମୁଁ ସନ୍ତାପେ ଅଲଗ ଥିବାରୁ ଆଜ,

ଏବେ ମନେ ଚିନ୍ତୁଛି, ନୋହେ ମୋର ନେହପାଣି । ୩ ।

ଗମନ କର ଯା ଠାଇଁ କେଳି କରୁଥିଲ ଯହିଁ,

ନୀତି ବେଣୁଧର କହେ, ରାଧାଙ୍କ ଖଣ୍ଡିତା ବାଣୀ । ୪ ।

( କୁଞ୍ଜବନରେ ଜାଗଣ ହେବତା—ବୃତ୍ତେ )

— ✿✿ —

( ରାଗ—ଚନ୍ଦ୍ରା—କେଦାର । ତାଳ—ଅଦ୍ଧତାଳୀ )

ନଟନାଗର ଅଟ ଏହନ ଖଣ୍ଡ ?

ତୁଠକ-ନେହୀ କେତେ କଲ ଅକଟ । ଘୋଷା ।

ଶଠ ଧୂର୍ତ୍ତ ଲମ୍ପଟ କେତେ ଜାଣ କପଟ,

କଟ ପ୍ରତ୍ୟକ୍ଷ ତୁମ୍ଭେ ମୋ ପାଖେ ବଟ । ୧ ।

ମୁଖେ ସୁଧା ବଚନ ହୃଦେ କଲୁଷ ଘନ,

ଉପରେ ଉଳାଦିଳ ଥାଇ କପଟ । ୨ ।

ମୁରଲୀ ତୁଣ୍ଡିକର— କହିବା କଥା ଯେତେ,

ଭୁଲଇଲ ଯେତେକ ସେ ମଧୁଲଟ । ୩ ।

ଭଣଇ ବେଣୁଧର ପାଦରେ ଏ ରାଧା ରାଜ,

ଆତେ ନ ରଖ ଆଉ ହେ ପୀତବଟ ? । ୪ ।

( ଧିକ୍ ଛି ରେ ! ମୋର ମନ ଭଣ୍ଡାଳ — ବୃତ୍ତେ)

—୦—

( ରାଗ—ଭୋଗବରଜ । ତାଳ—ଆଡ଼ତାଳୀ )

ସଖି ନନ୍ଦକୁଳ ଶ୍ୟାମ ଭଣ୍ଡରୁ ମୋହର ଭଠ ।

ପଞ୍ଚବରଣ ଜବୁଡ଼ା ମୁଁ ଦେଖି ନାହିଁ ଏ ପାଠ । ପଦ ।

ଅଙ୍ଗରସ୍ତ ସୁଠୁଭଙ୍ଗି ଗୁଣ୍ଡ ଦେଉଛୁ କରଣ୍ଡ,

ଲଜ୍ଜକର ଚନ୍ଦ୍ରା କୁଞ୍ଜେ ଲମ୍ପଟ ନାଗର ଶଠ । ୧ ।

ବଞ୍ଚି ଜାଳ ଉଜାଗରେ          ଚିନ୍ତ ଚିନ୍ତ ରଜନୀରେ
କ୍ଷତ କଲ ଜ.ପଦ୍ମର କେତେହେଁ ଗୁପ୍ତ କମଠ । ୨ ।
ନଷ୍ଟ କଲେ କସ ହେକ          ଘାଣ୍ଟି ବାସ ହେ କେଶବ,
ଛଣ୍ଟି ଯେ ଟେକାଇ ଅଛୁ ତାହା ପାଦତଳେ ଲୁଣ୍ଠ ।
ମତ୍ତ ତୁମ୍ଭ ଭୃଙ୍ଗ ସମ          ଖ୍ୟାତ ଭବେ ଆହେ ଶ୍ୟାମ,
ଇତିଏ ବିଶ୍ୱାସ ଆଜ ନ କର ହେ.ନନ୍ଦସୁତ । ୪ ।
ଦନ୍ତୀଦନ୍ତ ପଲଙ୍କରେ          ମାତିବ ଯାଅ ସୁଖରେ
ଗତି ହୀନ ବେଣୁଧର କହେ ଗାଇ କଲେ ପୃଷ୍ଠ । ୫ ।
( ଦେଖିଲେ ଦେଖିଲ ପରି—ବୃତ୍ତେ )



( ରାଗ—ଶଙ୍କରାଭରଣ । ତାଳ—ଏକତାଳୀ )

ହେ ଶ୍ୟାମବନ୍ଧୁ ! ଏ କଥା ଉଚିତ ହେଲା କି ?
ଆଜନ୍ମ ପରିସ୍ପର୍ଶକ ବିରକ୍ତ ହେଲ କାହିଁକି । ପଦ ।
କେତେକାଳୁଁ ଅନୁସରି          ପାଇଥିଲି ଗିରିଧାରୀ,
ଅଖଣ୍ଡ ପ୍ରୀତି ପାଶୋରି କି ଯଶ ଅର୍ଜିଲ କହ ? । ୧ ।
ତୁମ୍ଭ ନାମ ହୃଦେ ଧରି          ଜପୁଥାଇ ମାଳାକରି,
ନଇଲ ମୋ କୁଞ୍ଜ-ପୂଗ କି ସ୍ନେହ ସୁଖ ପାଇଁକି ? । ୨ ।
ଅଙ୍କୁର କଲ ହରି          ରହିଛୁ କର୍ମ ଆଦରି,
ମରମ ବ୍ୟଥା ବିସ୍ତାରି କହିବି କାହେ ଯାଇକି ? । ୩ ।
ପୂର୍ବଭାଗ୍ୟ ମୋର ନାହିଁ          ସେବା ଯୋଗ୍ୟ ହେବି କାହିଁ,
ବେଣୁଧର ବୋଲେ ଧାଇ ଛନ୍ଦାଚରଣ ଦୂଇକି । ୪ ।
( କୁଞ୍ଜବନେ ରେ କାଳିଆ ଦେବତା—ବୃତ୍ତେ )



( ରାଗ—ଚୋକ୍ତପରଜ । ତାଳ—ଆଠତାଳୀ )

ନଟନାଗର ହେ ! ଜଣାଗଲାଟି ଏଥର ।
ଛାଡ଼ ଲମ୍ପଟ କପଟପଣେ ତୁମ୍ଭେ ଅଟ ବଡ଼ ଦଗାଦାର । ଘୋଷା ।
କଣ୍ଠ ଦେଇ ଖଣ୍ଡ—          ପଣେ କାଳି ନଶୀ
ବଞ୍ଚିଲ କାହା ନଦର ?
ହଟ ମୋ ପାଶରୁ          ଆହେ ପୀତପଟ
ରଟନା ଏ ବୃଟିରି । ୧ ।

ଛଟକ ସ୍ବରୂପ ଗୂଢ଼ ବଂଶୀଧାରୀ
ବୁଝଇ ମୁଁ ସେ ପ୍ରକାର ।
ଯାହା କୋଳେ ରତି— ରସ ଖେଳେ ମାତି
ଥିଲ ଯାଇ ତା ପାଖର । ୨ ।
ଲିଭିନାହିଁ ଚୂଡ଼ା— ଦାଗ ଆଉ କର
ଅଧରେ କଜ୍ଜ୍ବଳ ଗାର ।
ତା ପାଦ-ଯାବକ କରିଛ ତିଳକ
କପୋଳ ଦେଖେ ସୁନ୍ଦର । ୩ ।
ଆଲୁର ସଙ୍କେତ ଜଣା ପଡ଼ୁଅଛି
ଗଣ୍ଡେ ଲଗିଛି ସିନ୍ଦୂର ।
କୋମଳ ଶ୍ୟାମଳ— ତନୁ ହୋଇଅଛି
କରଜରେ ନାରଖାର । ୪ ।
ବାଙ୍କ ଚୂଳ ଅସ୍ତ ବ୍ୟସ୍ତ ହୋଇଅଛି—
ବସନ ଅଶୋଭାକାର ।
ନୟନେ ପଲକ ପଡ଼ୁନାହିଁ ନିଶି
ହୋଇବାରୁ ଉଜାଗର । ୫ ।
ଶ୍ରୀ ଚନ୍ଦ୍ରବଦନ— ଶୁଖି ଯାଇଅଛି—
ଆହେ ରସିକ ଶେଖର ।
ବେଣୁଧର କହେ— ଚନ୍ଦ୍ର ବୋଲେ ରାଧେ !
ଶ୍ୟାମ ଦୋଷ କ୍ଷମାକର । ୬ ।
( ଜଣା ପଡ଼ଇ ରେ ଜଣା ମୃଗାକ୍ଷୀ ଲୋ ବୃତ୍ତ—ବୃତ୍ତେ )

—*—

( ରାଗ—ମାରୁଆ । ତାଳ—ଆଠତାଳି )
ନଟନାଗର ହେ ଶଠ ମୁକୁଟମଣି ।
ନ କହ ଏ ଚାଟୁବାଣୀ । ଘୋଷା ।
ଭାଲ ଉଜାଗରେ ମୋତେ ଯାହା କରିଦେଲ ସଙ୍ଗେ,
କେ ସହନ୍ତା ଭଲ ଏହା ଶଠ-ଅଗ୍ରଣୀ । ୧ ।
ବଂଶୀକି ତୁହି ନୟନ— କରି କହିବା ମରମ,
ନ ପାରିଲ କାହିଁପାଇଁ ଏ ଭଙ୍ଗ ଠାଣି । ୨ ।
ମଦିତ ବଚନ ତବ ଆନ କଲ ଯା କେଶବ,
କେ ଆଉ ପରତେ ଯିବ କାଲକୁ ପୁଣି । ୩ ।

ଛାଡ଼ ଏ ବୃଥା ରୁକୁଷ ମୋ ପାଶରୁ ଯାଅ ଫେରି,
ଗୁହିଁ ବସିଥିବ ତେଣେ ମଲ୍ଲି ଘରଣୀ । ୪ ।
ଏସନ ଶ୍ରୀମତୀ ବାଣୀ ଶୁଣି ବେଣୁଧର ଭଣି,
ଏଥର ଶ୍ୟାମ ଦୋଷ କ୍ଷମ ଗୋ ଧନ !
(ପ୍ରାଣ ସଙ୍ଗିମାନେ ନେହାନନ୍ଦ ପସରା—ବୃନ୍ଦେ)

—o—

(ରାଗ— ଲଳିତ କେଦାର । ତାଳ—ଏକତାଳି)

ଶ୍ୟାମ ନାଗର ହେ ! ଜଣାଗଲୁ ଏଥର ।
ଲମ୍ପଟିଆ କପଟିଆ ହଟିଆ ଚତୁର । ଘୋଷା ।
ବାଳ କାନ୍ତ ପ୍ରୀତିକର ହସାଇ ଦେଲୁ ଉଗାର,
ବାଜେ ଅକୀର୍ତ୍ତି ଢମକ ଏ ବ୍ରଜ ବଜାରେ । ୧ ।
ଏ କୁଳଛଡ଼ା ଗତିକ କାହୁଁ କହ୍ନୁ ଥିଲ ଶିକ୍ଷି,
ନ ହେଜିଲ ଅନ୍ତର୍ଗତେ କଣ୍ଟକିତ ମାତର । ୨ ।
କେତେ ଅବା ଯୁବା ନାରୀ ନାହାନ୍ତି ଏ ବ୍ରଜପୁରୀ,
ଏକା ଦେଖିଛ କି ମୋତେ ମୁରଲୀ-ଅଧର । ୩ ।
ପାଠକ କୂଳରେ ହାଟ ବସାଇଲ ନନ୍ଦସୁତ,
ବୋଲେ ବେଣୁଧର ସେ ତ ତୁମ୍ଭ ଚରିତ୍ରର । ୪ ।
( ଘନ କଳିଆ ରେ ! ସେ ମୋ ଜୀବ ଜୀବନ—ପ୍ରଭୃ )

—o—

(ରାଗ—ଇମନ କଲ୍ୟାଣ । ତାଳ—ଆଠତାଳୀ )

ଫେରଯା ଫେରଯା ବନ୍ଧୁ ! ନକର ରୁକୁଷ ହେ ।
ଏ ଗତିକ ଜାଣନ୍ତି ସେ ଚନ୍ଦ୍ରା ଭୃକୁଷ ହେ । ଘୋଷା ।
ତୋର ଶ୍ରୁତି ବଂଶୀ ସ୍ୱନେ, ପ୍ରତିଫଳ ଏତେ ଦିନେ,
ପାଇଲି ମୁଁ ଆଜ୍ଞ କାହିଁପାଇଁ ହୁରି ଜଗ ହେ । ୧ ।
ନ ମାନ ଅପକୀର୍ତ୍ତିକି, ସମର୍ପି ତାର ମସ୍ତକ,
ଯୁଝାଇଲ ସିନା ଆଜ ଗଳେ ଦେଇ ଛୁରୀ ହେ । ୨ ।
କୁଳେ ଦେଇ ଜଳାଞ୍ଜଳି ବୁଲିବାର କୁଞ୍ଜଗଳି,
ଚେତିଲି ଚେତିଲି ଏବେ ବାଞ୍ଛାଗଲୁ ପୂରି ହେ । ୩ ।

ରାଧା ଶେଷ ବାଧା ବାଣୀ ଗୀତେ ବେଣୁଧର ଭଣି,
ବୋଧି କରିବାକୁ ପୁଣି ଅଛୁ କି ଆତୁର ହେ । ୮ ।
( ଶ୍ୟାମହସ୍ତେ ବଂଶୀ ମୋର ହୋଇଲା ସ୍ୱାଧୀନ ଗୋ—ବୃତ୍ତ )

—o—

( ରାଗ—ଚୋଖି ପରଜ । ତାଳ—ଆଠତାଳୀ )

ଥିଲ କାଲି ରଜନୀରେ କାହା କୋଳେ ଶ୍ୟାମଘନ !
କହିବଟି ମନ ଖୋଲି ନ କରି ତିଳେ ଗୋପନ । ଘୋଷା ।
ଅଧରେ କଜ୍ଜ୍ୱଳ ଗାର, ଗଣ୍ଡେ ଲାଗିଛି ସିନ୍ଦୂର
ବାହୁ ଯୁଗଳରେ ଭଡ଼ି କେ ଦେଲା ଏ ଚୂଡ଼ିଚିହ୍ନ ? । ୧ ।
ଚନ୍ଦ୍ରମୁଖଟି ତୁମ୍ଭର, ମଳିନ କାହିଁ ନାଗର !
କାହା ଚଳାମାଳା ତବ ଗଳେ ଦିଶଇ ଶୋଭନ ? । ୨ ।
କୁଙ୍କୁମରେ ଜର ଜର, ହୋଇଛୁ କଳାଶରୀର,
କହ କେଉଁ ରମଣୀର ପିନ୍ଧିଛ ପୀତବସନ ? । ୩ ।
ଶିଖୀ ଚନ୍ଦ୍ରିକା ମୁକୁଟ ଲାକ୍ଷାରସେ ଲଟପଟ,
ପୁଣି ହୋଇଛି ପ୍ରକଟ ହୃଦେ ନଖକ୍ଷତ ମାନ । ୪ ।
ଜଣାଗଲା ତୁମ୍ଭମତ ଶଠଭୁଜଙ୍ଗର ପ୍ରୀତି,
ଯାଅଯା ଏଥୁଁ ଶ୍ରୀପତି ! ନ କହ ଚାଟୁ ବଚନ । ୫ ।
ଏସନ ଶ୍ରୀମତୀ ବାଣୀ ଶୁଣି ସେ ମୁରଲୀପାଣି,
ବଞ୍ଚାଇ କହନ୍ତି ଜାଣି ବେଣୁଧର ଚରଚନ । ୬ ।
( ଦେଖିଲେ ଦେଖିବା ପରି ଅଟର ରସିକରାଜଙ୍କୁ—ବୃତ୍ତ )

## କଳହାନ୍ତରିତା

### ସଖୀ ପ୍ରତି ରାଧା ଉକ୍ତି

( ରାଗ—କେଦାର । ତାଳ—ଅ.ଠତାଳୀ )

ନରମେ କହିଲେ । ମରମେ ବାଧୁଛି,
ସରମେ ସଖୀ ମୁଁ ସହିଗଲି ।
ଭରମେ ପଡ଼ି ଯା ଗରମେ କହିଲୁଁ
କରମେ କରିଲୁ ନିବେଶିଲି । ଘୋଷା ।
ପୀତପଟ ନଟ— ମୁକୁଟ ଲମ୍ପଟ,
ନାଗରଙ୍କୁ ପାଦେ ନିକ୍ଷେପିଲି ।

କାହାକୁ କହିବ — ମନର ଯାତନା,
ଆପେତ ଏ ଦଶା ଅରଜିଲି । ୧ ।
ହୃଦୟ ରତନ, ଚିନ୍ତାମଣିକି ଯା—
ଅନାଦର ବହି ବରଜିଲି ।
ସେ ମୁରଲୀ ପାଣି ଜନମୁ ବାଣୀକ,
ଲୁଷଥିଲେ ଆସ ଆସ ବୋଲି । ୨ ।
ହିତକୁ ବହିତ ବହୁତ ଗୋ ମିତ !
ବେଳକୁ ମୁଁ ଏତେ ଅରି ହେଲି
ମୋହନେ କହିବୁ ଏତିକ ଗୋ ଦୂତି,
ଭଣେ ବେଣୁଧର ଭଳି ଭଳି । ୩ ।
( ଜାଣିଛୁ ମୁଁ ଏତେ ମାନ ଗୋ ଲଳିତେ — ବୃତ୍ତେ )

—o—

( ରାଗ — ଶୋକ କେଦାର — ତାଳ ଏକତାଳୀ )

ସଜନି ଗୋ ! ଏହା ଥିଲା କରମେ ।
ମାନିନୀ ହେଲି ଯା ନବଘନଶ୍ୟାମେ । ଘୋଷା ।
ଯିବା ହେବ ବୋଲି, ଜାଣି ନ ଥିଲି,
ଏବେ ସଖି ! ମୋର ବାଧୁଛି ମରମେ । ୧ ।
ଜନମୁ ଶତ୍ରେ, ପାଦ ଧରନ୍ତେ,
ପିଙ୍ଗାଡ଼ି ଦେଲି ଯା, ପଡ଼ିଲି ଭରମେ । ୨ ।
ନାଗରବର ନୟନୁ ନୀର,
ପୋଛୁ ପୋଛୁ ଫେରିଗଲେ କି ସରମେ । ୩ ।
ବସିଲି ମାନେ, ଅଧୋ ବଦନେ,
ଏବେ ମୋର ମନ କାହିଁରେ ନ ରମେ । ୪ ।
କହ କପର ? ଆସିବେ ହରି,
ଭଣେ ବେଣୁଧର ଏ ଜଣି ଚରମେ । ୫ ।
( ହେ ଶ୍ୟାମ ! ସତେ ରାଧା କହିବ — ବୃତ୍ତେ )

— ❀❀ —

(ରାଗ—ଶଙ୍କା କେଦାର । ତାଳ—ଆଡ଼ ତାଳୀ)

ସଙ୍ଗିନୀ ରେ ମନ୍ଦପଣ ମୁଁ କଲି ।
ଅମୂଲ୍ୟ ଚିନ୍ତାମଣିଙ୍କି ଯା ତେଜିଲି । ପଦ ।
ମୋ କର ଧରି, ବଚନ୍ତେ ହରି,
ବୃଥେ ସହଚନ୍ତ ବୋଲେ ଛୁଆଁଡ଼ ଦେଲି । ୧ ।
ନନ୍ଦନନ୍ଦନ, ବଂଶୀବଦନ,
ନୀରବେ ଫେରିଗଲେ ଗୁମାନ ହେଲି । ୨ ।
ସେ କଳାକାହ୍ନୁ,— ଲଗି ଅଚଳୁ
ତୀକ୍ଷ୍ଣ ଶରକୁ ନିଜକର ଆଡ଼ିଲି । ୩ ।
ଏ ବେଣୁଧର, ହୀନ ପାମର,
ଲଭିବ ସତେ ଶ୍ୟାମ ଚରଣ କାହିଁ । ୪ ।
(ସଙ୍ଗିନୀରେ ! ମୋର କରମ ମନ୍ଦ—ବୃନ୍ଦେ)

— ୫ —

## କଳହାନ୍ତରିତା ପଞ୍ଚସ୍ପୃହା

( ରାଗ—ଭୋଡ଼ ପଟଜ । ତାଳ—ଏକତାଳି )

ତୁଷି ତ ନ ଆସେ ମୋତେ ରେ ସଙ୍ଗିନୀ ! ତୁଷି ତ ନ ଆସେ ମୋତେ ।
ଗେଲ ଟେଲ ହୋଇ ଅବଶେଷ ବୃନ୍ଦେ ବସିଲି ମାନ କୁଞ୍ଜତରେ । ଘୋଷା ।
ଯେତେବେଳେ ବନ୍ଧୁ କୁଞ୍ଜଦ୍ୱାରେ ହେଲେ ବିନୟ ବଚନ ଭାଷି ।
ସେ କାଳେ ଏ ଦେହ ନେହ ଜସ ହେନ ଗଲେ ସେ ନୈଛକେ ଭାସିରେ ।୧।
ଯେତେ ନିବାରଣ କଲି ମୋ ଶ୍ରୁତି କି ନ ଶୁଣ କାଳିଆ ନାମ ।
ସଜନରେ ହେଲେ ସେ ତାହା ଶୁଣିଲେ ମୋହଠାବରେ ହୋଇ ବାମ ରେ ।୨।
ନାସାକୁ ମୁଁ ମନା କଲି ରେ ସୁଜନ! ଶ୍ରୀଅଙ୍ଗ ବାସ ଅଘ୍ରାଣେ ।
ମୋ ବାଣୀ ନ ହେଜ ଘର୍ଷବାତ ହେନ ଚଳିଲେ ମୋ ପରେ ଠାଣେ ରେ ।୩।
ଜଳି ମୁଁ ନ ଖଞ୍ଜ ବାହୁ ଯୁଗଳକୁ ନ ପାଉ ତେଣିକି ବୋଲି ।
ଗଣ୍ଡରୁ ଦଣ୍ଡକୁ ଦଣ୍ଡଛଡ଼ା ହୋଇ ଶ୍ୟାମଅଙ୍ଗେ ଗଲେ ଠେଲି ରେ । ୪ ।
ଜିହ୍ୱାକୁ ବୋଇଲି ନ ରଟ ତା ନାମ ସେ ହେଲା ବଡ଼ ବିଷମ ।
ବୋଲେ ବେଣୁଧର ହେବେକ ସେ ସ୍ଥିର ଶୂନ୍ୟ ହେଲେ କୃଷ୍ଣପ୍ରେମରେ ।୫
( ଚଳିଣି ତ ଗଲ କଥା ରେ ସଙ୍ଗାତ—ମୁତ୍ତେ )

—୦—

( ରାଗ— ମୁଖାରୀ । ତାଳ – ଆଠତାଳୀ )

ସଜନି ! ମୋତେ ନ ଦିଶେ ବୁଦ୍ଧିରେ ।
ଜାଣି ହରାଇଛୁ ଅମୂଲ୍ୟନିଧିରେ । ଘୋଷା ।
ଶିଖିତ ନ ଥିଲି ଏ ତୃଷା ସିଦ୍ଧି ।
ଆଗେ ସିନା ଆଚରିଲି ଏ ବିଧିରେ । ୧ ।
ମାନ ତପସ୍ୟା ତ ନ ଥିଲି ସାଧି ।
ମରମେ ଘୋଟିଲା ସନ୍ତାପ-ବ୍ୟାଧିରେ । ୨ ।
ଆବାଲ୍ୟ କାଳରୁ ଆଜ ଅବଧି ।
ବ୍ରଜ ବିଧୁ ମୋ ପରମ ଔଷଧିରେ । ୩ ।
ନେହ ନଭିଳି ମୋ ସେ ନିରବଧି ।
ହୃତ ସମ୍ପତ୍ତେ ମୁଁ ଥାଇଁ ସମାଧିରେ । ୪ ।
କି ଦୁର୍ଯୋଗେ ତାଙ୍କୁ କୁଞ୍ଜ ନିରୋଧି ।
ନେଉଟିଲି ମୋ କର୍ମ ଫଳର ଆଧିରେ । ୫ ।
ଯାଉ ଗୋ ଏ ଅନୁତାପ ଶାରଧି !
ବୋଲେ ଦୁଃଖୀ ବେଣୁଧର ପ୍ରବୋଧିରେ । ୬ ।
( ସଙ୍ଗାତ ! ତାଙ୍କୁ ଦେଖିଲି ଯେଉଁକାଳେ—ବୃତ୍ତ)

— ୦ —

( ରାଗ—କଳସା । ତାଳ—ଆଡ଼ଖେମଟା )

ଯାଅ ଯାଅ ଗୋ ଲଳିତେ ଯାଅ ବେଗ ହୋଇ ।
ବାଙ୍କଚୂଳିଆଙ୍କୁ ଥରେ ପଚାରିବୁ ବୁଝି । ପଦ ।
କରିଥିଲେ କଣ୍ଠ କାଳି ନ ଆସିବେ ସେହି ।
କେଉଁ ଯୁବତୀଙ୍କ ଦେଖି ରୂପେ ହେଲେ ବାଇ । ୧ ।
ଭୃଙ୍ଗରାଜ ପରି ନାନା ପୁଷ୍ପଚୁମ୍ବି ଯାଇଁ ।
ଭଲ ମନ୍ଦ କିଛି ତେଲେ ବାରିତ ନ ଥାଇ । ୨ ।
କେଉଁ ଦୋଷ ଅବା ତାଙ୍କଠାରେ କଲି ମୁହିଁ ।
ନିଶିପାଳ ପାହିଗଲା ପଥ ଚାହିଁ ଚାହିଁ । ୩ ।
କବିଚନ୍ଦ୍ର ଏ ରସରେ କହଇ ବୁଝାଇ ।
କାରୁଣ୍ୟ ସମ୍ବାଦ ରାଧେ ଆସିବେ କହ୍ନାଇ । ୪ ।
( ତାହା ଶୁଣିବେ ମତି ଆଜ ଦେଖୁଛୁ ଗୋ ଏବେ—ବୃତ୍ତ)

# ସଖୀ ଉକ୍ତି

## ଦୂତୀ ସଙ୍କେତ

( ମାନମୟୀ ଶ୍ରୀମତୀଙ୍କ ପ୍ରତି ଲଳିତା )
( ରାଗ— ଆନନ୍ଦ ଭୈରବ । ତାଳ—ଏକତାଳୀ )

ମାନିନି ରାଧେ ! ନିକୁଞ୍ଜେ ଆସ ଗୋ ! କମ୍ବୁଛନ୍ତି ପୀତବାସ ।
ବସିଛନ୍ତି ଭଳି, ଚୋର ଗଳାମାଳ, ହା ହା ପ୍ରିୟେ ବୋଲି,
ଛେଡ଼ି ଦୀର୍ଘ ନିଶ୍ୱାସ (ନିକୁଞ୍ଜ ଆସ ଗୋ) । ଘୋଷା

ସେ ନନ୍ଦନନ୍ଦନ ମୁରଲୀ ବଦନ
ନୟନେ କଦନ ଲଭୁଛନ୍ତି ଧନ,
ଛେଡ଼ ଛେଡ଼ ମାନ ମୋ ବଚନ ଘେନ,
ଗତ ନାହିଁ ଆନ ନକର ଏ ନିରାସ (ନିକୁଞ୍ଜେ ଆସ ଗୋ ) । ୧ ।

ସେ ଶ୍ୟାମଳ ଶଶୀ ମାଳକରେଁ ବାସି
ହେଲାପରି ବସି ଗଲେଣି ସୁକେଶୀ !
ରାଧାର ମୁଁ ଦୋଷୀ ବୋଲି ହବା ନିଶି,
ହେଉଛନ୍ତି ଘୋଷୀ ଆକୁଳେ ଲଭି ହାସ (ନିକୁଞ୍ଜେ ଆସ ଗୋ ) । ୨ ।

ସେ ଗୋପ ସଙ୍ଗାଳ କାହ୍ନୁ ବନମାଳ,
କେତେ ନଇଗ୍ଲାଳ ହେଲେ ଧନମାଳ !
ନେତ୍ରୁ ଅଶ୍ରୁ ତାଳ ତୋନାମକୁ ମାଳ-
କରି ଭଳି ଭଳି ଆହା ଲଭେ କ ପ୍ରାସ (ନିକୁଞ୍ଜେ ଆସ ଗୋ( । ୩ ।

ଦୂତିକା ବଇନ ମାନି ବନୋଦ୍ଧମା
ସଙ୍ଗ ସଖି ଘେନ ଚଳିଲେ ସେକ୍ଷଣି,
ବେଣୁଧର ଭଣି ଚନ୍ଦ୍ର ଚନ୍ଦ୍ରାମଣି,
ସେ ଯୁଗଳ ଶ୍ରେଣି ଦେଖି ଲଭିବ ତୋଷ (ନିକୁଞ୍ଜେ ଆସ ଗୋ) । ୪ ।

( କାହିଁକି ସଖି ! ବଳାଇ—ବୃନ୍ଦେ )

—୦—

( ରାଗ—ଗୁଜ୍ଜରୀ । ତାଳ—ଏକତାଳୀ )

ମୋହିନୀ ! ଶୁଣ ଗୋ ଶୁଣ ଗୋ,
ରହିଛନ୍ତି ବନ୍ଧୁ କୁଞ୍ଜ ଦୁଆରେ । ଘୋଷା ।
ମନ୍ଦହାସୀ ଥରେ ମଦର ଧରାରେ
ଭେଟ ହୁଅ ଜନା ବେଶ ନୁଆ ରେ ।
ପ୍ରାଣ-ପ୍ରିୟ ଦୋଷ କଲେ କିବା ରୋଷ ?
ବହିବା ଉଚିତ ଭୁଆ ଭୁଆ ରେ । ୧ ।
ବିରହେ ତାପିତ ହେଲେ ବିଶେଷତ,
ମିଳ ନ ଦେଇ କି ପ୍ରୀତି ପୁଆରେ ।
ନା ଲାଗି ତୋ ହାତ ଧରୁଛୁ ସଙ୍ଗାତ,
ଅଭିସାରକୁ ପାଏଡ଼ା ଥୁଆ ରେ । ୨ ।
ଗୁନ୍ଥାଇ ମଞ୍ଜୁଳ ମଲ୍ଲୀ ପୁଷ୍ପ ମାଳ,
ବୋଲ ଯେନ ମଳୟଜ ଚୁଆ ରେ ।
ଗଣ୍ଡେ ମଣ୍ଡ ପାଣି— ପଲ୍ଲବ ପିହାଣୀ,
ନେଷ ମାରେ ବକ୍ଷ ତୁ ନ ଧୁଆରେ । ୩ ।
ସଖାଙ୍କ ଗହଣେ ଗତିକାଲେ ଚେତଣେ,
ହୋଇଥିବ ଧନ ମୁଁ ଆଗୁଆରେ ।
ନାଗର ଇନ୍ଦ୍ରଙ୍କ ଭୁଲେ ମିଳି ତାଙ୍କ—
ଓଁରେ ଉଳି ଓଷ୍ଠୁ ମଧୁ ଖୁଆ ରେ । ୪ ।
ମନ ମୋର ବାଣୀ ଅଳି ମାଳ ବେଣୀ !
ତୁ ଜିତି ସୁକୀର୍ତ୍ତି ଲତାରୁଆ ରେ ।
ଯେ ଯାର ସେ ତାର ପିନା ବେଣୁଧର—
ବୋଲେ କସ ହେବ ପର କୁହାରେ । ୫ ।
( ରସିକ ରାଜ ସାଜ ଧାଜ ହେ—ବୃତ୍ତେ )

—❀—

( ରାଗ—ଶଙ୍କରାଭରଣ । ତାଳ—ଝୁଲା )

ରାଧେ ! ନହୁଅ ବିମନା
ପହିଁ ଚହିଁ ଥିଲେ ନିଶ୍ଚୟ ଆସିବେ,
ନାଗର କାନାଆ ମୁନା, ରାଧେ ନ ହୁଅ ବିମନା । ଘୋଷା ।
ତୁସ ତୋ ହୃଦହାର ପଦକ, କମ୍ପା ମନେ ଲଭୁଛୁ ଦକ ।
ଯେନ ମୋ ପଦକ ମୁରଲୀ ବାଦକ-ଲାଗି ନକର ଭାବନା ।୧।

ଅବା ମନ ବଢ଼ିବା ପାଇଁ, ଲୁଚିଛନ୍ତି କଳା ମଣ୍ଡାଇଁ !
ଆଗୋ ଧନ ରାଇ ତୁ ବାଇ ପରାଇ ନ ହୁଅ ସୁନାବରନା । ୨
ସେ ହଟିଆ ନଟନାଗର, ଲମ୍ପଟିଆ ରସ ସାଗର ।
କରିବେ କ ପର ସନ୍ଦେହ ନ କର ଶରଦ ଚନ୍ଦ୍ରବଦନା । ୩ ।
ବଂଶୀ ତୁଇଁ ଗୁଣ ପକାଇ କେତେ କର ଅଛନ୍ତି କହ ।
ଉତ୍କଣ୍ଠିତା ନୋହୁ ଧୈର୍ଯ୍ୟଧର ସହ ! ଶ୍ରୀ ବୃଷଭାନୁନନ୍ଦନା । ୪ ।
ଶୁଣି ଦୂତୀ ପ୍ରବୋଧ ଗିର, ଠାକୁରାଣୀ ଧ୍ରତ୍ତ ଉତ୍ତର ।
ବୋଲେ ବେଣୁଧର କ ପାଇଁ ଉତ୍ତୁର କଲେ ତା-ନଗଲ ଜଣା । ୫

( ଶ୍ୟାମ ପ୍ରୀତି ରସାଇ—ବୃତ୍ତେ )



( ରାଗ — କୁସୁମକେଦାର । ତାଳ — ଝୁଲ, ଖେମଟା )

ଦୁଃଖ କରନା ଗୋ କିଶୋରି !
ଅବଶ୍ୟ ଆସିବେ ମୁରଲୀଧାରୀ । ଘୋଷା ।
ପୁରୁଷତ ଭ୍ରମର ଜାତି ନ ଜାଣୁକି ତୁ ତାଙ୍କ ମତି,
କୁଟଜରୁ ଅଳି ମଧୁ ଚୁମ୍ବୁଥିଲେ ପଦ୍ମିନୀ ପାଶେ କି ନ ଆସେ ଫେରି । ୧ ।
ନନ୍ଦସୁତ ମନ୍ଦରଧର ଛନ୍ଦ ଜାଣେ ନାନା ପ୍ରକାର,
କନ୍ଦର୍ପ-ମୋହନ-ମୂରତି ତୋ ମନ ବେଦନା ହରିବେ ରାଜକୁମାରୀ । ୨ ।
ଲୀଳାନିଧି ତୋ କଳାକର, ଲପନକୁ କଳା ନ କର
ବଳାହକ-କେଶୀ ଚପଳା ଅଙ୍ଗିମା ଗଳା ମାଳା ତୋର ସିନା ଶ୍ରୀହରି । ୩ ।
ଘୀନ ବେଣୁଧର କହଇ ଖିନ୍ନମଧ୍ୟା ଜାଣୁନା ତୁହି ?
ନଈ କୂଳଠାରେ ଦ୍ୱିଜବେଶ ଧରେ ଧ୍ୟାନକରି କରି ରୂପ ଚୋହରି । ୪।

( କାହିଁଗଲେ ମୁରଲୀ ଫୁଙ୍କା — ବୃତ୍ତେ )



## ବନପଥେ ଲଳିତା

( ରାଗ — ପୂରବୀ । ତାଳ — ଝୁଲ )

କେଣେ ଗଲେ ସେ ମୁରଲୀଧର ।
ବୃଷଭାନୁଜେମା ପ୍ରେମପସର ।
ଖୋଜି ଖୋଜି ନ ପାଇଲି ପର । ଘୋଷା ।
ସେ ନବରଙ୍ଗିଆ ତ୍ରିଭଙ୍ଗ ଭଙ୍ଗିଆ,
ସୁବଳ ସଙ୍ଗିଆ ଶିଖଣ୍ଡ ଝର । ୧ ।

ନେତ୍ର ଅପାଙ୍ଗିଆ      ସେ ନୂଆ ଢଙ୍ଗିଆ,
ମତ୍ତମାତଙ୍ଗିଆ ଧଇର୍ଯ୍ୟ ହରା । ୨ ।
ଯମୁନା ଘାଟିଆ      ଚନ୍ଦନ ପାଟିଆ,
ସେ ନଟ କୁଟିଆ ନହତ ସରା । ୩ ।
ପାଲଟା ଗୋଟିଆ,      ଡମ୍ବରୁ କଟିଆ,
ରସିକ ହଟିଆ ହୃଦୟ ଥରା । ୪ ।
ଅଘଟ ଘଟିଆ      ଯଶୋଦା ଛଟିଆ,
ବେଣୁଧର ମନ ସମ୍ପତ୍ତି ଚୋରା । ୫ ।
( ଶଠ ଲମ୍ପଟ କାହ୍ନୁ ତୁ ଯାନା—ବୃତ୍ତେ )

—❋—

( ରାଗ—ଜୟନ୍ତ । ତାଳ—ଝୁଲା )
କି କହିବ ଧନ ଶଠ ମୋହନ ଚରିତ ।
ସାକ୍ଷାତେ ଆସିଲା ନେଷେ ଲେକନ କଣତ ।
ପ୍ରାଣ ସଙ୍ଗାନି ରେ । ୧ ।
ବହୁ ସୁବାସିତ ମନ୍ଦ ମଳୟ ପବନ ।
ଲବଙ୍ଗ ଲତାକୁ କରୁଅଛି ଆଲିଙ୍ଗନ ।
ପ୍ରାଣ ସଙ୍ଗାନି ରେ । ୨ ।
ମତ୍ତ ମଧୁପମାନଙ୍କ ମଧୁର ଗୁଞ୍ଜନ ।
ଫୁଲେ ଫୁଲେ କରୁଛନ୍ତି ମଧୁ ଆସ୍ୱାଦନ ।
ପ୍ରାଣ ସଙ୍ଗାନି ରେ । ୩ ।
କୋକିଳମାନଙ୍କ ସୁମଧୁର କୁହୁ ସ୍ୱନ ।
ଉହୁଳି ପଡ଼ୁଛି ଆଜ ନିକୁଞ୍ଜ କାନନ ।
ପ୍ରାଣ ସଙ୍ଗାନି ରେ । ୪ ।
ସନ୍ତପତ ଜନଙ୍କର ଦାରୁଣ ଦୁଃସହ ।
ଏଭଳି ସୁମନୋହର ବସନ୍ତ ସମୟ ।
ପ୍ରାଣ ସଙ୍ଗାନି ରେ । ୫ ।
ତୋତେ ଗୁଡ଼ି କଲା କାହ୍ନୁ ରସିକଶେଖର ।
ବସାଇ ଅଛନ୍ତି ରସ ପ୍ରେମର ବଜାର ।
ପ୍ରାଣ ସଙ୍ଗାନି ରେ । ୬ ।

ବାଳିକାମାନଙ୍କ ତୁଲେ କରୁଛନ୍ତି ନୃତ୍ୟ ।
ନାନାହାସ୍ୟ ପରିହାସେ ଗାଆନ୍ତି ସଙ୍ଗୀତ ।
ପ୍ରାଣସଙ୍ଗାତ ରେ ।୭।
ଆଗୋ ରାଧେ ଏହି ମଧୁମୟ ସମୟରେ ।
କି ସୁଖ ଜାତ ନୁହନ୍ତା ମୋହନ ସଙ୍ଗରେ ।
ପ୍ରାଣସଙ୍ଗାତ ରେ ।୮।
ବେଣୁଧର ବୋଲେ ତୋତେ କରି ସେ ନିବାରି ।
ଧନ୍ୟାକନ୍ୟା ସଙ୍ଗେ ହୋଇଛନ୍ତି ପ୍ରେମେ ବନ୍ଧା ।
ପ୍ରାଣସଙ୍ଗାତ ରେ ।୯।
( ରାଇ ମାନଅଗ୍ନି ଏବେ ପ୍ରବଳ ଜଳଇ—ବୃତ୍ତ )

—୦—

## ବନପଥେ ଦୂତୀ

( ଲଳିତା ସଖୀ ଶ୍ରୀକୃଷ୍ଣଙ୍କୁ ଖୋଜୁଛନ୍ତି )
( ରାଗ—ପୂରବୀ । ତାଳ—ଝୁଲା )

କେଉଁଣେ ଗଲେ ମୁରଲୀଧର ।
କିଶୋରୀମଣିର ପ୍ରେମପସରା । ଘୋଷା ।
କହିଥିଲେ ତୁହି ମୁରଲୀ ରାଧାକୁ-ଞ୍ଜ ଆସିବେ ବୋଲି,
( ସେ ଗଲେ କି ଭୁଲି ? )
ରତ୍ନ ଲମ୍ପଟିଆ ପୀରତି ଘଟିଆ,
ଯମୁନା ଘାଟିଆ ପୁରନାମରା ।୧।
ଗୁଣମଣି ଗୁଣସାଗର, ଚିତ୍ତଚୋର ନଟନାଗର
( ସେ ବ୍ରଜସୁନ୍ଦର )
ସେ ନଟକୁଟିଆ କୂଟ କପଟିଆ,
ସୁପୀତ ପଟିଆ ଚନ୍ଦ୍ରିକା ଧରା ।୨।
ନବ ନବ ଭାବଭଙ୍ଗିଆ, ନବଘନ ଶ୍ୟାମଅଙ୍ଗିଆ
( ସେ କଳାଅଙ୍ଗିଆ )
ସୁବଳ ସୁଦାମ ପରାଣ ସଙ୍ଗିଆ,
ଗୋପସୁନ୍ଦରୀଙ୍କ ମନହରା ।୩।
( ନନ୍ଦସୁତ ମୋର ଜୀବନ—ବୃତ୍ତ ) ( ଅପୂର୍ଣ୍ଣ )

—୦—

## ସଖୀ ଉକ୍ତି

( ରାଗ – ମାରୁଆ । ତାଳ—ଆଠତାଳୀ )

ଚନ୍ଦ୍ରାବଳୀ କୁଞ୍ଜେ ବଜେ ନାଗର-ରାଜ ।
କାହାପାଇଁ ଏତେ ସଜ ? ଘୋଷା ।

ନାନା କୁଞ୍ଜେ ବୁଲି ବୁଲି    ରଙ୍ଗଣୀ କୁଞ୍ଜକୁ ଗଲି
ଦେଖିଲି ଗୋ ତହିଁ ଲାଗି ଅଛି ମଉଜ । ୧ ।
କେତେ ହାସ ପରିହାସେ    ମଜ୍ଜି ଛନ୍ତି ପ୍ରୀତିରସେ,
ମଲ୍ଲନାରୀ ଭୁଲେ ଆଜ ମୁରଲୀ ଭୁଜ । ୨ ।
ଶୈବ୍ୟା ପଦ୍ମା ବୃନ୍ଦସଖୀ    ଠରାଠରି ହୋଇଥାନ୍ତି,
କସ କ୍ରୀଡ଼ାକୁଞ୍ଜ ହେଉଥିଲେ ତା ହେଜ । ୩ ।
ନେହାଞ୍ଜନେ ପଦ ଲେଖି    ଦେଇ ଆସିଲି ସୁମୁଖି !
ପଢ଼ିବେ ବୋଲି ଗୋ ରାଧେ ! ନଯୁନକଞ୍ଜ । ୪ ।
ଯାହାଙ୍କୁ ତୁ ବୋଲୁ ମୋର    ସେ କଲେଣି ସାତପର,
ବୋଲେ ବେଣୁଧର ଏବେ ଗୁମାନ ମଞ୍ଜ । ୫ ।
( ପ୍ରାଣ ସଙ୍ଗିନୀରେ ନେହାନନ୍ଦ ପସରା – ବୃନ୍ଦ )

— ✻ —

( କାଉଁନରାଗିଣୀ । ତାଳ—ଏକତାଳ )

କହ ଲୋ ଶ୍ରୀମତି ! କମ୍ପା ମଥା ପୋତି ବସିଅଛୁ ଦୁଃଖମନେ ।
ଆଜ ମୁଁ ଦେଖିଲି ବଡ଼ ଆଚମ୍ବିତ ଯାହା ନ ଦେଖିଛୁ ଜନେ ।
ତୋର ମନଚୋର । ଚନ୍ଦ୍ରାକୁଞ୍ଜେ ପଡ଼ିଛନ୍ତି ଧରା ।
ମୁହିଁ, ଯାଇଁ ଦେଖି ଆସିଅଛି ପରା, ହେଉଛନ୍ତି କ ମନ୍ଦହସରା । ୧ ।
ତୋହର ଆଦେଶ ପାଇ ମୁଁ ଦ୍ୱାଦଶ କାନନ ଯାକ ଖୋଜିଲି ।
ସେ ପୀତପଟିଆ ଲମ୍ପଟିଆଙ୍କର ଠିକଣା ତ ନ ପାଇଲି ।
ମନେ ବିଚାରିଲି । ଚନ୍ଦ୍ରାବଳୀ କୁଞ୍ଜେ ଥିବେ ବୋଲି ।
ତରତର ହୋଇ ଚଳିଗଲି, ଯାଇଁ ଗବାକ୍ଷରେ ବିଲୋକିଲି ।
ସେ ମୁରଲୀପାଣି ବନ୍ଧା ହୋଇଛନ୍ତି ଚନ୍ଦ୍ରାବଳୀ କର ମାନେ ।
କେତେ ଚୁମ୍ବିଲ୍ଲୁ ଦେଲେ ଶ୍ୟାମବନ୍ଧୁ ନ ଛାଡ଼ [illegible] ।
(ବୋଲେ) ରହ କେଣେ ଯିବ ? ବନ୍ଦୁହନେ ଧରା ପଡ଼ିଛ କେଶବ ।
ହାସ ଅଞ୍ଚଳେ ବାନ୍ଧିବ ହେ ମାଧବ ! ମୋର ପ୍ରେମ କାରାଗାରେ ବନ୍ଦଥିବ ।୨।

ଏ ବଚନ ଶୁଣି ଦୁଃଖେ ଚନ୍ଦ୍ରାମଣି ଙ୍କ ବଦନପଦ୍ମ କମ୍ପୁଥିଲେ ।
ତା ଦେଖି ମୋ ହୃଦ କାତର ହୁଅନ୍ତେ ପଦ ଲେଖି କଆଫୁଲେ ॥
ଗୁପ୍ତେ ଫିଙ୍ଗିଦେଲି । ଚନ୍ଦ୍ରାବଳୀ ନ ଜାଣିବ ବୋଲି ।
ଚନ୍ଦ୍ରାମଣି ଚର୍କିନେଲେ ଚୋଳି, ବେଣୁଧର ବୋଲେ ମୁଁ ଆସିଲି । ୪ ।
( କାହ୍ନୁ କହେ ରାଇ କହ୍ୱତେ ନଗର—ବୃନ୍ଦେ )



( ରାଗ—ପଞ୍ଚମ ବରାଡ଼ି । ତାଳ—ଝିପତା )

ଆହାରେ ମୀରଦକେଶୀ, ବଦନ୍ତ କୋକିଳଭାଷି,
କ ତନ୍ତ୍ର ଲଭିଲୁ ଏଥି ଆସି ।
କୁଞ୍ଜବନ ଯାକ ବୁଲି, ଅନେକ ମୁହିଁ ଖୋଜିଲି,
କାହିଁ ନ ପାଇଲି କଳା ଶଶୀ ଗୋ ।
କୁନ୍ଦ ଦଶନା । କହୁଥିଲେ ରାଣ ପକାଇଣ ।
ଏ ସ୍ଥାନେ ବସିଥିବ ବୋଲି ଘନଶ୍ୟାମ ଗୋ । ୧ ।
କେଣେ ଗଲେ ବୋଲି ମୁହିଁ, ଯାଉନ୍ତେ ଚନ୍ଦ୍ରା କୁଞ୍ଜେ ସେହି
ଖେଳ ହୋଇଛନ୍ତି ରସେ ମାତି ।
ଦେଖ ଅଇଲି ଲେଉଟି, ଆହା ମୋର ସରୁ କଟି,
ବୃଥା ହେଲା ତୋର ଏ ସୁପାତି ଗୋ ।
ଚନ୍ଦ୍ରବଦନା । ତେଣୁକୁ ମୁଁ ଦୋଷୀ ହେଲି ସିନା ।
ଏଡ଼େ ଅବିଶ୍ୱାସୀ ଅଟେ ସେ ଛଇଲା କହ୍ନା ଗୋ । ୨ ।
କାଳିଆ ଜାତି ଯେତେକ ନୁହନ୍ତି ଗୋ ଭଲ ଲୋକ,
ଦଗାଦେବା କଥାଟା ଜାଣନ୍ତି ।
ଏତେ ହଟହଟା ହେବା, ଜାଣିଥିଲି ସତେ କେବା,
ବଜ୍ରହୁଁ କଠିନ ଶ୍ୟାମ ଚିତ୍ତ ଗୋ ।
ମୀନନୟନା । ବନ ପଥେ ବସାଇ ରଜନୀ ।
କନ୍ଦାଇଲେ କେତେ ତୋତେ ଶଠ ନୀଳମଣି । ୩ ।
ସଖିର ଏ ବାଣୀ ଶୁଣି ଦୁଃଖେ ଶ୍ରୀ କଶୋରୀମଣି,
ଭାଷିଲେ ନୟନ ନୀର ଢାଳି ।
କଣ୍ଠ ଗଦଗଦ ସ୍ୱର, ଆହା କ କରମ ମୋର,
ହୃଦୟୁ ଯାଉଛି ଏବେ ଜଳି ଗୋ ।

ପ୍ରିୟସଖି ଗୋ ! ତୋର ଦୋଷ ନାହିଁ ତ ଏଥିରେ ।
ବେଣୁଧର ବୋଲେ ଏହା ଥିଲା କରମରେ ଗୋ । ୮ ।
( ଆହା ନାଥ ପ୍ରାଣନାଥ ମୋହନ ମୂରଲୀ ଧାର – ବୃତ୍ତେ)
( ଶ୍ରୀକୃଷ୍ଣ ଚନ୍ଦ୍ରାବଳୀ କୁଞ୍ଜରେ ଥିବା କଥା ଲଳିତା ରାଧାଙ୍କୁ କହିଲେ)

—o—

( ରାଗ—କଲଣା । ତାଳ—ପଢପଟ )
ଲଳିତା—କହେବ କେଶୋଗ୍ରୀ ଆଜି କରିଲ ଗୋ ଛଳନା ।
ଚନ୍ଦ୍ରାବଳୀ କୋଳେ ଛନ୍ତି ତୋ କାଳିଆସୁନା । ଘୋଷା ।
ନାନା କୁଞ୍ଜେ ଖୋଜି ଖୋଜି ନ ପାଇଲି,
ବକୁଳ କୁଞ୍ଜରେ ପ୍ରବେଶ ହୋଇଲି
ଦେଖିଲି ଫୁଲତଳପେ ଛନ୍ତି ନନ୍ଦକହ୍ନା । ୧ ।

ଶୈବ୍ୟା ପଦ୍ମା ବେନି ସଙ୍ଗିନୀ ତାହାର,
ତାଳୁଥିଲେ କୃଷ୍ଣ ଶୁବଳ ଚାମର,
(ତହିଁ) ନାନା ରହସ୍ୟ ଲାଗିଛି କ ଦେବି ତୁଳନା । ୨ ।
ଦେଖିଣ ଏ ସବୁ ନ ସହିଲା ଦେହ,
ବେଳକୁ ବେଳ ଗୋ ଉଠିଲା ମୋ କୋହ,
ଧୈର୍ଯ୍ୟଧରି ବସିରହି ଏତେ ରେ ନବୀନା । ୩ ।

ଗଭାରୁ ଆଣିଲି କେତକୀ ଦଳକୁ,
କାଳି କଲି ନେତ୍ର ଅଞ୍ଜନ ଜଳକୁ,
କରଜ ମୁନେ ଲେଖିଲି ଥାଅ ପିବ ଶଦ୍ଧା । ୪ ।
ଅନ୍ତରାଳେ ରହି ଗବାକ୍ଷ ମାର୍ଗରେ,
ସେ ପତ୍ର ପକାଇ ଆସିଛି ବେଗରେ
ଶଠ ଲମ୍ପଟକୁ ଆଜି ପରତେ ଯାଅନା । ୫ ।
ଲଳିତାଙ୍କ ବାଣୀ ଶୁଣି ରାଧାରାଣୀ,
କ୍ରୋଧଭରେ ହେଲେ ଦୁର୍ଜ୍ଜୟ-ମାନିନୀ,
ଦେଖି ବେଣୁଧର ମନେ ଲଭୁଛି ଯାତନା । ୬ ।

( କାହାଙ୍କବେ ମର୍କି ଆଜ—ବୃତ୍ତେ )

( ରାଗ—କୁସୁମ କେଦାର । ତାଳ—ଖେମଟା । )
ହସି ପ୍ରେମେ ଭସି ରସିକ ରାଜ ଅଇଲେଣି ଗୋ ।
ଶଶୀବଦନୀ ପଦ୍ମେ ସ୍ନେହ ବନ୍ଧାଇଲେଣି ଗୋ । ଘୋଷା ।

ଝୁଲି ଝୁଲି ତ୍ରିଭଙ୍ଗେ ଝୁଲି ଆସନ୍ତି ରଙ୍ଗେ,
ମୃଦୁମନ୍ଦ ବାଣୀକି ବାଧେ କହିଲେଣି ଗୋ । ୧ ।
ପ୍ରାଣପ୍ରିୟ ତୁମ୍ଭର ଭକ୍ତ୍ୟ ପଣ୍ଡ ନକର,
ଶ୍ରୀଗ୍ରୀମୁଖରେ ପାଣିକି ଯୋଡ଼ ରହିଲେଣି ଗୋ ୨ ।
ରୋଷ ତେଜ ଏଣିକ ଗୁହାଁ ବେଣୁପାଣିଙ୍କି,
ଆହା ବନ୍ଧୁ କେତେ କଷଣ ସହିଲେଣି ଗୋ । ୩ ।
ବେଣୁଧର ବଦତି ଆଗୋ ରାଇ ଶ୍ରୀମତି,
ସନ୍ତାପ ଅନଳେ ହୃଦୟ ଦହିଲେଣି ଗୋ । ୪ ।
( ହସି ହସି ଦେଖ ସରଗଶଶୀ ଉଇଁଲେଣି—ପ୍ରଭ )

—※—

( ରାଗ ମଙ୍ଗୁଆ । ତାଳ—ଆଠତାଳ )
ପ୍ରାଣ ସଙ୍ଗିମାନେରେ ! ଗୁହାଁ ତୋର ନିକଟ ।
ଅଇଲେଣି ପୀତପଟ । ଘୋଷା ।

ନନ୍ଦା ଅଳକରେ ତଳି- ପଡ଼ିଛନ୍ତି ବନମାଳୀ,
ପିନ୍ଧିଛନ୍ତି ଦେଖ କେଉଁ ରମାର ପାଟ । ୧ ।
ଅଧରେ ଅଞ୍ଜନ ଦାଗ ଦିଶେ କେତେ ଚମତ୍କାର,
କା ପାଦ ଲାକ୍ଷା ଜର୍ଜ୍ଜର ଶିଖୀ ମୁକୁଟ । ୨ ।
ଠାବେ ଠାବେ ଚନ୍ଦ୍ର ଚିହ୍ନ ଶ୍ରୀଅଙ୍ଗ ଦିଶେ ମଳିନ,
ଭଲ ଦେଲେ ଦରଶନ ନାଗର ଭଟ । ୩ ।
କୁଞ୍ଜ ଦ୍ୱାରେ ଚଉରଙ୍ଗେ ପ୍ରବେଶୁ ସଖି ନକର,
ହସନ୍ତି କହ ଉତ୍ତର କର ପ୍ରକଟ । ୪ ।
କହେ ବେଣୁଧର ଦୀନ ରାଧାଙ୍କ ଦୁର୍ଜ୍ଜୟମାନ,
ମଲ୍ଲିନାଥ କୁଞ୍ଜେ ଫେର ହେ ଶଠ ଧୂର୍ତ୍ତ । ୫ ।
( ଶ୍ୟାମନାଗର ହେ ବାମ ନୟନ ଭୁଲ—ପ୍ରଭ )

( ରାଗ—ମଙ୍ଗଳ । ତାଳ—ଝିପଟ ଝୁଲ )

ଉକାଇତ ଚନ୍ଦ୍ରାମଣି ଆହେ ବେଣୁପାଣି
ଏତେ ବେଳକୁ କି ମନେ ପଡ଼ିଲା ହେ ଧନ !
ଆହେ ନୀଳମଣି ! ସଦା ମାନମୟୀ ଶ୍ରୀରାଧାରାଣୀ । ୧ ।
କାଲି ନିଶି କାହିଁଥିଲ କହ କଳା ସତ ।
ଶ୍ରୀଅଙ୍ଗ ତୁମ୍ଭର ଦିଶୁଛି ତ ବିପରୀତ ।
ଆହେ ନୀଳମଣି ! ଆଜି ମାନମୟୀ ଆମ୍ଭ ଧନୀ । ୨ ।
ଲୁଚାଇଲେ ଲୁଚିବ କି ତୁମ୍ଭ ବ୍ୟବହାର ।
ଚିହ୍ନାଇ ଦେଉଛି ଦନ୍ତକ୍ଷତ ନଖଗାର ।
ଆହେ ନୀଳମଣି ! ମାନିନୀ ଅଛନ୍ତି ଠାକୁରାଣୀ । ୩ ।
ଦୋଷୀ ବୋଲି ଯାହା ତୁମ୍ଭେ ପାରୁଛ ହେ ଜାଣି ।
ଯାଇଁ ରଙ୍କ ପାଦ ଦୁଇ ଧର ଏହିକ୍ଷଣି ।
ଆହେ ନୀଳମଣି ! ମାନ ଭକ୍ତ ବେଣୁଧର ଭଣି । ୪ ।
( ଜୟ ଶ୍ରୀ ଗୌରାଙ୍ଗ ବୋଲି କଣ୍ଠରେ କୀର୍ତ୍ତନ—ବୃନ୍ଦେ )

—o—

( ରାଗ—ତୋଡ଼ିପରଜ । ତାଳ—ଆଠତାଳି )

କାଳିଆକାହ୍ନୁ କମଳ ଆଖି ।
କା ପ୍ରୀତି ଅଠାରେ ଗଲ କି ଲାଖି ହେ । ଘୋଷା ।
ନିକୁଞ୍ଜ ବିହାର ମାଧବ ଶ୍ୟାମ ।
ଆମ୍ଭ ସଖିଠାରେ ହେଲ ଯା ବାମ ହେ । ୧ ।
ଏହିପରି କହେ ତୁମ୍ଭ ଘରଣୀ ।
ମଦନ ଜଳରେ ଦେଲ ଜଳତି ହେ । ୨ ।
ଥିଲା ଯଦି ଏତେ କୂଟ ଚତୁର ।
ଆଗୁଁ ନ କହିଲ କପଟୀ ସେ ଗିର ହେ । ୩ ।
ତୁମ୍ଭ ଭଳି ମୋହ କାଳଫଣୀକି ।
ଆଜ କେ ବିଶ୍ୱାସ ଯିବ ଏଣିକି ହେ । ।
ଫେରିଯାଅ ଏବେ କର୍ମ ଆଦର ।
ମୁଖ ନ ଚାହିଁବେ କୁଞ୍ଜ ଈଶ୍ୱରୀ ହେ । ୫ ।
ସ୍ତୁତି କଲେ କିଏ ଶୁଣିବ ଏଥି ।
* ନୃପ କୃପାମୟ ଦେବ ବଦତି ହେ । ୬ ।
( ସଜନୀ ଶ୍ୟାମ ଶ୍ରୀଅଙ୍ଗଠାଣି—ବୃନ୍ଦେ )

---

* ୰ ବୃହତ ଖେମଣ୍ଡି ଅଧୀଶ୍ୱରଙ୍କ ନାମରେ ଭଣିତା

## ଶ୍ରୀକୃଷ୍ଣଙ୍କ ପ୍ରତି ଦୂତୀ

( ରାଗ—କୀରବାଣୀ । ତାଳ—ଆଠତାଳୀ )

ଶ୍ୟାମ ହେ କାମମୋହନ । ବାମ ଭ୍ରୂମୂଠୀରେ ରଙ୍କ
ଯେତେ ବୁଝାଇ କହିଲି ନ ବୁଝିଲା ସେ ସୁମୁଖୀ । ଘୋଷା ।
ବୋଇଲି ତା କର ଧରି — ଶୁଣରେ ନବ କିଶୋରୀ
ତୋ ଲାଗି ମୁରଲୀଧାରୀ ସନ୍ତାପେ ହେଲେଣି ତନ୍ୱୀ । ୧ ।
ଶୁଣି ମୋ ବାଣୀ ଛଳନା — ଯେତେକଳା ଚଳି ହେଲା,
କଏ ବା କହିବ ତାହା ଏକା ମୋ ମନ ଜାଣଇ । ୨ ।
ଆଜ ନ କର ହେ ମାନେ — ଫଳ ପାଇଲି ସାକ୍ଷାତେ
ରାଧାର ଆନ ସଖୀଙ୍କି କର ଯାଇଁ ସମଜାଇ । ୩ ।
ଏମନ୍ତ ଦୂତୀ ବଚନ — ଶୁଣି ମଦନ ମୋହନ,
ଭ୍ରମବଶରେ ସଖୀଙ୍କୁ କହିଲେ ବିକଳ ହୋଇ । ୪ ।
ସେ ନଟବରଙ୍କୁ ଚିନ୍ତ — ବେଣୁଧର ହୀନ ମତି,
ବୋଲେ ବ୍ରଜଧାମେ କେତେ ଏ ପ୍ରାଣ ଦେବ ହଜାଇ । ୫ ।
( ଦେଖିଲେ ଦେଖିବି ପରି ଥରେ ରସିକରାଜଙ୍କୁ—ବୃନ୍ଦା )

—o—

## ସଖି ଉକ୍ତି

( ରାଗ—ମୋହନ । ତାଳ—ଝୁଲା )

ଜାହ କହ ହେ ଲମ୍ପଟ ଶଠନାଗର ।
କପଟିଆ ବେଣୁପାଣି ମୁରଲୀଧର । ଘୋଷା ।
କାଲି ନିଶି ନେଇ କାହିଁ — ନାମ ନିକୁଞ୍ଜେ ବସାଇ,
କେଉଁଠେ ଅବସ୍ଥାପି ହେଲ ହେ ଦଗାଦାର । ୧ ।
କରି ଅତ୍ୟନ୍ତ ଶରଧା — ସଙ୍କେତକୁ ଆସି ରାଧା,
କୁଞ୍ଜକୁ ମଣ୍ଡି ଜାଗିଲା ସବ ଜାଗର । ୨ ।
କଥାରେ ଭଣ୍ଡି କପଟି — କାଟିଦେଲ ତାର ଛଟି,
ଏ ଅବସ୍ଥାର କି ହେଲା ଭଲ ଭ୍ରମର । ୩ ।
କଲଲୁଁ ଉତ୍ତମ ପଣ — ଆହେ କୃଷ୍ଣ ନିଦାରୁଣ,
ଜରମ ଆଚର ଯାଉ ଥିଲ ଯା ପୁର । ୪ ।

କି ଦେବ କହିଲେ ଆଜ        ନୋହେ ଧୃତି ଶୋକ ବାହୁ,
କଷଣ ସହିଲ ଯେତେ ପ୍ରେମ ଅମ୍ବର । ୫ ।
ପଞ୍ଜ ଚରଣେ ତୁମ୍ଭର        କୋଟି କୋଟି ନମସ୍କାର,
କହେ ରସେ କବିଚନ୍ଦ୍ର ଏ ବେଣୁଧର । ୬ ।
( ଝୁଲି ଝୁଲି ଆସେ କାହ୍ନା ନଗ୍ନାବାମା—ବୃତ୍ତେ )

—o—

( ରାଗ—ସାବେରୀ । ତାଳ—ଆଠତାଳୀ )
ଆହେ କିଶୋରବର !
ଆଜ୍ଞା ନଶା କଞ୍ଜଳ କା ପୁର ହେ ! ଘୋଷା ।
ଦେଖତ କି ଶୋଭା, ଦିଶୁଅଛୁ ବନ୍ଧୁବସ୍ତନାଥ ଦୁଃଖସାର ହେ ।
ଲଲାଟ ଦେଶରେ କେତେ ମନୋହର ଲକ୍ଷାରସ ଜର ଜର ହେ । ୧ ।
ଏ କାଳିଆ ଦେହ ନଖ ଷତ ଶୋହେ ଅର୍ଦ୍ଧରକ୍ତ କଳାକର ହେ ।
ପୁଣି ଚଢ଼ ସଞ୍ଜା ବସିଛୁ ଅନେକ ନିଜ ବିଲୋକନ କର ହେ । ୨ ।
ଶ୍ରୁକ ପକ୍ଷୀ ଚମ୍ବୁ ବୃଷିବା ଅନ୍ନ ଦିଶୁଛି ତୁମ୍ଭ ଅଧର ହେ ।
ଗଣ୍ଡରେ ନୟନ ପ୍ରାନ୍ତରେ ଅଞ୍ଜନ ଗାଢ଼ମାନ କି ପ୍ରକାର ହେ । ୩ ।
ପାଦ୍ୱବ୍ରୁ ରାତ୍ରି ସେ ନବ ଯୁବତୀ କଞ୍ଚୁଳି କୁଞ୍ଚୁରୁ ତାର ହେ ।
କଣ୍ଠେଦେଲ ତାର ନିକୁଞ୍ଜବିହାରୀ ଭାବ ଜ୍ୱର ମନ ବାର ହେ । ୩ ।
ବଡ଼ିବାକୁ ମନ ଅପିଛୁ ମୋହନ ଜାଣିଲୁ ତୁମ୍ଭ ବଗ୍ଭର ହେ ।
ଶ୍ରୀକୃଷ୍ଣଙ୍କୁ ଏତେ ସଖୀ କହନ୍ତେ ରାଧା ପାଶେ ଗିରିଧର ହେ । ୫ ।
ଭଣିଲେ ବିନୟ କରି ଅତିଶୟ ଯୋଡ଼ି ଦୁଇ ହସ୍ତ କର ହେ ।
ସେହି ବେଣୁଧର ପାଦ ବେଣୁଧର କରୁଛି କୋଟି ଯୁହାର ହେ । ୬ ।
( ଆହେ ମୁରଲୀଧର, ସହି ସହିବକି ଅନାଦର—ବୃତ୍ତେ )

—o—

## ଶ୍ରୀକୃଷ୍ଣଙ୍କ ଆଗେ ଦୂତୀଉକ୍ତି

( ରାଗ—ଝିଞ୍ଝୋଟି । ତାଳ—ଏକତାଳୀ )
ଶ୍ୟାମ ସୁନ୍ଦର ! ଆସେ କଲ ଅବସ୍ଥର ହେ । ଘୋଷା ।
କେତେ ପରକାରେ ମୁହିଁ        ବୁଝାଉଥିଲି ବୋଲି କହି,
ତେଣୁ କଲ ଅଭିସାର ହେ । ୧ ।

ଏହି କୁଞ୍ଜ କାନନଟି          ମଣ୍ଡିଥିଲା ବସନ୍ତଋଦ୍ଧି,
ଦେଖା ହେବାକୁ ତୁମ୍ଭର ହେ । ୨ ।
ସେ ଭରସା ତାର ପୁଣି          ତୁଟାଇ ହେ ବେଣୁପାଣି
ମାଣିଲ ଆନ ସଙ୍ଗର ହେ । ୩ ।
ଜନ୍ମିହେ ସମା ରତନ          ଲଭିଲା କେତେ କଷଣ
ଏନେକ ଭଲ ବେଭାର ହେ । ୪ ।
କାହା ପାଦର ଅଳତା          ଖାଲଦେଶେ ଯେନ ଚିତା,
ପ୍ରଭାତେ ହେଲ ହାଜର ହେ । ୫ ।
ନଖ ଚିହ୍ନ ଅଙ୍ଗେ ବହି          କଥାରେ ଦେଲ ଭୁଲାଇ,
ବିଶ୍ୱାସ ତୁଟିଛି ତାର ହେ । ୬ ।
ଆଜ କି ବୁଝିବ ସେହି          ମନେ ପ୍ରତେ ଲାଗୁନାହିଁ
ଯୋଷା ଯେ ତୁମ୍ଭ ଉପର ହେ । ୭ ।
କଳା ଦ୍ରବ୍ୟମାନ ଯେତେ          ତେଜିଲଣି କୋପଚିତ୍ତ,
କହେ ଦୀନ ବେଣୁଧର ହେ । ୮ ।
( ପ୍ରାଣସଙ୍ଗିନୀ ! ଭଲ ଭୁଲିଲୁ ତା ପ୍ରୀତିରେ—ବୃତ୍ତ)

—୦—

( ରାଗ—ତୋଡ଼ି ପରଜ । ତାଳ—ଆଠତାଳି )
ତାର କି ଦୋଷ ଦେଖି ହେ ମୋହନ !
ଉଗାଳ ହସାଇ ଦେଲ କାହିଁକି ହେ । ଘୋଷା ।
କୁଳ ଲାଜ ଭୟ କରଣ ଦୂର ।
ଭଜିଲା ପଦ୍ମ ଚରଣ ତୁମ୍ଭର ହେ । ୧ ।
ଶ୍ୟାମ ଶ୍ୟାମ ବୋଲି ହନୁବରତେ ।
ଘାଣ ହେଉଥାଏ ପଦ୍ମ ତା ଚିତ୍ତେ ହେ । ୨ ।
ଦରଶନ ଆଶେ ମୁରଲୀଧାରୀ ।
ମାର ଛଳେ ପୂରୁ ଆସେ ବାହାର ହେ । ୩ ।
ଏବେ ସେ ଭାସୁଛି ଦୁଃଖ-ସରିତେ ।
ବେଣୁଧର ଜଣାଇବ ତା କେତେ ହେ । ୪ ।
( ଝଗଡ଼ ମାଣ ହେଲ ହେ ଶ୍ୟାମ—ବୃତ୍ତେ )

—❋—

(ରାଗ—ମଧୂଶାରଣ । ତାଳ—ଏକତାଳୀ )

କସ ହେବଟି ମୋହନ ! ନକୁଞ୍ଜେ ସେ ନ ହେ । ଘୋଷା ।

ସେ ନବ କିଶୋରୀମଣି          ପ୍ରୀତିକ ଭେଳ ଦେଲନି,
ମଳିନ କରାଇ ପୋଛି ରହିଛୁ ଶ୍ରୀମୁଖ ଶଶୀ । ୧ ।
ନଖେ ଚରଇ ଧରଣୀ          କମଳ ନୟନୁ ପାଣି,
ବନ ପତ୍ର-ପତ୍ର-ଶତି-ମିଶ ଶିରେ ପଡ଼େ ଖସି । ୨ ।
ତୁମ୍ଭପାଇଁ ଯେତେ ମୁହିଁ          କହିଲି ବୁଝିଲା ନାହିଁ,
ବେଶ ଭୂଷଣ ଅନେକ ବଷ ମଣେ ଘନକେଶୀ । ୩ ।
ସଖୀଙ୍କି କହଇ ମନା          ମୋତେ ସଙ୍ଗେ ଯମୁନା-
ନକୁଞ୍ଜେ ନ ନେବ ନ ରହିଁବ କଳାରୂପରାଶି । ୪ ।
ଏହିପରି ଦୂତୀ ଗିର          ଶୁଣି ସେ ମୁରଲୀଧର,
କରନ୍ତ ଯତ୍ନ ଉତ୍ତର ବେଣୁଧର ଗୀତେ ଭାଷି । ୫ ।
( ଶ୍ୟାମ ଏଣିକ କିଶୋରୀ ହେଲକ ଦୋଷୀ ହେ—ବୃତ୍ତେ )

—o—

( ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )

ମୋହନ ! ଗୁଡ଼ ସେ କିଶୋରୀ ଆଶା ।
କରିଦେଲ ଯାହା ଯାହା ବଂଶୀବାଦ୍ୟ,
ହେଇବ ସକଳ ଭାଷା ହେ । ଘୋଷା ।

ଯା ଲେଖା ଲଟରେ ଯମୁନାତଟରେ ନଟବର ଥାଅ ବସି ।
ତାକୁ ଏତେଦୂର କଲ ଯା ନାଗର ଚନ୍ଦ୍ରାବଳୀ କୁଞ୍ଜେ ରସି । ୧ ।
ଯାହା ଲଟ ଶାଢ଼ୀ ରଜକାରେ ନେଇ ଆପଣା ହୃଦରେ ଲଦ ।
ତା କୁଞ୍ଜଦୁଆର କଏ ମନାକଲା ଏକଥା ମନକୁ ଯଦୁ । ୨ ।
ଯାହା ନାମଧରି ବଜାଅ ବାଂଶରୀ ମଞ୍ଜୁ ମୃଦୁ ମୃଦୁ ସ୍ୱନ ।
ସେ ଏବେ ଏଣିକ ତା ପାଶୋରିଲାଣି ନମିଲେ ନ ଶୁଣେ କାନେ । ୩
ବେଣୁଧର ଭଣି ହେ ନାଗରମଣି ସବୁ ବୃଥା ହୋଇଲାଣି ।
ଯେତେ ଉପାୟ କଲେହେଁ ତଳେ ଅଜ ନ ବୁଝେ କିଶୋରୀମଣି । ୪
( ସଜନୀ ! ଗଲାଣି ମୁଁ ଲାଜେ ପତି—ବୃତ୍ତେ )

## ସଖୀ ଉକ୍ତି ଖଣ୍ଡିତା

( ରାଗ—ଝିଂଝୋଟ । ତାଳ—ଏକତାଳୀ )

କୁଟିଳ ଶ୍ୟାମ ! ତୁଟିଲଣି ବଡ଼ ଭରସା । ଘୋଷା ।
ହୁଟିଲ ନାଗର ହର ଯଟି ରହିଲ କା ପୁରୀ,
କଶୋଗ୍ରକ ଦେଇ ଏ ଦଶା । ୧ ।
କପଟିଆ ପୀତପଟ ଶଠ ଲମ୍ପଟ ମୁକୁଟ !
କରାଇଲ ଭଗାରି ହସା । ୨ ।
କାଲି ରଜନୀ ଶ୍ରୀମତୀ ଭଜି ଭଜି ତବ ପ୍ରୀତି,
କରନାହିଁ ନୟନ ଜାଷ । ୩ ।
ବେଣୁଧର କହ ଶଶୀ ବୋଲେ ହେ ମୋହନ ବଂଶୀ
ପାଣି ଯାଅ ନକର ଅଶା । ୪ ।
( ନାହିଁ ମୋ ମତି ତୋ ବନା—ବୁଲି )

—*—

( ରାଗ—ତୋଡ଼ିଚନ୍ଦ୍ରକ । ତାଳ—ଆଠତାଳୀ )

ବ୍ରଜସୁନ୍ଦର ହେ ! ଯେତେ ବୃଥେ ଚଳା ମୁହିଁ ।
ସେ କଶୋଗ୍ରମଣି, ତବ ନାମ ଶୁଣି, କଷ୍ଟେ ତ ବୁଝିଲ ନାହିଁ । ଘୋଷା ।
ହେ ଶ୍ୟାମନାଗର ନେତେ ବାରମ୍ବାର କହିଲି ତା କର ଧରି ।
ମୋ ହସ୍ତକୁ ଫିଙ୍ଗି ଦେଲ ସେ ଧେମାଣୀ ନୟନୁ ଝରଇ ବାରି । ୧ ।
କଳାଦ୍ରବ୍ୟରୁ ତା ତୃଷ୍ଣା ମୁଞ୍ଚିଲଣି ନ ପିନ୍ଧେ କଳା ଅମ୍ବର ।
କଳା କୁଙ୍କୁମ ଭୂଷଣ ନ ହୁଅଇ ନ ଗୁନ୍ଥେ କଳା ଅମ୍ବର । ୨ ।
କଳା ଭୃଙ୍ଗ ଦେଖି ଶୂନ୍ୟ ଚନ୍ଦ୍ରମୁଖୀ କରଇ କେତେ ଧିକ୍କାର ।
କଳାପିକ ବାଣୀ କର୍ଣ୍ଣପଥେ ଶୁଣି ଅଶ୍ରୁପାଏ ତା ଶରୀର । ୩ ।
ନ ରଚେ ଅଞ୍ଜନ ଖଞ୍ଜନ ନୟନେ ନ ଦେନେ କସ୍ତୁରୀବନ୍ଦୁ ।
କଳା ଗୁମ୍ଫବନ୍ଦ ମୟୂର ଚନ୍ଦ୍ରିକା ଅଳକ ନ ହଇ ବନ୍ଦୁ ।
ଏହିପରି ଯେତେ କଳିଆ ପଦାର୍ଥ ପାଦରୁ କଲାଣି ଦୂର ।
ଭାଷନ୍ତି ଶ୍ରୀକୃଷ୍ଣ ଚନ୍ଦ୍ର, ନର ଇନ୍ଦ୍ର, ସମର ପୁର ଈଶ୍ୱର । ୪ ।
( ଉକନାହିଁ କ ନେହ ପର ଚତୁରୀ—ବୃତ୍ତ )

—*—

( ରାଗ—ଲଳିତ କେଦାର । ତାଳ—ଝୁଲା । )

ଶିଖିଚନ୍ଦ୍ର କିରୀଟଧାରୀ !
କି କହିଲ ସତେ କହ ବଗ୍ଧର । ଘୋଷା ।
ଆହେ ମୀତ କାନନ ବୁଲି ପଞ୍ଚବୃନ୍ଦା ମାନସ ଭୁଲି,
ତୁମ୍ଭଲାଗି ମୋର ସଙ୍ଗିମାଟି ଭଲି ।
ଜାତିର ବ୍ରତରେ ହେଲି ସଙ୍ଗାଟ । ୧ ।
ଘାଟ ବଟ ବାଳୁଙ୍ଗରଜଗା ବାର ଘର ଲବଣୀ ମଗା
କହ ତୁଁ କା ଜାଣିବ ପୀରତି ମର୍ଯ୍ୟାଦା ;
ଜାଣୁସିନା ଏକା ଭ୍ରୂଲତାଠାର । ୨ ।
ଗଣ୍ଡଚନ୍ଦ୍ର ଜିଣି ଆଣି ମଦ୍ଦପାଣି,
ସଂଯୋଗ କଲଣି ରାଜକୁମାରୀ । ୩ ।
କବିଚନ୍ଦ୍ର କହଇ ଗୀତେ ତାକୁ କେ ବୁଝାଇବ କେତେ,
ବେଳୁଁ ବେଳୁଁ ମାନ ବଢ଼ଇ ଦ୍ୱିଗୁଣ,
ପ୍ରବୋଧି ସଖିଏ ଗଲେଣି ହାରି । ୪ ।
( ନନ୍ଦସୁତ ମୋର ଜୀବନ—ପ୍ରଭୃତି )

— ❁ —

( ରାଗ—ମଙ୍ଗଳ କେଦାର । ତାଳ—ଖେମଟା )

ମୋହନ ହେ ! ନ ଥିଲି ଜାଣି ।
ଗଳାରେ ଚଢ଼ାଇ ମୂଳଦେବ ବୋଲି ହାଣି । ଘୋଷ ।
ପାଶକୁ ଆସନ୍ତେ ଭାଷ କି ମଧୁର ବାଣୀ ।
ଅନ୍ତର ହୋଇଲେ ହୃଦେ ଛୁରୀମାର ଶାଣି । ୧ ।
(ତୁମ୍ଭ) ମୁଖେ ସୁଧା ପେଟଟିରେ ହଳାହଳ ପାଣି ।
କପଟି ଲମ୍ପଟିବର ନିଭଙ୍ଗିମା ଠାଣି । ୨ ।
ଝାଳିଥିଲିଁ ମନ ସୁନା ରସାଣରେ ସାଣି ।
କି ନ କଲ ସତେ ବନ୍ଧୁ କୁଞ୍ଜବନେ ଆଣି । ୩ ।
କେମନ୍ତ ରସିକା ଅଟେ ସେ ଚନ୍ଦ୍ରସିହାଣୀ ।
ଗୁଡ଼ହେଲ ପ୍ରାଣେ କମ୍ପା ନ ରଖିଲ ଟାଣି । ୪ ।
ତୁମ୍ଭ ପ୍ରୀତିରୀତି ସବୁ ଜଣାକ ଗଲାଣି ।
ବୋଲେ ବେଣୁଧର ମାନମୟୀ ରାଧାରାଣୀ । ୫ ।
( ଝୁଲଅ ଗୋ ଝୁଲଣ ଦୋଳି—ବୃନ୍ଦେ )

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ )

ଗୁଡ଼ ଦଣ୍ଡ ମନୁ ଚନ୍ଦ୍ରା- ହେ ମୋହନ
ଗୁଡ଼ଦଣ୍ଡ ମନୁ ଚନ୍ଦ୍ରା
ଆହା ଧନମାଳ ଶ୍ରୀଖଣ୍ଡ ମଣ୍ଡଳ
ଚାଇଁଲେଣି କେତେ ବ୍ୟଥା । ୧ ।
ଚଞ୍ଚଳ ବଳୟ କର କଳା କାହ୍ନୁ
ଚଞ୍ଚଳ ବଳୟ କର ।
ଅଞ୍ଚଳରେ ଲୁଚ ପୋଛୁ ପୋଛୁ ଯାଅ,
ଯାହା ରସେ ଜର ଜର ।  ।
କହିବ ହେଲେ ତା ଆଗେ ହେ ମୋହନ,
କହିବ ହେଲେ ତା ଆଗେ ।
କରୁଣା ବନ୍ଧୁ ସେ ଅରୁଣ ଅଧରେ,
ଯୌବନ ଅଛି ସଙ୍ଗେ । ୩ ।
ଚନ୍ଦ୍ର କହିଲେ ମୋ— ହନ କାଢ଼ କାଢ଼,
ଚନ୍ଦ୍ର କହିଲେ ମୋହନ ।
କବିଚନ୍ଦ୍ର ବେଣୁ— ଧର କହେ ଦୁଃଖେ,
ଛନ୍ଦା ପଦେ ବର ଥାନ । ୪ ।

( ଏ ନାମ ବୋଇଲୁ ଲୁହ ଗୋ ଲଳିତେ—ବୃନ୍ଦା )

—❀—

( ରାଗ—ଖଣ୍ଡବାଣୀ । ତାଳ—ଝୁଲ ପହପଟ )

ଯାଅ କେଶବ ଯାଅ ମାଧବ ଯାଅ ମୋହନ ଯାଅ ହେ ।
ଆମ୍ଭ ବିମୋହନ ମୁଖ ନ ଚାହିଁବେ ଯାଅ ହେ । ପଦ ।
ଅସି ପ୍ରଭାତରେ ନଖଚନ୍ଦ୍ର ଦେଖାଉଛ ।
ଲାଜ ନାହିଁ କି ମୁଖେ ଶ୍ୟାମବନ୍ଧୁ ଯାଅ । ୧ ।
ଯାହା ସଙ୍ଗେ ସଙ୍ଗେ କାଲ ନିଶି ମାଣ୍ଡିଥିଲ ।
ତାହା ପାଶକୁ ଏବେ ଫେରି ଯାଅ ହେ । ୨ ।
ସେ ଯେ ରସବନ୍ତୀ କେତେ ରସେ ରସାଇଲା ।
ଆମ୍ଭ ସଜନୀ ତା ନ ଜାଣେ ଯାଅ ହେ । ୩ ।
ତୁମ୍ଭ ପ୍ରୀତି ସତ ଆଜଠାରୁ ଜଣାଗଲା ।
କହଇ କବିଚନ୍ଦ୍ର ବେଣୁଧର ଯାଅ ହେ ।

( ହରି ସଙ୍କୀର୍ତ୍ତନେ ଆସ ଭାଇମାନେ—ବୃନ୍ଦା )

—❀—

( ରାଗ—ବସନ୍ତ । ତାଳ—ଖେମଟା )
ରାଧେ କାହିଁକି ଗୋ ମାନ କରୁ ବୃଥା ।
ପରାଣ ନାଥଙ୍କୁ ଥରେ ହସି କହ କଥା । ପଦ ।
ଏତେ ରୂଷାରୁଷରୁ କି ମିଳିବ ସଜନି !
ଭ୍ରମରକୁ ଦେଖି ମାନ କଲେ କି ନଳିନୀ । ୧ ।
କୁଟଜ ଫୁଲରେ ଭ୍ରମେ ଭୃଙ୍ଗ ପଡ଼େ ବସି ।
ତେବେତ ଆଦରି ନିଏ ପଦ୍ମିନୀ ପ୍ରେୟସୀ । ୨ ।
ଯେତେ ହେଲେ ଯେ ଯାହାର ସେ ତାହାର ସିନା ।
ଅଳପ କଥାରେ ଚିହ୍ନା ନ ପଡ଼େ ନଖାନା । ୩ ।
ଚନ୍ଦ୍ରାବଳୀ କୁଞ୍ଜରୁ ମୋହନ ଫେରି ଏବେ ।
ତୋ କୁଞ୍ଜ ଦୁଆରେ ଉଭା ହୁହଁ କନା ଲବେ । ୪ ।
ଦୀନ ବେଣୁଧର ବୋଲେ ବିରାଧିନୀ ନୁହଁ ।
ସଖୀ ହୁଳହୁଳୀ ଦେବେ ଆଉ ନେବେ ରୁହଁ । ୫ ।
( କଞ୍ଜ ନୟନା ରେ ! ଆସ କୁଞ୍ଜବନେ — ବୃନ୍ଦେ )

— ୦ —

( ରାଗ—ଚୋଡ଼ ପରଜ । ତାଳ—ଆଠତାଳୀ )
କଞ୍ଜାନନା କହ ଏ କି ବୃଥାମଣା ଗୋ ।
କରନ୍ତୁ ଗୁମାନ ପ୍ରାଣବନ୍ଧୁ ଠାରେ କି ଏକ ବଡ଼ିମ ଲକ୍ଷଣା ଗୋ । ପଦ ।
କଳଧଉତ ବରନା ପ୍ରେମମୟୀ ବଣା କୁରଙ୍ଗୀ ଈକ୍ଷଣା ଗୋ ।
କପାଳରେ କର ମାରି ଥରୁ ଥରୁ ଲଭୁ ଦାରୁଣ ଯାତନା ଗୋ । ୧ ।
କରୁଣା ହୃଦରେ ଶରଣାଗତର ପରି ଶ୍ୟାମଚନ୍ଦ୍ର ଅନା ଗୋ ।
କମଠ ପୃଷ୍ଠରୁ ଟାଣ ଗୁଣ କରୁ ମନେ ଏ କି କଳପନା ଗୋ । ୨ ।
କର କଲଉନା କର ବାରେ ଯେନା ଗୋବିନ୍ଦ ମନ ମୋହନା ଗୋ ।
କଲବଲ କେତେ ହୁଏ ତୋ ନିମନ୍ତେ ଚକ୍ରକଣ୍ଠ କାଳିଆ ସୁନା ଗୋ । ୩ ।
କରନ୍ତୁ ଦର୍ପିଣୀ ଆମ୍ଭେ ସଖୀ ଶ୍ରେଣୀ ନ ହୁଅ ଶ୍ୟାମେ ବିମନା ଗୋ ।
କବିଚନ୍ଦ୍ର ବେଣୁଧର କହେ ରାଧେ କୃପା କଟାକ୍ଷରେ ଅନା ଗୋ । ୪ ।
( ପ୍ରିୟ ସଙ୍ଗ ଯାହା ଇଚ୍ଛା ତାହା ହେଉ ଗୋ — ବୃନ୍ଦେ )

— ❀❀ —

( ରାଗ—ଦକ୍ଷିଣୀ ସାରଙ୍ଗ । ତାଳ—ଆଠତାଳୀ)

ରାଧେ ଏକ ରାତି ମୋହନେ ଗୁମାନ, ଗୋ ଚନ୍ଦ୍ରାନନ । ଘୋଷା ।
ଯା ଲାଗି କୁଳରୁ ହୋଇଲୁ ବାହାର ବୋଲୁଥାଅ ପରା ଶ୍ୟାମ ହୃଦ ହାର
ଏବେ କେଉଁ ଦୋଷ ଦେଖିଣ ତାହାର
ରୁଷିଛୁ ରୁଷିମୋହନ ଗୋ । ୧ ।
ଯାର ଦେଖା ଆଶେ ମାର ଆଣି ଯାଉ, କୁଞ୍ଜେ ୨ ବୁଲି ଫୁଲ ତୋଳୁଥାଉ
ତାରେ କେତେ ଆଜ ଏ ନିର୍ଦ୍ଦୟ ହେଉ
କହ ନରେନ୍ଦ୍ର ନନ୍ଦନ ଗୋ । ୨ ।
ଯା ଶ୍ରୀଅଙ୍ଗ କାନ୍ତି ବାସ ପିନ୍ଧୁଥାଉ ନୀଳେନ୍ଦ୍ରମଣି ହାର ଗଳେ ଲମ୍ବାଉ
କଳା କୁସୁମରେ ବେଧା ବନାଉ
ଏବେ ତା ମୂର୍ତ୍ତି କି ଘେନ ଗୋ । ୩ ।
ଭାଷେ ବେଣୁଧର କର ନଳାକର ବଂଶୀପାଣି ଲାଗି ଧରୁଛୁ ତୋ କର
ଆସ ଆସ ରାଧେ କୁଞ୍ଜକୁ ସତ୍ୱର
ଘେନ ମୋହର ଦର୍ପମ ଗୋ । ୪ ।
( ବଂଶୀଧାରୀ ! ସଞ୍ଜିବନ ଶ୍ରାବଣେ ଝଙ୍କାରା—ବୁଲେଇ )

—✿—

( ରାଗ—ଚକ୍ରକେଦାର । ତାଳ—ରୂପକ )

ରହୁ କି ଚାଃବୁ ଧନ ! ହୋଇ ଗୁମାନୀ ?
କହିଲେ ମୋହନେ ରୋଷ କାହାକୁ ହାନି ? । ଘୋଷା ।
ଧରନା ମନେ ଏ ଆଶା କଷ୍ଟ ତୋ ହେବ ଗରସ୍ତ,
କରନା ଏ ଅବସ୍ଥାର ଗ୍ଲାନି ନନ୍ଦମ । ୧ ।
ସେ ତୋର ଭୁ ତା'ର ସିନା କଣ୍ଟକ ରଙ୍ଗ ମୀନା,
କେ ତୋତେ ବୁଝାଇବ କି ସୁଜାଣୁ ମଣି । ୨ ।
ସହୁଛୁ ତ କେତେଥର ଦୋଷ ପରଶେନାଟର,
କହିଛୁ ପରା ମୋତେ ତା ପ୍ରେମ କାହାଣୀ । ୩ ।
ଭାଷେ ବେଣୁଧର ଆହା ଅପେ କି ଚତୁର ଏହା,
ଯା ସେ ହରିଙ୍କି ଗାଣେରୁ ଗଜଗମନୀ ।  ।
( କେଣେ ଗୁଞ୍ଜରିଲେ ସେ ମୋ କାଳଆସୁନା—ବୁଲେଇ )

—o—

( ରାଗ—ତୋଡ଼ିପରଜ । ତାଳ—ଏକତାଳୀ )

କିଏ ଦେଲା ମନ୍ଦ- ବୁଦ୍ଧି ରେ ରଙ୍ଗିନୀ !
କିଏ ଦେଲା ମନ୍ଦ ବୁଦ୍ଧି ।
ତାହିଁ ଜାଣି ରାଧେ ପାଣିକି ଫିଙ୍ଗିଲୁ
ଶ୍ରୀକର ଅମୂଲ୍ୟ-ନିଧି । ପଦ ।
ବୋଲଉଥିଲୁ ତୁ ପର ଶ୍ୟାମ ବନ୍ଧୁ
ପ୍ରୀତି କରୁଣା ବାରିଧି ।
ତାହା ତୁ ପାସୋରି ଦେଲୁ ଯା କିଶୋରୀ
କାହୁଁ ଶିଖିଲୁ ଏ ସିଦ୍ଧି । ୧ ।
ସେ ମୁରଲୀ ଫୁଙ୍କି ପ୍ରୀତିକି ଜାଗ୍ରତା
କରିଥିଲୁ କେଉଁ ବିଧି ।
କାହାର କୁଶିକ୍ଷା ପାଇ କୁଟିଳାକ୍ଷୀ
ଶ୍ୟାମେ ହୋଇଲୁ ବିରୋଧି । ୨ ।
ଏ ଗୁମାନ ମନୁ ତେଜ ବୃଷଭାନୁ—
ସୁତା ନୁହ ଅପରାଧୀ ।
ବୋଲେ ବେଣୁଧର ପ୍ରୀତି ସମ୍ପତ୍ତିକି
ତା ଠାରେ ଥାଅ ସମାଧି । ୩ ।

( ଗଚ୍ଛିକ ମନ୍ତ୍ରୀଙ୍କୁ ନେତ୍ରରେ ମାରବା—ବୃନ୍ଦେ )

—*—

( ରାଗ—ତୋଡ଼ିପରଜ । ତାଳ ଝୁଲା )

ପର କି ଆପଣା ହେବ ଲୋ ମିତ !
ମରମ ଭିତର ଯାହାକୁ ଗୋଚର
ସେ କାହିଁ ପାସୋରି ହେବ ଲୋ । ଘୋଷା ।
ସରମରେ ସିନା କହୁନାହୁଁ କିଛି ଧରାଧରୀଙ୍କର କଥା ।
ପରମ କରୁଣାମୟୀ ବନୋଦମା ଲାଗୁ ନ ଥିବ କି ବ୍ୟଥା ଲୋ ।୧।
ଅରଜିଲା ଧନ ପର ସେ ମୋହନ ସରଦ-ଚନ୍ଦ୍ରବଦନା ।
ନ ରହୁ ବୃଥାରେ ସଖୀଙ୍କ କଥାରେ ଭୁଲାକୁ ହୋଇ ଉମନା ଲୋ ।୨।
ତର ସହେ ନାହିଁ ଯିବାକୁ ଗାଢ଼ଧାଇ ନନ୍ଦନନ୍ଦନ ପାଠକୁ ।
ବରଜ ଯୁବରାମଣି କି ମନେ ତୁ ବରଜୁ ମାଳ ପାଠକୁ ଲୋ । ୩ ।

ଦରଜ ଲୁଚେ କି ମରକତପୁନା କୋମଳ ହୃଦକୁ ତୋର ।
ମରକତ ମାଳ କୁନ୍ତଳା ଉଗ୍ରର ବିଆରିବା କଥା ମୋର ଲୋ । ୪ ।
ଦରଶନ ଆଣ ଯାର ମାପପାଶେ ନତ ଉନ୍ନ ଥକା ହୋଇ ।
କରକଦଶନା ଏବେ ପୁଣି ତାହା ଆନ କଲୁ ନ ଶ ;ତାଇ ଲୋ । ୫ ।
ବର ମାଗିଥିଲୁ ଚଣ୍ଡୀ ଗୋପଶ୍ବରେ ଶ୍ୟାମ ସାମନ୍ତ ଦେବାକୁ ।
ସନଗର ଗ୍ରନ୍ଥ ହାତେ ଧର କେତେ ମନକଳେ ଫିଙ୍ଗିବାକୁ ଲୋ । ୬ ।
ଘରବର ଦୂର କରି ଯାହା ଭାବେ ହୋଇଥିଲୁଟି ଅଧୀନା ।
ଧର ତାଙ୍କୁ ତୋଳ ପ୍ରୀତି ରତ୍ନମାଳୀ ବେଣୁଧର କହେ କନା ଲୋ ।୭।

( କହିଲେ ବହିବୁ ଦୋଷ ରେ ସଖି—ବୃତ୍ତେ )

—୦—

( ରାଗ—ସାବେରୀ । ତାଳ—ଆଠତାଳୀ )

ଘନକେଶୀ ରେ !

ବନମାଳୀଙ୍କି କାହିଁକି ବସିଅଛୁ ରୁଷି ? । ଘୋଷା ।

ଧନମଣି ହେଲେ କି ସୁନ୍ଦର, ବନଧାଇ ନେଇ ତାଳବାର,
ଜନ ରଞ୍ଜନ ମୁରଲୀଧର,
ଅନବରତେ ତୋ ଗୁଣ ହେଉଛନ୍ତି ଘୋଷି । ୧ ।

ନବ ତମାଳ ପଲ୍ଲବ ଶେଯେ, ମାପଲୁଞ୍ଜି ଗଡ଼ୁଛନ୍ତି ସେ ଯେ,
ଭାବଦନେ ହଥା ଭାବେ ନିଜ
ମନ୍ତ୍ର ଆନ କଥା ମନୁ ତେଜ ପିକଭାଷି । ୨ ।

ପର ନ କର ଲୋ ତାଙ୍କୁ ଗୋସାଇଁ, ଧର ଧରନ୍ତି ଯିବେ ଗୋ ସରି,
ମରକତ କାନ୍ତି ହରଣୀଷା,
ହୋଇଲେଣି ପରା ଯେତେ ପ୍ରତିପଦର ଶଶୀ । ୩ ।

ଆସ ଆସ ମୋର ସଙ୍ଗେ ସଖୀ, ରାସରହାଶଙ୍କ ଅଙ୍କେ ମୁହିଁ
ହାସ ରସରେ ଦେବି ମିଳାଇ,
ବାସ ପ୍ରସାର ସଞ୍ଚାର ବେଣୁଧର ଭାଷି । ୪ ।

(ଭଚକ୍ଷଣା ରେ ! ବନା ତୋ ପ୍ରୀତି ବୃତ୍ତେ )

—୦—

( ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )

କାହା ପାଇଁ ମାନ କରୁ ଥାଉ ରାଧେ
ସେ ମୋହନ-ବଂଶୀଧାରୀ ଠାରେ ।
ବୃଥା ଏ କଷଣ ସହୁଛୁ ମୋ ଧନ
ପଡ଼ି ତୁ ସନ୍ତାପେ ସଣତରେ । ଘୋଷା ।
ଯେତେ ହେଲେ ପରା ସେ ତୋର ତୁ ତାର,
ଦୂର କଲେ କିକ ହୋଇବେ ଅନ୍ତର,
ଦୁହେଁ ଦୁହିଁଙ୍କର ପୀରତି ମନ୍ତର
କେ ନ ଜାଣେ ସଖି କହ ବାରେ । ୧ ।
ଯାହା ଦରଶନେ ମନ ଛନ୍ଦି ଛନ୍ଦେ,
ଫୁଲ ତୋଳି ଯାଉ ନିକୁଞ୍ଜ କାନନେ,
ସେ ଏବେ ତୋ ବିନେ ସନ୍ତପ୍ତ ମଦନେ
ଗଡ଼ି ଗଡ଼ି ଦୁଃଖେ ଧରାପରେ । ୨ ।
କ୍ଷମାନିଧାନ ଗୋ ଜେମାମଣି ହେନ,
ଚପଳକାନ୍ତିଆ ଦୋଷ ତୁ ନ ଘେନ,
କହୁଛନ୍ତି ମୋତେ କେତେ ଦେଇ ଆଣ
ବୁଲି ବୁଲି କୁଞ୍ଜ ଅଭିସାରେ । ୩ ।
ସୁକୁମାର ଅତି ସେ ଶ୍ୟାମ ମୂରତି,
ପାଇଲେଣି ଯେତେ କଷ୍ଟ ଗୋ ଶ୍ରୀମତୀ,
କି କହିବି ତାହା ଜାଣ ମାନେ ଆହା,
ବେଣୁଧର ଏଣୁ କର ଧରେ । ୪ ।
( ମରମର ଦୁଃଖ କିଏ ସେ ଜାଣିବ—ବୁଝିବ )

—୦—

( ରାଗ—ପୁନ୍ନାଗ । ତାଳ—ଆଠତାଳୀ )

ସେ କାମମୋହନ— ଠାରେ କରି ମାନ
ସତେ ପ୍ରିୟସଖି ରହିବୁ କି ?
ମନକୁ ମୋହନ ଅସୁନାହିଁ ତୋର
ଏ ବଳର ଦୁଃଖ ସହିବୁ କି । ଘୋଷା ।
ଧେନୁ ସଙ୍ଗେ ବେଣୁ ବାଇ ବୃନ୍ଦାବନୁ,
ବାହୁଡ଼ିବା କାଳେ ସେ କାଳିଆ ତନୁ
ନାଇ ହାର ଛବି ପାଶୋରିଲ ମନୁ
ଏ ଗୁମାନ ଧରି ରହିବୁ କି । ୧ ।

—✽—

ଜନେ ଯା ଶୋଷ୍ପରେ ହୋଇଥିଲୁ ଜଳ
ନେତ୍ରେ ନ ଗୁହିଁବୁ ସେ ମୁରଛଟିକ ।
ତୋ ହୃଦ ନୋହିବ          ଜଟୋ ଟିକ ଟିକ,
ତୃଷା ଭୂଷା ହୋଇ ରହିବୁ କ ? । ୨ ।
ଶ୍ରୀଖଣ୍ଡ ମଣ୍ଡନ ଅନାଉଣି ଖଣ୍ଡ,
ଦଣ୍ଡ ଦଣ୍ଡକରେ ନ ଦେକ କ ଦଣ୍ଡ ।
ଖଣ୍ଡ ପଣାସାର          ଜଚନା ତୋ ଚଣ୍ଡ
ମଣ୍ଡା ପାଣିଛଡ଼ା ନୋହିବୁ କ । ୩ ।
ଝନେତ ଅବଶ୍ୟ ସେହ୍ନ ଶ୍ୟାମ ସ୍ନେହ,
ହୃଦେ ଘାର ନେହୁ ଝଁରାଇବ ଲୁଲୁ ।
ହୋଇଲେ ଅସହ୍ୟ          ତୋର ଦେହ ଦାହ
ବେଣୁଧରକୁ ନ କହିବୁ କ । ୪ ।
( ଜାଣିଛୁ ମୁଁ ଏତେ ମାନ ଗୋ ଲଳତେ—ବୃନ୍ଦେ )

—*—

( ରାଗିଣୀ—ମୋହନା—ତାଳ—ଝୁଲା )
ହଂସଗତି, ନେତମୋହନ ପ୍ରୀତିକ ପାଶୋର ପାରିବୁ କ ?
ପାସୋର ପାରିବୁକ ? ସତେ ମୁ ଚୁଛୁ ପାରିବୁକ ? ଦୋଷା ।
ଙ୍କ ବନ୍ଧ ଭଡ଼ା          କରନ୍ତେ ଜଜୁଡ଼ା
ନାହିଁ ନାହିଁ ବୋଲି ଭଷିବା ଭଙ୍ଗିକ (ପାଷୋର ପାରିବୁକ) । ୧ ।
ଜରେ ନଖଷତ          ଗଣ୍ଡେରଦାଘାତ—
ସମସ୍ତରେ ଛବି ହସିବା ଭଙ୍ଗିକ (ପାସୋର ପାରିବୁ କ ? ) । ୨ ।
ବପଖାତ ରସ          ଶୋଷ ଝିନବାସ,—
ପାଲଟି ପଇନ ଭଷିବା (ପାସୋର ପାରିବୁ କ ? ) । ୩ ।
ଭଷେ ବେଣୁଧର,          କର ନଣାକର,
ଝୀଡ଼ା କାଳ ବ୍ରୀଡ଼ା ଲଭିବା ଭଙ୍ଗିକ (ପାଶୋର ପାରିବୁକ ? । ୪ ।
( ଜଦ ତୋ ଲଳଲେ ! ଏ ଭଜମ ସତେ—ବୃନ୍ଦେ )

—o—

( ରାଗ—କଳସା । ତାଳ—ଖେମଟା । )
ଝୁରଇବୁ ଲୋ ବନମାଳୀକ ।
ଝଟ୍ ଜନକ ବଚନା ନୃପ ଏ ଭଳିକ । ଘୋଷା ।
ଝାଡ଼ ବନୋଦ୍ଭବ୍ଯା ତୋର ନେତ୍ର ସଙ୍ଗୀଳକ ।
ଝାଳ ପୋଛୁ କୋଳ ଯା ଦେଇଲୁ କ ଭଳିକ ? । ୧ ।
ଝୁମୁରୁ ଗତ ମଞ୍ଜୁଳା ତୋ ପାଦ ତଳିକ ।
ଝଲଆଚୂଳ ମଣ୍ଡିଲେ କରତ ଅଳକ । ୨ ।
ଝଗଡ଼ା ସ୍ରୀତ ଧଇଲୁ ଶରଧା ଝାଳକ ।
ଝଟେ ତୋଳି ନ ଧଇଲୁ ପଣିଲୁ ଗାଳକ । ୩ ।
ଝୁଙ୍କ ଗୁଡ଼ ଏ ରୁଷାରୁ ଉଜାଇ ଆଳୀଙ୍କି ।
ଝାଉଁମାନେ ବେଣୁଧର ହୃଦପୁ ସ୍ମାଳୀକ । ୪ ।
( କାର୍ତ୍ତିକ ନେଗୀ, ମୋଡ଼ ନାମଠା—ବୃନ୍ଦ )

—❀—

( ରାଗ—ଇସନେକ । ତାଳ—ଆଠତାଳ )
ଶ୍ୟାମଠାରୁ ମାନ ଚେଢ଼ ଆଗୋ ଧୀର । 
ମଧୁରାଧର ଗୋକୁଳ—ନାରୀ—ହୀର । ୧ ।
ଠବନାର୍ଦ୍ଧି ମୋହନର ନେତ୍ର ବନା ।
ଲୁଷିନେକ ତଳବ ରେ ସ୍ନେହାଧୀନା । ୨ ।
ମାଳକର ଭଜ ଥାଇ ଯାହା ନାମ ।
ଦପଡ଼େକ କ ତୋ ମନେ ଧ୍ରଣ ଯାମ । ୩ ।
ଛେଡ଼ି ଦଣ୍ଡ ସଖୀଙ୍କ ବୋଧ ବାଣୀ ।
ଜଗନ୍ମୋହନ ଆଗୋ କୁଞ୍ଜରାଣୀ । ୪ ।
ଆସ ଆସ ରାଧେଶୁଖ ଅଭିସାରେ ।
ଗୋବିନ୍ଦଙ୍କ ଦେଖାଇବ ଏ ଭାବରେ ୫ ।
ଧୀରେ ଦୃଗ ଭୃ ବାଧନ୍ତି ଧର କର ।
ରାଧାକୃଷ୍ଣ ଭକ୍ତ କହେ ବେଣୁଧର । ୬ ।
( ନବଗାରଦ ନନ୍ଦନ କାନ୍ତ ଧରଂ ପ୍ରଭ )

—❀—

( ରାଗ—କାମୋଦ । ତାଳ—ଝୁଲା )

ରଜିବ ନୟନା ଆଜ ଶ୍ୟାମେ ରାଜ ହୋଇ ଯା ରେ ।
ଯା ଜଗର କରନ୍ତୁ ତା ତେଜ ପ୍ରେମେ ମୋହିଯା ରେ । ଘୋଷା ।
ଋଷି ମୋହିନୀ ବୁଥାରେ, ଋଷି ହରିନ୍ତୁ ତାଠାରେ-
ଅଣିତ ବଚନେ ଘନେ ବଦ୍ଧ୍ୟ ପଦ ଉଇଁ ଯାରେ । ୧ ।
କୁଞ୍ଜର ଗମନା ଯେନ, କୁଞ୍ଜକୁ ଚଳ ବହନ,
ଗୁଞ୍ଜମାଳଆ ମୋହନେ କରୁଣା ଭୁ ବହିଯା ରେ । ୨ ।
ଧରୁଛୁ ଚୋର ପାଣିକ, ତା ଦୋଷ ଥିଲ ପାଣିକ,-
ଫିଙ୍ଗି ସେ ବେଣୁପାଣିକ ପ୍ରୀତି ବାଣୀ କହିଯାରେ । ୩ ।
ଶ୍ରୀକୃଷ୍ଣଚନ୍ଦ୍ର ନୃପତି, ଭରଷାରେ ମୋ ଶ୍ରୀମନ୍ତି,
ସେ ନଟବର ମୂରତି ପାଶେ ରସେ ରହିଯାରେ । ୪ ।
( ନିଷେଧ କରୁଛୁ ଧନ ମନ ତହିଁ ମଜାନାରେ—ବୃନ୍ଦେ )

—○—

( ରାଗ—ଜୟନ୍ତ । ତାଳ ଅଠତାଳୀ )

ଶ୍ୟାମେ ହେବୁ ମାନନୀ, କୋଳ ଭୁ ଯଶୋଦମ୍ନ,
ଆଗରୁ ପଦେ ଯା ନ ଗାଳିଲୁ ଗୋ । ଘୋଷା ।
ଏବେ କାମ ଅନଳ, ହେତୁ ନବଳ ପ୍ରବଳ,
କର ଆପଣା ହୃଦ ଜାଳିଲୁ ଗୋ ।
ଗଣ୍ଡରେ ମଣ୍ଡି କର,- ଚଲ୍ଲବକୁ ନକର,
ନୟନୁ ଶୋକ ଅଶ୍ରୁ ଢାଳିଲୁ ଗୋ । ୧ ।
ତାଙ୍କଠାରେ ଗୁମାନୀ, ହେବୁ ନାହିଁଟି ଧନି,
କହିତ ଥିଲ ତା ନ ପାଳିଲୁ ଗୋ ।
ରସିକ ଶିରୋମଣି, ଧଇଲେ ତୋହର ପାଣି,
ପିଙ୍ଗାଡ଼ ଦେଲୁ ଭୁ ନ ତୋଳିଲୁ ଗୋ । ୨ ।
ଯେବେ ଏହା ଶ୍ରୀମତୀ, ବସୁଥିଲୁ ମତି,
କୁଞ୍ଜ ହେତୁକ କମା ବଳିଲୁ ଗୋ ।
ବରହ ଜ୍ୱର ତାପ, ଅଙ୍ଗେ ହେଲା ଅମାପ,
ତେଣୁ ଦିନା ଅବନୀ ଉଳିଲୁ ଗୋ । ୩ ।

ଶିରେ ଟେକୁ କୁସୁମ, ନ ବୁଝି ବନ୍ଧୁ ତମ
ସୁଇଚ୍ଛାରେ ପାଦରେ ଦଳିଲ ଗୋ ।
ଭାଷଇ ବେଣୁଧର, କରି ହୃତ ଆଦର,
ତାଙ୍କୁ ଯା ଥରେ ନ ସମ୍ଭାଳିଲ ଗୋ । ୪ ।

—o—

( ରାଗ — ଚୋଡ଼ପରଜ । ତାଳ — ଏକତାଳୀ )

ରୁଷିଲେ ରୁଷଥା ଭୁଞ୍ଜର କଠୋର ! (ରୁଷିଲେ ରୁଷିଥା ଭୁଞ୍ଜ )
ଭୁଷି ଦେବୁ ପରେ ମଦନ ଆସିକ ଭାଳୁଥିବୁ ବସି ଚହ୍ନରେ । ଘୋଷା ।
ତୁ ସିନା ମନରେ କସି ନ ପଚୁଛୁ ପଲବ ଚନ୍ଦ୍ରମାମୁହିଁ !
ଜଷର ବାଟିବା ବେଳେ ଜଣାଯିବ କେଉଁ ଦମ୍ଭବନ୍ତ ଗାଇରେ । ୧ ।
ଖସି ହୋଇ ଧନ ତନ୍ନି ନ ପାଟବୁ ଶ୍ୟାମେ ଅବଗୁଣ ବହ୍ନି ।
ମୁଁ ଶିକ୍ଷା ଦେବାର କଥାରେ ନ ରମ୍ଭ ଧରାଏ କରଇ ଲକ୍ଷ୍ମେର । ୨ ।
ହସିଆନ୍ତ ନ ହେଉଛୁ ଯା ବେଳହୁଁ ଗୁମାନଲେ ଏତେ ସ୍ନେହୀ ।
ସୁଣ ତଳ ଅଙ୍ଗ ଚପତ୍ତ ଜଠବ ତାହା ତୁ ସହିବୁ କେଉଁରେ । ୩ ।
ତୃଷିତ ପରାଣ ବନ୍ଧୁରେ ଅଧରୁ ମଧୁ ଚଖା ପ୍ରିୟସହି !
ହୃଷୀକେଶ ପଦ କରିଥା ସମ୍ପଦ ରମେ ବେଣୁଧର କହେରେ । ୪ ।
( ପର କହ୍ନିଲ୍‌କ ଦେବରେ ସଙ୍ଗାତ—ବୃନ୍ଦ )

—o—

( ରାଗ—ମଧୁଶ୍ରୀ । ତାଳ—ଝୁଲ )

କାଳିଆ ଢଙ୍ଗେ, ନ ଦେଖି ନୟନେ
ଏ ଗୁମାନେ ରହି ପାରିବୁଟି ?
ବଂଶୀସ୍ୱନ ଥରେ ଶୁଣିଲେ କର୍ଣ୍ଣରେ,
ଯମୁନାକୁ ନ ବାହାରିବୁ କି । ଘୋଷା ।
ଯେତେ ଗୁମାନ ତୁ କଲେ ତାଠାରେ,
ନ ପଡ଼ିବୁକି ତା ପ୍ରୀତି ଅଠାରେ ?
ମୋହନ ମନ୍ତ୍ରକୁ, ପଢ଼ିଦେଲେ ଶ୍ୟାମ,
ଭଲ ମନ୍ଦ ଆଉ ବାଛିବୁ କି ? । ୧ ।

ଯମୁନା ଘାଟକୁ ଥିଲେ ଗାଧୋଇ,
କଦମ୍ବ ମୂଳରେ ଥିଲେ ମାଧୋଇ ।
ତା ଶୋଭାକୁ ଚାହିଁ ଲବେକ ହଜାଇ,
ନିଜ ଭକତ ନ ବରୁଣିବୁ କି ? । ୨ ।
ନିକୁଞ୍ଜ କାନନେ କୁସୁମ ତୋଳି,
ନ ଯିବୁ କି ବୃଷଭାନୁ ଦୁଲାଳି ! ?
ଯେବେ ବନମାଳି ଚାହିଁଦେବେ ଡାଳି,
ସେ କାଳେ ଜ୍ଞାନ ନ ହାରିବୁ କି ? । ୩ ।
ବରଜ ବାଳକ—ମାନଙ୍କ ମେଳେ,
ବନୁ ଚଳି ଚଳି ଆସିବା କାଳେ,
ଭଣେ ବେଣୁଧର ଜବ ନିଶାକର,
ସେ ମୂରତି କି ନ ଝୁରିବୁକି ? । ୪ ।
( କହରେ ସଜନୀ ଆଜ ଏ ରଜନୀ—କୃତ୍ତେ )

—❈—

( ରାଗ—ଗୁର୍ଜ୍ଜରୀ । ତାଳ—ରୂପକ )
ମାନ ତେଜ ମାନମୟୀ ରାଇ ସୁନୟନୀ ଗୋ ।
ଆନନ୍ଦଦାୟିନୀ ନୂଆ ମୋହନ ଗୁମାନୀ ଗୋ ଘୋଷା ।
ଦେଖ ଧୂଳିରେ ଧୂସର ପଦ ତଳେ ପଡି ତୋର,
କି ଭଣୀ ଲଭନ୍ତି ଶ୍ୟାମ-ବନ୍ଧୁ ବଂଶୀପାଣି ଗୋ । ୧ ।
ଦନ୍ତରେ ତୃଣ ଧରି କହନ୍ତି ବିନତି କରି,
ଅଳପ ଦୋଷକୁ କ୍ଷମା ଏତେ ତୋ ରୁଷାଣି ଗୋ । ୨ ।
ନୟନୁ ବୁହାଇ ନୀର ସ୍ୱେଦେ ଅଙ୍ଗ ଜରଜର,
ଆହା କେତେ ନାରଖାର ଅସି ହୋଇଲେଣି ଗୋ । ୩ ।
ଗଳେ ପୀତବାସ ଦେଇ ଡାକନ୍ତି ବିକଳ ହୋଇ,
ଏ ବାରକ ତାଙ୍କ ଦୋଷ ମୁଞ୍ଚ ସୁଲକ୍ଷଣୀ ଗୋ । ୪ ।
ଦେଖ ଦେଖ ଚନ୍ଦ୍ରାନନ କରର ସରସ ମନ,
ଧ୍ୟାନ ଧ୍ୟାନ ଅକିଞ୍ଚନ ବେଣୁଧରେ ଭଣି ଗୋ । ୫ ।
(ମରମ ଯାତନା ସଖୀ କି କହିବ ମୁହିଁ ହେ—ପ୍ରଭୃ)

—o—

# କଳହାନ୍ତରିତା

## ସଖି ଉକ୍ତି

(ରାଗ—କେଳମଞ୍ଜରୀ । ତାଳ—ଆଠତାଳୀ)

ମନେ ରଖିଥା ରେ ଜୀବନ ସଙ୍ଗିନି !
ତୃଷାକୁଳ ଭୁଷାଇବୁ ନାହିଁ ହୃଦେ ଆଣି । ଘୋଷା ।
ଯାହାଙ୍କୁ ଅନ୍ତର କରି ଆଜନମ ସୁଖୀ ।
ଆହା କ ହୋଇ ଗଲୁଟି ପୂର୍ଣ୍ଣଚନ୍ଦ୍ରମୁଖୀ । ୧ ।
ଏଣେ ତୋ ଦଶା ଏପରି ଆରେଗା ଶ୍ରୀକଣୋସ୍ତ ।
ତେଣେ ଶ୍ୟାମବନ୍ଧୁ ଖିନ୍ନ ତୋତେ ଝୁରି ଝୁରି ।୨
ତନୁ ପାତଳୀ ଅତନୁ ଜ୍ୱରକୁ ଔଷଧି ।
ଅନୁରୂପ ଶ୍ରୀଶ୍ୱରଙ୍କ ମିଳନଟି ସିଦ୍ଧି । ୩ ।
ପାଣି ଧନ ଯାଙ୍କ ପାଇଁ କରୁଛୁ ଦସ୍ତିମା ।
ଆଣି ମୁଁ ମିଳାଇ ଦେବି ନୁହ ଚନ୍ଦ୍ରାର୍ଥିମା । ୪ ।
କହେ କବିଚନ୍ଦ୍ର ବେଣୁଧର ଏ ବଚନ ।
ନହେବୁ ମୋହନେ ଆଉ ମାନିନୀ ମୋ ଧନ ।୫।
( ସୁନା ବଉନା ରେ, ସବେ କି ନହେଲ—ପ୍ରଭୃତି )



( ରାଗ—ସିନ୍ଧୁକାମୋଦୀ । ତାଳ—ଝୁଲ )

କେଡେ କଥା କଲୁ ଗୋ ଧନ !
ସେ ମନ ମୋହନେ ହୋଇ ଗୁମାନୀ । ଘୋଷା ।
ଗଲେ ବାସ ଦେଇ ପଦ ଗୋ ମାଧୋଇ,
ଆସି କ ବନେପୁ ଧଇଲେ ପାଣି ।
ଥରେ ନ ବୁଝିଲୁ କରେ ଘୁଞ୍ଚିଦେଲୁ
କହୁ ପୁଣି କୋପେ ତୁ କଟୁ ବାଣୀ । ୧ ।
ଦୋଷ କ୍ଷମାକର ଧରୁଛୁ ପୟର—
ବୋଲି କାନ୍ଦ କାନ୍ଦ ସୁମାଳମଣି ।
କେତେ ନେହୁରା ତ ହୋଇଲେ ସ୍ୱଙ୍ଗାତ
ତାହା ନ ଘେନିଲୁ ଭାନୁ ଦୁଲଣୀ । ୨ ।

ଭବ ଭରଞ୍ଜକ ଯା ଭବ ଦୁର୍ଲ୍ଲଭ
ସେହ୍ନ ଅନୁଗତ ତୋହରେ ପୁଣି ।
ନ ଜଲ୍ ଖାତର ଏ ତୃଷା ସ୍ବନ୍ତର—
ଦେଖାଇ କ ସୁଖ ପାଉ ମିଚ୍ଛଣି ? । ୩ ।
ଯା ହେବାର ହେଲା ମାନ ମାନ ଭଲା,
ମୋ ପ୍ରବୋଧ ବାଣୀ ଆଗେ ସିଦ୍ଧାଣୀ ।
ଭଣେ ବେଣୁଧର ଶ୍ୟାମବନ୍ଧୁ ଚୋର,
କାହାର ହେବେନି କଲେ ଏ ଠାଣି । ୪ ।
( ଶ୍ୟାମ ବନ୍ଧୁ ମୋହନମାଳ - ବୃତ୍ତ )

—*—

( ରାଗ—ମାରୁଆ । ତାଳ—ଆଠତାଳି )

ଅଣ୍ଟି ମାନ୍ଧି କରେ କଣ୍ଟି ଦେବ ମଧ୍ୟମା !
ଚଣ୍ଡି ଧନ ରାଜ କେମା । ଘୋଷା ।
କେତେ କର ପରା ହର କଲ୍ବଲେଣି କର ଧର,
ଦୟାମୟୀ ରାଧେ କର ଦେଷ ଦୋଷ କ୍ଷମା । ୧ ।
କମ୍ବୁକଣ୍ଠୀ ଜବାଧରା ଜମ୍ବୁନଦ ସୁନାଗୋରା,
ଅମ୍ବୁଜ ନୟନେ ମାନ ମଞ୍ଜର ଜମା । ୨ ।
ଗଣ୍ଡରେ ଲମ୍ବ ପାଣିକ ଦଣ୍ଡନା ବଂଶୀପାଣିକ,
ଖଣ୍ଡ ବଚନକୁ ଶୁଣ ଧୀର ମଧ୍ୟମା । ୩ ।
କୁଞ୍ଜେଶ୍ୱରୀ ଗୋ ବଲ୍ଲଭ ତୁ ସେବକ କରୁ ପର,
ଶ୍ୟାମବନ୍ଧୁ ହେବେ କାର କହ ସୁଷମା । ୪ ।
ସଖୀ ବଚନେ ଶ୍ରୀମତୀ ମଞ୍ଜନେ ଲଚନ ପୋଛି
ନ ଦେଲେ ଉତ୍ତର କଣ ମାନ ଗାଢ଼ିମା । ୫
ସେ ମାନମୟୀଙ୍କ ପଦ ଧରନ୍ତେ କର ସମ୍ପଦ,
ବଢ଼ିଗଲା ବେଣୁଧର ଦୁଃଖର ସୀମା । ୬ ।
( ଶ୍ୟାମ ନାଗର ଦେ ବାମନପୁର ଭୂପ—ପ୍ରଭ )

—o—

( ରାଗ—ଶୋକ କେଦାର । ତାଳ—ଆଠତାଳୀ )

ଭଲ ମାନ ସାଧି ବସିଲ ରାଧିକେ !
ଗଲା କଥା କେବେ ଫେରେ କି ?
ସେ ଲାବଣ୍ୟ ଠାଣି ଏବେ ହୋଇଲେଣି ବିଷଣ୍ଣ ଚନ୍ଦ୍ରମା ସନ୍ଦେହୁ କି । ଘୋଷା
ଧରି ଧରି କରୁ ମୋହନ ମୁରଲୀ,
ଖସି ପଡ଼େ ତଳେ ନ ପାରନ୍ତି ଟେକି ।
ହା ହା ଶ୍ରୀକିଶୋରୀ ପ୍ରାଣେଶ୍ୱରୀ ବୋଲି ସନ୍ତତରେ ଦେଉଛନ୍ତି ରଡ଼ି ।୧।
ପଡ଼ି ଲୋଟୁଛନ୍ତି କୁଞ୍ଜ ଅଗଣାରେ,
ଭୂଷିତ ତାହାଙ୍କୁ କି ବୁଝାମଣାରେ ।
ସହିଯିବ ବନ୍ଧୁ ସିନା ଭାବନାରେ ଆଗୋ କେମାମଣି ବିମ୍ବଓଷ୍ଠି !
ସୁକୁମାର ଶ୍ୟାମସୁନ୍ଦର କେବଳ,
ତବ ଧ୍ୟାନ କରିଅଛନ୍ତି ସମ୍ବଳ ।
ରତ୍ନ ଆଭରଣ ଶ୍ରୀଅଙ୍ଗ୍ ସକଳ ଦୂରେ ଫିଙ୍ଗିଦେଇ କାନ୍ଦୁଛନ୍ତି । ୩ ।
ମୁଖ୍ ଆଉ ତାଙ୍କ ନ ଫୁଟଇ ବାଣୀ,
ନୟନ ଯୁଗଳୁ ବହେ ଅଶ୍ରୁ ପାଣି ।
ମୁଞ୍ଚ ଏ ଦାରୁଣ ଗତି ଠାକୁରାଣୀ ବେଣୁଧର କରୁ ଧରୁଛନ୍ତି । ୪ ।
( କହନ୍ତେ ଜୀବନ ସଙ୍ଗିନୀ ନମା ଧନ —ବୃନ୍ଦେ )

—o—

( ରାଗ—ଦକ୍ଷିଣ କେଦାର । ତାଳ—ଆଡ଼ ଖେମଟା । )

ଆଗୋ ଶ୍ରୀମତି, କେତେକ୍ଷେ ତୋ ଗୁଣ, ସହୁଛନ୍ତି କାନ୍ତ ?
ମନ ମୋହନ, ଉପରେ ମାନ, କରି ଅଛ ରଣ୍ଡ । ଘୋଷା ।
କି ନାରଖ ର, ହେଲେଣି ମାର, ମୋହନ ପ୍ରତିମା ।
ଦଶନେ ଘାସ, ଧରଣ ଦୋଷ, ନ ଗୁଣନ୍ତି କ୍ଷମା । ୧ ।
ଦେଖ ଗୋ ତାଙ୍କ- ମୁଖ ଶଶାଙ୍କ, କି ଦଶା କରନର !
ତୋର ସ୍ୱଭାବ ବଳ୍ମିକେ କାସୁ, ହୁଏ ଥରଥର । ୨ ।
ଗୋଷ୍ଠର ମଥା, ନ କହୁ କଥା, ତୋ ଚିନ୍ତାମଗ୍ନ ।
ଏମନ୍ତ ହେଲେ, କହ ଗୋ ଭଲେ, କିଏ [illegible] ।୩।
ଯାହା ହେବାର, ହେଲାଣି ଧର, ନାଗରଙ୍କୁ କୋଳ ।
କେତେ ଭଜନେ, ତୋ ପଦତଳେ, ଲୋଟନ୍ତି ମଙ୍ଗଳ ।୪।
ଧରୁଛି ହାତ, ପରାଣମିତ, ତାଙ୍କଲାଗି ମୁହିଁ ।
ଅନାଥ ଥରେ, ପ୍ରାଣନାଥରେ, ସ୍ମର ଚନ୍ଦ୍ରମୁହିଁ । ୫ ।

ସଜନୀ ବଣୀ କର୍ଣ୍ଣେ ନ ଶୁଣି ଦୁର୍ଜ୍ଜୟ ମାନିନୀ ।
ମସ୍ତକ ଘୂର୍ଣ୍ଣି, ଭାଳନ୍ତେ ତର୍ଣ୍ଣି, ବେଣୁଧର ଭଣି । ୭ ।
ଏନ୍ତେ ନଗର, କାହ୍ନୁଙ୍କ ଦାସ, ବହ୍ରଳ ରାଧିକେ ।
ବାଧୂ ନ ହିଁକ ହୃଦସ୍ଥଳୀକ ଭ୍ରମର ନୋ ହିକେ । ୭ ।
( ଯାରେ ଯାଉ ବାଟେ ବାଟେ—ପ୍ରଭ )

—❀—

( ରାଗ—ଆନନ୍ଦ ଭୈରବ । ତାଳ—ଆଠତାଳୀ )

ଚରଣ ମିତ ଲାବଣ୍ୟ କାନ୍ତ ନବଗାତରେ ।
ଏ ଜସ ଘାତ ହେଲା ଜାତ ରେ । ଘୋଷା ।
ଶ୍ୟାମ ଶତପଞ୍ଚଟିକୁ ଫିଙ୍ଗିଦେଲୁ ଯମୁନାକୁ,
ଏବେ ଶରହେ ସହୁଲୁତ ରେ । ୧ ।
ପୂର ଅଗଣା ମଲ୍ଲୀକା ଲତାକୁ ଉପରେ ରସିକା
ମୂଳରୁ ଜମ ଡ଼ ଦେଲୁତ ରେ । ୨ ।
ସବୁ ମଣିମାନେ ଥିଲେ ତୋ ପାଣେର ଏତେବେଳେ,
ଭ୍ରମନ୍ତେ କା ଭସ୍ମ କରିବତ ରେ । ୩ ।
ଜଦସ୍ଥ ଘନକୁ ଧନ ଘୁହିଁବୁ କାହିଁ ବୋଲଣ,
ଲାପାଚିଲୁ ଜଳ ପଞ୍ଜରତ ରେ । ୪ ।
ମୂର୍ଖ୍ଣ ଚଞ୍ଚଳ ଭଞ୍ଜକା ଚୋଳକ ଶୁକ ନସ୍କକା,
ଫେଡ଼ ବନେ ଉଡ଼ାଇ ଦେଲୁତ ରେ । ୫ ।
କୁଞ୍ଜରୁ ଫେଡ଼ିବା କାନ୍ତ ନେଜା ଶୂନ୍ୟରେ କୃପାନ୍ତ,
ଏହି ମଣ ସଖିଙ୍କ ଜକତ ରେ । ୬ ।
ଶୁଣି ଶ୍ରୀମନ୍ତ ମନରୁ ଦୁଃଖ ଦୂରକଲେ ଦୂରୁ,
ବେଣୁଧର ରୂପ ଶରଣତ ରେ । ୭ ।
(ଆଜତ ଅନାକଣି ନୂଆ ବର—ପ୍ରଭ)

—○—

(ରାଗ—ଭଟିଆରୀ । ତାଳ—ଆଠତାଳ )

ସ୍ୱନାମଲ୍ଲୀ ! ଆରେ ସ୍ୱନାମଲ୍ଲୀ ! !
କୃଷ୍ଣେ ଗୁମାନ ଦେଖଇଲୁ ଲୁ କ ବୋଲ ? ଘୋଷା ।
ଭଡ ଭଡ ଆରେ ସାବଧାନ ଏ ଲକ୍ଷଣା ତୋର କେତେ ଦିନ
ସେ ଶ୍ୟାମ ନା ମୋର ଆଗରେ ନଧର,
ଏମନ୍ତ ବୋଲୁ କାହ୍ନିକ ରେ ଭୂଲ ? । ୧ ।

ଅବଶ୍ୟ ମୋହନ ବେଣୁଧର ମନେ ପଡ଼ିବତ ଦେଖିଲେ ତୋର,
କର ପାପୁଲିରେ ଲେଚକ ପୋଛିବୁ
ଘଟିବ ଏହା କାଲିକ କାଲି । ୨ ।
ଅଣିଦଅ ମୋ ବନ୍ଧୁଙ୍କୁ କହି କେତେ ଯେ ବନିଧି ଦେବୁ ଲୁଚି,
ଅମ୍ଭମାନଙ୍କୁ ଯା ନଷେଧୁକୁ ଅଜ,—
ଶେଷରେ ଚେତିବୁ ରସବଲ୍ଲୀ । ୩ ।
ଭଣେ କବିଚନ୍ଦ୍ର ଚନ୍ଦ୍ରାନନ୍ଦ ବୁଝି ନପାରୁ କାହାର ହାନି,
ରସେଶ୍ୱରୀ ହୋଇଲୁ କ ପାଗଳିଣୀ,
ହିତ ବଚନ ଯା ଦେଉ ଠେଲି । ୪ ।
( ଏ ରଜନୀ, ଶ୍ୟାମବନ୍ଧୁଙ୍କୁ ରଖିଲ କେ ସଜନି—ବୃନ୍ଦେ )

—※—

( ରାଗ—ଖରହର ପ୍ରିୟା । ତାଳ ଆଠତାଳୀ )
ହେଲା କ ଗୋ ସୁନ୍ଦର ମୋହନେ ରୁଷିବାର,
କହ ଭଲି କରିବ ସୁଚତୁରେ । ଘୋଷା ।
କଳା ତରକ ଚେତେ ବୁଝୁ ବୁଝୁଁ ତ ନେହେ,
କେତେ ହଦ ରହିବୁ ଏମନ୍ତରେ । ୧ ।
ଆସୁ ନାହିଁ ମନକୁ ତେଜ ପ୍ରାଣ ଧନକୁ,
କାଳ ହରିବୁ ବୋଲି ନଶ୍ଚିନ୍ତରେ । ୨ ।
ମୁଖେ ଭାଷ ଏ ବାଣୀ ନୋହୁଥିବ କ ହାଣି,
ମରମ ଭିତରେ ତୋ ଅନ୍ତରରେ । ୩ ।
କହଇ ବେଣୁଧର ଶ୍ୟାମ ଦୋଷ ନଧର,
ମାନ ସଜନୀ ଗିର ଉଚିତରେ । ୪ ।
( ମୁହିଁ ମୁହିଁ କଠୋର ଚନ୍ଦ୍ରମାଙ୍କର ମୋର—ବୃନ୍ଦେ

—୦—

# ମାନଲୀଳା

## ସଖୀ ଉକ୍ତି

( ରାଗ—ମାଳବ ଗୌଡ଼ା ତାଳ—ଆଠତାଳୀ )
କଠୋରମଣି ! ଛାଡ଼ି ଛାଡ଼ ଏ ଦୁଷାଣି ଗୋ ।
ପାଣି ଧରି କହୁଛି ଭେନ ମୋ ବାଣୀ ତୋ । ଘୋଷା ।
ସେ ଶ୍ୟାମ ବନ୍ଧୁଙ୍କ ଅପରାଧ ଯାଉ,
ମାଗି ନେଉଛି ହଅ ସୁଲକ୍ଷଣି ଗୋ । ୧ ।

ଯା ଦେବାର ଦେଲ ବୁଝ କଲା ଭଲ,
ନୂତ ଅବୁଝା ଶ୍ରୀ ଭାନୁ ଦୁଲ୍ଲଣୀ ଗେ । ୨ ।
ଘୁର ମାନ କର ଛୁଟେ ଯାଏ ଶିଷ,
କାହିଁ ଗଲ ସେ ଅପୁରୁବ ଠାଣି ଗୋ । ୩ ।
ମୋ ଘଣଟି ଧନ ତୁଅଛି ପ୍ରସନ୍ନ,
ବେଣୁଧର ତୋ ଲକ୍ଷା ଦେଉ ଜାଣି ଗୋ । ୪ ।
( ବରଜ ଶିଷ, ସଖି ଯିବେଟି ସର—ବୃତ୍ତ )

—୦—

( ରାଗ—କଲ୍ୟାଣି । ତାଳ—ଖେମଟା )
ଅଭିମାନନୀ ଧନୀ ! ଅନା ପ୍ରାଣବନ୍ଧୁ ରେ ।
ଭାସି ଯାଉଛନ୍ତି ଶ୍ୟାମ ଦୁଃଖ ସିନ୍ଧୁ ରେ । ଘୋଷା ।
ଯା ଦେବାର ଦୋଇଲଣି କେତେ ଦେଢ ସହିଲଣି,
ଏବେ ଗୁଡ଼ ଏ ଚୁଷାଣୀ, ଭଷ ମଧୁରେ । ୧ ।
ଗଳେ ବାସ ଦେଇ ହରି ଦନ୍ତରେ ଛଣଣ ଧରି,
ମାଗୁଛନ୍ତି ଦୋଷ ପରା ବ୍ରଜ ବଧୂରେ । ୨ ।
ତୋ ଚରଣ ତଳେ ପଡ଼ି ଯାଉଛନ୍ତି ଗଡ଼ ସଡ଼ି,
ଢୋଳଧର ଟେକ ଶ୍ରୀଲପନ-ଇନ୍ଦୁରେ । ୩ ।
ଅଣି ନାହିଁ କ ଆଦ୍ଧର କଥା ଗଲ କେତେ ସରି,
ଜାଣୁ ନଣି ହୋଇ ପୁଣି ମାନ ସାଧୁରେ ।୪।
ଘାନ ବେଣୁଧର ଭଣି ଶୁଣି ସଖି ବୋଧବାଣୀ,
କୋଳ କଲେ ଠାକୁରାଣୀ ଶ୍ୟାମ ବନ୍ଧୁରେ । ୫ ।
( ଯିବୁ ନାହିଁ ସଜନ କୁଞ୍ଜ ବନକୁ ଏକା ବୃତ୍ତ )

—❊—

( ରାଗ— ତୋଡ଼ି ମରଜ । ତାଳ—ଅଠତାଳି )
ବନ୍ଧୁ ଯିବେଟି ସର ଗୋ କଠୋର !
ମାନନୀ ହେଇବୁ ଯେବେ ଏପରି ଗୋ । ଘୋଷା ।
ଧ୍ୱା ଏ ଳମଣି ଲବଣ୍ୟ ପ୍ରତିମା ।
ମାନ ଅପରାଧ ମାଗନ୍ତି କ୍ଷମା ଗୋ । ୧ ।

ଯ ନମନେ୍ତ ଟୋକୁ ଚଳକୁ ମୁଖ ।
ଗ୍ଲାନ ଦୋଇଚ ଗଲେଣି ଦେଖ ଗୋ । ୨ ।
ଗ୍ଲାନ ନ ଭଜ ମା ଆଜ ଏଣିକ ।
ହାଙ୍କ କାହାକୁ ନ ପାରୁ ଜାଣିକ ଗୋ । ୩ ।
କାନ ପ୍ରସାର ମୁଁ ଧରୁଛୁ କର ।
ନା, ନନ୍ଦା ନୋହ୍ବ ବେଣୁଧର ଗୀର । ୪ ।
( ସଙ୍ଗାତ ! ତାଙ୍କୁ ଦେଖିଲ ନ୍ତୋଳେ—ବୁଝେ )

—❋—

( ରାଗ—ଖଟିଆରୀ । ତାଳ—ଏକତାଳୀ )

ଆଗୋ ସଖିଗଣ ! ଅଜ ଗମାତ୍ବର ମୋହଠାରୁ ଶୁଣ । ପଦ ।
ଭ୍ରମୁ ମେଳରୁ ମୁଁ ବଣା ହେଲି, ଲେଉ ଲେଉ ସନ୍ଧ ଆସୁଥିଲି,
କଦମ୍ବ ନକୁଞ୍ଜ କୁଟୀର ନକଟେ
ଶ୍ୟାମ ପଡ଼ଗଲ ମୋ ନୟନ । ୧ ।
ଖଣ୍ଡଦୂରୁ ମୋହ ମାନସରେ, ଧାଇଁ ଅଇଲେ ସେ ମୋ ପାଶରେ,
ହାସ ଜନ ଚଉ କେ‐ତ ବଚନରେ
ଭାଷିଲେ ଗେ ଗୂଢ଼ ସୁବଚନ । ୨ ।
ମୋ ବେନ କରକୁ ଧୀରେ ଧର ପୁଚ୍ଛିଲେ ମୋହନ ବଂଶୀଧାରୀ,
ରାଧାର ସ୍ନହାନ— ମାର୍ଜ୍ଜନାଠାରୁ ମା
ଲେଉଟିବା ଗତ କଥାମାନ । ୩ ।
ତାଙ୍କ ଧୂର୍ତ୍ତ ଚତୁରର ଚିକ, ମଦନ ଜଣାଣ ଟିକ ଟିକ,
ଶ୍ରୀ ଅଙ୍ଗରେ ବଳ ନାହିଁ ସେ କେବଳ
ଶନୁଛନ୍ତ ରାଧା ଚନ୍ଦ୍ରାନନ । ୪ ।
ସଖିମାନେ ଏ ବଚନ ଶୁଣି ମିଳଲେ ଯହିଁ କଣେ ଗ୍ରାମଣୀ
କହିଲେ ସକଳ ଧମକ ବୁଝାଇ
ବେଣୁଧର ବନ୍ଦେ ସେ ଚରଣ । ୫ ।
( ଶ୍ୟାମବନ୍ଧୁ ଘର କେବ୍ବ ହଶୁ ନାହିଁ—ପ୍ରଭ )

—o—

( ରାଗ– ସାବେରି । ତାଳ – ଆଠତାଳୀ )

ବୀଣାପାଣୀ ରେ !

ଚୋହ ହେନ ସଇ ଯାଉଛନ୍ତି ନୀଳମଣି । ଘୋଷା ।

ଝଞ୍ଜା ପବନେ ତମାଳ ମଇ, ଅଙ୍ଗଗୋଟି ଦଶୁଛି ତାଙ୍କରି,
ଆହା କେଉଁ ଛକଲେ ଶ୍ରୀହରି,
ତଳେ ଗଡୁଛନ୍ତି ରାଧେ ଶ୍ରୀରାଧେକ ଭଣି । ୧ ।
ଯାଇଁ ଏକାକେ ତାଙ୍କ ନିକଟେ ପ୍ରବେଶଲେ ମୂର୍ଚ୍ଛି ଉଠି ଝଟେ,
କାନ୍ଧ ଲୁହ ପୋଛୁ ପୀତପଟେ,
ବନଯୁରେ କହିଲେ ଗୋ ଆଜ ଚନ୍ଦ୍ରାମଣି । ୨ ।
ଆଉ ସତେ କ ବଞ୍ଚିବ ସେହି ମୋର ମନେ ପ୍ରତେ ଆସୁ ନାହିଁ
ନୀପ କୁଞ୍ଜରେ ନାଶିଁ ମାଧୋଇ,
ପ୍ରାଣ ହରାଇବେ ରାଧେ ତୁମ୍ଭ ଲାଗି ପୁଣି ୩ ।
ହେଲା କଥା ହେଲାଣି ଗୋ ସଖି ! ତାଙ୍କ ଦୋଷ କ୍ଷମାକର ଯାଇଁ
ଶୁଣି ଶ୍ରୀମତୀ ହରସ ବହି,
ଦୁଃଖେ ଭାଷିଲେ ଦୂତୀଙ୍କି ଧରି ବେନପାଣି । ୪ ।
ସେହି ମାନିନୀ ଶ୍ରୀ ରାଧାଙ୍କର ପଦ ଯୁଗଳକୁ ବାରମ୍ବାର
ବନ୍ଦି ଦୀନ ହୀନ ବେଣୁଧର,
ଭାଷେ ବେଷ ପରିହର ଆଗୋ ଠାକୁରାଣୀ । ୫ ।

( ବିଚକ୍ଷଣା ରେ, ବନା ତୋ ପ୍ରୀତି କେ ଗଢ଼ି—ବୃନ୍ଦେ )

—❋—

( ରାଗ—ସାରଙ୍ଗ । ତାଳ—ଝୁଲା )

ଆଗୋ କୁନ୍ଦନ କାନ୍ତି ମୋତି ଦଶନା ।

ପୂର୍ଣ୍ଣ ହେଲା ଆସି ତୋ ମନ ଭାବନା । ଘୋଷା ।

ଆଜ ମାଳତୀ ମଲ୍ଲି; ଯାଉଥିଲେ ମା ବୁଲି
କହିଲେ ଗୋ ଛଇଳି ତେଣୁ ଧାଇଁ ଏ ବୋଲି
ସଇ ଯାଉଛନ୍ତି, ନିକୁଞ୍ଜେ ବନମାଳୀ,
ଯାର ଦର୍ଶନ ପାଇଁ କରୁ ତୁ ମନା । ୧ ।
ପୁଣି ମଧୁମଙ୍ଗଳ, ନୟନୁ ଢାଳି ଜଳ
ହୋଇ ଅତି ବିକଳ, ତୋଳୁ ପଲ୍ଲବ ଜାଳ
କହୁଥିଲେ ଶ୍ରୀରାଧା, ଲଗି ନନ୍ଦ ଦୁଲାଳ ।
ସହିବେ ଲକ୍ଷ ମହା ବେଦନା । ୨ ।

ଆବର ଝଙ୍କୁଝଙ୍କି ଏକେସ୍ୱର ଶୃଙ୍ଖଳ,
ତା ପ୍ରେମାଧିକା ରାଧିକା ମୋତେ ଚେତନ୍ନ ।
ତୋ ଲାଗି ଜୀବ ଯିବ, କାହିଁ ପାଇବ ଥିବ
ଏକା ପଦ ରଜୀବ, ଚିନ୍ତା ନୋହିଲ ଉଦ୍ଭବ
ଏମନ୍ତ କଷ୍ଟ ଧବ, ତୋର ସ୍ନେହ ମାଧବ
ପଡ଼ିଛୁ ଚରୁତଳେ ଦେଖ ନା ।। ୩ ।
ସଖିଲେ ପରାଣେ ଶ୍ୟାମ ଶିଖଣ୍ଡି ଚୂଳ,
କାହାକୁ ମାନ କରିବୁ ନାଗରୀବର ।
ଝୁଲ ଝୁଲ ଗୋ ଧନୀ, ଝୁରୁ ଚନ୍ଦ୍ରବଦନୀ
ନେହଲ କଥା ହେଲଣି, ହୃଦ୍ଦ ଧ୍ୱଜଙ୍କ ପୁଣି
ଚିନ୍ତି ହବା ରଜନୀ, ନ ପଇବୁଟିଁ ବାଣୀ
ମଞ୍ଜୁଳା ସ୍ନେହ କାଳଆ ସୁନା । ୪ ।
ତାହା ଲାଗି ଯିନା ସବୁ ସୁଖ ଆସ୍ୱଢ,
ଆହା ନ ବୋଇଲେ ଶ୍ୟାମ ହେବ କାହାର ।
ଫୁଲ ତୋଳା ବାହାନା ଲଗାଇ ଯିବ କନା
ଭେଟିବା ନନ୍ଦ କହ୍ନାଁ, ନୁହ ଆଉ ବିମନା
ଆସ ଗଜ ଗମନା, ନ କର ଆଉ ମନା
ବୃଥା ଗୁମାନେ ସଖି ! ରସନା । ୫ ।
ଦଣ୍ଡେ ନ ଦେଖିଲେ ପରା କଳପ ପରି,
ମଣୁଥାଇ ରେ ଛଇଳାମଣି କଶୋରୀ ।
କାହିଁରେ ତୋର ମନ, ମିଳେ ନାହିଁ ତ ଧନ !
ନେଉ ତ ପ୍ରଭଞ୍ଜନ, ଯମୁନା ମଞ୍ଜନ
ପ୍ରିୟ ପ୍ରୀତି ବର୍ଦ୍ଧନ, କେବଳ ତୋ ଜୀବନ
ନ ଜାଣେ ଏହା କେଉଁ ସୁମନା । ୬ ।
ସଖିବାଣୀ ଶୁଣି ରାଧା ନୟନୁ ବାରି ।
ବରଷଇ ଦୁର୍ଜ୍ଜୟମାନଙ୍କୁ ତାଙ୍କର ।
ନେକି ହେଲେ ବହନ, ବେଗେ ବଳିଲା ମନ
ଅଞ୍ଜନ ଭୂଷଣ, ହେଲେ ବାଳା ରଚନ
ଏ ବେଣୁଧର ହୀନ, ସ୍ନେହ ପଦ ନଳିନ
ଲଭିବା ଅଶୋକରେ କାମନା । ୭ ।
( କି ଗୋ ସୁମନା ମୋ ଦୟିଣା—ପ୍ରଭୃ )

— ❀ —

(ରାଗ—ଭଟିଆରୀ । ତାଳ—ଏକତାଳୀ)

ଆଗୋ ବଣାଭଷି ! ଶରଦଚନ୍ଦ୍ରମୁଖୀ ସୁମଧୁର ହାସି ! । ଘୋଷା ।
ସୁନା ବରନା ଜଳଦକେଶୀ      ଅନା ଅନା ଶିଶୁ-ମୃଗଦୃଶୀ
ଆଣିଛୁ ଚାଳନ-      ଗୀତରେ ମୋହନ ଯାହା,
ରୂପଚୟରେ ଥିଲୁ ଫରମାସି । ୧ ।
ଶ୍ୟାମ ସୁନ୍ଦର ହୃଦର ଧନ !      କଣ୍ଠୋଷ୍ଠକୁଳ ହୃଦ-ଚନ୍ଦନ,
ଏହା ନାମଗୋଟି      ଅଟେ ମାତଙ୍ଗିନୀ,
ସଖି ମୋର ଭୁଲେ ଅଛୁ ଆସି । ୨ ।
ମାଣିକ୍ୟ ସଣାଟି କଣ୍ଠେ ଧର      ଶିଖୀ ଚୁଆଟିକ ସ୍ନେହକର,
ଆଣିଛୁ ତୋ ପାଇଁ •      ଆରେ ସୁନ୍ଦମୁହିଁ !
ସଖି ବସିବାକୁ ଏ ମନାସି । ୩ ।
ଏ ଚନ୍ଦ୍ରପଟକୁ ଅନାଥରେ      କ ସୁନ୍ଦର ଛବ ମନ ହରେ,
ଚଦଚଳେ ପଡ଼-      ଅଛନ୍ତି ମୋହନ,
ହୋଇଛନ୍ତି ବୋଲି ଆପେ ଦୋଷୀ । ୪
ଈଷମାନ ଜଳଧିରେ ବୁଡ଼ି,      ସ୍ୱରୁ ମୁଖ-ପଙ୍କଜକୁ ମୋଡ଼ି,
କର ବଲ୍ଲେକନ      କପରି ଭଙ୍ଗିରେ,
ଚନ୍ଦ୍ର ନବବାଳୀ ଅଛୁ ବସି । ୫ ।
ଏମନ୍ତ କହନ୍ତେ ବୃନ୍ଦା ଦୂତୀ,      ଅତି ହରଷରେ ସେ ଶ୍ରୀମତି,
କହିଲେ ହମନେ      ବେଳ ସଙ୍ଗିନୀକି,
ବେଣୁଧର ଏ ଜଗତରେ ଭଷି । ୬ ।
(ଆରେ ପ୍ରିୟସଖି ! ଗୁଣ୍ଡ ପଥର କଲଣି ସଖି ସଖି — ବୃତ୍ତ)



## କୃଷ୍ଣ ଉକ୍ତି

(ରାଗ—କଲଣା । ତାଳ ଆଦ୍ୟତାଳ)

ଆହା ମୁଁ କ କଲି ବନ୍ଧୁରେ, କେତେ ଦୁଃଖ ଦେଲି ।
ଭୃଷ୍ଟ ବୋଲି ଚନ୍ଦ୍ରାକୁଞ୍ଜରେ ରଜନୀ ବଞ୍ଚିଲି । ୧ ।
ମୋର ଆଶା ପଥ ପଟରେ ଚାହିଁ ଚାହିଁ ଧନ !
କଷ୍ଟ ନୋହିଥିବ ତୋର ଯେ ଯୁଗଳ ନୟନ । ୨ ।
କୁଞ୍ଜେ ଫୁଲ ଶେଜେ ବସି ରେ କରମ ଆଦର ।
ଜଜାଗରେ ଥିବୁ ପଟରେ ଚାହୁଁ ହମ୍ଭାଧର । ୩ ।

କାହାକୁ କହିବି ଏହାର ହୁଉଛୁ ତ ବୁଦ୍ଧି ।
ଯାହା କଲେ କର ପଛେ ରେ ଲକ୍ଷ୍ୟ ବାନ୍ଧି । ୪ ।
ଶରଣ ମାଗିବ ପାଇଁ ରେ ଚରଣ ତଳରେ ।
ଠେଲିଦେଲେ ଦେଖୁ ପଛେ ରେ ମାନ ପ୍ରବଳରେ । ୫ ।
ଏତେ କହି କୃଷ୍ଣଚନ୍ଦ୍ର ଯେ କରନ୍ତି ଗମନ ।
ଦୁଃଖରେ ବିକଳ ଅତି ଯେ ବେଣୁଧର ମନ । ୬ ।

( ମରମ ଯାତନା ସଖୀ ହେ—ବୃତ୍ତ )

—❋—

( ରାଗିଣୀ—ଝିଂଝୁଟି । ତାଳ—ଝୁଲା )

ଚନ୍ଦ୍ରମାନନା ! କାହିଁକି ଆଜ ବିମନା ରେ । ପଦ ।
କରିଅଛୁ ଅପରାଧ ସେଥିପାଇଁ ପ୍ରତିଶୋଧ,
ଅଣିନାହିଁ କି ସୁମନାରେ । ୧ ।
ଦାସଜନ ମୁଁ ତୋହର ପାଶରେ ଅଛୁ ହାଜର,
କାଶ ମନୁ ଏ ଭୁଷଣା ରେ । ୨ ।
ଭ୍ରମର କୁନ୍ତଳା ରୋଷ ବାମ ନ ହୁଅ ଚଉଷ,
କୃପା କଟାକ୍ଷରେ ଅନା ରେ । ୩ ।
ମାନ ମୋ ତର୍ପି ନ ଗିର ମାନସେ ଆନ ନ ଧର,
ଘୁମୁରେ କରୁଛୁ କଣା ରେ । ୪ ।
ଶ୍ରୀମନ୍ତଙ୍କ ପାଣି ଧରି ବଦନ୍ତି ମୂରଲୀଧାରୀ,
କବି ସୁଧାଂଶୁର ରଚନା ରେ । ୫ ।

( କୁନ୍ଦରଦନା, ନାହିଁ ମୋ ଗତି ତୋ ବିନା ରେ—ବୃତ୍ତ )

—०—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ଆରେ ଜୀବନ ଈଶ୍ୱର !
କେଉଁ ଅପରାଧ କଲିଦେଲୁ ଏତେ ଯେ ? ରୋଷ !
କ୍ଷଣେ ନ ଦେଖିଲେ ପର ବାଇ ପରି ହେଉ ?
ଏବେ କି ବକ୍ଷରେ ପାଶ ମନା କରି ଦେଉ । ୧ ।
ମୁଁ ତୋହର କଣ ବୋଲି ନାହିଁ କରୁ ମନେ ?
କେ ଅଣିଦେଲା ଏ ବେଶ ସରସ ବଚନେ ? । ୨ ।
ଚକ୍ଷୁସ ମୁକୁଟମଣି ହୁନା ଚମ୍ପାରୋଷ ।
କହୁର ନ ବିଅ ମୋର ହୃଦକୁ ଏପର । ୩ ।

ଚାମର ମାର-ସାପୁକେ ଘାଣ ହେଲା ଧନ ! ।
ଚାମରସ ନେଣ୍ଟା କାରେ ତୁଅ ତୁ ପ୍ରସନ୍ନ । ୪ ।
ହସ୍ତି ଗିରେ କଷ୍ଟେନ୍ଦ୍ର ଗମନା ଶ୍ରୀ କଣୋଷ୍ଟ ।
ତୁରତେ ମୁଞ୍ଚିଲେ ମାନ ପୋଛୁ ଅଶ୍ରୁ ଧାର । ୫ ।
କୁଞ୍ଜୋଦରେ ବିଜେ ରାଧା ମଦନ ମୋହନ !
ଦୁଃଖୀ ବେଣୁଧର କରେ ବ୍ୟଜନ ଗୁଳନ । ୬ ।
( ଆରେ ସରସ ହୃଦୟା—ବୃତ୍ତ )

—❊—

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁମ୍ପା )

କହ କହ ଜୀବଧନ ! କାହିଁକି କରୁଛ ମାନ,
ମୁଁ ଟିକେ ତୋହର କଣାଜନ ରେ ।
ଯେବେ କରିଅଛୁ ଦୋଷ ଏ ଥର କଥାକୁ ଶେଷ,
କହିବାର ନୁହେ ପ୍ରୟୋଜନ ରେ । ୧ ।
ଅନାୟତରେ ରହିଲି କେତେ କଷଣ ସହିଲି,
ଜନି ଧାଇଁ କଣ୍ଠୀ ପୂଜାଇଲି ରେ ।
ତୋତେ ଏତେ ଦୁଃଖ ଦେବ ବୋଲି ରେ ପ୍ରାଣ ବାନ୍ଧବ,
ଆଗରୁ ମୁଁ ଜାଣି ତ ନ ଥିଲି ରେ । ୨ ।
ଯାହା ହେବାର ହେଲାଣି ଧରୁଛୁ ତୋ ବେନପାଣି,
ପ୍ରେମମୟୀ କରୁଣାସାଗର ରେ ।
କୃପା କଟାକ୍ଷରେ ଅନା ଅନାଥ ହେଲି ତୋ ବିନା,
ଷାଣାବାଣୀ ରଖ ଦୟାକର ରେ । ୩ ।
ଆରେ ସରଳ ହୃଦୟା ନ କର ମୋତେ ନିର୍ଦ୍ଦୟା,
ଗୁଣମଣି ଏ ସବୁ ମାଗୁଣି ରେ ।
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ବାଣୀ ନ ଶୁଣନ୍ତେ ଠାକୁରାଣୀ,
ବେଣୁଧର ନେତ୍ରୁ ଝରେ ପାଣି ରେ । ୪ ।
( ଦେଖ ଶ୍ୟାମଜନ୍ଦ୍ରୁ ଏଥି ନାହିଁ—ବୃତ୍ତ )

—❊—

( ରାଗ—ମାଳୁଆ । ତାଳ—ଅଠତାଳୀ )

ଧନ କାହିଁକି ରେ ମୋତେ କରୁ ନରାଶ ।
ମୁଁ ସବ କଣା ଦାସ । କୋଷା ।
ଧରୁଛୁ ତୋହର ପାଣି ରସିକା ମୁକୁଟ ମଣି,
ଶୁଣା ଥରେ ଷାଣାବାଣୀ ରମଣୀ ଇଶ । ୧ ।

ଧୀର—ଗମନା ନର ଅନା    ଯର ଯାଉଛୁ ତୋ ଶନା,
ମୋ ଦଇନ କର ଦେନା ତେଜ ହରସ । ୨ ।
ଧାତକାରେ ପଞ୍ଚବାଣ    ହାଣୁଛୁ ଫୁଲ ମାର୍ଗଣ,
କାହିଁକି ଅନ୍ୟ ଶରଣ ଦର ମୋ ଦୋଷ । ୩ ।
ଧରଧାରଙ୍କ ବାଣୀ    ନ ଶୁଣନ୍ତେ ଠାକୁରାଣୀ,
ବେଣୁଧର ବୋଲେ ରାଧ କେତେ ଗୋ ରୁଷ । ୪ ।
( ପ୍ରାଣସଙ୍ଗିନୀ ରେ ନେତ୍ରାନନ୍ଦ—ବୃତ୍ତେ )

—o—

( ରାଗ—ସୁରଟ । ତାଳ—ଆଡ଼ )
ତୋ ବିନା ଗଲାଣି ସରବେ, କିଶୋରି ! । ଘୋଷା ।
ଆରେ ଜଳାଧର    ପରପର ଭରି
ଅରକିଲୁ କେଉଁ ଶରୀରେ, କିଶୋରି ! । ୧ ।
ମୁଁ ତୋହର ବୋଲି    କନ୍ଦୁ ଯା ଛଇଲି
ସେ ଭାବ ଦେଲୁ ପାସୋରିରେ, କିଶୋରି ! । ୨ ।
ସ୍ଥୁଳ ଦୋଷ ଦେଖି    କଳାକର ମୁଖି
ବସିଲୁ ଗୁମାନ ଧରି ରେ କିଶୋରି ! ୩ ।
ଦାସର ଦଇନ    ନ ଦେଖିଲୁ ଧନି
ବରଷାଇ ଅଶ୍ରୁ ବାରିରେ, କିଶୋରି ! । ୪ ।
ବେଣୁଧର ଭଣି    ହେ ମୁରଲୀପାଣି
ଚିନ୍ତାକରନ୍ତି ଏତେ ସରି ରେ, କିଶୋରି ! । ୫ ।
( ଦୁଇ ଭଲୁ କ ବସ୍ତ୍ର—ବୃତ୍ତେ )

—o—

ରାଗ—ଭଟିଆରି । ତାଳ—ଏକତାଳୀ )
ମୋତେ କାହିଁକି ରୁଷିଛୁ ଗଳାମାଳ, ପ୍ରିୟଆଳି !
ସବୁ ଅବଗୁଣ ପଛକୁ ପକାଇ,
ବୃନ୍ଦାବନ ଥରେ ନେଇ ଚାଲ ପ୍ରିୟଆଳି ! । ଘୋଷା ।
ମୁଁ ପରା ତୋହର କିଣା ଜନ,    କି ନ ଜାଣୁ ଆରେ ଗୋବର୍ଦ୍ଧନ,
ଅଜନ୍ମ ମୁଁ ଆଜ ସରକ କିଶୋରି ଅଟୁ ପିନା ପ୍ରୀତ ମହାଜନ । ୧ ।
ମାନ ଅବା ଲଗାଅଛୁ ବନ୍ଧ,    ମାନ ପଣ୍ଡିତା ରେ ଦାଅ କନ୍ଧ;
ଆନନ୍ଦ ଦାୟିନୀ ମାନସେ କି ନେଇ ଆନ ଭାବ ସମ୍ପାଦନୁ ସନ୍ଧ ! । ୨ ।
ରସା ମଣ୍ଡନା ମୋ ଦଶା ଦେଖ,    ଏଥାଏ ନାହିଁକି ମନେ ସୁଖ,
ବ୍ରଜାବନ ବାସାଞ୍ଚଳ ମାଗୁଅଛୁ ଦୋଷାଦୋଷ ଦେଖିତ ତା ଉପେକ୍ଷ । ୩ ।

ଜଣାଇବ କା ଅଧିକ, ବଣା ମୁଖାଖୀରେ ମାଗିଣିବେ
ଛଣା ସୁଧା ଜଣା ଷାରଣ୍ଡ ବୁ ଶୁଣା ତୋ ଖନୁ ଅଷାନ୍ଥ ବଚାଦନା । ୩ ।
ଏସନ ବନସ୍ତୁ ମୃଦୁଗିରେ, ବେଳେବେ ଭାଷଲେ ନାହିଁ ଧୀର,
ଯେ ସମସ୍ତ ଜାଣି ବେଣୁଧର ଭଣେ ଏ ଅଭିମାନ କି ଯୋଗ୍ୟ ତୋର ।୪।
( ରଖ ରଖ ଏ ଅପୂର୍ବ ଗୁଞ୍ଜାବଳୀ—ପ୍ରଶ )

—o—

(ରାଗ—ଭାଟିଆରୀ । ତାଳ—ଏକତାଳୀ )
ଚାହିଁ ଜଣ ଚରେ ଜନ୍ମ ଦେଲା ମିନା ?
ଅଃରେ ମନ୍ଦାଧୀନା ॥
ଚିତ୍ତେ ଚାଣ୍ଡ ମୋତେ ନ ପକାଅ ଶଙ୍କା ।
ଅଃଗୋ ମନ୍ଦାଧୀନା । ଘୋଷା ।
ଧର କଥା କେତେ ତାହା ମନେ ଜଣ ଗତି ବରସ ବଦନେ
ଦନ୍ତେ କଧରେ ପଣ ଧର ମାର ଗରଷ୍କୁ ଭରସ୍ତୁ ଦରସ ଅନା । ୧
ଛପଦ କୁନ୍ତଳା ରସା ଭୂଷା ଚୂଡ଼ ଘୁଡ଼ ଏମୋ ଆଡ଼ଗୁଷା
ଲପନ ଚନ୍ଦ୍ରକୁ ନେଇ ଜଳ ଥଳେ ମୁଁ ଟେ ଶ୍ରୀଗଣ୍ଡ ସେବକ ନା ? । ୨ ।
ଚକ୍ରସାରୂନ ମୁକୁଟମଣି ବଣା ଶୀଘ୍ର ଢଳେଣ କାଠଣୀ
ଜଣାଉଛୁ ଗାଁଣି ଧନ ନାହିଁ କାହିଁ ଅଣି ଲଙ୍କା ଚଣ୍ଡ ଦଆଅ ନା ।୩।
ବୃନ୍ଦ ଚନ୍ଦ୍ର ଶ୍ରୀ କାଣ୍ଡୋଳଚନ୍ଦ୍ର ଚଣ୍ଡ ଚନ୍ଦନ ନାଗର ଲକ୍ଷ
ଶ୍ରୀନନ୍ଦଙ୍କ ପାଶେ ଭଜ ଏମନ୍ତ ଯେ ବେଣୁଧର କରେ ସମ୍ଭାବନା ।୪।
(ଅରେ ଦୁଃଖୀଧନ—ବୃତ୍ତି )

—*—

( ରାଗ—ଅନନ୍ଦ ଭୈରବ । ତାଳ— ଝୁଲ )
ମାନମୟୀ ଆଜ ଚଣ ଜାଣନା ମନେ ।
ମନେ ଦସି ସୁହାଁ ସୁନ୍ଦ ଚନ୍ଦ୍ର ଆନନେ । ୧ ।
ତ୍ର ତ ମର କଲେ ମୁଁ ତ ଅଟଇ ତୋର ।
ନାୟୀକୁ ଘୃଣ କ ସ୍ପୃହା ହୁଏ ଅନ୍ତର ? । ୨ ।
ଘନକୁ ସୁଟକ ଚନ୍ଦ୍ର ଚକୋର ଭଳ ।
ତୋ ପଠାଣେ ମିନା ମୋର ସନ୍ଧ୍ୟା ଛଳ । ୩ ।
କୁଞ୍ଚିତ କୁନ୍ତଳା ପୁଞ୍ଜ ନ ବସ ଆଉ ।
ଅନାଥରେ ଥରେ ଅନା ଏ ଦୁଃଖ ଯାଉ ।୪

ଦୁଇ ଦେହ ଏକ ପ୍ରାଣ କେ ବା ନ ଜାଣେ ?
ସବୁ ଦୋଷ କ୍ଷମ ବେଣୁଧର ବଖାଣେ । ୫ ।
( ନମସ୍ତେ ସେହି ନନ୍ଦସୁତ ଅଟଇ ମୂର୍ତ୍ତି—ବୃତ୍ତ )

—*—

( ରାଗ—ରାମକେଶ୍ୱବାଣୀ । ତାଳ—ଆଠତାଳୀ )

ଗୁଣଗ୍ରାହୀରେ !
ପୁଣ ପୁଣ କେତେ ତୁଷ୍ଟ ଅଜ୍ଞ ତୁହି । ଘୋଷା ।
ମୁଁ ଯେ ତୋର ଏକମାତ୍ର କଣା, ଖଣା ବଚନା କେଳି ପ୍ରବୀଣା;
ଘେନ ମୋ ଦଇନ ଜଣଙ୍କିଣା;
ଦୃହିଁ ଅରେ ଅନାଥରେ ଅନୁକମ୍ପା କରି । ୧ ।
ରସାଳସା ଆରେ ମୃଗଦୃଶା, ଶୁଣା ବାରେ ମୃଦୁମଧୁ ଭାଷା;
ମାରଣୋତ୍ସୁକ ମୁନେ ନ ଭୂଷା,
ବାରବାଣ ପୁନା କେତେକେ ସୁନ ହୃଦେଖି । ୨ ।
ନବ ଶାରଦଜଳଦ କୁନ୍ତଳା, ଅବଳାମଣି ସୁପ୍ରେମଶୀଳା;
ଶିବ ମୋହିନୀ ଦାଶ ବସ୍ତ୍ରଳା,
ଗାବ ଯିବ ଯିନା ଦେଲା କଲେ ତନ୍ତ୍ରୀ । ୩ ।
ନନ୍ଦ ନନ୍ଦନଙ୍କ ବୃନ୍ଦ ବାଣୀ, ଶୁଣି ମାନ ମୁଞ୍ଚ ଠାକୁରାଣୀ;
କୋଳକଲେ ପ୍ରିୟଙ୍କୁ ସେକ୍ଷଣି,
ତାପୀ ଅଭିମାନେ ଯାନ ବେଣୁଧର ଭଣେ । ୪ ।
( କି ଦେଖିଲୁ ମା—ବୃତ୍ତ )

—o—

( ରାଗ—ରେ ଗୁପ୍ତ । ତାଳ—ଏକତାଳୀ )
ଗଣବଣା ଏଣୀ ନେତ୍ରୀ ଶୁଣ ମୋର ବାଣୀକରେ ।
ଚଣକରେ ନଟଣୁ ଯା ମୋତେ ତୁମ୍ଭ ଏଣିକରେ । ଘୋଷା ।
ଚରଣ ଆଶ୍ରିତ ଜନ, କାହାର ନେବ ଚେଣ;
ହରେ ନ ଭଲେ ଦୁଃଖ ଯିବ ଧନ କେଣିକରେ । ୧ ।
ତାରିଣୀଗମନା ବେଷ, ମୁଞ୍ଚ ମୁଁ ମାଗୁଛୁ ଦୋଷ;
ତାରଣ ଧ୍ୱଜା ଉଡ଼ାଅ ମାନ ଫିଙ୍ଗି ପାଣିକରେ । ୨ ।
ଚରଣ ଦଶନେ ଧର, କଣ୍ଠୋଚ୍ଛ ଦମ୍ଭାଚର,
ଶିର ନ ନୁଆଁଇ କେତେ ମୁଞ୍ଜ-ନଟାମଣି କରେ । ୩

ପୂରଣ କର ମୋ ଆଶ, ଅରସିକାବର ଆସ,
ଭୂରନ୍ତ କହୁଲେ ପଛେ ବାନ୍ଧଦେବ ବେଣୀକରେ । ୪ ।
ସେ ରଣ ରଣ ମୋହନ, ସ୍ୱଚ୍ଛ ମଞ୍ଜୁଳ ବଚନ,
ନ ଶୁଣନ୍ତେ ବେଣୁଧର କହେ ଧର ପାଣିକରେ । ୫ ।
(ଶ୍ୟାମଙ୍କୁ ଦେଖିଲେ ଥରେ ମନକଥା—ବୃତ୍ତେ)

—*—

( ରାଗ—ଦକ୍ଷିଣ କାମୋଦୀ । ତାଳ—ଏକତାଳୀ )

ଖଞ୍ଜନାକ୍ଷୀ ସ୍ମିତ ମଣ୍ଡନାରେ, କୋକିଳ କଳବଚନା ।
କାହିଁକଂରେ ଧନ,- ମଣି ଏ ଗୁମାନ-
କରି ମୋଠାରେ ରହିଛୁ ଚନ୍ଦ୍ରାନନା । ଘୋଷା ।
କରିଛୁ କି ଦୋଷ, କହରେ ନାରୀଶ
ବାସ ଅଙ୍ଗୀବାସ ପଣନ୍ତର ଦାସ, ଅଟେ ତୋର ପାଶ,
ନ କର ନିରାଶ, ଶରଦଚନ୍ଦ୍ରହାସ କହିଁକେ ପ୍ରକାଶ । ୧ ।
ଗଣ୍ଡଯୁଗେ ପାଣି ମଣ୍ଡନା ସିହାଣି
କରକେ ଧରଣୀ, ଚଳୁ କସ ମଣି, ଶୁଣିକାଣାଏଣୀ—
ନୟନରୁ ପାଣି, ମୁଞ୍ଚ ଶୂଳପାଣି ମିହ ଶିରେ ଆଣି । ୨ ।
କନକ କଲ୍ଲସ, ମନକଥା ଗୋପ୍ୟ,
ଧନ କହ ସ୍ମର, ଭିନ୍ନ ହୁଏ ମୋର, ଅନଙ୍ଗଚିତ ମୁଁ ।
ତୋ ପ୍ରୀତି ଉଷାସ୍ୟ, ମାନ ମନୁ ମାରିଦିଅ ସୁକୁମାସ୍ୟ । ୩ ।
ଜଣାଉଛୁ ଧନ ! ମୋ ଦଇନ ଘେନ,
ରମଣୀ ରତନ, ତେଜ ଅଭିମାନ, ବେଣୁଧର ଗାନ,
କର ଶ୍ରବଣନ, ଜନପ୍ରି ବଚନ ନକର କୁ ଆନ । ୪ ।
( ସାରସାକ୍ଷୀ ମାଳ କୁନ୍ତଳାରେ—ବୃତ୍ତେ )

—*—

( ରାଗ—କଳ୍ୟାଣକାମୋଦ । ତାଳ—ଅଠତାଳୀ )

ମାନ ମାନେ କରେ ଧନ ପଙ୍କଜନୟନେରେ ?
ନବ ଯଉବନ ଆରେ ପ୍ରାଣପ୍ରୀତି ଭୂଷଣା ତୁ ଅବସରେ ॥
( ଘୋଷା )

କର ଧର ଚୋର ଜଣାଉଛୁ ବରବରନା ଯେଣ ତୁ କାରେ ।
ରସିକମଣି ଆଜ ଏଣିକ ମୁଁ ଲଭେ ତୋଷିବୋନ୍ନତ ସେବାରେ । ୧ ।
ନାଗଶ୍ରେଣି ସ୍ତନାଗ୍ରେ ଗାଢ଼ କରୁଣା ସାଗର ସ୍ମରମଦାରେ ।
ମୋତିଦନ୍ତୀ ଦନ୍ତୀଗତି ଚିତ୍ତଦାୟି କାନ୍ତି ବାହୁ ଯୁଗଦ୍ୱାରେ । ୨ ।
ଧର ମଣ୍ଡନା ରେ ସୁବର୍ଣ୍ଣ ଖଣ୍ଡନା ଦଣ୍ଡନା ତୁ ଅଧିକାରେ ।
ନବସାର ଅଙ୍ଗୀ ଅଙ୍ଗୀକାର କର ବୃଷ୍ଟି ବୈରି ମଲ୍ଲାରେ । ୩ ।
ଆଦ୍ୟ ଅକ୍ଷରେ ଶ୍ରୀକୃଷ୍ଣଙ୍କ ବନ୍ଦନ୍ତି ଶ୍ରୀ ଶ୍ରୀ ବୃଷଭାନୁଜାରେ ।
ଜଗନ୍ମୋହନ ମୋହିନୀ ପଦଯୁଗେ ଏ ବେଣୁଧର ସୁହାରେ । ୪ ।
( ଶ୍ୟାମ ନାଗରହେ ! ଏ ବେଶ ହୋଇବ ନାହିଁ—ବୃତ୍ତି )



( ରାଗ—ଭଟିଆର । ତାଳ—ଏକତାଳୀ )

ଆହେ ଦୟାବନ୍ତ !
ଦଳା କଳା କୁନ୍ତଳା ତୋ ଏ କି ସ୍ଥିତି ?
ଦରହସା ଭଙ୍ଗୀ କମ୍ପମାନ ଅତି ? । ଘୋଷା ।
ଦରଦ୍ରବଧରେ କଣ୍ଟ-ଗତି, ଦରକଣ୍ଠି ! କସୁ ମଥା ପୋତି,
ଦଶନ ମଞ୍ଜୁଳା ଦନ୍ତ-ଦ୍ରୁମା, ଠଳା
ଦମଦମ ହୁଏ କମ୍ପା ଗୁନ୍ତି ? । ୧ ।
ଦଣ୍ଡ ଦଣ୍ଡକରେ ପ୍ରାଣମିତ ! ଦରବାଇ ଦେଇ ମୋର ଚିତ୍ତ,
ଦକ୍ଷିଣ ଅପାଙ୍ଗ ଅନାଇ କ, ରଙ୍ଗ
ଦଣ୍ଡା ମଦନର କରୁ ଶାନ୍ତି । ୨ ।
ଦଳକ କାଞ୍ଚନ ଝଳ ଗୋଇ, ଦନ୍ତୀଦନ୍ତ ପଲଙ୍କ ପାଶୋର,
ଦେଇ ଚନ୍ଦ୍ର ପାଣି ରସିକା ସିଦ୍ଧାଣୀ,
ଦୁଃଖେ ନଖେ ଚିହ୍ନୁ ବହୁମତ । ୩ ।

ଦଣ୍ଡିନ କରୁଛୁ ଗାବଧନ ! ଦୋଷମୁକ୍ତ ନ କର ଏ ପାନ
ଦଶା ଦେଖ ମୋର ଲକ୍ଷଣ ଶ୍ରୀଧର,
ଦୁଃଖୀ ବେଣୁଧର ନୂଆ ଦୁଖ । ୪ ।
( ଆରେ ଵଚକ୍ଷଣା ! ବସ୍ତୁରୁଛୁ ମୋ କରମ ବଡ଼ ଉଣା—ପ୍ରଭୃ )

—*—

( ରାଗ—ଭୈରବୀ । ତାଳ—ଆଠତାଳୀ )

ଏତେ ବଢ଼ିସ୍ଥା କାହିଁକି ମୋହଠାରେ ଗୋ ।
ବେଣୀ ମଞ୍ଜୁଳା କଣୋଗ୍ର କହ ବାରେ ଗୋ । ଘୋଷା ।
ସଖି ! ମୁଁ ଧରୁଛି କର, ଦାସରେ ଦ୍ୱେଷ ନ କର ।
ତୁଷ୍ଟ କେ ରଖିବ ସମର୍ପିଲେ ମାରେ ଗୋ । ୧ ।
ଦୋଷୀ ହେଲ ଯେବେ ତୋରେ, ପୋଷିଲ ଜନ ପରାରେ ।
ଷଟପଦ କେଶୀ ଯେନ ସ୍ୱବଶ୍ୟରେ ଗୋ । ୨ ।
କ୍ଷଣଦା କାନ୍ତ ନଗନା, ଅନାସ୍ତୃତ ହେଲ ଅନା ।
ମାଗୁଛୁ କର ପ୍ରସାର ଏତ୍ତଠାରେ ଗୋ । ୩ । .
କଦନ ଦଅନା ଆଜ, ବଦନ କେତେ ନୁଆଉଁ ।
ରଦନେ ତୃଣ ଧରି ଲକ୍ଷିବାରେ ଗୋ । ୪ ।
ଧର ଧରଙ୍କ ବଚନ୍ତ, ଶୁଣି ମାନନୀ ଶ୍ରୀମନ୍ତ ।
ନ ରହାନ୍ତେ ବେଣୁଧର ମନ ମାରେ ଗୋ । ୫ ।
( ଶ୍ୟାମ ସମ କମନୀୟ ତ ନାହିଁ ଆଉ—ଭୃଭେ )

—o—

( ରାଗ—ଚକ୍ରବାକ । ତାଳ—ଆଠତାଳୀ )
ଇନ୍ଦୀବର-ନୟନା ମୋ ରୂଷନା ରେ ।
ମାନକୁନ୍ତ ମୋ ହୃଦରେ ଭୂଷନା ରେ । ଘୋଷା ।
ଆରେ ପଲ୍ଲବାଧର, କହୁଛୁ କର ଧର
ମାନ ମୋ ବଚନ ନବ ରସବନ୍ତ,
ପଛକୁ ଘୁଞ୍ଚ ତୁ ବସନା ରେ । ୧ ।

ଗଣ୍ଡେ ଶୋ ପଦ୍ମପାଣି ମଣ୍ଡନା ଯୋଷାମଣି :
ଦଣ୍ଡନା ବିରହେ, ଚଣ୍ଡ ଭାବେ ମୋହେ;
ଖଣ୍ଡ କଣା ମଧୁ ବଚନାରେ । ୨ ।
ବରଜ ଏ ଭୁବନା, ମତ୍ତଗଜ ଗମନା,
ସରଜ ସୁପ୍ରୀତି, ବୃଥା ମଥା ପୋଡି,
ଉଦ୍ଧନ୍ତୁ କେତକୀ ବରନାରେ । ୩ ।
ନିକୁଞ୍ଜ ବିଳାସିନୀ, ନିଜ ଦାସେ କ ହେନ
ଏ ଦାରୁଣ ସ୍ମୃତି, ବନ୍ଧନ୍ତୁ ଶ୍ରୀମଙ୍ଗ !
ନ ହୁଅ ମୋ ଧନ ! ବିମନାରେ । ୪ ।
ଅନା ଯାଉଛୁ ସର, ନିଅ ଏଥି ଉତ୍ତର,
ହରବାଣୀ ଶୁଣି, ଶ୍ରୀ କିଶୋରୀମଣି,
ଭାଷିଲେ କଣ୍ଠ ବେଣୁ ରଚନାରେ । ୫ ।

( କେତେ କାଳ ହେଲା ଦେଖି ନାହିଁ ସଖୀ—ବୃତ୍ତେ )

—❀—

( ରାଗ—ମାରୁଆ । ତାଳ—ଆଠତାଳୀ )

ଆସ ଆସ ନାଗରୀବର, ରାସ ରଙ୍ଗିନୀରେ ଧର ମଣ୍ଡନା ଧୀର । ଘୋଷା ।
କେଉଁ ଅପରାଧ କଲି, କୋଳରେ ନବ ଚଞ୍ଚଳୀ,
ଜୀବଧନ ଏ ଗୁମାନେ ବସିଛୁ ପର । ୧ ।
ମଣ୍ଡିକ ଲପନ ପୋତି, ନ ବସରେ ସୁଦନ୍ତି,
ଘେନ ମୋ ଦମ୍ପିମା କଣ୍ଠ ରତନ ହାର । ୨ ।
ଅରୁଣାଧର ଶୋ ବନା, ସହୁଛି ରେ ନଗନା,
କରୁଣା ବାନ୍ଧିକ ଜଣା ରଙ୍ଗ ପସର । ୩ ।
ଭାଷେ ବେଣୁଧର କବି, ମାନ ତେଜ ବାନ୍ଧବୀ,
ଟେକ ଶ୍ରୀମୁଖ ଛାଡ ଧଇର୍ଯ୍ୟ ହାର । ୪ ।
( ପ୍ରାଣ ସଙ୍ଗିନୀରେ ! ମେଘାନନ୍ଦ—ବୃତ୍ତେ )

—o—

( ରାଗ—କେଦାରଗଉଡ଼ | ତାଳ—ଝୁଲା )
ଆରେ ପ୍ରେମ-ସାମନ୍ତାଣି ! |
ଉଣା ନ କର କରୁଣା ଶୁଣା ଥରେ ବାଣୀ | ଘୋଷା |
ବାଳୁତ ବାଳୁତ ମୁଁ ତୋ ଚରଣ ଗୁକର ( କଣା ନଜରର )
ଟାଳୁତ ନାହିଁ କଷ୍ଟରେ ସ୍ନେହ ସୁଧାସାର | ୧ |
ଦର ଦେଉଛୁ ମରମେ ସାମର ଦର୍ପକ |
ଦର-କଣ୍ଠି ! ପର କଲେ ହସିବେଟି ଲୋକ | ୨ |
ରସାଳସା ଦଶା ଦେଖ ପଡୁ ଅଛୁ ବଳ |
ଭସାଅନା ଦୁଃଖ ସାରେ ହୋଇ ତୁ ଏଭଳ | ୩ |
ବାସବ-ଭୂଷ ଦାପ୍ତିମା ଆଶ ମୋ ନ ନାଶ |
ରାସ ରଙ୍ଗିମା ସଙ୍ଗିନ ! କ୍ଷମାକର ଦୋଷ | ୪ |
ନ ଶୁଣନ୍ତେ ଶ୍ୟାମ ବୃନ୍ଦେ ଦୁର୍ଦ୍ଧର୍ଷ-ମାନସୀ |
ଦୁଃଖୀ ବେଣୁଧର ପଦେ କରଇ ଭଇନ | ୫ |
( ଆହା କ ଦଣ୍ଡ ପଡ଼ିଲା—ପ୍ରଭ )

—୦—

( ରାଗ—ବଡ଼ ଅଷାଢ଼ ଶୁକ୍ଳ | ତାଳ—ଝୁଲା )
କଞ୍ଜ ନୟନା ରେ ! କଞ୍ଜ ବଦନାରେ ! !
କାମ ଶାପୁକେ ସରଳ ଅନାରେ | ଘୋଷା |
କଣେ ଶ୍ୟାମଣି କୁଞ୍ଜ ବଦ୍ଧାରଣୀ | କେଳ ନିକଟରେ କୋକିଳ ବାଣୀ ||
କୌତୁକେ ମୋ ଅଙ୍କେ ବସାଜଧନ | କର ନା ଏପରି ଦାରୁଣମାନ | ୨ |
କାହାର ହେବ ମୁଁ ତୁ କଲେ ମର | କଷ୍ଟରେ କରୁଣା ଉଣା ନ କର ||
କୁସୁମ କୋମଳ ରେ କଳାବତୀ | କେ ଶିଖାଇଲା ଏ ଚୁଟିବା ରୀତ | ୨ |
କଥା ପଦେ କହ ଅଳପ ହସି | କାଞ୍ଚନ ଗୋଷ୍ଠ ରାଣୀ ଏଣୀ ଦୃଶୀ ||
କଛୁ ଦୋଷ ଥିଲେ କର ତା କ୍ଷମା | କୃଷ୍ଣ ନ ଆଚର ନପରେ ଜେମା | ୩ |
କର ଧରି ଜଣାଉଛୁଟି ଏତେ | କାଞ୍ଚଲି ଲାଗି ଦାସୀ ମୁଁ ନରତେ ||
କଣିକୁ ପଦା ପ୍ରୀତି ଧନ ଦେଇ | କୁଞ୍ଚିତ କୁନ୍ତଳା ମୋ ପ୍ରାଣ ସଖି | ୪ |
କଂସାରଙ୍କ ବୃନ୍ଦ ବାଣୀ ଶ୍ରବଣେ | କଲେ ମାନ ଦୂର ରାଈ ସେକ୍ଷଣେ ||
କୁଞ୍ଜୋଦରେ ବଳେ ଯୁଗଳଠାଣି | କବିଚନ୍ଦ୍ର ପଞ୍ଚନାୟକ ଭଣି | ୫ |
( ବୃହିଁଲତ ନାହିଁ —ବୃନ୍ଦେ )

—❀—

( ରାଗ—ବସନ୍ତ କେଦାର । ତାଳ—ଆଠତାଳି )

ଘୁରୁ କୁଞ୍ଚିତ କୁନ୍ତଳା,
ରୁଷି ବସନା ମୋ ପ୍ରେମଶୀଳାରେ । ଘୋଷା ।
ଗନ୍ତେ ମଣ୍ଡି ପାଣି, ଆରେ ରାମାମଣି,
କସ ପାଞ୍ଚୁ ମନେ ମନରେ ।
ଢୋଇଛୁ ଢାକର, ଘୁମୁଟର ଢୋଢର,
ଦଣ୍ଡଦଅ ଚନ୍ଦ୍ରାନନରେ । ୧ ।

ନଖରେ ଧରଣୀ, ଟରୁ କସ ମଣି,
କାଟୁଥିବ ଶ୍ରୀକରକୁରେ ।
ମାନ ମୋ ଢନନ୍ତ ଆରେ ରସବନ୍ତ,
ତେଜ ତୁ ମାନ ଘୁରକୁରେ । ୨ ।

ଟେଟେଚ ମୋହ ରଣ, ଦେଉଛୁ ପରଣ—
ଧନ ! ନୂହ ତୁ ଏପରିରେ ।
କର ସଜମାନ ମନ ସୁପ୍ରସନ୍ନ—
କର ଢଅ ଆରେ ଗୋଷ୍ଠରେ । ୩ ।

ଛଣା ସୁଧାବାଣୀ, ଭାଷ ଗୁଣମଣି,
ବଣାଏଣିନେଣି ମୋରରେ ।
ଯାହା ଢୋଇବାର, ନେଉଲିଣି ଏଥର,
ଟେକ ମୁଖ କଳାକରରେ । ୪ ।

କରୁଛୁ ଯୁହାର, ନ ଥବ ଅଧର
ଘେନ ମୋର ଢନନ୍ତକରେ ।
ମୁହିଁ ତୋର ଦାସ, ପଗ ର ବାଳୀଶ,
ଭିନ୍ନ ନ କର ମଙ୍ଗଳରେ । ୫ ।

ମୋହନଙ୍କ ବାଣୀ, ରାଧା ଠାକୁରାଣୀ,
ଶୁଣିଲେ ନାହିଁ କଞ୍ଚିତରେ ।
ପୁଣି ଘେନା ଘେନ, କର ମାଳମଣି,
ଭଷିଲେ ତାଙ୍କ ଅଗ୍ରତରେ । ୬ ।

ସେ ରସ ରସିକ, ପାଦପଦ୍ମ ରଙ୍କ
ଧ୍ୟାନ ବେଣୁଧର ଭଣି ସେ ।
ସତେ ନକ ଜାବ, ଏ ପିଣ୍ଡରୁ ଯିବ,
ତାଙ୍କ ଭାବ ଗୁଣି ଗୁଣି ହେ । ୭ ।
( ନବ ବସନ୍ତ ସମ୍ପୂ—ବୃତ୍ତେ )

—o—

( ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )

ହେନରେ ମୋ ଦଇନ ସଙ୍ଗିନ !
ନବଘାନ ସ୍ବରୁ ହେମ ଅଙ୍ଗିନ । ଘୋଷା ।
ଏ କଦମ୍ବ କୁଞ୍ଜେ ଥିଲି ମୁଁ ବସି । ଆସିବେ ବୋଲି ’ତୋ ସବୁ ସୁକେଶୀ । ୧ ।
ଏକାଳେ ଏ ଗୀର ଶୁଭିଲା ମୋତେ । ରଖ ରଖ ଶ୍ୟାମ ଆସିଣ ଏଥେ । ୨ ।
କସ ହେଲା ବୋଲି ମୁଁ ଗଲି ଧାଇଁ । ଦେଖିଲି ଏମନ୍ତ ରେ ପ୍ରିୟସନ୍ଧ । ୩ ।
ମୋର ସଖାଙ୍କୁ ସଙ୍ଗଚୂଡ଼ ଘେନି । ଯାଉଥିଲା ମୁଁ ମିଳିଲି ତକ୍ଷଣି । ୪ ।
ତାଙ୍କୁ ବଧ କରି ଅତି ଚଞ୍ଚଳେ । ଆସିଲି ବାହାରି ତୋ ଏହିବେଳେ । ୫ ।
ଏଣୁ ବିଳମ୍ବ ହୋଇଅଛି ମୋର । ପ୍ରେମବରନା ଦୋଷ କ୍ଷମାକର । ୬ ।
ଏ ବ୍ରଜପୁରେ ବସିଅଛି ହାଟ । ରାଧା ନୃପତି ପ୍ରଜା ନନ୍ଦସ୍ବଠ । ୭ ।
ସଟି କନ୍ଦରେ ଦେଖାଇ ଦର୍ପଣ । ବେଣୁଧର କରେ ସେ ପଦ ଧ୍ୟାନ । ୮ ।

—❋—

( ରାଗ—କଲ୍ୟାଣ । ତାଳ—ଏକତାଳୀ )

ଝସନସ୍ମୁନା ବସନା ରୂଷି ।
ଝଳ ଗୋଷ୍ଠ ସବୁ ଦୋଷ କ୍ଷମା କର ହସି । ଘୋଷା ।
ଝରଅନା ନେଝ୍ ମାର, ହେନରେ ରମଣୀବର ।
ଆଜନମୁଁ ସେବକ ମୁଁ ପରା ଘନକେଶୀ । ୧ ।
ଝମକାଇ ତୀକ୍ଷ୍ଣ ଅସି, ମାର ମର୍ମେ ମାର କଷି ।
ଏଥକୁ ସାହା ନୋହିଲେ ସରିଲାଟି ଆସି । ୨ ।

ଝାଉଁମରା ହେଲ ଅନା, ତୋର ଅନାଦରୁ ସିନା ।
ଝଟେତି ଉର ବେଦନା ଆଜରେ ମଦାଳସୀ । ୩ ।
ଝିନ ବସନା ଚତୁରୀ, କହୁଛୁ ଚରଣ ଧରି ।
ଝୁଲ ମାଳ ତୁ ମୋ ଗୋଷ୍ପ ରେ ଅଳ୍ପବୟସି ! ୪ ।
ଝାଡ଼ ବିନୋଦଙ୍କ ବାଣୀ, ନ ଶୁଣନ୍ତେ ଠାକୁରାଣୀ ।
ଝର ଗୁହା ବେଣୁଧର ଦୁଃଖେ ଯାଏ ଭାସି । ୫ ।

( ଛନ୍ଦ ନରଖ କୁନ୍ଦନଗୋସ୍ୱା—ପ୍ରତି )

—o—

( ରାଗ—କୁମ୍ଭକେଦାର । ତାଳ—ଆଠତାଳୀ )

ଅନା ଅନାଥରେ କମ୍ପା ଏ ବୃମନରେ । ଜୀବଧନ ! । ଘୋଷା ।
ମନ୍ଦାକ୍ଷେ ପୋତି ଲପନ ରହନା ରମାରଞ୍ଜନ,
ଶୁଣା ଗଣା ଜଣାବାଣୀ ନହୁଅ ମଉନରେ । ୧ ।
ଗଣ୍ଡ ମଣ୍ଡଳୁ ତୋ ପାଣି— ପଲ୍ଲବ ମୁଞ୍ଜ ସିହାଣୀ
ମଦନ ସାରୁଛୁ ଆଣି କରନା ତୁ ଭିନ୍ନରେ । ୨ ।
ଆରେ ମୋ ପ୍ରୀତି ସାରଣି ରସିକା ମୁକୁଟମଣି,
ଅଣିମାଦ୍ୟ ସୁଖ ଦାମ୍ପ ତୁଚ୍ଛସି ପ୍ରସନ୍ନରେ । ୩ ।
ଅରନା ବିମ୍ବଅଧର ପରାଣ ବାନ୍ଧବୀ ମୋର,
ଧର ମଣ୍ଡନା ଏଥର ମୋ ଦଇନ ଯେନରେ । ୪ ।
ନକର ଦାସେ ନରାଶ, ପ୍ରସାରି ମାଗୁଛୁ ବାସ,
ହର ମରମର କ୍ଲେଶ ଦିବ୍ୟ ଚୁମ୍ବଦାନରେ । ୫ ।
ଶ୍ରୀକୃଷ୍ଣ ବଚନ ଶୁଣି ମାନମୟୀ ଠାକୁରାଣୀ
ସ୍ନେହେ କୋଳକଲେ ବେଣୁଧର ହରଚନରେ । ୬ ।
( ନଯା ନଯା କନେ ମୋ ନେହ ସଙ୍ଗାଳରେ—ବୁଭେ )

—✽—

## ମାନଲୀଳା

( ରାଗ—ନଳମା ଗୌଡ଼ା । ତାଳ—ଝୁଲ )

କରେ କୁଞ୍ଚିତ କେଶୀ !
ତୋ ପରଜନେ ଧନ ବସନା ରୁଷି । ଘୋଷା ।
କରିଛୁ ଯେବେ ଦୋଷ ମୁହିଁ ତୋ ପାଶେ ।
ଦଣ୍ଡ କନା ଶ୍ରୀ ବାହୁ-ଯୁଗଳ ପାଶେ । ୧ ।
ଶାବକ ଦନୁ ପାଦ ଯାବକ ଢଆ ।
ନୂତନା ମଣି ବୁଝ ମୁଁ ତୋ ବେଠିଆ । ୨ ।
କାହା କୁଶିକ୍ଷା-ବାଣୀ କାନକୁ ଆଣି ?
ରାଜୀବ ନେତ୍ରୀ ଆଜ ଏଡ଼େ ରୁଷାଣି । ୩ ।
ଆସରେ ଆସ ଦାସ ବତ୍ସଳୀ ଧନ !
କାଶ କୁନ୍ଦ ହାସିମା ବଧୂବଦନା । ୪ ।
ଭଣଇ ବେଣୁଧର ଆହେ ମୋହନ !
ଭଜବ କ ରାଈଙ୍କ ଦୁର୍ଜ୍ଜୟ ମାନ । ୫ ।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେ )

—※—

## କୃଷ୍ଣ ଓ ସଖୀ

( ରାଗ—ଖଣ୍ଡ ବଙ୍ଗଳାଶ୍ରୀ । ତାଳ—ଆଠତାଳୀ )

କୃଷ୍ଣ—କଲେ ହତାଦର, ହୋଇବ କାହାନ୍ତ,
ଯେବେ ମୋ ବଦନସୁ ଗୀର ଗୋ ।
ଜୀବ ସିନା ଯିବ ଏକା ସେ ରାଜୀବ—,
ନେତ୍ରି ନାମକଣ ସାର ଗୋ ।
ନାହିଁ ଆଉ ମୋ ଆସ୍ପୃତ, ଯାହାକଲେ କର ସଖି ବ୍ରତ ଗୋ ।
ସଖୀ—ଆମ୍ଭହାତେ କହ୍ଛୁ ଭୁହେ ନନ୍ଦବହ୍ନି,
ଶୁଣ ରାଈ ମାନକଥା ହେ ।
ସେହ୍ନ ବନଠାରୁ ପଗ ସଙ୍କେତରୁ,
ଲେଉଟି ନ ଟେକେ ମଥା ହେ ।
ଚନ୍ଦନୁ ଆଦର ତାର, ଲୁଟାଇଛୁ ମାନବଣୀ ବର ହେ । ୨ ।

କାହାର କଥା ସେ ନ ଶୁଣନ୍ତି ଲୋକେ;
ଯେ ଯେତେ କହେ ଭିଆଣେ ସେ ।
ଝକଳ ମନରେ, ପଣ୍ଡୁ ଅବମାନରେ,
ନେତ୍ର ଝୁରେ ଅଶ୍ରୁ ବାରି ହେ ।
ସବୁ ମଣି ଅଛୁ ବିଷ, ବନ ସମାନ ମଣୁଛୁ ବାସ ହେ । ୩ ।

କୃଷ୍ଣ—ଏବେ ତୋ ଚରଣ ମୋ ଶିରେ ଧାରଣ
କରି ଚନ୍ଦ୍ରପୁରେ ମୁହିଁ ଗୋ ।
ବାସ ପ୍ରସାରଣ ଦନ୍ତରେ ତୃଣ,
ଧରି ମାଗୁଅଛୁ ସନ୍ଧି ଗୋ ।
ରାଧା ପ୍ରେମ ରସେ ଗୋଷ୍ଠ, ବାଧାନାଶୀ ମନ୍ତ୍ରାଅ ସୁନ୍ଦରୀ ଗୋ । ୪ ।
ସେ ମୋହର ପ୍ରାଣ ମୁଁ ତାର ଅଧୀନ,
ତାହା ବିନୁ ନାହିଁ ଆନ ଗୋ ।
ଏତେ ଅନାଦର କଲେ ମୁଁ କାହାର
ଦେଖ କର ଅନୁମାନ ଗୋ ।
ତୁମ୍ଭ ପରି ସଖି ଥାଉଁ, କଏ ମୋ ଦୁଃଖ ନାଶିବ ଆଜ ଗୋ । ୫ ।

ସଖି  ଏହା ଯଦି ଜଣା ପଡ଼ିଥିବ ବଣା-
ହେବ ସିନା ଅମ୍ଭ ବୃଦ୍ଧି ହେ ।
ଏ ଗୋପ ନଗରେ ଜନଙ୍କ ମୁଖରେ,
ଦୂରି ହେବ ନିରବଧି ହେ ।
ସବୁ ପ୍ରେମସ୍ପର୍ଶ ଯାଉ, ସଖି ଯିବଟି ଦୂରେଖ ରଙ୍କ ହେ । ୬ ।
କଂସ ନୃପବର ପାଇ ଏ ଖବର,
ହାଣି ଦେବ ମଥୁରେ ହେ ।
ଯାଅ ଯାଅ ତୁମ୍ଭେ ଯାଉଛନ୍ତୁ ଏବେ,
ବୋଧିବୁ ସଙ୍ଗ ତୁମ୍ଭକୁ ହେ ।
ଏତେ କହି ସଖୀମାନେ, ଚଳିଲେ ବେଣୁଧର ଭଣେ ଗୋ । ୭ ।
( ଏହି ତ ଅନ୍ତଃରେ କୃଷ୍ଣ ଗୋ—ପ୍ରଭୁ )

—o—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳି )

ଆରେ ଆରେ ବନ୍ଧୁ ମୋର ।
ରୋଷ କର୍ବ ସତେ ମୋତେ କଲୁକ ଅନ୍ତର । ପଦ ।

ଛୁଟଇ ନାହିଁ ସଦନ-ରଚନ-ପଲଙ୍କ ।
ନାଚଇ ନୟନେ ସଦା ରାଇ ଚନ୍ଦ୍ରମୁଖ । ୧ ।

ନେହସାରେ ନିରନ୍ତର ଭିଜଇ ହୃଦୟ ।
ଧନମଣି ବିନା ମନ ହୁଅଇ ଅଥୟ । ୨ ।

ସର୍ବ୍ବ କପର ମୂର୍ତ୍ତି ମଦନ କଦନ ।
କହିବ କାହାକୁ ଏହା ନିଜ ଅରଜନ । ୩ ।

ପ୍ରବେଶି ମଧୁମଙ୍ଗଳ କହନ୍ତ ଏକାଳେ ।
କରିବା ଉପାୟ ସଖା ଥୟ ହୁଅ ବେଳେ । ୪ ।
ସେ ମଧ ମାଧବଙ୍କର ଚରଣ ସୁମରି ।

କବିଚନ୍ଦ୍ର କହେ ରାଇ ମାନ ଅନ୍ତଶ୍ୱାର । ୫ ।
( ସଖା ବୃନ୍ଦାବନ ଶିଶୁ ଦେଖ—ପ୍ରଭ )

—o—

( ରାଗ—ଝିଁନ୍‌ଝିଟ୍ । ତାଳ—ଏକତାଳି )
ରାସ ରଙ୍ଗିମା ତୁ ଆସରେ ଆସ ମୋ ପ୍ରାଣ ।
ଏ ବେଶ ଠାଣି ନ ନ ଶରେ । ଘୋଷା ।

ଅରେ ତୋ ସୁଦୟା — ଅପାଙ୍ଗକୁ ମୋରେ-
ଫିଙ୍ଗି ଦଅ କର୍ବ ତୋଷ ରେ ।

ମୋର ଏହ୍ବ ଦୋଷ— ପାଇଁରେ ନାସ୍ତିଶ,
ମାଗୁଛୁ ପ୍ରସାର ବାସ ରେ । ୧ ।

ଦେଲେ ଅନୁମତି — ଆରେ ଗଜପତି !
କରି ଦେବି ସ୍ୱଚ୍ଛ ବେଶ ରେ ।

ଭୃଙ୍ଗ କାନ୍ତି ବେଣୀ— ରତି ରେ ସିହାଣି !
ଖଞ୍ଜି ଦେବି ସୁମନସ ରେ । ୨ ।

ତୋ ମୃଦୁ ବଚନ— ପଦ୍ମକରେ ଧନ,
ଶୁଣା ମୋତେ ତେଜ ରୋଷରେ ।

କରକ ବଦନା  କର କର ଘେନା
ମୋ ଦଇନ୍ୟ ନାଶ କ୍ଷଣ ରେ । ୩ ।
ବସିଗଲ ଦେଖ  ନ କର ଅରେଖ
ଭଙ୍ଗି ନ ଦଅ ମୋ ଆଶା ରେ ।
ଏପରି ମୋହନ  ଭାଷିଲେ ବଚନ,
କହେ କଣ୍ଠ ନକ୍ଷତ୍ରେଶ ରେ । ୪ ।
( କୋଡୁ ପଛେ ଶ୍ୟାମ ପ୍ରୀତି ଗୋ—ବୃନ୍ଦେ )

—※—

( ରାଗ—ଆନନ୍ଦଭୈରବୀ । ତାଳ—ଏକତାଳୀ )
ରୂପମୋହିନୀ ରେ ! ରୂପି ବସନା ତୁ ମୋରେ ।
ତୁଷି ଫୁଲଶର ଶର ଅନାଦୃତ କରେ । ଘୋଷା ।
ତୁ ଯିବା ମୋ ଗଳାହାର  ସୁଣୀବଦାସ୍ତିନୀ ଧୀର,
କୁଣୀଷା କାହାର ମାଇ ହେଜ ଏପରି ରେ । ୧ ।
ବସିବାରୁ ମୁଖପୋତ  ରସିକାମଣି ସୁଦନ୍ତୀ
ନସିବ ମୋ ନାଦ କୋଲ ଭାସୁର ମୁଁ କରେ । ୨ ।
ଶଶୀଜିତ ଶୋଭାନନା  ଧ୍ୱଂସି ବିରହ ବେଦନା,
କୃପା-କଟାକ୍ଷରେ ଅନା ଜଣାଉଛୁ କାରେ । ୩ ।
ତୋ ଶିର ବେଣୀ ସଜନା—  ଦାସୀ ପଦେ ମୋତେ ଲୋଡ଼ା
ଦୋଷୀ ଯେବେ ହୋଇଛୁଟି ନ ଧର ଶରୀରେ । ୪ ।
ବଂଶୀପାଣି ଭାଷୁଁ ଏତେ  ନ ରହି ଧନୀ କଷ୍ଟରେ
ଖଣ୍ଡିତା ରହେ ଭଣିଲେ କୋପ ସନ୍ତତରେ । ୫ ।
ବଂଶୀକା ଓଷ୍ଠେ ଦଶନ  ଦାସୀ ବେଣୁଧର ଗାନ
ଭଲେଙ୍କ ହେଲ ମଜନ ସେଣ୍ଡ କୁଞ୍ଜଦ୍ୱାରେ । ୬ ।
( ମୋତେ ଲଗାନାରେ ସନ୍ଧ ! ବ୍ରଜବଧୂ ନଟ—ବୃନ୍ଦେ )

—o—

( ରାଗ—ରସକଦମ୍ବ । ତାଳ—ଆଡ଼ତାଳି )
ଧନ ମାନିନ କରେ ? ଅବଧାନ କର ।
ପ୍ରାଣବକା ପରିଜନେ ଏପରି (ଧନ) ଘୋଷା ।
ଭ୍ରୁ ରୁଷି ମୋହିନୀ ଭଲ ବସ୍ତିର ତୋ ମତ ।
ରୁଷି ବସିଲେ ରସାରେ କାହିଁରେ ମୋର ଗତ । ୧ ।
ସୁଖସଦନା କୁନ୍ଦନ ବରନା ନଖନା ।
ଗଣ୍ଡ ଦରପଣେ କର କମଳ ମଣ୍ଡନା । ୨ ।
ତରକଣ୍ଠୀ ହର-ଘର ଖରରେ ମୁଁ ଖିନ୍ନା
ଆତୁର ଢଅନା ଦଣ୍ଡ ମନୁ କର ଭିନ୍ନା । ୩ ।
କ୍ଷମାଦାସୀମାରେ ରାଜ କେମାନେଣି ଘେନ ।
ଦାନକର ଏବେ ମୋର ସେବା ବଚନ । ୪ ।
ଆନ କିଛି ମାଗୁନାହିଁ ମାନ ଛାଡେ ଗୋସା ।
ବୋଲେ କବିଚନ୍ଦ୍ର କୃଷ୍ଣ ଶ୍ରୁତ ବାସଶୁଷା । ୫ ।
( ଜଣା ପଡ଼ିଲା ମାଁ ଏ କପଟଗିର—ବୃତ୍ତେ )

—❀—

( ସ୍ୱର—ବସନ୍ତ କୌମୁଦୀ । ତାଳ—ଝୁଲା )
ସର ଗଲଟି ଏଥର । ସାରିଦେଲ ମୋତେ ମଦୁଆ-ମାରରେ ।
ପ୍ରାଣବନ୍ଧୁଆ ! କର କର ପ୍ରତିକାର ର । ୧ ।
ଛରଡ ଦଶାରେ ଧନ ! ହେଲ ତରମସ ତରୁ ସମାନ ରେ ।
ପ୍ରାଣବନ୍ଧୁଆ ! ମାପକୁଞ୍ଜେ ଯିବ ପ୍ରାଣ ରେ । ୨ ।
ଭୁମ୍ଭେମାନେ ଏକାମୋର । ପରାଣର ସାଥି ସିନା ନିକରରେ ।
ପ୍ରାଣବନ୍ଧୁଆ ! ଏଣିକି ଯା ଇଚ୍ଛା କରରେ । ୩ ।
ଦେଖ ଅଲିକଅ ହୋଇ । ସ୍ୱଳ ନ ପାରି ମୁଁ ତଳ ପଡ଼ଇ ରେ ।
ପ୍ରାଣବନ୍ଧୁଆ ! ଉଦ୍ଧାର କର ସୁହାସ୍ତି ରେ । ୪ ।
ଶ୍ରୀକୃଷ୍ଣ ବଚନ ବାଣୀ ଶୁଣି ଭଣିଲେ ସକଳ ସଜନୀ ହେ ।
ମୁରଲୀପାଣି ! ମାନମୟୀ ଠାକୁରାଣୀ ହେ । ୫ ।
କଏ ବୁଝାଇବ ତାକୁ । ତୋଷ ପାଇଁ ଚନ୍ଦ୍ରକାନ୍ତ ସୁତାକୁ ହେ ।
ବଟ ଅଗ୍ରଣୀ ! ମୁଁ ପୁର ବନିତାକୁ ହେ । ୬ ।

ଚୁମ୍ବ ଏ ସୁଆଁଠବାଣୀ । ଯେତକ ସରଙ୍ଗ ସୁନ୍ଦରମଣି ହେ ।
ଶ୍ରୀ ଚନ୍ଦ୍ରାମଣି ! ଜଳ ସୁଧାକର ଭଣି ନେହ । ୬ ।
( କରମ ମୋହରେ ମନ୍ଦ—ବୁଝେ )

—୦—

( ରାଗ—ଆଶାବରୀ । ତାଳ—ଆଠତାଳୀ )
ଆରେ କୁନ୍ଦନ ଗୋର !
ମର କଲେ କେଲେ ମୁଁ ତୋହର ରେ । ଘୋଷା ।
ଶରଣ-ବତ୍ସଳା ସ୍ଵରୁ ପ୍ରେମଶୀଳା
ଆଜନମ ସୁକୁମାର ରେ ।
ଚରଣ ସେବକ— ଲୋକଠାରେ ବୃଥା,
ଅବଗୁଣ ଅଛୁ ଧର ରେ । ୧ ।
କେ କସ କହିଛୁ ଏ ଦଶା ହବିଛୁ,
ମୋ ନାମେ ଲଗାଇ କର ରେ ।
କରୀନ୍ଦ୍ର ଗମନା ସୁମନା ବମନା,
କେଲୁ କହ କ ହସ୍ତର ରେ । ୨ ।
ତୋ ହଜିତ ଆଜ୍ଞା କାଳେ ତ ଅବଜ୍ଞା,
କର ନାହିଁ ଶ୍ରୀ କଶୋରୀ ରେ ।
ରାଜୀବ-ନୟନା ଆଜ ଏ ବେଦନା,
ହଆଜ କମ୍ପ ନାଗରୀ ରେ । ୩ ।
ଯଦ ତୋରେ ଦୋଷୀ ହୋଇଛୁ ସୁକେଶୀ;
ମାଗୁଛୁ ବାସ ଧ୍ୱସାର ରେ ।
କର ଅନୁକମ୍ପା ଅପାର ନ କମ୍ପା,
ଯେନ ତୁ ରାଜ-କୁମାରୀ ହେ । ୪ ।
ଶ୍ୟାମ ସ୍ଵଚ୍ଛବାଣୀ କର୍ଣ୍ଣକୁ ନ ଆଣି,
ରାଇ ମାନହେଲ ଘର ରେ ।
ଭଣେ ବୈଷ୍ଣବର କଳ ଈଶାକର,
ନବଣ କୁଞ୍ଜବିହାର ରେ । ୫ ।
( ଆହେ ନାଗରବର ! ସଖୀ ଧହିବକ ଅନାଦର—ବୁଝେ— )

—୦—

( ରାଗ— ହଂସପ୍ରିୟା । ତାଳ—ଅଠତାଳୀ )

ଘେନ ଆସେ ଦୂତୀ ବଚନ୍ତି ଭାରତୀ;
ଜଣାଉଛୁ ତୋରେ ଏତେ ।
ହତାମାନିନୀକ ମୋ ଜୀବଧନୀଙ୍କ,
ମିଳାଅ କୁଞ୍ଜପୁରତେ ଗୋ ।
ସବୁ ଦୋଷ କରି କ୍ଷମା ।
ବହୁ ସୁନ୍ଦରୀ ନୃପତି ଜେମା ଗୋ । ୧ ।

ମୁଁ ତା ପରିଜନ— ପଣକୁ ଭଜନ,
ନୁହଇ ଯେବେ କଷ୍ଟେତ ଗୋ ।
କରୁଣା-ସାଗରୀ ନିଜଗୁଣ ଧରି,
ଅନାଇଁ ବାରେକ ମୋତେ ଗୋ ।
ବନ୍ଧୁ ନ କରୁ ନିରାଶ ।
ମାଗୁଅଛୁ ଦନ୍ତେ ଧରି ଘାସ ଗୋ । ୨ ।

ସରଳା କୋମଳା ସ୍ବରୁ ପ୍ରେମଶାଳା
ରସାଭୂଷା ଯୋଷାମଣି ଗୋ ।
ଭଗାଲି ହାତରେ ନ ମରୁଛ ତାରେ
କହିବୁ ଏ ମୋ ମାଗୁଣି ଗୋ ॥
ପ୍ରମତ୍ତ ବାରଣଗତି ।
ବିନା କାହିଁ ନାହିଁଟି ମୋ ଗତି ଗୋ । ୩ ।

ଭାବମା ରତନ— ଶ୍ରୀରାଠାରେ ମନ,
ପ୍ରାଣ ଅପଘନ ବିକା ଗୋ ।
ଏଣୁ ନିରନ୍ତରେ ମୃଦୁ ବଂଶୀସ୍ୱନେ
ଡାକେ ରାଧିକା ରାଧିକା ଗୋ ।
ନାହିଁ ଆନ ପ୍ରତିକାର ।
କରୁ ଏ କଷ୍ଟୁ ମୋତେ ଉଦ୍ଧାର ଗୋ । ୪ ।

ଚିନ୍ତାମଣି ବାଣୀ ଶୁଣି ସେହିକ୍ଷଣି,
ଦୂତିକା ଚହଁ ଚଳନ୍ତି ଯେ ।

କଶୋଗ୍ର ସନ୍ନିଧି ପରବେଶି ବୋଧି,
କୃଷ୍ଣ ଦୁଃଖ ଜଣାଇଲେ ସେ ॥
ସେ ବ୍ରଜଦେବୀ ଚରଣ ।
ଦୁଃଖୀ ବେଣୁଧର କରେ ଧ୍ୟାନ ଯେ ।୫।
( ନାଗମଣି ଗିରଧାରୀଠାରେ—ପ୍ରଶ୍ନ )

—※—

( ରାଗ—ଶଙ୍କର ଭରଣ । ତାଳ—ଆଠତାଳୀ )
ଏତେ ଜଣାଇବୁ ସଖି
କୃପା ଅକୁପାର ତାର ଗଲାଣି କି ଶୁଖି ?
ଏତେ ଜଣାଇବୁ ସଖି ! । ଘୋଷା ।
ଅଳ୍ପେଣି ଛଇଳାମଣି ମୋତେ ଯା ଉପେକ୍ଷିଲା ।
ଅକପଟ ସ୍ନେହ କାହୁଁ କୈତବ ମିଶିଲା ? । ୧ ।
ଅଖିଳର ସାର ଶିରୀ କୁନ୍ଦନ ପ୍ରତିମା ।
ଅଣିମାଦ ସୁଖଦାୟୀ ଦୋଷକରୁ କ୍ଷମା । ୨ ।
ଅତନୁ ଶାୟକେ ସର ଯାଉଛୁ ଟେ ବନା ।
ଅଦୃଷ୍ଟ ଉଜାର ବୃଷ୍ଟି ନଧରୁ ନମାନା । ୩ ।
ଅମ୍ବୁଜାକ୍ଷୀ କମ୍ବୁକଣ୍ଠୀ ଅମୃତ କୁନ୍ତଳା ।
ତମ୍ବୁ ଉରଜା ମୋହର ପିନା ଧ୍ରୁଖ ଭେଳା । ୪ ।
ଅନୁଗତ ଜନେ ଧନ ଅଭାବ ନକଲୁ ।
ଅବତଂସ ମୋର ପଦ ସେ କାଟେ ଗୁଲୁ । ୫ ।
ଅଛୁ ଜେ ଭରସା ଆନ ରାଧାର କୃଷ୍ଣର ।
ଅଭିନ୍ନା ଭିନ୍ନ କଲେଟି ଏ ପ୍ରାଣ ଅସାର । ୬ ।
ଅଞ୍ଜନ ଗଞ୍ଜନ କାନ୍ତି ଶ୍ୟାମ ଗୀରେ ସମ୍ମି ।
ଶ୍ରୀକଶୋଗ୍ର ପାଶେ ଚନ୍ଦ୍ର ବେଣୁଧର କହ । ୭ ।
( ବୃନ୍ଦୀ ଚମକ ପଣ୍ଡୁଲା—ପ୍ରଶ୍ନ )

—※※—

( ରାଗ—ଚୋଡ଼ । ତାଳ—ଅଠତାଳୀ )

କହବୁ ଧନ ଗୁମୁରେ ଏତେ ।
ମନରୁ ମୁରୁଛୁ ଦେଇ କେମନ୍ତେ । ଘୋଷା ।
କଏ ଦେଲା ତାକୁ କେଉଁ ମନ୍ତ୍ର ?
ତାର ପ୍ରୀତି ଯାହା କଲା ଅନ୍ତର । ୧ ।
ପ୍ରସନ୍ନ ଚନ୍ଦ୍ରମା ଲପନ ତାର ।
ଦର୍ଶନ ବିନା ମୋ ସବୁ ଅସାର । ୧ ।
ଜଣା କରୁଣା ଯା କଲା ସିହାଣି ।
ଶୁଣାଇଲା ନାହିଁ ତା ସାଣାବାଣୀ । ୩ ।
କ୍ଷମା ନିଧାନର ମୁଁ ଜଣାଦାସ ।
ଟିକକ ଦୋଷକୁ ନକ ଏ ଦୋଷ ? । ୪ ।
କୃପାମୟ ଦେବ ନରେଶ ଭଣି ।
କେ ପାରବ ତାକୁ ବୁଝାଇ ପୁଣି । ୫ ।
ମହା ମାନମୟୀ ନବ କଣୋଷ୍ଣ ।
କରମ ଆଦର ମୁରଲୀଧାଷ୍ଣ । ୬ ।
( ସଖି ଗୋ, ସେହି ଶ୍ୟାମ ମୁରତ—ବୃତ୍ତେ )

—o—

( ରାଗ—ସୁରଟ । ତାଳ—ଝୁଲା )

ସେ ଭଲା ଜୋଳକ ଭ୍ରଷି !
ଜନେ ସଢ଼ଗଲ ଆରେ ଘନକେଶୀ । ଘୋଷା ।
ବୃନ୍ଦେ ଗୋ ମୁଁ କ କରବ, ବାମତ ମୋରେ ବାନ୍ଧବୀ,
ସମନାଇ କହ ତାକୁ କର ଖୁସି । ୧ ।
ଯେତେ ଜନୟେ କହଲ ଆଦର ହାତ ଧରଲ,
ନ ଶୁଣିଲ କୃପା ନେତ୍ରେ ମୃଗଦୃଶୀ । ୨ ।
କୁଞ୍ଜ ଶଯ୍ୟାରୁ କଶୋଷ୍ଣ,— କୁଞ୍ଜବାସୀ କୋପକର,
ବେଷୋତଳଗଲ ମୋର ସୁଖ ନାଶି । ୩ ।
ପୁଣି କୋପେ ସଜମାଙ୍କି କହିଲ କଟୁବାଣୀକ,
ମୋତେ କମ୍ପା ଆଣି କଲ ଷଯ୍ୟା ବାସି । ୪ ।

ହେ ବୃନ୍ଦା ନକୁଞ୍ଜ ବଧ୍ୟା ଯେପରି ମିଳେ ସୁବଧା,
ତାକୁ କହିବ ମୋ ପାଇଁଟି ଆଶ୍ଵାସି । ୫ ।
ଏପରି କେନ ସଖୀଙ୍କି ବୋଇଲେ ସେ ବଙ୍କା ଆଖି,
ବେଣୁଧର ସେ ଚରଣେ ନବ ଦାସୀ । ୬ ।
( ସେ ନବକଶୋଗ୍ଧ ମଣି—ବୃତ୍ତେ )

—*—

( ରାଗ—ବସନ୍ତବରାଡ଼ି । ତାଳ—ଏକତାଳୀ )

ସତେ ବନ୍ଧୁ ଦେଖିକ ପାଶୋରି ଗୋ, ପ୍ରିୟସଖି ! । ଘୋଷା ।
କଣା ଜନେ ମାନ କହି, ସାଣା ବଚନା କମ୍ପାଇଁ ?
ଝିଣାପଣେ କଲ ଏତେ ସଣ ଗୋ । ୧ ।
କେତେ ମତେ ଅନୁସର କହିଲି ତା କର ଧରି,
ନ ଦେଖିଲ ସେ ନବକଶୋଗ୍ଧ ଗୋ । ୨ ।
ଅଳପ ଦୋଷକୁ ଧମ ହୋଇଲ ଏତେଡ଼ ଗୁମାମ,
ପାପି କାମ ଏ ଦେଖ ଭଗାର ଗୋ । ୩ ।
ଏଣିକ ମାହ ଲଳତେ କହିବୁ ରାଧା ଅଗ୍ରତେ,
ତୋ ଲଗି ସରିବେ ବଂଶୀଧାର୍ଯ୍ଯ ଗୋ । ୪ ।
ଶୁଣି ଏସନ ବଚନ ବେଣୁଧର ଧାନ ଘ୍ରାନ,
ପଦ୍ମପାଦେ କରୁଛୁ ଗୁହାରି ଗୋ । ୫ ।
( ଅଇଲ ବସନ୍ତ ନବ ନବ ଗୋ—ବୃତ୍ତେ )

—*—

## ମାନଭଙ୍ଗ ଗୀତ

( ଆଳ ସଖୀଙ୍କ ଆଗେ ଶ୍ରୀକୃଷ୍ଣଙ୍କ ଉଇନ ଉକ୍ତି )
( ରାଗ—ଖଣ୍ଡକଙ୍କଳାଶ୍ରୀ । ତାଳ—ଆଠତାଳୀ )

ଆଗୋ ସଖୀଗଣ ମୋର ନିବେଦନ,
ସୁଚତେ ଶ୍ରବଣ କର ।
ମହା ମାନମୟୀ ବନୋଦମା ରାଇ—
ବନେ ଗାବ ଯିବ ମୋର ଗୋ ॥

ବଣୁମାନ୍ଙ୍କ କଚ୍ଛୁ ବୁଝି,
ବେନ୍ତୁ ବେଳ ଛାଡ ହେଲ୍ଲ ବୃଦ୍ଧି ଗୋ । ୧ ।
ଯେଉଁଦନୁ ଧମ୍ମ ହୋଇଛୁ ମାନମ,
ସେ ଦନୁ ଗଲଣି ସବୁ ।
କେବଳ ଜୀବନ ରହିଅଛୁ ପିଣ୍ଡେ,
ପୂର୍ବ ପ୍ରୀତି ଲଭ ଲୋଭ୍ଭୁଁ ଗୋ ॥
ସେହି ନବ ଅନୁରାଗ,
ହୃଦେ ରହିଅଛୁ ହୋଇ ଦାଗ ଗୋ । ୨ ।

ତୁମ୍ଭେମାନେ ତାର ପରାଣୁ ଅଧିକ,
ଯେତା ଯେନ କର ଥରେ ।
ମୋ ଦୁଃଖ ଜଣାଇ କହିବ ମଣାଇ,
ମାନମୟୀ ଶ୍ରୀ ଛାମୁରେ ଗୋ ॥
ଯେତବ ଅବା ଶ୍ରୀମନ୍ତ,
ସ୍ୱାଭ କଥାରେ ଭୁଲନ୍ତ ସନ୍ତ ଗୋ । ୩ ।

କରଅଛୁ ମୁହିଁ ଯେତେ ଅପରାଧ,
କ୍ଷମାନଧି କ୍ଷମାକରୁ ।
ନୋହିଲେ ଜୀବନ ରାଧାକୁଣ୍ଡେ ଦେବ,
ଦୁଃଖ ହରୁ ବା ନ ହରୁ ଗୋ ॥
ଏହି ମୋର ଦୃଢ଼ବ୍ରତ,
ତୁମ୍ଭ ଆଗରେ କହିଲି ସତ ଗୋ । ୪ ।

ସବୁ ଜନମାଙ୍କି ବଦନ୍ତି ଏତକ;
ନ ଜାଣ ବା ତୁମ୍ଭେ କସ ।
ଯାହା କଲେ କର ଆଗେ ସମାଚାର,
ମାଗୁଛୁ ମୁଁ ସବୁ ଦୋଷ ଗୋ ॥
ଦୋଷ ଦେଖି ଦେଉ ଦଣ୍ଡ,
ରାଈ ରାଜନ ଯା ନେଉ ଛଣ୍ଡ ଗୋ । ୫ ।

କ ଅବା ଅଧିକ ଜଣାଇବ ଠିକ,—
କର ଦକଥା କହିଲି ଗୋ ॥

ଦେହେ ନାହିଁ ବଳ ରାଧା ମୋ ସମ୍ବଳ,
ତା ଭାବ ଶୂନ୍ୟ ମୁଁ ବୋଲି ଗୋ ॥
ଏତିକ କହି ଗୋପତି,
ସଖି ! ଯାହା ଇଚ୍ଛା ତାହା କର ଗୋ । ୭ ।
ଶୁଣି ସଖି ଶ୍ରେଣୀ ଭଣି ବେଣୁପାଣି,
ଧୈର୍ଯ୍ୟ ଧର ଧୈର୍ଯ୍ୟ ଧର ହେ ।
ମହା ମାନମୟୀ ତୁମ୍ଭରେ ଜଣାଇଁ
ଦୁଃଖ ଫେଡ଼ିବୁଁ ତୁମ୍ଭର ହେ ।
ବନ୍ଦ ନ ହୁଅ କାତର,
କହେ ଘାନହୀନ ବେଣୁଧର ହେ । ୭ ।
( ନାଗରଣି ଗିରଧାରୀଠାରେ କ ରଭସ—ବୃତ୍ତି

—୦—

( ରାଗ—ଚୋଡ଼ ପଟ୍ଟକ । ତାଳ—ଆଠତାଳି )
ସଖୀଗଣ ! ସବୁ ହେଲା ଅକାରଣ ହେ । ଘୋଷା ।

ଯା କରିଲ ବ୍ରତ ହେଲା ବୃଥାଗତ,
ନ ଭରିଲା ରାଧା ମନ ହେ ।
ତୁମ୍ଭମାନଙ୍କର କଥାରେ ତା ପୁର,
ମଧ୍ୟକୁ କଲି ଗମନ ହେ । ୧ ।
ଆଗରୁ ସଖୀଙ୍କ ସଙ୍ଗରେ ଅନେକ,
ଆଳାପ କଲିଟି ଜାଣ ହେ ।
ମୋତେ ସାଥିକରି ସର୍ବ ସହଚରୀ,
କରାଇଲେ ତା ଦର୍ଶନ ହେ । ୨ ।
ନାରୀ ବୋଲି ମଣି ନ ପାରିଲ ଚିହ୍ନି,
ଚାହିଁଲେ ସଜନୀ ଗଣ ହେ ।
ଦେଖା ହେଲା ପରେ ଶ୍ରୀମତୀ ମୋଠାରେ,
ସ୍ନେହକଲା ଅନୁଦିନ ହେ । ୩ ।
ଏହି ସମୟରେ କୁନ୍ଦଲତା ମୋତେ,
କରିଦେଲା ବିଡ଼ମ୍ବନ ହେ ।

ଝିଙ୍କି ନେଲା ମୋର ଉରପରୁ ଚିର—
କାଞ୍ଚନଟିକ ବନ୍ଧନ ହେ । ୪ ।

ସେ କଦମ୍ବ ଜଡ଼ି ଦୁଇଗୋଟି ଝଡ଼,
ପଡ଼ିଲା ତଳେ ଯେ ଖସ ହେ ।
ଏ କପଟ ଗୀତ ଦେଖି ରସବନ୍ତ,
ପୋଡିଲା ଗ୍ଲାନ୍ତ-ଲପନ ହେ । ୫ ।
ଏ ଉତ୍ତରୁ କେତେ ବନସ୍ଥୀ ହୁଅନ୍ତେ,
ନ ଶୁଣିଲା କଦାଚନ ହେ ।
କରମର ଲେଖା— ଥିଲା କି ହେ ସଖା,
ହୋଇବାକୁ ହଇରାଣ ହେ । ୬ ।
ଶୁଣି ଜଣେ ସଖା ବୋଲେ ଗିରଟେକା,
ମୋହନ ବଂଶୀ ବଦନ ହେ ।
ଏ ଥିଲା କପାଳେ କି ହେବ ଭାବିଲେ,
ବେଣୁଧର ଶରଚନ ହେ । ୭ ।
( ଆଉ କି ପର୍ବରୁ ସୁଖ ପ୍ରିୟ ସହ !—ବୃନ୍ଦେ )
—o—

( ରାଗ—ମଧୁଶ୍ରୀ । ତାଳ—ଝୁଲା )

ଧନ ମାଳନ୍ତି ମୋ ସୁନା ପିଲୁଳନ୍ତି ।
ଗୋପ ଯୁବତୀବୃନ୍ଦ ମଣି ବାଳୁଛି । ପଦ ।
ଚମ୍ପା ନାହିଁ ହରଷ ବେଶ ମଣିଲୁ ବଷ,
ହବା ଚଳନ୍ତି କେଣେ ମନେ ବନ୍ଧି ବରଷ,
ଅନୁକରନ୍ତେ ନେତ— ମାନର ହଟେ ସରସ,
ନାହିଁତ ଶୋଭା ଅଙ୍ଗ ଝଳନ୍ତି । ୧ ।
କାହା କଥାରେ ପଡ଼ି ଆହା କେମନ୍ତେ ଦୁଢ଼,
ଆହାର ଛାର ମଣି ଯାହା ହୃଦେ ତ ଜଢ଼,
ଯାହାରେ ସୁକୁମାରୀ ଶ୍ୟାମଙ୍କୁ ଦେଲୁ ତଢ଼,
ଚୂଳ ପଦ୍ମ ସୁଷମା ଆଳୀନ୍ତି । ୨ ।

ଏ ଯୌବନକୁ ବନ୍ଧୁ ଧନ ରହନ୍ତୁ କେହ୍ନ
ତାଙ୍କୁ ହେଲେ କଅଁଳ କର ଭଷିଲୁ ନାହିଁ,
ହୀନ ନ ମଣି ସନ୍ଧ୍ୱ ଶ୍ୟାମେ ହେଲୁ ଅସ୍ନେହୀ,
ଏବେ କ ହେବ ଭଲ ଭଳଟି । ୩ ।
ମୁଁ ସେହ୍ନ ଶ୍ୟାମ ବୋଲ ଜାଣ ଆରେ ଛଇଳ,
ଧରୁଅଛୁ ଏବେ ତୋ ପଦ୍ମପାଦ ଯୁଗଳ,
ତୋ ଗୁଣ ଝୁର ସରୁ— ଅଛୁଟି ବନମାଳୀ,
ମୋ କଥା ଯେନ ପ୍ରତିପାଳଟି । ୪ ।
ମାଳୀମାର ବଚନ ଶୁଣି ଚନ୍ଦ୍ର ବଦନ,
ଭଷିଲେ କଶୋରୀମଣି ଅତି ହରଷେ,
ଘୀନ ହୀନ ବେଣୁଧର ଏ ରସେ ଭଷେ,
ସତେ ଲଭିବ ବ୍ରଜଧୂଳଟି । ୫ ।
( ରସରଙ୍ଗିମା ଆରେ ପ୍ରାଣସଙ୍ଗିମା—ବୃତ୍ତେ )



## କୃଷ୍ଣ ଉକ୍ତି

( ରାଗ—ଜନ୍ଦ୍ରଲ । ତାଳ—ଝୁଲ )
ଯାହା ପଚ୍ଛରଲ ଶୁଣ ବରଜ ଛଇଳ ।
କାଶୀରେ ଘର ମୋହର ନାମ କଳାକେଳ ।
ଆଗୋ ବ୍ରଜବାଳୀ । ୧ ।
ମୋ ଶାଶୁଙ୍କ ନାମଟୋଟି ଅଟେ ଚନ୍ଦ୍ରାବଳୀ ।
ଖଟିଥାଏ ତାଙ୍କ ପଦେ ପ୍ରେମଭକ୍ତି ଡାଳ ।
ଆଗୋ ବ୍ରଜବାଳୀ । ୨ ।
ଏ ହଂସି ହରଣୀ ନାମ ଦୁଇସଖି ଭଲ ।
ଆସିଲେ ମୋ କୁଳେ ରାଧା ଦାସୀ ହେବେ ବୋଲ ।
ଆଗୋ ବ୍ରଜବାଳୀ । ୩ ।
ଜନମା କେଣେ ଅଛନ୍ତି ସେ ତନୁ ପାତଳ ।
ଦେଖାହେବ ତାଙ୍କ ସଙ୍ଗେ ରସେ ହସି ଖେଳ ।
ଆଗୋ ବ୍ରଜବାଳୀ । ୪ ।

ଏହା ଶୁଣି ଲଳିତାଦ ସଖୀ ନେଇ ତାଳ ।
ରାଧାପାଶେ ନେଲେ ତାଙ୍କୁ ବାମପାଦ ଗୁଳ ।
ଆଗୋ ବ୍ରଜବାଳୀ । ୫ ।
ସେ ବ୍ରଜଦେବୀମାନଙ୍କ ପଦ ନମା ସଙ୍ଗୋଳ ।
ବେଣୁଧର ବୋଲେ ଲଭିବ କି ବ୍ରଜଧୂଳ ।
ଅଗୋ ବ୍ରଜବାଳୀ । ୬ ।
( ଦେଖ ଗୋ କଣୋଖ କେତେ ଶୋଭା ବୃନ୍ଦାବନ—ପ୍ରଭ )

—୦—

## ସଖୀ ଉକ୍ତି

( ରାଗ—କାମୋଦୀ । ତାଳ—ଏକତାଳୀ )

ନବ ନୀରଦ ଜିତ ବରନ ହେ, ନିକୁଞ୍ଜରାଜ ବ୍ରଜମୋହନ ହେ ।
କାହିଁକି ମୁଖ ଶଶୀ ଯାଏ ମଳିନ ହୋଇ
ନାସାରୁ ବହେ ଖର ପବନ ହେ । ଘୋଷା ।
ଆହେ ନୀଳ ରତନ ଆଜ ଏ କି ବିଧାନ
ପଚୁର ଭାବ ନାହିଁ ବଦନ ହେ ।
କମା ଏପରି ହୁଅ, ନେଇ ବୁହାଇ ଲୁହ,
ଲାବଣ୍ୟ ଠାଣି କାହିଁ ବହନ ହେ । ୧ ।
ଫୁଲ ମାଳରେ ସ୍ନେହ, ନାହିଁ କମା ଅଦେହ—
ଗନ୍ଧ ଖଣ୍ଡ କାହିଁକି ମୋହନ ହେ ।
ହସି ଭାଷିବା ଗିର, ନାହିଁ ଲେଶ ମାତର,
ଲାଗିଚ ହୋଇନାହିଁ ଚନ୍ଦନ ହେ । ୨
ଶିଖିପୁଚ୍ଛ ଚୂଳଆ, ରୁଞ୍ଜ ଗୁଞ୍ଜ ମାଳଆ
ବ୍ରଜବାସୀ ନୟନ ରଞ୍ଜନ ହେ ।
ବନଫୁଲ ମାଳଆ, ଗୋବର୍ଦ୍ଧନ ତୋଳଆ,
କାଳସ୍ତ୍ର ଅହୀଦର୍ପ ଗଞ୍ଜନ ହେ । ୩ ।
ସୁବଳ ଏହ୍ବପତି, ଶ୍ରୀକୃଷ୍ଣ କର ଧରି,
କେତେ କହନ୍ତି ପଦ୍ମଲୋଚନ ହେ ।
କହିଲେ ଦୁଖେ ଝୁରି, ସେ ପ୍ରଭୁପାଦ ଗତେ,
କରଇ ବେଣୁଧର ବନ୍ଦନ ହେ । ୪ ।
( ଚରଣାୟୁଧ ବୃନ୍ଦ ରଟିଲ ରେ—ଭୃଙ୍ଗ )

—❀—

( ରାଗ—ସିନ୍ଧୁ କାମୋଦ । ତାଳ—ଖେମଟା, ଝୁଲା )

ହୃଦେ ଆହେ ଘନ ଶ୍ୟାମଳ !
ମଠରେ କାର୍ଯ୍ୟ ତ ନୁହେ ସଫଳ । ଘୋଷା ।
ଆହେ ରାସ ରସ ରସିକ, କହୁଅଛୁ ଉପାୟ ଏକ,
ରାଧାର ସଙ୍ଗିନୀମାନଙ୍କର ପାଶେ—
ଯାଅ ଯାଅ ଏହି ଥର ଚଞ୍ଚଳ । ୧ ।
ନଣି ଉଛ୍‌ ଥିବଟି ହୋଇ, ବଚନ କରିବ ହେ କହ୍ନାଇ,
ଲଳିତା ବିଶାଖା ଦୁହିଙ୍କି ବୁଝାଇ—
କହିବ କଥାରେ କରାଇ ମେଳ । ୨ ।
ତୁମ୍ଭ ନିବେଦନ ବଚନ, ଶୁଣି ସେହି ସଖିଏ ଜାଣ,
ମାନିନୀର ମାନ କରି ଭେଦେ ଚୂର୍ଣ୍ଣ—
ନିଶ୍ଚୟ ଜାଣିଥା ପୀତଦୁକୂଳ । ୩ ।
ଆହା କେଡ଼େ ଅଶୋଭା ଆଜ, ଭଣଅଛୁ ନିକୁଞ୍ଜ ରାଜ,
ହଇରାଣ ଆଉ ନ ହୁଅ ସମଜ—
ଥାଅ ଆମ୍ଭ ଗିରେ ନୋହି ବ୍ୟାକୁଳ । ୪ ।
ସେ ସୁଦାମ ମଧୁମଙ୍ଗଳ, ବୋଧି କହିଲେ ଏ ପ୍ରକାର,
ଏଥି ଗୁଲ ଗୁଲ କାହିଁ ଆଉ ଭଲ—
ଚଳିଯିବା ଗୁଲ ଗୋକୁଳ ଆଳ । ୫ ।
ବେଣୁଧର ଏ ରସେ ଭଣି, ଆହେ ପ୍ରଭୁ ମୁରଲୀପାଣି,
ତୁମ୍ଭ ଲୀଳା ଖେଳା କେପାରେ ବଖାଣି—
କରଅଛ ଗୋପେ ଯେତେ ଜଞ୍ଜାଳ । ୬ ।
( ଯାର ମନ ଯହିଁ ଙ୍କ ରସେ—ବୁଝେ )

— ୦ —

( ରାଗ —ଝିଂଝୋଟ । ତାଳ—ଏକତାଳ )

ଦୁଃଖ ଦୂର ହୋଇଲା କ ଗୋକୁଳଚନ୍ଦ୍ର ଟି ହେ ।
ଛର ତାପ ହୃଦୟରୁ ଗଲା ପର ହଟି ହେ । ଘୋଷା ।
ଦୁରୁଦଶା ନଶା ବଶେ, ରହିଣ ବାଳାର ପାଶେ,
ଅତ୍ୟନ୍ତ ସୁଖରେ ନଶୀଥନୀ ହେଲା କାଟି ହେ । ୧ ।
ପ୍ରଣୟିନୀ ସନ୍ନିଧରେ, ବଞ୍ଚିଲ ତ ପ୍ରମୋଦରେ,
ଏତେ କାଳେ ଶ୍ରମ ଯାକ ସଫଳ ହେଲାଟି ହେ । ୨ ।

ଆହାକ ସୁନ୍ଦର ଛନ୍ଦ, ବଶୁଛ ତ ଅନୁଭବ,
ହୋଇଥିବାରୁ ନିକୁଞ୍ଜ କେଳି ବଢ଼ାଗଲି । ୩ ।
ସଖୀଙ୍କ ଇଙ୍ଗିତ ଗିରେ, ଶ୍ୟାମ ରହିଲେ ଲଜ୍ଜାରେ,
ବେଣୁଧର ଶିର ଯାଉ ସେ ଚରଣେ ଲୋଟି ହେ । ୪ ।
( ଦାନରେ ମାନ ଧନ ଗଲା କଥା ଗଲଣି—ବୁଝେ )

# ମାଥୁର-ଲୀଳା

## ଅକ୍ରୂର ସମ୍ବାଦ ।

( ରାଗ—ଗଙ୍ଗାଭରଣ । ତାଳ—ଆଠତାଳୀ )

ଆହେ ବ୍ରଜ ପୁରନ୍ଦର!
କମା କରି ଜାଣି ଅଇଲି ଏ ବେଭାର । ଘୋଷା ।
ଧରା ମଧ୍ୟେ ମହା ପ୍ରତାପି ସେ କଂସାସୁର ।
ପୁଣି ନୃପତିମାନଙ୍କ ପରେ ବଳିଆର । ୧ ।
ଏ ସବୁକ ନ ହେଲ କାହିଁକ ତାର କର ।
ବୃଦ୍ଧ ହେଲ ବୋଲି ମନୁ ଗଲାକ ପାଶୋର । ୨ ।
ବୁଦ୍ଧି ବଣା ହୋଇଲା କାହିଁକ ବ୍ରଜେଶ୍ୱର ।
ଆଦ୍ୟରୁତ ଜାଣିଛ ତା ସବୁ ସମାଗ୍ରର । ୩ ।
ଯାହାକୁ ଡରନ୍ତି ସର୍ବ ଅସୁର ଅମର ।
ଯା ପାଦେ ଲୁଚାନ୍ତି ଶିର ଯକ୍ଷ ନାଗ ନର । ୪ ।
ଏବେ ଦେଇଛନ୍ତି ଆଦେଶ ସେହି ଭୋଜବୀର ।
ସଙ୍ଗେ ଧରି ଚାଲ ବଳରାମ ବଂଶୀଧର । ୫ ।
ଧନମ୍ଭରେ ପ୍ରୟୋଜନ ନାହିଁଟି ଏଥର ।
ସଜକର ବହନ ଗୋରସ ଲକ୍ଷେଭାର । ୬ ।
ଏହା ଶୁଣି ନନ୍ଦ ହେଲେ ମନରେ କାତର ।
ବେଣୁଧର ଚିନ୍ତେ ରାମକୃଷ୍ଣଙ୍କ ପୟର । ୭ ।
( ଆହେ ରସିକ ଶେଖର ! ଜଣାଉ ଗଲଣି ତୁମ୍ଭ ପ୍ରୀତି-ବୁଝେ )

—o—

## ମାଥୁର-ଯଶୋଦା ଉକ୍ତି

( ରାଗ -- କେଳିମଞ୍ଜରୀ । ତାଳ—ଝୁଲା )

ଗୋବର୍ଦ୍ଧନ ବନମାଳୀ !
ଭଙ୍ଗ ସଙ୍ଖାଳି ମୋ ନେଇ ପିଲ୍ଲୁକ, କଂସ ଦୂତ ହେ !
( ଏମୋ ) ଗଳା ମରକତ ମାଳୀ । ୧ ।

ନକହ ମୋତେ ଏକଥା ।
ବଢ଼ାଅନା ମୋ ମନେ ଦାରୁଣ ବ୍ୟଥା, କଂସ ଦୂତ ହେ !
ନିରନ୍ତରେ ମୋ କହ୍ନାଇଁ ଚିନ୍ତା । ୨ ।
ତୁମ୍ଭ ସଙ୍ଗେ ତାଙ୍କୁ ଦେଲେ ।
ଏ ପିଣ୍ଡେ ପ୍ରାଣ କି ସମ୍ଭବ ରହିଲେ, କଂସ ଦୂତ ହେ !
ସବୁ ଅଛି ମୋର କୃଷ୍ଣ ଥିଲେ । ୩ ।
ଯାହା କଲେ କରୁ କଂସ ।
ଗୋପେ ପଛେ ମୋତେ ନ ଦେଉ ବାସ, କଂସ ଦୂତ ହେ !
ଏକା କୃଷ୍ଣ ମୋହର ସର୍ବସ୍ୱ । ୪ ।
ବ୍ରଜେଶ୍ୱରୀ ନନ୍ଦରାଣୀ ।
ଅକ୍ରୂରଙ୍କୁ ଚାହିଁ ଏସନ ଭଣି, କଂସଦୂତ ହେ !
ଭଣେ ବେଣୁଧର ଯୋଡ଼ି ପାଣି । ୫ ।
( କରମ ମୋହର ମନ୍ଦ—ବୃତ୍ତି )

—❋❋—

( ରାଗ—ମଙ୍ଗଳକେଦାର । ତାଳ—ଆଠତାଳୀ )

ରେ ଜୀବଧନ ! ବାପ ନଯା ନଯା ମଥୁରା ଭୁବନ । ଘୋଷା ।
ନ ଦେଖିଲେ ଦଣ୍ଡେ ତୋର କଳା ଚନ୍ଦ୍ରାନନ ।
ଏ ପିଣ୍ଡେ ମୁଁ କେଉଁପରି ଧରିବି ଜୀବନ ରେ । ୧ ।
ଯେତେବେଳେ ବନେ ଯାଉ ଚରାଇ ଗୋଧନ ।
ମନଭିତର ମୋ ହେଉଥାଏ ଛନଛନ ରେ । ୨ ।
କାତରେ ପଚ୍ଚାରୁ ଥାଏଁ କେତେ ମୁଁ କାହାକୁ ।
କେ ଦେଖିଛ କି କେଉଁଠି ମୋ ବଂଶୀବାହାକୁ । ୩ ।
ଅପରାହ୍ଣ ସମୟକୁ ଦାଣ୍ଡ ଦ୍ୱାରେ ଯାଇଁ ।
ତୋ ଆସିବା ପଥ ଚାହିଁ ଜଗି ବସିଥାଇଁ । ୪ ।
ଧେନୁ ପଛେ ବେନୁ ବାଇ ରଙ୍ଗେ ଢଳ ଢଳ ।
ଆସୁଥାଉ ସଖାମାନଙ୍କ ମେ ନେଇ ପିଲ୍ଲୁଳ । ୫ ।
କସୁନ୍ଦର ବନ ବେଶ ମାନୁଥାଇ ତାତେ ।
ଆନନ୍ଦ ଲଭଇ ସିନା ଦେଖିଲାରୁ ନେତ୍ରେ । ୬ ।
ବନ୍ଧାଇ ପୁରକୁ ଯେବେ ଯାଏ କାଖକରି ।
ଆଜଠାରୁ ଶୂନ୍ୟକରି ଯିବୁକି ସେ ଶିଶୁ ? । ୭ ।

ଥକଲେ ନନ୍ଦ ଘରଣୀ ପୁତ୍ର କୋଳେ ଘେନ ।
ଗୁଣ ବାଉନ ଝୁରନ୍ତି ବେଣୁଧର ଭଣି । ୮ ।
( ବଂଶୀଧର ! ଉଠ ଉଠ ନଶୀ ପାହିଲା ଏଥର—ବୃନ୍ଦ )

—୦—

( ରାଗ—ରାମକେରୀ । ତାଳ—ଆଠତାଳୀ )

ଅକ୍ରୂର ବୋଲି କେ ଜଣେ ଗୋ ଆସିଛି ଏ ଗ୍ରାମକୁ ।
ଅଗ୍ରବେ ନେବାକୁ ଆମ୍ଭର କୃଷ୍ଣ ବଳରାମଙ୍କୁ
ଆଣିଛି ସେ ଆଜ୍ଞା ପତ୍ରିକା କଂସ ରାଜା ଗ୍ରାମୁଁରୁ ।
ଆକଟେ କହୁଛି ଯିବାକୁ କାଲି ଗୋ ପ୍ରଭାତରୁ । ୧ ।
ଚନ୍ଦ୍ରବଦନଟି କାହିଁ ଗୋ ଲୁଚାଇବେ କାଳିଆ ?
ଇଚ୍ଛା କରନ୍ତୁ ମଥୁରା ଯିବେ ଗୁଞ୍ଜା-ମାଳିଆ । ୩ ।
ଉପାୟତ ନ ଦିଶଇ ଗୋ କରିବାକି କି ବୁଦ୍ଧି ?
ଉଭେଇ ଯିବତ ଆମ୍ଭର ପ୍ରେମ-ଆନନ୍ଦ ସିନ୍ଧି । ୪ ।

ରୁଣ୍ଡ ହୋଇଛନ୍ତି ଦାଣ୍ଡରେ ଗୋପୀ ଗୋପାଳମାନେ ।
ଋଷିବେଶ କଂସ ଦୂତ ଗୋ କହେ ସନ୍ନିଧାନେ ? ।  ।
ଌ ମଥାକଟିଆ ହଟିଆ ନଟକୁଟିଆ ହରି ।
ଲୁଟିଥିଲେ ଗନ୍ଧ-ଚନ୍ଦନ ଏହା କରିବେ ବୋଲି ? । ୬ ।
ଏ ବେଳେ ଜଳର ମନ୍ଥର କମା ନ ହେଲେ ଭୁଣ୍ଡେ ?
ଏତେ ନେଳହସା କରନ୍ତି ଶୀଳା ନ ଛେଚ ମୁଣ୍ଡେ । ୭ ।
ଐରାବତଧ୍ୱଜ ଯାହାର ପାଦେ ଶରଣ ଗଲା ।
ଐରଙ୍ଗେବ ସ୍ଥିର କଂସ ବା କଷ କରନ୍ତା ଭଲା ? । ୮ ।
ଓଡ଼ ବୋଡ଼ ଲେଖି ଯୋଖି ଗୋ ନେଉଛନ୍ତି ତା କର ।
ଓପରେଧ ଛାଡ଼ ତାଠାରୁ ନଜ ଗାନ୍ଧମାଧର । ୯ ।
ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟମୟ ମୂର୍ତ୍ତି ମୋହନ ।
ଔଦାସ୍ୟ ବେଣୁଧର ଦୁଃଖ କରିବେ ସେ ବନ୍ଧନ । ୧୦ ।
( କଳା ଭଳେବର ବନ୍ଧାର୍ଦ୍ଧ—ବୁଲେ )

—୦—

( ରାଗ—କଳକଣ୍ଠବରାଡ଼ି । ତାଳ—ଝୁଲା )

କୃଷ୍ଣ ଯିବେ ମଥୁରାପୁରୀ ।
ଗୋପପୁର ପାନ ପଡ଼ୁଛି ଛୁରି, ସଜନରେ !
ଶୁଣି ହୃଦୟ ଦୁଏ ବଦାରି । ୧ ।
ନନ୍ଦ ସିଂହଦ୍ୱାର ଆଜ ।
ଗହ ଗହ ନାଦେ ପଡ଼ୁଛି ଭଜ, ସଜନ ରେ !
ରଥ ରଥେ ଯୋଚ୍ଛି ଅଶ୍ୱରାଜ । ୨ ।
ଦାରୁଣ କଂସ ନଗର ।
ଧେନଯିବ ଆମ୍ଭ ଗୁଣସାଗର, ସଜନରେ !
ଶୂନ୍ୟ ହୋଇବ ବ୍ରଜନଗର । ୩ ।
ନଗ୍ନଟ ଯମୁନାଘାଟ ।
ଛଡ଼ିଯିବ ଆଜଠାରୁ ସେ ବାଟ ସଜନ ରେ !
ନେବ ହୃଦନ ତ୍ରିଭଙ୍ଗ-ନାଟ । ୪ ।
ମୋହନ ମୁରଲୀ ସ୍ୱନ ।
ଆଉ କ ଶୁଣିବ ଏ ପାପକର୍ଣ୍ଣ, ସଜନରେ !
ମଦନବନ୍ଧୁ କଲା ବଡ଼ମ୍ୱନ । ୫ ।
ଭୁଲ ଗୋ ଏତିକ ବୋଲେ ।
ଉଗାଳବା ପଥ ପ୍ରାଣ ଆକୁଳେ, ସଜନ ରେ !
ଦୁଃଖୀ ବେଣୁଧର ଗୀତେ ଭଣେ । ୬ ।
( ଆଜ ଗୋ ମୁଁ ସ୍ୱପନକାଳେ—ବୃତ୍ତେ )

—*—

( ରାଗ—ଅବକାଶବାଣୀ । ତାଳ—ଆଠତାଳୀ )

ଭଗବନ୍ତ !

ଆହା ଭକ୍ତି ହେଲା ଆଜ କ ଭାରତ ଗୋ । ପଦ ।
କେତେକେ ଶୁଣି କେତେକ ଶୁଣିନାହିଁ କାନ ।
ଆଉ ଥରେ ଶୁଣାଅ ତୁମ୍ଭଙ୍କୁ ମୋହବଣ ଗୋ । ୧ ।
କାହିଁପାଇଁ ଗେ ପସୁରେ ଶୁଭେ ଏ ଚହଳ ?
କାହିଁକ ତୁମ୍ଭର ନେତ୍ରୁ ବହେ ଅଶ୍ରୁଜଳ ଗୋ । ୨ ।

ବୃନ୍ଦା କହ୍ନା ଆକୁଳରେ କାନ୍ଦୁଛନ୍ତି ଏତେ ?
ଧୂଷ୍ଟତା ହୀନ ହୋଇଥିଲା ଗଳ ଲାଗେ ମୋତେ ଗୋ । ୩ ।
ଏହା କହୁ କହୁଁ ଦୁହେଁ ଲଭିଲେ ଜଳଜା ।
ବେନୁଁ ହେଲ ଧନ୍ୟ ଶୋକେ ଅନ୍ତ ଆକୁଳତା ଗୋ । ୪ ।
ସେହି ନିକୁଞ୍ଜ-ରାଣୀଙ୍କ ପଙ୍କଜଚରଣ ।
ଧ୍ୟାନ ଧ୍ୟାନ ବେଣୁଧର ଧ୍ୟାଏ ଅନୁକ୍ଷଣ ଗୋ । ୫ ।
( ପ୍ରିୟସଖି ! ଦେଖ ଶ୍ୟାମବନ୍ଧୁ ଆସିଲେ ତ ନାହିଁ—ବୃନ୍ଦେ )

—o—

( ରାଗ—ଜୟନ୍ତ । ତାଳ—ଝୁଲା )

କୁନ୍ଦକାଶ-ହାସିରେ ମୋ କନକ ପ୍ରତିମା ।
ନଷ୍ଟ କଲେ ଶୋଭାମଣି ବୃଷଭାନୁ-ଜେମା । ପ୍ରାଣମିତଣି ରେ । ୧ ।
ଘେନ ରେ ଘେନ କୁନ୍ତଳା ମୋର ଏ ବଚନ ।
ବୁଝି ପାରିଲୁ ନାହିଁକି ଚେତା ହରଇଣ । ପ୍ରାଣମିତଣି ରେ । ୨ ।
ପୌର୍ଣ୍ଣମସୀ କହିଲେ ଯା ଶଣ ମୁଁ କହଇ ।
କାଲି ମଧୁପୁର ଠାରୁ କଂସ ନରପାଇଁ । ପ୍ରାଣମିତଣି ରେ । ୩ ।
ଆକ୍ରୂରକୁ ଦୂତକରି ପଠିଆଇ ଥିଲା ।
ରାମକୃଷ୍ଣଙ୍କୁ ନେବାକୁ ଘରା ନନ୍ଦବଳ । ପ୍ରାଣମିତଣି ରେ । ୪ ।
ସେ ନିକୁଞ୍ଜରାଜ ଶ୍ୟାମସୁନ୍ଦର ମୂରତି ।
ମେଲାଣି ପାଇଁକି ତୋତେ ଡାକାଇ ଅଛନ୍ତି । ପ୍ରାଣମିତଣି ରେ । ୫ ।
ଗୋପଦାଣ୍ତେ ରଥେ ବସିଛନ୍ତି ନନ୍ଦଲାଲ ।
ଚମ୍ପକବରନା କେତେ ଦେଖିଯିବାଲ୍ଲିଲ । ପ୍ରାଣମିତଣି ରେ । ୬ ।
ବେଣୁଧର ବୋଲେ ତଳ ନେହ୍ନ ଅଶ୍ରୁବାରି ।
ଗୋକୁଳ ନଗର ଶିଘ୍ର ସବୁ ଗଲା ସରି । ପ୍ରାଣମିତଣିରେ । ୭ ।
( ରାଇମାନ ଅଗ୍ନି ଏବେ ପ୍ରବଳ ଜଳଇ—ପ୍ରତି )

—✽—

( ରାଗ—ହିଂଗ୍ଳୋଟ । ତାଳ—ଆଠତାଳୀ )

ତୁ ତୁଷିବୁ ଆଜ କାହାକୁ ଧନ !
ଗୁଡ଼ ଯାଉଛନ୍ତି ତୋ ଚନ୍ଦ୍ରାମଣି । ଘୋଷା ।
ତା ଠାରେ ବଳିବୁ ଖଣ୍ଡିତା ଭାବ ।
ତୋ'ପ ଶୂନ୍ୟକରି ଯିବେ ମାଧବ । ୧ ।

କାହା ପ୍ରତି ଛଳ ଶ୍ଳେଷ କହିବୁ ?
ଏଣିକ କରମ ଭଜ ରହିବୁ । ୨ ।
ସରିଲା ଗୋ ସବୁ ଭରସା ।
ଘଟିଲାଣି ଆସି ଦାରୁଣ ଦଶା ।
ପାଣି ଧରି ବେଣୁଧର କହଇ ।
ଏହା କି ରାଧାଙ୍କ ଦେହ ସହଇ ? । ୪ ।
( ମୁଁ ହେବି କି ଶ୍ୟାମବନ୍ଧୁ ଭଳିକି—ବୃତ୍ତେ )

—:✻:—

( ରାଗ—ଭୂପାଳି । ତାଳ—ଏକତାଳୀ )
ଆରେ ରସନିଧି !
ଆଣି କି ଦଣ୍ଡ ହେଲା ମନ୍ଦ-ବିଧି । ଘୋଷା ।
ତୋର ହୃଦ କୁମୁଦିନୀନାଥ, ମଣ୍ଡିଲେଣି ଗୋ ଅକ୍ରୂର ରଥ,
ଯାଇ ବଳରାମ ଭୁଲେ କି ଯତନ—
ହେଲେ ନିକୁଞ୍ଜ-ମନମଥ । ୧ ।
ମନୋହର ବେଶ ହୋଇକରି, ଶ୍ରୀନନ୍ଦ-ମନ୍ଦିରୁ ହଳ ହରି,
ହାତ ଧରାଧରି— ହୋଇ ହେଳେକଲେ,
ସଖାଏ ଥିଲେ ତାହାଙ୍କୁ ଘେରି । ୨ ।
ହରଷ ହୋଇଲେ ବନମାଳୀ, ସୁବଳ ଆଦିଙ୍କୁ ନେଇସାଙ୍ଗ,
କପି କଣ୍ଠି ଦଶ୍ଚି ଦାଣ୍ଡ ଧରାଇଲେ
କି ହନସ୍ତ ହୋଇ ନନ୍ଦଲାଲ । ୩ ।
କବିଚନ୍ଦ୍ର ବେଣୁଧର ଭଣେ, ବ୍ରଜପୁରବାଳଙ୍କ ଗହଣେ,
ରୁଣ୍ଡହୋଇ ନିଷ୍ଟେ— ଧନ୍ୟ ସଖାଗଣେ,
କେତେ ଗୁଣ ଦେଇ ଜଣେ ଜଣେ । ୪ ।
( ଆରେ ପ୍ରିୟସଖି ! ରୁଚି ପଥର କଳଣି—ବୃତ୍ତେ )

—:✻:—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )
କାଲିଠାରୁ ଷ୍ଟଳସିବେ କେ ପରୁ ଗୋବିନ୍ଦ ଗୋ ।
ହେବ ପାଞ୍ଚିଲା କି ହୃଦ । ଘୋଷା ।
ଚନ୍ଦ୍ରରଥ ଘେନ ସଖି ! ଆସିଛି ଉଗର ।
ଧନୁଯାତ୍ରା ଦେଖି ଯିବେ ବୋଲି ବଂଶୀଧର । ୧ ।

ଦେଇଛୁ ଆଜ୍ଞା ପଠିକା କଂସ ନରପତି ।
ରାମ କାହ୍ନୁ ହୋଇବେନ କସ ବଶ୍ୱରନ୍ତ । ୨ ।
ଶିରେ କର ଦେଇ ନନ୍ଦ କରନ୍ତି ଘାଉଳଣି ।
ଯଶୋମତୀଙ୍କ ନୟନୁ ଝରେ ଅଶ୍ରୁ ପାଣି । ୩ ।
ସଖାମାନେ କାନ୍ଦୁଛନ୍ତି ହା ହା କୃଷ୍ଣ ବୋଲି ।
ବ୍ରଜବଧୂଙ୍କ ଦୁର୍ଦ୍ଦଶା ନ ଯାଉଛି କହି । ୪ ।
କି ବୁଦ୍ଧି କରିବା କହ ଆଗୋ ପ୍ରାଣସଖି !
ଝାସିବା ଯମୁନାଗର୍ଭେ ବେଣୁଧର କହି । ୫ ।
( ମଣି ଭମାନ ଗୋବଦ—ବୃଢେ )

— ❀ —

( ରାଗ—ନଳିନୀ ଗୌଡ଼ା । ତାଳ—ଝୁଲା )
କପର ଧୈର୍ଯ୍ୟଧରି ରହିବା ପୁଣି ଗୋ,
ପ୍ରାଣମିତଣି ! । ଘୋଷା ।
ଘନକାଳିଆ ବଂଶୀ ରସିକ ରାଜ ।
ମଥୁରା ଯିବା ପାଇଁ ହେଲେଣି ସଜ ଗୋ, ପ୍ରାଣମିତଣି ! । ୧ ।
କେତେଦିନକୁ କେତେ ସ୍ନେହ ଲଗାଇ ।
ଅଖଣ୍ଡ ପ୍ରୀତିଦ୍ରୁମ ଦେଲେ ଭଙ୍ଗାଇ ଗୋ, ପ୍ରାଣମିତଣି ! । ୨ ।
ମୋହିଲେ ବଂଶୀସ୍ୱନେ ଆମ୍ଭର ମନ ।
ବେଳକୁ ଦେଖାଇଲେ ଏତେ କପଟ ଗୋ, ପ୍ରାଣମିତଣି ! । ୩ ।
କେ ଜାଣିଥିଲା ଏହା କରିବେ ବୋଲି ।
କହଇ ବେଣୁଧର ନେତ୍ରକ ତାଳ ଗୋ, ପ୍ରାଣମିତଣି ! । ୪ ।
( ପଲ୍ଲୀ ପତ୍ର ନାହିଁ 'ଭଜମ' ଯାତ—ବୃଢ଼େ )

—❀

( ରାଗ—ତୋଡ଼ିପଳଜ । ତାଳ—ଏକତାଳୀ )
କି ଦଣ୍ଡ ମଣ୍ଡଳୁ ଆସିଲେ ସଜନି ! ( କି ଦଣ୍ଡ )
ଆଜଠାରୁ ଗୋପ ଅନ୍ଧାର ହେ ଟିକ,
ଗୁଡ଼ିପିବେ କାଳା ଶଶୀରେ ! ସଜନି । ଘୋଷା ।
ଯମୁନା ପୁଳିନ ମାନ ଉପବନ ଅଲକ୍ଷଣ ଦିଶ ହଣି ।
ଛୁ ଚୂତ ଦେଇ ଆଜ କି ଶୁଣିବା ସେ ଶ୍ୟାମ ମୋହନ ବଂଶୀରେ । ୧ ।

ଜାଈ ଜୁଈ ମଲ୍ଲୀ ମାଳତୀ ନଆଣି କା ଲାଗି ତୋଳିବା ରସି ?
ଝୁରି ମରିବାକୁ ଦାରୁଣ ଦଇବ ଘଟାଇଲା କାଳ ଫାଶି ରେ । ୨ ।
କା ଅଙ୍ଗେ ଲେପିବା କର୍ପୂର ଚନ୍ଦନ ସବୁ ସଞ୍ଚରସ ମିଶି ।
କା ଅଧରାମୃତେ ଉନମତ ହେବା ନିକୁଞ୍ଜ ମନ୍ଦିରେ ବସି ରେ । ୩ ।
କାହା ଛଡ଼ାମାଳ ଗୋଟାଇ ପିନ୍ଧିବା ପ୍ରେମାନନ୍ଦେ ହସି ହସି ।
ଦୀନ ବେଣୁଧର କବିଚନ୍ଦ୍ର ଭଣେ ନୟନ ଲୋତକ ଖସି ରେ । ୪ ।
( ଉଷି ମୁଁ ବସିଲି ଗୋଲେ—ବୃନ୍ଦେ )



( ରାଗ—କାମୋଦୀ ତାଳ—ଖେମଟା )
କୁଞ୍ଜବିହାରୀ, ଯିବେ ମଥୁରା ବାହାରି ଗୋ । ଘୋଷା ।
ଗୋପଦାଣ୍ଡ ଗୋଠାଯାକ ହେଉଅଛି ହୁରି ।
କୃଷ୍ଣଚନ୍ଦ୍ର ଛାଡ଼ିଯିବେ ଗଳେ ଦେଇ ଛୁରୀ ଗୋ । ୧ ।
ଆସିଛି କଂସ ଉଗର ନେବ ବୋଲି ଧରି ।
କି ବୁଦ୍ଧି କରିବା ଏବେ କହ ସହଚରୀ ଗୋ । ୨ ।
ମଥୁରାରୁ ସତେ କୃଷ୍ଣ ଆସିବେ କି ଫେରି ।
ଏହା ତ ପରତେ ନାହିଁ ମନରେ କାହାରି ଗୋ । ୩ ।
କହେ କବିଚନ୍ଦ୍ର ନେତ୍ର ପୋଛି ଅଶ୍ରୁ ବାରି ।
କପଟ ମୁରୁଛି ଦେବେ ଆମ୍ଭ ଗିରିଧାରୀ ଗୋ । ୪ ।
( ମୁରଲୀପାଣି, ବନ୍ଧୁହାଁ କି ଶୋଭା ମିଳଣି—ବୃନ୍ଦେ )



( ରାଗ—ତୋଡ଼ି ଭୈରବ । ତାଳ—ଏକତାଳୀ )
କି ଦଣ୍ଡ ପଡ଼ିଲା ଆସିରେ, ସଙ୍ଗାତ ! ( କି ଦଣ୍ଡ ମଣ୍ଡିଲା ଆସି )
ମଥୁରା ଯାହାକୁ ମନ ହେଉଛନ୍ତି,
ନିକୁଞ୍ଜ କାନନ ବାସୀ ରେ । ଘୋଷା ।
ଆଗୋ ସୁବଦନି ! ବନୋଦ୍ଧମା ଧନ !
ବୃଷଭାନୁ ଜେମାମଣି ।
ସବୁ ସୁଖ ଆଶା— ଭରସା ଲୁଟାଇ,
ଦେଉଛନ୍ତି ବେଣୁପାଣି ରେ । ୧ ।

ସୁମନସ ତୋଳା କୁନ୍ଦୁଦଳ ମାଳା,
ଝୁଲଣ ଦୋଳା ଉତ୍ସବ ।
ସରଲଟି ଜାଣ ଆହା ମୋ ପରାଣ —
ଛଣ୍ଣୁଷ କଶୋସ୍ତ ତବ ରେ । ୨ ।

ଯମୁନା ବିହାର କୁଞ୍ଜ ଅଭିସାର,
ସୂର୍ଯ୍ୟପୂଜା ପଶା ଖେଳ ।
ଦୋଳଲୀଳା ହୋସ୍ତି ଅବର ବ୍ରତେଷ,
ଶୂନ୍ୟ କଲ୍ ବଧି ଖଳ ରେ । ୩ ।
ଗୋଚାରଣ କ୍ରୀଡ଼ା ଗୋଧନ ବାହୁଡ଼ା,
ଏ ଆଉ ଯେତେ ବିଧାନ ।
ସକଳ ତ ସଙ୍ଗେ — ନେଇ ଯାଉଛନ୍ତି,
ଆମ୍ଭ ବ୍ରଜେନ୍ଦ୍ର ନନ୍ଦନ ରେ । ୪ ।
କାନ୍ଦ କହେ ଦୁଃଖୀ — ବେଣୁଧର ମୁଁ କ, —
ଶୁଣି ଆସିଲ ଶ୍ରବଣେ ।
ଗୋକୁଳ-କୁଳ — ଚନ୍ଦ୍ରମାଙ୍କୁ ଉଗାଳ,
ରହିଛନ୍ତି ସଖାଗଣେ ରେ । ୫ ।
( ଏଣେ ତେଣେ କେଣେ ମନରେ ସଙ୍ଗିମା ! — ବୃନ୍ଦେ )

—o—

( ରାଗ — ଘଣ୍ଟାରବ । ତାଳ — ଆଠତାଳୀ )
ବୃନ୍ଦାବନନାରେ, ସତେ କି ନ ହେଲ ?

କେଉଁ ସୁଖ-ସ୍ନେହ-ଡୋରି ବନ୍ଧ କାଟିଦେଲ । ଘୋଷା ।
ଶ୍ରୀ ବୃନ୍ଦାବନଚନ୍ଦ୍ରଙ୍କୁ ମଧୁ କଣ୍ଟକ ନେବାକୁ,
ଆସିଛି କ୍ରୂର ଅକ୍ରୂର ହୋଇଣ ଉଚଳ । ୧ ।
ଆଜ ଏ କୁସୁମ ହାର ହେବ ସିନା ଛାରଖାର,
କହ କି ବୁଝି ବକ୍ଷର ରସିକା ଛଇଳା । ୨ ।
ଦର୍ପିଷ୍ଠ କଂସ ନୃପତି ଦେଆଇଲ କି ବାଉଡ଼ି ?
ଏ ଗୋପପୁର ସମ୍ପତ୍ତି, ଆଜହୁଁ ଲୁଟିଲ । ୩ ।

ନୟନରୁ ଗୋଟି ପାଣି    ଦୁଃଖେ ବେଣୁଧର ଭଣି
ଆମ୍ଭ ଧନୀ ରାଧା ରାଣୀ ଭାଳେ ଏହା ଥିଲା । ୪ ।
( ମନେ ପଡ଼ୁଛି ମାଁ ସେହି ଚନ୍ଦ୍ରମୁଖ—ବୃତ୍ତେ )

—o—

( ରାଗ—ଚୋଖପରଜ । ତାଳ—ଆଠତାଳୀ )
ଗୋବନ୍ଦ ଗୋପ ଛାଡ଼ି ଯିବେ କି ?
କି କହୁଛ ମୋତେ ପରାଣ ସଖି । ଘୋଷା ।
ସତ କି ମିଛ ଏ ବାଣୀ ଭ୍ରମର । ଶୁଣି ମୋ ହୃଦୟ ହୁଏ ଅସ୍ଥିର । ୧ ।
ନ ଆସେ ମନକୁ କ୍ଷଣେ ପରତେ । ପରିହାସ ପରି ଲାଗୁଛି ମୋତେ । ୨ ।
ଅମୀୟ ଅଶନ କରିବା କାଳେ । ଗରଳ ଭରିଲା କେବା ମୋ ଥାଳେ । ୩ ।
କାନ୍ଦ ବେଣୁଧର କହେ ଗୋ ରାଈ । ରୋଷେ ପରା କଂସ ନିଏ ଧରାଇ । ୪ ।
( ଝଗଡ଼ି ମାହ ହେଲ ହେ ଶ୍ୟାମ—ବୃତ୍ତେ )

—*—

( ରାଗ—ଶଙ୍କ କେଦାର । ତାଳ—ଝୁଲା )
ମଥୁରା ଯିବେ ବୋଲି କୁଞ୍ଜ-ବିହାରୀ ।
ଗୋପଭୁବନ ଯାକ ପଡ଼ୁଛି ହୁରି ଗୋ, ନନ୍ଦକିଶୋରୀ ! । ୧ ।
ଦାରୁଣ କଂସରାଜା ପେଶିଛି ଦୂତ ।
କାଲି ଅନ୍ତର ହେବେ ରାମ ଅଚ୍ୟୁତ ଗୋ, ପ୍ରାଣପଙ୍କାତ ! । ୨ ।
କପାଳେ ଏହା ଲେଖିଥିଲା କି ବିଧି ?
ପରାଣ ଛନେ ପିଣ୍ଡ ରହିବ କେହ୍ନେ ଗୋ ? ଜୀବନ ସନ୍ଧି ! । ୩ ।
କଳା ଚନ୍ଦ୍ରବଦନ ଦର୍ଶନ ସୁଖ ।
କାହୁଁ ପାଇବ ବେଣୁଧର ମୂରୁଖ ଗୋ ? ଘୋଟିଲା ଦୁଃଖ । ୪ ।
( ସ୍ୱପନେ ଦେଖିଲି ଗୋ ମୁରଲୀପାଣି—ବୃତ୍ତେ )

—o—

( ରାଗ—କଳହଂସଗୌଡ଼ା । ତାଳ—ଝୁଲା )
ସଖି ! କରମ ମନ୍ଦ ।
ସରିଲା ଆମ୍ଭ ସୁଖ ଶିଖ ସମ୍ପଦ ଗୋ । ଘୋଷା ।
ମଥୁରା ଯିବେ ବୋଲି ମୋହନ-ରାଜ ।
ଗୋପପୁର ଚହଳ ଚହଳ ଆଜ ଗୋ । ୧ ।

ଶୁଣି ଆସିଲି ମୁହିଁ ନନ୍ଦ ସଦନୁ ।
ସୁବେଶ ହେଉଛନ୍ତି ଶ୍ରୀରାମ କାହ୍ନୁ ଗୋ । ୨ ।
ଭୁଟିଲି ଆଜ୍ଞୁ ଗୋପୀ ଗୋବନ୍ଦ ସବ ।
କାମ ହୋଇଲା ବୋଲି ସିନା ଦଇବ ଗୋ । ୩ ।
ଏହିକ୍ଷଣି ମଥୁରା ଗମନ ସଜେ ।
ରଥକୁ ବେନଭାଇ କରିବେ ବିଜେ ଗୋ । ୪ ।
କହଇ ବେଣୁଧର ଆଗୋ ସଙ୍ଗାତ ।
କୃଷ୍ଣ ବିଚ୍ଛେଦେ ସର୍ବେ ସରିଯିବା ତ ଗୋ । ୫ ।

( ଶ୍ୟାମ ଶିଖଣ୍ଡଚୂଳ—ବୃତ୍ତ )

—୦—

( ରାଗ—ଚୋଖିପରଜ । ତାଳ—ଆଠତାଳୀ )

ସତେ ଯିବେ ମଧୁପୁର କି ଗୋ ମିତ !
ଆମ୍ଭ ଚିତ୍ତ ବିତ୍ତ ଭଣ୍ଡାଇତ ?
ଆସିଛୁ ଉଗର ଧରିନେବ ପରା,
ମୁଁ ଶୁଣୁଛି ବିପରୀତ, ( କି ଗୋ ମିତ ) । ଘୋଷା ।
କେମନ୍ତେ ଧଇର୍ଯ୍ୟ ଧରି କି ଗୋ ମିତ !
ରହିବା ଏ ବ୍ରଜପୁରୀ ।
ଦଣ୍ଡେ ନ ଦେଖିଲେ କାଳିଆକାହ୍ନୁଙ୍କୁ,
ହୃଦୟ ହୁଏ ବିଦାରି, କି ଗୋ ମିତ ! । ୧ ।
ଯେ ଆମ୍ଭ ହରନ୍ତା ଦୁଃଖ କି ଗୋ ମିତ !
ସେତ ଲୁଚାଇବେ ମୁଖ ।
କାହାକୁ କହିବା ମରମ ଯାତନା,
ଆଜି ଗଲା ସବୁ ସୁଖ, କି ଗୋ ମିତ ! । ୨ ।
କି କଲା ଦାରୁଣ— ବିହି କି ଗୋ ମିତ !
କର୍ମେ ଏହା ଥିଲା ଲେଖି ।
ପ୍ରେମ ଚିନ୍ତାମଣି— ରତ୍ନମାଳ ପୁଣି,
ପଥରେ ପାଲଟି ଯାଇ, କି ଗୋ ମିତ ! । ୩ ।

ଭୁଟିଲା ପୁଣ୍ୟ   ଆମ୍ଭର କି ଗୋ ମିତ !
କହେ ଦୁଃଖୀ ବେଣୁଧର ।
ମଥୁରାରୁ ହରି   ଅବଶ୍ୟେଟି ଫେରି,
ଆସିବେ ଚିନ୍ତା ନ କରି, କି ଗୋ ମିତ ! । ୫ ।
( ଶ୍ୟାମ ପ୍ରୀତି କଲି ଲୋଡ଼ା—ବୃତ୍ତେ )

— ❋ —

( ରାଗ—ତୋଡ଼ି ଚରିକ । ତାଳ—ଏକତାଳୀ, ଝୁଲା )
ଆଜି କି ଜୀବନେ   ଆଶା ରେ ସଙ୍ଗାତ !
ମୁଖଁ ନ ସ୍ଫୁରଇ ଭାଷା ।
ଗୋପବନ୍ଧୁ ଆଜ   ଗୋପ ଛାଡ଼ିଯିବେ,
ଚଢ଼ିଲା ଆସି କି ଦଶା । ଘୋଷା ।
କୃଷ୍ଣ ବଂଶୀସ୍ୱନ   ଶୁଣି ଲୋ ସଜନି !
ହେଉଥିଲି ପାଗଳଣୀ ।
କୃଷ୍ଣ ରୂପ ଲକ୍ଷି   ଧନ ବାଞ୍ଛୁଥିଲି,
କଳଙ୍କ ପସରା ଘେନି । ୧ ।
କୃଷ୍ଣ ପଦେ ହୋଇ—   ଦାସୀ-ଲୋ ମିତଣି !
ବୋଲାଇ କୃଷ୍ଣ ସେବକୀ ।
ପ୍ରାଣ ଧରି ଏ କରଜ—   ଧାମେ ଥିଲି,
ସେ ସୁଖ କଏ ଦେବ କି ? । ୨ ।
କୃଷ୍ଣ ନାମ ଜପି   ଜପି ଲୋ ସଙ୍ଗିନୀ,
କୃଷ୍ଣ ମୂର୍ତ୍ତି ହୃଦେ ଥାପି ।
ରଜନୀ ଦିବସ   ନେଉ ଥିଲି ସୁଖେ,
କୃଷ୍ଣ ଗୁଣ ଗାନେ କଟି । ୩ ।
କୃଷ୍ଣର ବିଚ୍ଛେଦେ   ଏବେ ଲୋ ବାନ୍ଧବି !
ଜୀବନ ହାରିବି ଭବେ ।
ବୋଲେ ଦୀନ ହୀନ   ବଣ ନିଶାକର
କାନ୍ଦ କାନ୍ଦ ରାଧା ଭାବେ । ୪ ।
( ଦୁରବଳ ରାଧା ଭାବ—ବୃତ୍ତେ )

— ୦ —

( ରାଗ – ଚୋଢ଼ ପରଜ । ତାଳ – ଆଠତାଳୀ )

କହ ସଜନ ଗୋ ! କି ବୁଦ୍ଧି କରିବା ଆଜ ?
ଗୋପର ସଙ୍ଗାଳ ଛାଡ଼ି ଯାଉଛନ୍ତି ଛାତି ହୁଏ ଦାଉଁ ଦାଉଁ । ପଦ ।
ମନେ ବହି ରୋଷ, ସେ ଦାରୁଣ କଂସ, ପଠାଇଅଛି ଉତର ।
ଅହୁଁ କଳାକର ମୁଖ ଲୁଚାଇବେ କାଳିଆ ନଟନାଗର । ୧ ।
ଭାଇ ବଳରାମ, ସଙ୍ଗେ ଘନଶ୍ୟାମ, ରଥେ ବସିଲେଣି ପରା ?
ଏତିକବେଳୁଁ ସେ ଆମ୍ଭଙ୍କୁ କାହିଁକି ଦେଇ ନ ଯାନ୍ତି ମହୁରା । ୨ ।
କେହ୍ନେ ଗୋ ମୁରୁଛି ଦେଇ ନନ୍ଦବସ୍ତି କରିବେ ମଥୁରା ବଜେ ?
ଚିର ସୁଖ ସ୍ନେହ ବରଜଣ ଲୋହ କଲେ କି ଛାତିକି ନଜେ । ୩ ।
ଗୋପପୁର ଗୋଟି ଅନ୍ଧାର ଘୋଟିବ ଏହିକ୍ଷଣି ରହୁଁ ରହୁଁ ।
ବୋଲେ ବେଣୁଧର ଗୋକୁଳ ଚନ୍ଦ୍ରଙ୍କୁ ଗ୍ରାସୁଛି ଅକ୍ରୂର ରାହୁ । ୪ ।
( ଡର ନାହିଁ କି ହେ ପର ତରୁଣୀ ହରଣୁ – ବୁଝେ )



( ରାଗ – ପୁରବୀ । ତାଳ – ଆଠତାଳୀ

ଆଜ ପରା ¡ ସତେ ଶ୍ୟାମ ଛାଡ଼ି ଯିବେ କି ମଥୁରା ଗୋ । ପଦ ।
ଦାରୁଣ ବନ୍ଧୁ କି ନ କଲା ଗୋପ ଶିରୀ ଛଡାଇଲା
ଏହା କି ଲଲାଟେ ଥିଲା ଆମ୍ଭଙ୍କୁ ଭଗାରି ହେଲା
କଂସ ରାଜା ପେଷିଛି ଉଗରା ଗୋ । ୧ ।
ଆଉ କି କୁଞ୍ଜବିହାରୀ ଗୋପକୁ ଆସିବେ ଫେରି
ହୃଦୟ ହୁଏ ବିଦାରି ଜୀବ ଯିବଟିର ଝୁରି
ନିଶିଦିନ ହୋଇବ ଅସରା ଗୋ । ୨ ।
ମୋହନ ମୁରଲୀପାଣି କି ଶୋଭା ତ୍ରିଭଙ୍ଗୀ ଠାଣି
ନେତ୍ର କଟାକ୍ଷ ଚାହାଁଣି ମନୁ ଯିବ କି ମିଳଣି
କି ନ କଲେ ଦଇବ ପସରା ଗୋ । ୩ ।
ଆହା ସେ ମୁରଲୀ ସ୍ୱନ ଲଳିତ ମଧୁର ଗାନ
ଶୁଣିବ କି ପାପୀ କର୍ଣ୍ଣ ଦେଖିବା ହେବ ସ୍ୱପନ
ଗୋପ ଛାଡ଼ି ଗଲେ ଚକ୍ରଧରା ଗୋ । ୪ ।

ଧରଣ ଦୂତିକା ପାଣି
ଭଣନ୍ତ କଣୋରାମଣି
ଗୀତେ ବେଣୁଧର ଭଣି
ନ ଭଜ ବ୍ରଜ ରମଣୀ
ସେ ସବୁର କଣ୍ଠରତ୍ନ ହାର ଗୋ । ୫ ।
( କହ କ କରିବ ବୁଦ୍ଧି ବଶୁନାହିଁ—ବୃତ୍ତେ )

—✽—

( ରାଗ—ସିନ୍ଧୁକାମୋଦ । ତାଳ—ଝୁଲା )
ସଂତ କ ଗୋ ପିବେ କାହାର ?
ବରଜ ନାଗର ମୁରଲୀଧାରୀ । ପଦ ।
କେ ଜଗିଣ ଯମୁନା ଘାଟ
ମନ୍ତ କରିଇବ ଜଛାଟ
କେ ଆଜ କଶୋରୀ—
ନାମରେ ବାଂଶେରୀ—
ବଜାଇ ହୋଇବ ପ୍ରୀତ ଭଖାରୀ ? । ୧ ।
କେ ପାଲଟୀ ବାସ ଶ୍ରେଗଇ
ମାପଡ଼ାଳେ ବାନ୍ଧବ ନେଇ
ମାଯ୍ଯାରେ ନାଜରୀ
ବେଶ ହୋଇକରି
ନେ ଆଜ ଯମୁନା କଟକ ପାରି । ୨ ।
ନନ୍ଦସୁତ କାଳିଆ କାହ୍ନୁ
ପାଶୋରି କ ହୋଇବେ ମନୁ
ଲଣି ଉକସରେ,
ନାଚବେ କେବରେ
ଘୁଙ୍ଗୁରେ କୁଞ୍ଜ ବନୋଦକାରୀ । ୩ ।
ଦୁଃଖେ ବେଣୁଧର ବଦନ୍ତ,
ଜୀବ ଯାଉ ସେ ରୂପ ଚନ୍ତ,
ମଥୁରା ନାରୀ କ—
ଚତ କରିଥିଲେ,
ରସାଇବେ ବୃନ୍ଦାବନ-ବିହାରୀ । ୪ ।
( ନ ଚେତକ ମୁରଲୀଧରୀ—ବୃତ୍ତେ )

—o—

( ରାଗ —ଶଙ୍କରାଭରଣ । ତାଳ—ଆଠତାଳୀ )
ସରଳଟି ସୁଖ ଶୀଘ୍ର ।
ହରିବନେ ଏ ଭୁବନେ ବଞ୍ଚିବା କପରି ଘୋଷା ।
ଆଗୋ ରାଧେ ! କାହାପାଇଁ ଗୁନ୍ଥୁଛୁ ଏ ମାଳା ?
ଅକାରଣ ହେବ ପିନା ଲଭ ମନ୍ଦେ ଜ୍ୱଳା । ୧ ।

ଧନୁଯାତ୍ରା ଆରମ୍ଭିଛି ଦୁଷ୍ଟ କଂସାସୁର ।
କପଟେ ଧରାଇ ନେବ ବୋଲି ବଂଶୀଧର । ୨ ।
ପଠାଇଛି ଅକ୍ରୂରକୁ ଦୂତ କରି ଏଥି ।
ଶୁଣିଲାବେଳୁଁ ମରମ ଦେଉଅଛି ମନ୍ଥି । ୩ ।
ଗୋପର ସଙ୍ଗାତ ଗୋପ ଗୁଡ଼ିଯିବେ ଯିବେ ଯେବେ ।
ସଖୀ ସଖା ମାତା ପିତା କପରି ବଞ୍ଚିବେ ? । ୪ ।
ଆହା କି ଦଣ୍ଡ ପଡ଼ିଲା ଆସି ଗୋ ଏ ବ୍ରଜେ ।
ସତେ କି କାଳିଆ ମଥୁରା ହେବେ ଭଜେ । ୫ ।
ଲଳିତା ମୁଖୁଁ ଏ ବାଣୀ ଶୁଣି ଶ୍ରୀ କିଶୋରୀ ।
ତଳେ ପଡ଼ିଲେ ଅବଶ ଚେତନା ପାଶୋରି । ୬ ।
ଚୋଳ ଧରି ସଖୀ ସଚେତନ କରାଇଲେ ।
ପ୍ରବୋଧ କରନେ ବେଣୁଧର କାନ୍ଦି ବୋଲେ । ୭ ।
( ଲୁହିଁ ଟମକ ପଡ଼ିଲା – ବୃନ୍ଦେ )

—o—

( ରାଗ – ଜ୍ଞାରବାଣୀ । ତାଳ—ଆଠତାଳୀ )

ଆହା କି କହିଲୁ ସଖି ! ହୃଦଦହଣା ବାଣୀରେ ।
ସତେ ମଥୁରକୁ ଛାଡ଼ିଯିବେ ବଂଶୀ ପାଣିରେ । ଘୋଷା ।
କାହାର କି ଦୋଷ କରି,— ଥିଲିବୋଲି ସହଚରି !
ଏ ଦଣ୍ଡ ଦେଉଛି ଦଇବ ଆଣି ରେ । ୧ ।
ମୁଁ ତ ଅବୋଧ ଅବଳା, ନ ଜାଣେ ଛଳଛନ୍ଦ ଲୀଳା,
ମୁରୁଛୁଛ କପରି ସେ ତ୍ରିଭଙ୍ଗିମା ଠାଣି ରେ ।
ସବୁ ସୁଖ ସବୁ ଆଶା, ଲୁଟାଇ ସବୁ ଭରସା,
ଛାତିରେ ପଥର କେବା ଲଦିଦେଲା ଜାଣ ରେ । ୩ ।
ବେଣୁଧର କହେ ବୋଧି, ଧୈର୍ଯ୍ୟଧରି ରସନିଧି,
ପଥ ଓଗାଳିବା ଶ୍ୟାମ ମାଗନ୍ତେ ମେଲାଣି ରେ । ୪ ।
( ଶ୍ୟାମହସ୍ତ ବଂଶୀ ମୋର ହୋଇଲା ସ୍ୱାଧୀନ—ବୃନ୍ଦେ )

—o—

( ରାଗ—ଚୋଡ଼ିପରଜ । ତାଳ—ତ୍ରିପୁଟା )

ଇଚ୍ଛାବିହାରୀ ସତେ କି ଛାଡ଼ିଯିବେ ମଧୁପୁରୀ ।
ଇଙ୍ଗିତ ପରାୟେ ମୋତେ ଲାଗୁଛି ରେ ସନ୍ଦେହ ! । ଘୋଷା
ଇନ୍ଦୁରେଖା ବିଶାଖିକା, ଚିତ୍ରା, ଚମ୍ପକ ଲତିକା,
ଆଗୋ ରଙ୍ଗ, ସୁଦେବିକା ସତରେ ଫେଡ଼ିକର । ୧ ।
ପ୍ରାଣର ଲଳିତେ ମୋର କିଛି ଗୋପନ ନ କର,
କାହିଁକି ନତ ନୟନ ଜନରବେ ଅଛି ପରି ?
କହ ଗୋ ବୃନ୍ଦା ସୁନ୍ଦରି ! କମ୍ପା ନେନେ ମାର ଭରି,
କୋହ ଉଠାଇ ଏପରି ଦେଖି ହୃଦ ହୁଏ ଘାରି । ୩ ।
କୁନ୍ଦଲତା ନାନ୍ଦୀମୁଖୀ, କି ହେତୁ ଲୋତକ ଆଖି ?
କସ ବା ଅଇଲ ଦେଖି କାହାନ୍ତି ମୋ ବଂଶୀଧାରୀ । ୪ ।
ରାଧାଙ୍କ ବିକଳ ବାଣୀ ଶୁଣି ଦୁଃଖେ ସଖୀ ଶ୍ରେଣୀ,
ଭାଷିଲେ ଗୋ କେମାମଣି ଛୁଟିଲା ଗୋପର ଶିରୀ । ୫ ।
ସେ ବ୍ରଜଦେବୀଙ୍କ କଥା, ନ ଦେବ କା ମନେ ବ୍ୟଥା ?
ଅବଳାଙ୍କ ତାଳ ମଥା କନ୍ଦଚନ୍ଦ୍ର ମରେ ଝୁରି । ୬ ।
( ଦେଖିଲେ ଦେଖିଲାପରି ଥରେ – ବୃନ୍ଦା )

—✿—

( ଯଥାରାଗ । ତାଳ—ତ୍ରିପଟା )

ଆହା ମୋ ଲାବଣ୍ୟନିଧି ସବୁ ସାରିଦେଲା ବିଧି,
ତୋ କରମ ହେଲା ମ୍ଲାନମାନ ।
ଆଜ କାହପାଇଁ ଧନ ! ଗୁନ୍ଥୁ ଛୁଟି ଏ ସୁମନ,
ଗୋପପୁର ହେଲାଣି ଜଞ୍ଜାଳ ରେ,
ଚନ୍ଦ୍ରବଦନା ! ଫିଙ୍ଗିଦିଅ ଏ କୁସୁମହାର ।
ତୋ ହୃଦ ରତନ ଚାଲିଯିବେ ମଧୁପୁର ରେ ।
ସେ ଦାରୁଣ କଂସ ଦୂତ ମନ୍ତ୍ରି ମଣିମୟ ରଥ,
ଆସିଥିଲା ଲେଖା ଘେନି କଟିରେ ।
ରାମ ଗୋବିନ୍ଦଙ୍କୁ ଧରି— ନେଉଛି ରେ ବନ୍ଧାଧରି,
ଭରେ ଭରେ ବରଜ ଦାଣ୍ଡରେ ରେ ।

ଚନ୍ଦ୍ରବଦନା ! ଦେଖ ଯାଇ ସେ ଶ୍ୟାମ ବନ୍ଧୁଙ୍କୁ ।
ନୟନ ସଙ୍କାଳ ତୋର ନିକୁଞ୍ଜ ଇନ୍ଦୁକୁ ରେ । ୨ ।
ଶୁଭୁନାହିଁ କରେ ଧନ ! ତରୁଣିକୁଳ ରୋଦନ,
କରୁଛନ୍ତି ଅତି ଆକୁଳରେ ।
ଭସି ଦୁଃଖ ସିନ୍ଧୁମାଝେ, ଗଡ଼ୁ ଅଛନ୍ତି ମହୀରେ,
ବକ୍ଷସ୍ଥଳ ଭିଜାଇ ଲୁହରେ ରେ ।
ଚନ୍ଦ୍ରବଦନା ! ଆଜଠାରୁ ଗୋପପୁର ଶଶୀ ।
ଅସ୍ତ ହୋଇ ଯିବେ ତ ଅନ୍ଧାର ଯିବ ଘଣୀରେ । ୩ ।
ପୌର୍ଣ୍ଣମାସୀଙ୍କ ବଚନ, ଶୁଣି କିଶୋରୀ ରତନ,
ଚେତନା ହରାଇ ଗଲେ ପଡ଼ି ।
ତୋଳି ଧରି ସଖୀଗଣ କରାଇଲେ ସଚେତନ,
ଶ୍ରୀଅଙ୍ଗ ଦେହରୁ ଧୂଳି ଝାଡ଼ି ସେ ।
ଚନ୍ଦ୍ରବଦନା ! ଚେତା ଲଭି ଆକୁଳ ଚିତ୍ତରେ ।
ବେଣୁଧର ବୋଲେ କାନ୍ଦି ହାର ଫିଙ୍ଗି ଦେଲେ ସେ । ୪ ।
( ବନ୍ଧୁରେ କଷ୍ଟେ ମରିବି ଆଉ ସହି ନ ପାରିବି—ବୃତ୍ତେ )

—*—

## ରାଧାଉକ୍ତି

( ରାଗ—ଖଣ୍ଡକେଦାର । ତାଳ—ଝୁଲ )

କପଟ ରେ ସହଚରି ?
ବଞ୍ଚିବି ମୁଁ ଶ୍ୟାମବନ୍ଧୁ ଲାଗି କହ । ଘୋଷା ।
ସେ ନଟନାଗର ହରି ଛାଡ଼ିଯିବେ ମଧୁପୁରୀ,
କଂସ ନଗର ଆସିଛନ୍ତି ନେବ ଧରି । ୧ ।
କି ରଙ୍ଗେ ମୋ ନାମ ଧରି ବଜାଉଥାନ୍ତି ବାଂଶରୀ,
କାହୁଁ ଶୁଣିବି ସେ ସ୍ୱନ କର୍ଣ୍ଣ ଡେରି ? । ୨ ।
କଟାକ୍ଷ ନୟନେ ଠାରି, କରିବ କେ ଚତୁରୀର ?
କଳାଚାନ୍ଦ ତ ହେବେ ଯମୁନା ପାରି । ୩ ।

ବୋଲେ ବେଣୁଧର ହରି— ଗୁଣ ଗୁଣି ଶ୍ରୀକଣ୍ଠେଶ,
ନିରନ୍ତରେ ନେତ୍ରୁ ବହେ ଅଶ୍ରୁବାରି । ୪ ।
( ସେ ମୋହନେ ପ୍ରୀତିକରି—ବୃତ୍ତେ )

—o—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ
ନୀଳ ନବଘନ ତନୁ ।
କ୍ଷଣେ ହେଲେହେଁ ପାଶୋରି ଯିବ କି ଗୋ ମନୁ । ଘୋଷା ।
ଯେବେ ଗୋ ଉପେକ୍ଷି ଯିବେ ମଦନ-ମୋହନ ।
ସନ୍ତାପ-ଅନଳେ ନିକି ହୋଇବା ଦହନ ? । ୨ ।
ମଧୁର ପଞ୍ଚମ ତାନ ମୁରଲୀ-ନିସ୍ୱନ ।
ଆଉ କି ଶୁଣିବ ସତେ ଏ ଆମ୍ଭ ଶ୍ରବଣ ?
ଲବଣ୍ୟ ଶ୍ରୀଅଙ୍ଗ ସ୍ୱରୂ ତ୍ରିଭଙ୍ଗିମା ଠାଣି ।
ଏ ତାପ-ନୟନେ କାହିଁ ଦେଖିବା ମିଛଣି ! । ୩ ।
ନାଶା ଆଶା ମନୋପୂର୍ଣ୍ଣ କସ୍ତୁରୀ ଆମୋଦ ।
ତୁଷିବେ କି ଆଉ ବନ୍ଧୁ ମୃଦୁବାଣୀ ପଦେ । ୪ ।
ଚର୍ବିତ-ତାମ୍ବୁଳ ତାଙ୍କ ଅଧରୁ ଛଡ଼ାଇ ।
ଭୁଞ୍ଜି ବାଞ୍ଛା ଶୂନ୍ୟ ହେବ ପିନା ଏ ବଡ଼ାଇ । । ୫ ।
ମରକତ କପାଟ ନିନ୍ଦିତ ବକ୍ଷସ୍ଥଳେ ।
ଲଗାଇ ଉଡ଼ିବ କେବେ ଶ୍ରୀ ଭୁଜ ଯୁଗଳେ ? । ୬ ।
ଫନ୍ଦା କରି ଥିଲଇଁତ ଛନ୍ଦା-ପଦ୍ମ-ପାଦ ।
ବୋଲେ ବେଣୁଧର ଏବେ ସରିଲା ସମ୍ପଦ । ୭ ।
( ଆରେ ସରଳ ହୃଦୟା—ବୃତ୍ତେ )

—❀—

## କୃଷ୍ଣଙ୍କ ପ୍ରତି ରାଧାଙ୍କ ଉକ୍ତି ।

( ରାଗ—ଭଟିଆରୀ । ତାଳ—ଏକତାଳୀ )
ଆହେ ପଦ୍ମମୁଖ ! ଅହେ ଚନ୍ଦ୍ରମୁଖ ! !
ଅଛି ଏ ଛାର ଜୀବନେ କେଉଁ ସୁଖ ?
ମନେ ଥିଲା ଦେବା ପାଇଁ ଏତେ ଦୁଃଖ । ଘୋଷା ।
କାହା ଆଗରେ କହିବ ଏହା କଲ ତ ନିରାଶ ବଂଶୀ-ବାହା,
ସତେ କି ହେ ନାଥ ! ଛାଡ଼ ମଧୁପୁରେ ବ୍ରଜପିକ ଛାଡ଼ି କରି ଲୁହା । ୧ ।

ସତ୍ୟ ସତ୍ୟ କେତେ ନନ୍ଦା ଧନ୍ଦା ଛନ୍ଦାପଦ କରିଥିଲ ଫନ୍ଦା,
କନ୍ଦାଇବ ବୋଲି ଆଖର କାନକୁ ନେଇଥିଲ କି ଏ ତନୁ କନ୍ଧା ? । ୨ ।
ତୁମ୍ଭ ଲାଗି କହୁ ନ ଜଣାଇଁ ଛଳେହେ ସ୍ୱପଦ ନ ଗଣଇଁ,
ବଂଶୀ ନାଦାମୃତ ପାନକରି ମୁଁ ନିତ ଜନ୍ମ ଧନ୍ୟ ମଣୁଥାଇ । ୩ ।
ଅନାଥିନୀ କରିଯିବେ ଯେବେ ଘନାଘନା ବାଣୀ ଶୁଣ ଏବେ,
ରଥ ଚକତଳେ ଜୀବନ ହାରିବ ବେଣୁଧର ଭଣେ ରାଧା ଭାବେ । ୪ ।

( ଆନର ଦୁଃଖୀଧନ—ବୁଲ୍ଲେ )

—❋❋—

( ରାଗ—ମୋହନା । ତାଳ—ଖେମଟା )

ସତେ ଯିବକି ମଥୁରା ହେ, ମୁରଲୀଧର ! । ଘୋଷା ।

ଆମ୍ଭେ ସବୁ ବ୍ରଜନାରୀ ବଞ୍ଚିବୁଁ କିପରି
ନିରନ୍ତରେ ଝୁରି ଝୁରି ମରିଯିବୁ ପରା ହେ । ୧ ।
କାହା ସଙ୍ଗରେ ସୁମନେ ନିତି ନିତି କୁଞ୍ଜବନେ,
ସବୁ ସୁଖ ଭୁଲି ବଦନରୁଁ ଚଉବେର ହେ । ୨ ।
ତା ଲାଗି ଆଜ ଯମୁନା ଯିବୁଁ ହେ କାଳିଆ ସୁନା
ଗୁଣ୍ଡ ଯାଉଛନ୍ତି ମାଳରନ୍ଧ୍ର ହୃଦହାରା ହେ । ୩ ।
କି ଦୋଷ ଦେଖି ଆମ୍ଭର କରି ଦେଉଛ ଅନ୍ତର,
ଅଧମ ଲବଣୀ ଚୋରା, ସଖା ଧୂର୍ତ୍ତ ହରା ହେ । ୪ ।
କେଉଁପରି ତୁମ୍ଭ ମନ ବୁଝୁଛୁ ହେ ଶ୍ୟାମଘନ,
ଯଶୋଦା ସଖୀଙ୍କ ଆମ୍ଭ ନୟନ ପସରା ହେ । ୫ ।
ସେ ଦାରୁଣ ରାଜା କଂସ କରୁଅଛୁ ଅତି ରୋଷ,
ନ ଜାଣକି କପଟରେ ପେଷିଛୁ ଉଗର ହେ । ୬ ।
ଦୁଃଖେ ବେଣୁଧର ଭଣି ଏତିକି ମାତ୍ର ମାଗୁଣି,
ଦେଇଯାଅ ଆମ୍ଭ ମୁଖେ ଜହର ମନ୍ତ୍ର ହେ । ୭ ।

( ବରଜ ଶିଶୁ ସତ୍ୟ ! ଯିବେଟି ସର—ବୁଲ୍ଲେ )

—o—

( ରାଗ—ମାଳୁଆ । ତାଳ—ଆଠତାଳୀ )

କାହିଁ ପାଇଁଲ ହେ କେକପୁଚ୍ଛ ମୁକୁଟ !
ଲେଉଟ ଯିବ ପୀତପଟ । ଘୋଷା ।

ଏ ଗୋପନଗର ଶିଶୁ— ଛଡ଼ାଇବ ଗିରିଧାରୀ,
ମରିବୁଁଟି ଝୁରି ଝୁରି ହେ ନନ୍ଦସୁତ । ୧ ।
ଶୁଣ ହେ ମୁରଲୀଧର ଯେବେ ଅଛୁ ଏ ଭାବର,
ତେବେ ଆମ୍ଭ ମୁଖେ ଦେଇ ଯା କାଳକୂଟ । ୨ ।
ଶ୍ୟାମଳ ତନୁ ଲାବଣ୍ୟ ଦରଶନ ହେବ ଶୂନ୍ୟ
କାହୁଁ ଶୁଣିବୁଁ ମୋହନ ମୁରଲୀ ନଟ । ୩ ।
ଭଣେ କବି ବେଣୁଧର ଶୁଣ ହେ ନଟ ନାଗର,
ଜାଣି ନ ପାରେ କି କଂସ ନୃପତି କୂଟ । ୪ ।
( ପ୍ରାଣ ସଙ୍ଗିମାନର ନନ୍ଦାନନ୍ଦପଦର—ବୃତ୍ତେ )



( ରାଗ—ମୋହନା । ତାଳ—ଖେମଟା )

ମୁରଲୀଧର ! କାହିଁକି ଆମ୍ଭଙ୍କୁ ଛାଡ଼ି ଯାଉଛ ମଥୁରା ହେ । ପଦ ।
କପଟେ ଧନୁ ଉତ୍ସବ କରାଉଛି କଂସ ।
ଧରାଇ ନେଉଛି ସେହୁ ହେତୁ ପୀତବାସ ହେ । ୧ ।
ଦାରୁଣ ଅକ୍ରୂର ଶଠରଥ ସଜକରି ।
ଆସିଅଛି ହରିବାକୁ ଆମ୍ଭ ନେତ୍ର ଶିଶୁ ହେ । ୨ ।
ଯେବେ ଗୋପୀନାଥ ଗୁଡ଼ି ଯିବେ ମଧୁପୁର ।
ଅଭାଗିନୀ ଗୋପୀ ଆମ୍ଭେ ହୋଇବୁଁ କାହାର ହେ । ୩ ।
କବିଚନ୍ଦ୍ର ବେଣୁଧର ବୋଲେ ଆହେ ହରି ।
ଯେବେ ଗୁଡ଼ିଯିବ ଗଳେ ଦେଇ ଛୁରୀ ହେ । ୪ ।
( କାଞ୍ଚନ ଗୋରି ! କଲି କି ଦୋଷ ତୋହର—ବୃତ୍ତେ )



( ରାଗ—ମାରୁଆ । ତାଳ—ଆଠତାଳୀ )

ଶରତ୍‌ଚନ୍ଦ୍ରର ହେ ମନମୋହନ ଆଜ ।
କେଣିକ ହେଉଛ ପର ? । ଘୋଷା ।
ଆମ୍ଭଙ୍କୁ କାହାକୁ ଦେଇ    ଯିବ ହେ ପ୍ରାଣ ମାଧୋଇ
କହ କନା କୁଞ୍ଜନେହ ମୂରଲୀଭୂଜ । ୧ ।
ଆହା ! କେତେଦିନ ପାଇଁ    କେତେ ସେନେହ ଲଗାଇ
ଅନ୍ତର କରି ଦେଉଛ ନିକୁଞ୍ଜରାଜ ! । ୨ ।
ହେ ଶିଖୀପୁଚ୍ଛ ମୁକୁଟ    ମନ ଥିଲା ଏତେ କୁଟ
ଆଗରୁ ଯା ନ କହିଲ ନନ୍ଦ ଆତ୍ମଜ । ୩ ।
ଏ ଗୋପ ଅନ୍ଧାର କରି    ଯିବ ଯେବେ ମଧୁପୁରୀ,
ବେଣୁଧର ବୋଲେ କେମନ୍ତେ ଧରିବୁ ଧୈର୍ଯ୍ୟ ? । ୪ ।
( ପ୍ରାଣ ସଙ୍ଗିମାନେ ନେଶାନନ୍ଦପଦର ବୃତ୍ତେ )

—୦—

( ରାଗ—ପୂର୍ବୀ । ତାଳ—ଆଦିତାଳ )

ନ ଯାଅ ମଧୁଭୁବନ ହେ, ମୋହନ । ଘୋଷା ।
ନରପତି କଂସ    କରି ଅତି ରୋଷ
ଧରାଇ ନେଉଛି ଜାଣ ହେ, ମୋହନ । ୧ ।
ସେ କ୍ରୂର ଅକ୍ରୂର    ଚିତ୍ତ ଗହ୍ୱର,
ନ ବହ ନନ୍ଦନନ୍ଦନ ହେ, ମୋହନ । ୨ ।
ଯେବେ ଯିବ ଛାଡ଼ି    ତୁମ୍ଭ ପଛେ ଉଡ଼ି,
ଯିବ ଏ ପିଣ୍ଡୁ ଜୀବନ ହେ, ମୋହନ ! । ୩ ।
ସବୁ ଗୋପୀ ଆମ୍ଭେ    ରହିବୁ କି ଦମ୍ଭେ ?
ଭଗାଣ ହେବ ମଦନ ହେ, ମୋହନ ! । ୪ ।
ବେଣୁଧର ବୋଲେ    ଲେଖାଥିଲା ଭାଲେ,
ଲଭିବାକୁ ଏ କଷଣ ହେ, ମୋହନ । ୫ ।
( ଦୂର କଲୁ ଦେହର ରେ କିଶୋର ! — ବୃତ୍ତେ )



( ରାଗ — ସିନ୍ଧୁ ଭୈରବୀ । ତାଳ—ଆଡ଼ତାଳୀ )

ନନ୍ଦ ନନ୍ଦନ-ମୁରଲୀଧର ! ସତେ ଛାଡ଼ି ଯିବ କି ?

(ପଦ) ବ୍ରଜସୁନ୍ଦର ମନ୍ଦରଧର   କରିବ କେତେ ସୁନ୍ଦର ?
ବନ୍ଧା ବାଳକ ଧେନୁ ସଙ୍ଗର, ଭୁଲିବ କେତେ ଗିରିକନ୍ଦର ।
ହେ ମନ ମୋହନ ତୁମ୍ଭ ବିନା ପ୍ରାଣ ଏ ପିଣ୍ଡରେ ଥିବ କି ? । ୧ ।

(ପଦ) ଆଜ କାହାର ସଙ୍ଗ ବିହାର—   କରିବୁ କୁଞ୍ଜେ କା ଲାଗି ହାର
ଗୁନ୍ଥି କାହାକୁ ହୃଦରେ ହାର, କରିବୁଁ ଗୋପୀ ହେଲେ ବାହାର ।
ଆହେ ନବଘନବରନ ! ସତେ ଏ ଗୋପକୁ ଆସିବ କି ? । ୨ ।

(ପଦ ଦାରୁଣ କଂସରାଜା ବଇରି   ଅକ୍ରୁର ପେଷି ନେଉଛୁ ଧରି,
ମିଛରେ ଧନୁ ଜଜ୍ଞବ କରି, ଧେନୁ ଯାଉଛୁ ବରଜଶିରୀ ।
ହେ ହୃଦଚନ୍ଦନ ତବ ଅପଘନ ଏ ନେତ୍ର ଦେଖିବ କି ? । ୩ ।

( ପଦ ) କହୁ ସ ହରି କେବେ କପରି   ଫେରିବ ଯାଉଛ ଛାଡ଼ିକରି,
ନୋହିଲେ ଗଲେ ହେଇ ଯା ଛୁରୀ, ପଞ୍ଚତ୍ୱେ ମିନା ମରିବୁଁ ଝୁରି ।
ସଙ୍ଗତେ କପାଇଁ ନେଉ ନାହିଁ ଆମ୍ଭେ ପରା ତୁମ୍ଭ ସେବକୀ ? ୪ ।

( ପଦ ) କି ଦୋଷ ଦେଖି ପଙ୍କଜ ଆଖି !   ଆମ୍ଭମାନଙ୍କୁ ଯାଅ ଉପେକ୍ଷି
ଏ କବଚନ୍ଦ୍ର ଏଥିକି ଦୁଃଖୀ ହୋଇଛୁ ବୋଲି ଜାଣନାହିଁ କି ? । ୫ ।

( ରାଧାକାନ୍ତ ରାଧା ମୋହନ ହେ ଗୋବିନ୍ଦ—ବୃନ୍ଦେ )

—*—

( ରାଗ କେଦାରଗୌଡ଼ । ତାଳ— ଝୁଲା )

ମୋହନ ! ବୃନ୍ଦାବନବିହାରୀ ହେ !
କାହିଁ ଯାଅ ବାହାରି ହେ ନୋଷା ।
ଜାଣନ୍ତୁ ଭୈଳଙ୍କମନ୍ତ୍ର ମଥୁରାନାରୀ ।
ଶ୍ୟାମ ହେ ମଥୁରାନାରୀ ।
ଭୁଲାଇ ରଖିବେ ଅମ୍ଭଙ୍କୁ ଜୀବନେ ମାରି ହେ । ୧ ।
ତୁମ୍ଭେ ଗୋପୀନାଥ ଯେବେ ଗୋପରୁ ଯିବ ।
ଅନାଥିନୀ ହେବୁଁ ଆମ୍ଭେ ଗୋପିନୀ ସବୁ ହେ । ୨ ।
ତୁମ୍ଭେ ଗୋକୁଳ ସୁନ୍ଦର ଉଦୟା ଚନ୍ଦ୍ର ।
ଘୋଟିଛୁ ଅକ୍ରୁର ରାହୁ ହେବ ପ୍ରମାଦ ହେ ୩ ।

ଯାଅ ଅବା ଥାଅ ଗୋପେ ହେ ଛଦ୍ମବେଶ ।
ଆଗରୁ ଆମ୍ଭଙ୍କୁ ମାର ଦେଇ ମନ୍ତ୍ରସ ହେ । ୪ ।
କାନରେ ନ ପଡ଼ୁ ଅମ୍ଭର ମଥୁରାଯିବା ।
କେଉଁଠେ ଶୂନ୍ୟ ହେବ ଛନ୍ଦାଚରଣ ସେବା ହେ । ୫ ।
( ଭଲ ଭଲ କି ଭଙ୍ଗୀ ସେ ମୋହନ—ବୃନ୍ଦେ )



( ରାଗ—ତୋଡ଼ିପରଜ । ତାଳ—ଆଡ଼ତାଳୀ )

ବ୍ରଜସୁନ୍ଦର ହେ ! ସଜ ହେଉଛ କେଣିକି ?
କଣ୍ଠନେହ କହ     ଯାଅ ସତ କହ,
ଗୋପକୁ ଅସିବଟି କି । ଘୋଷା ।
କପଟରେ ଧନୁ-     ଉତ୍ସବ ଉଆଇ,
ଅଛି କଂସ ନୃପମଣି ।
ତୁମ୍ଭଙ୍କୁ ଧରାଇ     ନେଉଅଛି ବନ୍ଧ-
ଯୋଷ ନ ପାରୁଛ ଜାଣି । ୧ ।
କପଟ ଏ ରୂପ     ମୂଢ଼ିଛି ବଦ୍ଧମୁ,
ଆହେ ଗିରିଧର ଟେକା ।
ଘରଘର ଦୂର     କରଣ ତୁମ୍ଭଙ୍କୁ,
କର ତ ଥିଲୁ ଗାବକା । ୨ ।
କପାଇଁ ନନ୍ଦସୁ     ହେଉଛ ସଦୟ,
ଚଣ୍ଡେ ନ ଶୁଣ କହିଲେ ।
କେଉଁ ସୁଖଶିଷ     ଅର୍ଜିବୁ ହେ ହରି
ଆମ୍ଭେ ଏ ଗୋପରେ ଥିଲେ । ୩ ।
ବେଣୁଧର ଭଣି     ବେଣୁଧର ଭଣି,
ଶୁଣ ଗୋ ବ୍ରଜରମଣୀ ।
ମୁଁ ବୃନ୍ଦାବନରେ     'ଆସିବ ମନରେ,
ନ କର କିଛି ଭାବେଣି । ୪ ।
( ଉରନାହିଁ କି ହେ ପର ଗରୁଣି ହରଣୁ—ଫକ )



( ରାଗ—କାମୋଦୀ । ତାଳ—ମିଶ୍ର ଝମ୍ପତାଳି )

ରସରସିକ ଆହେ କାମ ଜନିଆ !
କେତେ ସଙ୍କଟ ଭଙ୍ଗି ଥିଲ ତ ବଙ୍କାଆଖି !
ଏତେବେଳକୁ ଶୀଳା କଲ କ ହୃଆ ? । ୧ ।
ଯେବେ ପିକ ମଥୁରା ଦେଖଯାଅ ମଧୁରା,
ଲାବଣ୍ୟଠାଣି ଛାଡ଼ ପ୍ରୀତି-ନିଧିଆ । ୨ ।
ଆମ୍ଭେ ବ୍ରଜ ତରୁଣୀ ତୁମ୍ଭର ଗୁଣ ଗୁଣି,
ଝୁରି ମରିବୁଁ ହୋଇ ଛଟପଟିଆ । ୩ ।
ଦର୍ଶନେ ତୃଣ ଧରି ବାସାଞ୍ଜଳ ପ୍ରସାରି,
ମାଗୁଛୁଁ ଦୈନ୍ୟ କରି ପୀତପଟିଆ । ୪ ।
* ଦ୍ୱିଜ ମଧୁସୂଦନ ବର୍ଣ୍ଣନ୍ତି ବାରେ ଯେନ,
ନର୍ଦ୍ଧସ୍ୱ ଲୁଚ ନେ ସମୁଦାଚନିଆ । ୫ ।
( କେବେଳ ଥିବ ତୁଷା ଅଜ କାହିଁକି—ବୃତ୍ତ )

—୦—

( ରାଗ ଶଙ୍କରାଭରଣ । ତାଳ—ଆଠତାଳି )

କଳାକାହ୍ନୁ ବଂଶୀଧାରୀ ।
କଲ କ ପଥର ଗୁପ୍ତ ନିକୁଞ୍ଜଦ୍ୱାର ହେ । ଘୋଷା ।
ଅନାଥିନୀ ହେବୁ ଷୋଳସହସ୍ର ଗୋପନାରୀ ।
ଏଡିକି ବେଳକୁ ଗଳାରେ ଦେଇଯାଅ ଛୁରୀ ହେ । ୧ ।
ଆଗରୁ ଯେବେ ଏ କଥା ଥିଲ ହେ ବିଚାରି ।
ଖୁଆଇ ମଧୁରା କଅଁ। ଦେଲ ନାହିଁ ମାରି ହେ । ୨ ।
ସ୍ଥିର ହେଉ ନାହିଁ ନେତ୍ର ଯୁଗେ ଅଶ୍ରୁଧାର ।
କେମନ୍ତେ ଧରିବୁଁ ପ୍ରାଣ ସନ୍ତାପ ନିବାରି ହେ । ୩ ।
ବେଣୁଧର ବୋଲେ ମର୍ମ ହେଉଛି ବିଦାରି ।
ବଚ୍ଛେଦ କଷଣ ଆଦ୍ୟା ସହିବୁ କପରି ହେ । ୪ ।
( ସ୍ୱର୍ଗୀ ଚମକ ପଡ଼ିଲ—ବୃତ୍ତେ )

---

* ମଧୁସୂଦନ ମିଶ୍ର ବେଣୁଧରଙ୍କ ବାଲ୍ୟକାଳର ଅନେକ ସଙ୍ଗୀ ।

( ରାଗ—କୃଷ୍ଣକେଦାର । ତାଳ—ଖେମଟା )

ସତେ ଆସିବେ କି ଫେରି ହେ, କୁଞ୍ଜବିହାରୀ । ଘୋଷା ।

କହିଯାଅ ସତ                    କେଉଁମତେ ଚିତ୍ତ,
    ବଳେ ଯିବା ପାଇଁ ଗୁଡ଼ିକରି ହେ । ୧ ।
ବଡ଼ ନିଦାରୁଣ                   ସେ କଂସରାଜନ,
    ପଶ କପଟେ ନେଉଛି ଧରି ହେ । ୨ ।
ଯା ନାମ ଅକ୍ରୂର                  ତା ସ୍ୱଭାବ କ୍ରୂର,
    ତିଳେ ଦୟା ନାହିଁଟି ତାହାରି ହେ । ୩ ।
ବସାଇ ରଥରେ                   ମଥୁରା ପଥରେ,
    ନେବ ଭୁଲାଇ ଅଛି ବିଚାରି ହେ । ୪ ।
କହେ ବେଣୁଧର                   ଆହେ ମନଚୋର,
    ହେଲୁ ଅନାଥିନୀ ବ୍ରଜନାରୀ ହେ । ୫ ।

( ମୁରଲୀଧାରୀ, ସତେ ଯିବେ କି ବିହାରୀ—ବୃନ୍ଦେ )



( ରାଗ—ଭଟିଆ । ତାଳ—ଏକତାଳୀ )

ଆ-ହେ ଗିରିଧାରି !
ହେ-ଲା ଏକ ଉଚିତ କହ ବିଚାରି । ଘୋଷା ।
ଗୀ-ଷଣ ଗଜଘ ପଜାକର,
ରି-ଝାଇ ମାନସ ଗୋପନାରୀ,
ଧା-ଇଁଧା ଧାଇଁ ନିତି ନିକୁଞ୍ଜକାନନେ,
ରୀ-ତି ନିତି କି ନ ଥିଲୁ ପାସୋରି । ୧ ।
ହେ-ଲାବଣ୍ୟ ସୁକୁମାର ତନୁ,
ଲା-ଜ ଭୟ କୁଳ ଦେଖା ଦନୁ,
ଏ-ଡ଼ ଦେଇ ତୁମ୍ଭ ପ୍ରେମେ ମଜ୍ଜିଥିଲୁ,
କ-ହିତେ ନ ହେଜ କଳାକାହ୍ନୁ । ୨ ।
ଉ-ପାୟ ହୀନା ହୋଇ ତ ଏବେ,
ଚି-ତ ଦହ ଦହେ ଠାବେ ଠାବେ,

ଛ-ଳେ ପଡ଼ି ଗଡ଼ି ସଡ଼ି ଯିବୁଁ ଯିବା,
କ-ଞ୍ଜଦଳ-ନେତ୍ରଙ୍କ ଅଗ୍ରେ । ୩ ।
ହ-ସାଇ ରସାଇ ବୃନ୍ଦାବନେ,
ବ-ଦେବ ବଜାଇ ବଂଶୀସ୍ୱନେ,
ସ୍ତ୍ର-ଭୁଷା ଛଇରେ ଭୁଲାଇ ଏବେ ତ୍,
ର-ତି ଆନ ଆନ ଅଛ ଧରି । ୪ ।
ହେଜ ଅଦ୍ୟାକ୍ଷର ମାନ ହରି,
ବେଣୁଧର କରେ ଏ ଗୁହାରି,
ଗଲେ ମଧୁପୁରୀ ଗଲେ ବାଅ ଛୁରୀ,
ଆଗୁଁ ସରିଥିବୁଁ ଗୋପନାରୀ । ୫ ।

( ଆରେ ପ୍ରିୟସଖି ! ଶ୍ୟାମବନ୍ଧୁ ପରି ଆଉ—ବୃତ୍ତେ )

—୦—

( ରାଗ—ତୋଡ଼ିପରଜ । ତାଳ—ଆଡ଼ତାଳୀ )

ରସଶେଖର ହେ, କସ ମାନସ ଭିତରେ ।

ପାଶରୁ ଅନ୍ତର ହୋଇ ମଧୁପୁର
ଯିବାର କି ଉଚିତରେ । ଘୋଷା ।
କଂସ ନୃପମଣି ରୋଷ ବନ୍ଧିଅଛି,
ତେଣୁ ନେଉଛି ଧରାଇ ।
ଅସହ୍ୟ ଯନ୍ତ୍ରଣା ବାଅଭିବପରି
ମଥୁରା କଟକେ ନେଇ । ୧ ।
ବସନ ଲୁଟିଆ ଚନ୍ଦନ ପାଟିଆ
ନପାରି କି ତାହା ଜାଣି ।
ହସ ହସ ହୋଇ ରଥେ ବସିଲଣି,
କି ଭାବ ମୁରଲୀପାଣି । ୨ ।
କ ସରଳ ହବା— ନରୀ ଝୁରି ଝୁରି,
ତୁମ ଗୁଣ ଗୁଣମଣି !
ପସନ୍ଦ ହେଉଛି କପରି ଏକଥା,
ଚାଣ୍ଡୁରୁ ହେ ଚନ୍ଦ୍ରାମଣି । ୩ ।

ଯଶ ଭଣିବାକୁ ନାଶି ଏ ସେବକ-,
ମାନଙ୍କୁ ଗୋଟିକ ଗୋଟି ।
ସଂସାରେ ଅଧମ ଦୁଃଖୀ ବେଣୁଧର,
ଯା ଛନ୍ଦାଚରଣେ ଲୋଟି । ୪ ।
( ଶ୍ୟାମନାଗର ହେ, ଦଇବ ବିଚ୍ଛେଦ କଲା—ବୃତ୍ତେ )

( ରାଗ—ସାରଙ୍ଗ । ତାଳ—ଖେମଟା )
ମୋହନ ହେ ! ନ ଯାଅ ଗୃହ୍ଡ ।
କହୁଛୁଁ ତପୃମା ଛନ୍ଦା ପଦତଳେ ପଡ଼ି । ଘୋଷା ।
ତୁମ୍ଭ ପ୍ରୀତି ସୂତ୍ର ଚନ୍ତ ଚନ୍ତ ଘଡ଼ି ଘଡ଼ି ।
ଏ ପୁର ପିଣ୍ଡ ପରାଣ ଯିବ ସିନା ଉଡ଼ି । ୧ ।
ଜନ୍ମଠାରୁ ଥିଲୁଁ ପଗ ତୁମ୍ଭ ସଙ୍ଗେ ଜଡ଼ି ।
କହୁଛ ନଗଣ କର୍ମ୍ମ ସେ ହୃଦୟୁ ଏଡ଼ି । ୨ ।
ରାଣୀ ଯଶୋମତୀ ହେଉଛନ୍ତି ମୁଣ୍ଡକୋଡ଼ି ।
ମୁଖଁ ବାଣୀ ନ ଫୁରଇ ନୈରାଶ୍ୟରେ ବୁଡ଼ି । ୩ ।
ଯଶୋଦାଙ୍କ ଜ୍ଞାନ ନାହିଁ ଅବନୀରେ ଗଡ଼ି ।
ଚନ୍ଦ୍ରାବଳୀ ଚେତା ହଜେ ଶିରେ କର ଚାଡ଼ି । ୪ ।
ସଖାମାନଙ୍କ ଦୁର୍ଦ୍ଦଶା କ କହିବୁ ଫେଡ଼ି ।
ହା କୃଷ୍ଣ ହା କୃଷ୍ଣ ବୋଲି ଘୁଣୁଛନ୍ତି ରଡ଼ି । ୫ ।
ଚବଲ୍ଲଳା ଖେଳା ରଙ୍ଗ ରସ ଲେଡ଼ି ଲେଡ଼ି ।
ବେଣୁଧର ଅଙ୍ଗ ବଳ ଗଲାଣିଟି ଝଡ଼ି । ୬ ।
(କାହିଁକି ଗୋ ମୋହନାମଠା—ବୃତ୍ତେ )

—୦—

( ରାଗ—ଚୋଡ଼ପରଜ । ତାଳ—ଏକତାଳୀ )
ଶତ୍ରୁରେ ବାଣ୍ଟତ ଭଲ ହେ ମୋହନ !
ଶତ୍ରୁରେ ବାଣ୍ଟତ ଭଲ ।
ଯଥାର୍ଥରେ ଭବ ଗୋପୀ ପ୍ରାଣଧବ
କଥା କେତେ ସତ୍ୟଗଲ । ପଦ ।

ଆହେ ଶ୍ୟାମଚନ୍ଦ୍ର, ମନେ ନ ପଡ଼େ କି,
ବୃନ୍ଦାବନ ଖେଳା ଲୀଳା ।
ଆସି ମଧୁପୁରେ ଐଶ୍ୱର୍ଯ୍ୟ ମଦରେ,
କେତେ ବେଗି ହେଲ ଭୋଳା । ୧ ।

ବ୍ରଜର ମାଧୁର୍ଯ୍ୟ ଭାବ କେଣେ ଗଲା,
ମୋହନ ମୁରଲୀ ବାଜା ।
କୁବୁଜା ସୁନ୍ଦରୀ ଯେନତ ହୋଇଛି,
ମଧୁ କଣ୍ଟକରେ ରାଜା । ୨ ।

ତୁମ୍ଭେ ସେହି ଗୋରୁ— ଚରା ବନମାଳୀ,
ଆମ୍ଭେ ସେହି ଗୋପାଳୁଣୀ ।
ଖାତର ଢଳକୁ ନ ଆସିଲୁଁ ଏବେ,
ମାତଙ୍କ ଚିନ୍ତାମଣି । ୩ ।

ଯେତେବେଳେ ଆମ୍ଭ ରାଧା ରାଣୀଙ୍କର,
ପଦତଳେ ଲୋଟୁଥିଲ ।
ସେ କଥାଟି ମନେ ଅଛୁକି ନ ଅଛୁ,
ଚେତାଇ ଦେଲି କେବଳ । ୪ ।

ବାସ ଦେଇ ଗଲେ ନେତ୍ର ଅଶ୍ରୁ ଜଳେ,
କରୁ ଯା ଥାଅ ଭଜନ ।
ଯାଉଛି ସେ ବେଳ ଗାନଲୀଳା ଖେଳ,
ଭାବିଲେ କି ହେବ ପୁଣି । ୫ ।

ମୁଁ ଯେ ବୃନ୍ଦା ଦୂତୀ ଜାଣ ତ ଶ୍ରୀପତି,
ରହିଛି ତୁମ୍ଭର ପାଶେ ।
ରାଧା ବାଧା ସମା— ହ୍ୟର କରୁ ମାସ,
ଜଣା କରିବାର ଆଶେ । ୬

କଲେ ଅନାଦର ହେ ବସନ-ଚୋର,
ଏଥିକି ନାହିଁ ଭାବନା ।
ଏକା ଗୋପୀନାଥ ନାମେ ଗାର ହୃଅ
ଯାଉ ସକଳ ବାସନା । ୭ ।

ରାଧିକାରମଣ ବୋଲାଇବା ପଣ,
ରହିବ ହେଉ ଏଣିକି ।
ଜଳଚନ୍ଦ୍ର ବେଣୁ— ଧର କହେ ଶୁଣୁ-
ନାହିଁ ଯେଣୁ ମୋ ବାଣୀକି । ୮ ।
( କି ଦେଖିଲି ଆଜ ନେଇ ଲୋ ସଜନି !— ବୁଝେଁ )

—୦—

( ରାଗ—ତୋଡ଼ି । ତାଳ—ଆଠତାଳୀ )

ଅନ୍ତର କର ମନ୍ଦ ଆହେ କାଳିଆ କାହ୍ନୁ !
ସତେ ଯିବକି ମଧୁ ଭୁବନ ହେ । ଘୋଷା
କପର ଗୋପୀମାନେ ବଞ୍ଚିବୁ ତୁମ୍ଭ ବିନେ,
କହ କଳା ଜୀବନ-ଜୀବନ ହେ । ୧ ।
କେତେ ଜାଳ ଜାଗର ପାଇଥିଲୁଁ ନାଗର,
କରି କରି ନରଲେ ଭାବନ ହେ । ୨ ।
ଏ ପାପ ନେଥେ କାହିଁ ... ଅବା ଆଜି,
କଳାଚନ୍ଦ୍ର-ମୁଖ ଶୋଭାବନ ହେ । ୩ ।
କହଇ ବେଣୁଧର ଅଟୁ ଟି ଗିରିଧର,
ହତଶ୍ରୀ ଦଶିବ ବୃନ୍ଦାବନ ହେ । ୪ ।
( ଶ୍ୟାମ ତବ କରୁଣା ଲଭିଣା ପରି ତ ଜଣା—ବୁଝେ )

—❀—

( ରାଗ—ଶ୍ରୀରାଗ । ତାଳ—ଆଦିତାଳ )
( ଶ୍ୟାମ ହେ ! ଯେନ ଦଶ୍ମିନ ।

ନ ଯାଅ ମଧୁଭୁବନ କରି ତର ଅନାଥିନୀ । ଘୋଷା ।
ଆମ୍ଭେ ଯେତେ ବ୍ରଜନାରୀ ମରିଯିବୁଁ ଝୁରି ଝୁରି,
ବଦନ ତ ଯୁଗ ପରି, ହେଉଛ ତୁମ୍ଭର ଯେନ । ୧ ।
କେତେ ଉଷା ବାଳବ୍ରତ, ଭଜି ହେ ମୁଚକୁନ୍ଦନାଥ,
ପାଇଥିଲୁଁ ଉମାକାନ୍ତ ମନାଇଁ କାତ୍ୟାୟନୀ ଠାଣି । ୨ ।
ସରବର ଦୂର କରି ତୁମ୍ଭ ଭବ ହୃଦେ ଧରି,
କେବଳ ଥିବା ଦେହ ବହୁଥିଲୁ ରେ ଚାତୁରୀ । ୩ ।

ନୟଶ କରିବ ଯେବେ          କାହାର ଦେଖୁଛି ଆମ୍ଭେ,
ବଧିର କର ତା ଏବେ, ମୋହନ ଶ୍ରୀ ଚିନ୍ତାମଣି । ୪ ।
ଗୋପୀଙ୍କ ବଚନ ଶୁଣି          ହସନ୍ତି ସାରଙ୍ଗ ପାଣି,
ନ କର କଷ୍ଟ ହଲେଣି, ଦୁଃଖୀ ବେଣୁଧର ଭଣି । ୫ ।

( ସନ୍ଧି.ଗୋ, ଆଜ୍ଞ ଏଣିକ—ବୃତ୍ତେ )

—※—

( ରାଗ—କଯୃନ୍ତ । ତାଳ—ଝୁଲ )

କାହିଁପାଇଁ କ ଚିନ୍ତା କରୁଛ ଏତେ ଗୋ ।
ମୋର ନିମନ୍ତେ । ଘୋଷା ।

ଆଗୋ ବରଜ-ବାଳୀମାନେ ସକଳେ ।
ଫେରିଆସିବ ବୃନ୍ଦାବନେ ଗୋକୁଳେ ଗୋ । ୧ ।

ଘେନ ବୃତକସତପନ୍ଥ ତୁମ୍ଭ ଆମ୍ଭର ।
ଅଖଣ୍ଡ ପ୍ରୀତି ଯିବା ବଧିର କର ଗୋ । ୨ ।

ଗଗନେ କଳାନିଧି ଜଳେ କୁମୁଦ ।
ଛୁଟେଣ କ ନେକ କାହାକୁ କର ପସନ୍ଦ ଗୋ । ୩ ।

ଆକାଶ ମାଟେଁ ରବି ଲକ୍ଷ ଅନ୍ତରେ ।
ପଦ୍ମ ମା ଉଲ୍ଲାସିତା ଜଳ ଭିତରେ ଗୋ । ୪ ।

ଯାର ମନ ଯା ଠାରେ ମଜ୍ଜି ରହିଛୁ ।
ତା ବିନା ତାକୁ ଆନ ନ ରୁଚେ କିଛି ଗୋ । ୫ ।

କହୁଛି ସତ୍ୟକରି ପକାଇ ଆଣ ।
ସଦା ତୁମ୍ଭରେ ରଖିଥିବ ଧିଆନ ଗୋ । ୬ ।

କହଇ ବେଣୁଧର ଆହେ କେଶବ ।
ତୁମ୍ଭର ପଛେ ପଛେ ଯିବ ଏ ଜୀବ ହେ । ୭ ।

—○—

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ ଉକ୍ତି

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ରସବତୀ ସୁଲକ୍ଷଣୀ !
ନବୀନ କିଶୋରୀ ବୃନ୍ଦାବନବିହାରିଣୀ । ଘୋଷା ।
ହା ରାଧିକେ ପ୍ରାଣାଧିକେ ନିରୂପମ ଉତ୍ତମା !
ପ୍ରେମମୟୀ ରସେଶ୍ୱରୀ କୃଷ୍ଣଙ୍କୁ ଜେମା । ୧ ।
କ୍ଷଣେ କ୍ଷଣେ କ୍ଷଣେ ତୋର ସ୍ମରୁ ଚନ୍ଦ୍ରାନନ ।
ବନୋଦ୍ଭବୀ ଶ୍ରୀମତୀ ଗୋ ମୋ ହୃଦଚନ୍ଦନ । ୨ ।
ତୁ ମୋର ସର୍ବସ୍ୱ ପ୍ରିୟା ଆରେ ସୁକୁମାରୀ ।
କି ଦଣ୍ଡ ଦେଇ ଅଛିଲି ଭୁଲିବ ନ ପାରି । ୩ ।
ସ୍ୱରଧ୍ୱନି କଣ୍ଠ କଳବାର ଜିଣୁ ଧନ ।
ମୋ ବିହୁନେ ଯୁଗେ ମଣୁଥିବୁ ଏକକ୍ଷଣ । ୪ ।
ସତେ କି କରିବେ ଅନୁକମ୍ପା ଭଗବତୀ । ୫ ।
ଜଣାଇବି ହୃଦ ଦୁଃଖ ଆରେ ଗଜଗତି । ୬ ।
ଚିନ୍ତାମଣି ଚିନ୍ତା ବେଳୁଁ କେଳ ଗୁରୁତର । ୭ ।
ସେ ପଦେ ଶରଣ ଜଗଚନ୍ଦ୍ର ବେଣୁଧର । ୮ ।
( ଆରେ ସରଳ ହୃଦୟା—ବୃନ୍ଦେ )

—o—

## ଗୋପୀମାନଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଉକ୍ତି

( ରାଗ—ମଙ୍ଗଳଗୌଡ଼ା । ତାଳ—ଝୁଲା )

ନ କର ଏ ଭାବନା ଗୋପିମାନେ ଗୋ,
କହୁଛି ଶୁଣ । ଘୋଷା ।
ଗଗନେ ଚନ୍ଦ୍ର କେଉଁ ଜଳରେ କଇଁ ।
ଗାଢ଼ ପୀରତି ଛାଡ଼ି ପାରନ୍ତି କାହିଁ ? ଗୋ । ୧ ।
ଲକ୍ଷେ ଯୋଜନେ ରବି ଥିଲେ ହେଁ ରହି ।
ସରସୀ ପଦ୍ମ ତ ତାଙ୍କର ସ୍ନେହୀ ଗୋ । ୨ ।

କାନନେ ମୟୂର ଗୋ ଆକାଶେ ଘନ ।
ଏହାଙ୍କ ପ୍ରୀତି ଘଟିବା ନ ଜାଣ ଗୋ ? । ୩ ।
ଯେତେଦୂରେ ଯେ ଥିଲେ କି ହେବ ?
ଯା ଯାର ପ୍ରୀତି ସେତ ଦୂର ନୋହିବ ଗୋ । ୪ ।
କ୍ଷୀର ନୀରୁ ଅଧିକ ସୁନ୍ଦର ମୋର ।
ଅକଇତବ-ପ୍ରେମ-ଶାକର ଗୋ । ୫ ।
କହଇ ବେଣୁଧର ହେ ଚନ୍ଦ୍ରାମଣି !
କେଦ୍ଧେ ଧରିବେ ଧୈର୍ଯ୍ୟ ବ୍ରଜରମଣୀ ହେ । ୬ ।
( ଶ୍ୟାମ-ଶିଖଣ୍ଡଚୂଳ—ବୃତ୍ତେ )

—**—

## ଶ୍ରୀକୃଷ୍ଣଙ୍କ ଉକ୍ତି

( ରାଗ—ପୂରବୀ । ତାଳ—ଆଠତାଳୀ )

ସଖିମାନେ ! ଆଗୋ ସଖିମାନେ !

ଫେରି ଆସିବି ମୁଁ କେତେଷ୍ଟ ଦିନେ ଗୋ । ଘୋଷା ।
ନନ୍ଦର ମନେ ଭାବିଲେଣି ବଦନ ଚାହିଁ ମେଲାଣି,
ମାଗୁଅଛୁ ଯୋଡ଼ ପାଣି ସକଳ ବ୍ରଜତରୁଣି—
ସୁଖେ ଥାଅ ଆପଣା ସଦନେ ଗୋ । ୧ ।
ଧନୁଯାତ୍ରା ଦେଖିକରି ଶୀଘ୍ରେ ମୁଁ ଆସିବି ଫେରି,
କହୁଅଛୁ କର ଧରି କଂସ ମାମୁଁ ଅଛୁ ବରି,
ଅକ୍ରୁରଙ୍କୁ ପେଷି ହୃଷ୍ଟମନେ ଗୋ । ୨ ।
ଅନେକ ଦେଶ୍ନ ନୃପତି ନିମନ୍ତ୍ରଣେ ଆସିଛନ୍ତି,
ଦେଖି ନୂତନ ଭୂପତି କରିବ ଗୋ ପ୍ରିୟବନ୍ତି,
କାହିଁପାଇଁ ଚନ୍ଦ୍ରାବଳି ମନେ ଗୋ । ୩ ।
ନନ୍ଦ ନନ୍ଦନଙ୍କ ବାଣୀ ଶୁଣି ବ୍ରଜ କାମିନୀ,
ହୃଦି ଗୁଣେ ସନ୍ତାପ ଦେଇ ନୟନରୁ ଝରନ୍ତି ପାଣି,
ବେଣୁଧର କବିଚନ୍ଦ୍ର ଭଣେ ଗୋ । ୪ ।
( ପ୍ରିୟସଖି ! କହ କେଉଁପରି ପ୍ରାଣ ଧରିବଇଁ—ବୃତ୍ତେ )

—o—

( ରାଗ—ମଙ୍ଗଳଗୁଜ୍ଜରୀ । ତାଳ—ଆଠତାଳୀ, ଖେମଟା )

ଆଜ୍ଞ ନ କର ଭ୍ରଳେଣି ଗୋ, ରମଣୀମଣି !
ତୁମ୍ଭେ ମୋ ପ୍ରେମ-ସରଣୀ ଗୋ । ଘୋଷା ।
ବୃନ୍ଦାବନକୁ ମୁଁ ଦେଇ ଯାଉଅଛି କଣ୍ଠ ।
ନିଶ୍ଚୟ ଆସିବ ଫେରି ତୁମ୍ଭର ନିକଟ ଗୋ । ୧ ।
ଯେତେଦୂରେ ଥିଲେ ହେଲେ ନାମ ଗୋପୀନାଥ ।
ବଲ୍ଲଭବଧୂଦାସୀ ବୋଲି ସର୍ବେ ବୋଲାଇବଟ ଗୋ । ୨ ।
କଂସ ମାମୁଁଙ୍କର ଶୁଭ-ନିମନ୍ତ୍ରଣ ପାଳି ।
ସଦାପ୍ତ ଘେନଣ ଲେଉଟିବ ବ୍ରଜବାଳୀ ଗୋ । ୩ ।
କାନନେ ମୟୂର ଗଗନରେ ଜଳଧର ।
ସେହ୍ନ ଚରକାର ମଣିଥିବ ନାଗବର ଗୋ । ୪ ।
ବୋଲେ ଧ୍ୟାନ ଜ୍ଞାନ କବିଚନ୍ଦ୍ର ବେଣୁଧର ।
ସତ ମିଛ ଜଣାଯିବ ବୃନ୍ଦାବନ ପର ହେ । ୫ ।
( ମୁରଲୀପାଣି, ଗୁଡ଼ ନଯା ମାଳମଣି ହେ—ବୁଲେ )



( ରାଗ—ବଙ୍ଗସ । ତାଳ—ଆଠତାଳୀ )

ଗୋପୀ ନେତ୍ର ପିତୁଳି ମେ ହନ ବନମାଳୀ,
ହରି ନ ନିଅ କଂସ ଡଗର ହେ ।
ପାପ ପୁଣ୍ୟ ବିଷ୍ଣୁର ନାହିଁ କିବା ତୁମ୍ଭର,
କହ କିମ୍ପା ତା ଆମ୍ଭ ଆଗର ହେ । ଘୋଷା ।
କରୁଛ ଏଡ଼େ କର୍ମ ସମ୍ଭବ କେଉଁ ଧର୍ମ ?
କରିଛ ପର ଏଡ଼େ ଜଗର ହେ ।
ଯାଅ ଯାଅ କାହ୍ନୁଡ଼ ନେଇ ଲକ୍ଷ କନ୍ଧଡ଼,
ବ୍ରଜରେ ଥାନ୍ତୁ ବ୍ରଜ-ନାଗର ହେ । ୧ ।
ଏ ଆମ୍ଭ ଆଭରଣ ହାର ହୃଦ କଙ୍କଣ,
ଦେଉଛୁଁ ଘେନିଯାଅ ସଙ୍ଗର ହେ ।
କୃଷ୍ଣ ମଥୁରା ଯିବା ଘଷା ତୁଣ୍ଡେ ଧରିବା,
ନବୋଲି ଫେରୁ ମଧୁନାଗର ହେ । ୨ ।

କହୁଛୁଁ କର ଯୋଡ଼ି ଚରଣ ତଳେ ପଡ଼ି,
କୃଷ୍ଣଟି ଆମ୍ଭ ଗୁଣ ସାଗର ହେ ।
ହର ଗଉରୀ ବ୍ରତେ ମନାଇଁ ଅଛରତେ,
ପାଇଛୁଁ ବର ଏହି ଯୁଗର ହେ । ୩ ।
ଯଦ୍ୟପି ନେବ ଧରି ବୃନ୍ଦାବନଚହାସି,
ହେଇଯାଅ ବରଜ-ନାଗର ହେ ।
କହଇ ବେଣୁଧର ଝୁରି ନୁହ ଅକ୍ରୁର,
ନିପଟ ହୋଇ ଅନୁରାଗର ହେ । ୪ ।
( ନାଶିଁକ ମନେ ଚୋର ଶ୍ୟାମନାଗର ଗୀତ—ବୃତ୍ତେ )

—❀—

( ରାଗ—ମାରୁଆ । ତାଳ—ଆଠତାଳି )

ରକ୍ଷ ରକ୍ଷ ରଘୁବର ।
କଂସ ଉଗର ହେ ଶୁଣ ବିବେକୀ ବର । ଘୋଷା ।
କଳା କହ୍ନୁ ବନମାଳୀ ଆମ୍ଭର ନେତ୍ର ଅଙ୍ଗାଳି,
ଗଳା ମରକତ ମାଳ ମୁରଲୀଧର । ୧ ।
କେଉଁ ଦୋଷ ଦେଖିକରି ହରୁଛ ଗୋପରଣୀସି,
କହନ ଜଡ ବସ୍ତୁର ଏଥି ଉତ୍ତର । ୨ ।
ନର୍ମାଖି ଗୋଟ ତରୁଣୀ ତାହାର ହୋଇବୁଁ ପୁଣି,
ଯେବେ ବ୍ରଜ ବଧୂ ଯିବେ ମଧୁନଗର । ୩ ।
କରୁଛୁଁ ମାତ୍ର ଦଇନ ଆହେ ଭକ୍ତ ଚୂଡ଼ାମଣି,
ନ ଜାଣକି ଆମ୍ଭ ଦୁଃଖର ସମାଚାର । ୪ ।
ଅସ୍ତ ଆକୁଳ ପରାଣେ ଦୀନ ବେଣୁଧର ଭଣେ,
ବଞ୍ଚି କି ପାରିବୁଁ କ୍ଷଣେ ମୂର୍ଚ୍ଛି ଶ୍ରୀଧର । ୫ ।
( ଶ୍ୟାମନାଗର ହେ ବାମନପ୍ରଭା ଭୂଲ – ବୃତ୍ତେ )

—o—

( ରାଗ—ତୋଡ଼ି ପରଜ । ତାଳ—ଆଠତାଳୀ )

ଏ କାହା କୁସୁମ ମାଳା ଗୋ ସଜନି ! ଏ କାହା କୁସୁମ ମାଳା ।
ଅସ୍ତବ୍ୟସ୍ତ ହୋଇ, ପଡ଼ିଛି ଏଠାଇଁ, ମଣ୍ଡିଥିଲା କାହା ଗଳା । ଘୋଷା ।
ନୀଳୋତ୍ପଳ ଗନ୍ଧ, କସ୍ତୁରୀ ଆମୋଦ, ଚହଟୁଛି, ଘନଘନ ।
ଜାଣିପାରୁଛି ଏ ଫୁଲହାର ଖଣ୍ଡି ପିନ୍ଧିଥିଲେ ଶ୍ୟାମଘନ । ୧ ।
ଅଭାଗିନୀ ରାଧା ଗୁନ୍ଥା ହାର ଏ କି ଚିହ୍ନ ଚିହ୍ନ ଆଗୋ ସଖି !
ମଥୁରା ଗମନ ପଥେ ଗୋ ଛିଣ୍ଡାଇ ଦେଲେ କି ମୋ ବନ୍ଧୁ ନାହିଁକି ? । ୨ ।
ବିଚ୍ଛେଦ କଷଣ ଫଳ କି ଏ ମୋର ଆଗୋ ବଶାଖି ଲଳିତେ !
ଦୁର୍ଦ୍ଦଶା ମୋହର ହେବ ଏହାପର ବୁଝି ପାରିଲିଣି ଚିତ୍ତେ । ୩ ।
ପାଇବ କି ଆଉ ପ୍ରାଣ ସଙ୍ଗାତଙ୍କି ପରତେ ନାହିଁଟି ସତ୍ୱ !
ଧନୁଯାତ୍ରା ଶେଷେ ଆସିବେ ମାଧବ ବେଣୁଧର ବୋଧ କହ୍ୱ । ୪ ।
( କି ଦେଖିଲି ଆଜ ନେତ୍ର—ବୃତ୍ତ )

—o—

( ରାଗ—ବଙ୍ଗଳାଶ୍ରୀ । ତାଳ —ଆଠତାଳୀ )

କି ନ କଲେ ବେଣୁ ରେ ସଜନି ! ହୃଦୟୁ ହେଉଛି ହାଣି ।
ଗଲେ କଣ୍ଠ ଦେଇ          ମଧୁପୁରେ ରହି
ପାଶୋରିଲେ ଚିନ୍ତାମଣି ରେ । ଘୋଷା ।
ମନ କଥା କେ ଜାଣିବ ରେ ସଜନି ! କେବା ମନକୁ ଆଣିବ ?
ଯେ ଅବା ଜାଣନ୍ତା          ମନକୁ ଅଣନ୍ତା
ସେ ତ ଏଡ଼େ ଢେଲା ଭାବରେ । ୧ ।
ଗୋପୀନାଥ ନାମ ଗୋଟି ରେ ସଜନି ! କେବା କମା ରଖିବଟି ?
କବୁଜା ବାନ୍ଧବ          ବୋଲି ବୋଲାଇବ
ସରୁକଣ୍ଠୀ ପୀତଧଟି ରେ । ୨ ।
କାଳିଆ ବନମାଳିଆ ରେ ସଜନି ! ବ୍ରଜରାଜ ଦୁଲାଳିଆ ।
ଯମୁନା କୂଳିଆ          କଦମ୍ବ ମୂଳିଆ
ନାହିଁ ସେ ବହ୍ରା ପାଳିଆ ରେ । ୩ ।
ସେ ଯେଉଁ ମଥୁରା ନାରୀ ରେ ସଜନି ! ଅଟନ୍ତି ନବନାଗରୀ ।
କି ମନ୍ତ୍ର ଜାଣନ୍ତି          ମୋହିଲେ ଶ୍ରୀପତି
ବଶ ହୋଇଲେ ତାଙ୍କର ରେ । ୪ ।

ଏ କଥା ନ ଭାବ ମନେ ଗୋ କିଶୋରି ! ନନ୍ଦପ୍ରିୟା ଗୋପୀମାନେ ।
ଯୁଗେ ଯୁଗେ ଥିବ                    ଗୋପୀ କୃଷ୍ଣ ଭାବ
ବେଣୁଧର ଗୀତେ ଭଣେ ଏଭେ । ୫ ।
( ଦୂର କଲ ରାଧାଭାବ ହେ ମାଧବ—ବୃନ୍ଦେ )

—o—

( ରାଗ—ଶଙ୍କରା ଭରଣ । ତାଳ—ଆଠତାଳୀ )
ଚିର ପ୍ରୀତିକି କରନ୍ତି,
ଜଳାଞ୍ଜଳି ମଥୁରାକୁ ଯାଉଛନ୍ତି ଆଜି । ଘୋଷା ।
ମନ ବାନ୍ଧି ଏତେଦିନ ଥିଲୁକି ସରଜି ?
ସବୁ ଗେଲ ନିରବ ଗୋ ପିକ ପିନା ଭାଜି । ୧ ।
ଅନୁକ୍ଷଣେ ଯାହା ପ୍ରେମ ରସେ ଥିଲୁ ମଜ୍ଜି ।
ସେହି ପୁଣି ପାଶୋରିଲେ କି ପ୍ରାଞ୍ଚ ମରଜି । ୨ ।
ଦୁଃସହ ମାର ମାର୍ଗଣ ମର୍ମ ସ୍ଥଳେ ବାଜି ।
କଲବଲ ହେବା ଦଶା ଥିଲାଇଁ ଅରଜି । ୩ ।
ଭଣେ ବେଣୁଧର କଂସ ଦୂତ ରଥ ସାଜି ।
ନନ୍ଦଜିଉ ଦ୍ୱାରେ ଜସ କହଇ ଗରଜି । ୪ ।
( ଆରେ ସରସ ହୃଦୟା—ବୃନ୍ଦେ )

—❀—

( ରାଗ—ବରାଡ଼ି,ଆଷାଢ଼ ଶୁକ୍ଳ । ତାଳ—ଝୁଲା )
ମାନିଲୁ ତ ନାହିଁ, ଏ ଦଶା ନ ଭୋଗିବୁ କି କମାଇଁ । ପଦ ।
ରଜନନ୍ଦନୀ ଗୋ କିଶୋରୀମଣି ! ଆଜ ଏ କଥା କହୁଛୁ କି ଘେନ ?
ମୁଁ ତ ଆଗରୁ କହିଥିଲି ଭଲେ । ପ୍ରୀତି କରନା ବୋଲି ତବେ ଭୁଲେ । ୧ ।
କାଳିଆ ନାଗର ବଚନ ବିଷ । ଧାରିଲୁଣି ତୋଟେ ନଣି ଦିବସ ।
ଏଥିକି ଆଉ ଉପାୟ ତ ନାହିଁ । ଜାଣୁ ଜାଣୁ ସହିଗଲୁ ସୁମୁହିଁ । ୨ ।
ପର ପ୍ରୀତି ପରମାଦ ଯୁକତେ । ନିରତେ ଉପାଏ ସନ୍ତାପ ସ୍ରୋତେ ।
ହସାଏ ଉଗାର ଲଗାଏ ନାଟ । ବସାଏ ନିନ୍ଦା ଅପବାଦ ହାଟ । ୩ ।

ଚେତ ଏବେ ସେତେ ବେଳର କଥ । ଘରବୁଢ଼ୀର ସୁଆଗ ବ୍ୟବସ୍ଥା ।
କୁଟିଳ ମୁରଲୀ ବାଜଣା ତାନ । କରାଇଲା କେତେ ଅବସ୍ଥା ଧନ ! । ୪ ।
ବଙ୍କାର ବଙ୍କିମ ସ୍ୱଭାବ ଠିକ । ଆଛାକର ବୁଝି ପାରିଲୁ ଠିକ ।
ଶ୍ରୀରଦନ କଣ୍ଠ କେଣିକ ଗଲା ? ବୋଲେ ବେଣୁଧର ବରଷେ ହେଲା । ୫ ।

( ଶିଖଣ୍ଡ ମୁକୁଟ, ଶିଖିଛ ଭଲ—ବୃତ୍ତେ )

—✽—

( ରାଗିଣୀ—ଝିଂଝୋଟ । ତାଳ—ଏକତାଳୀ )

ପ୍ରାଣସଜନ ! ସରିଲାଟି ସବୁ ଆଶା ଗୋ । ଘୋଷା ।
ମୋହନ ମୁରଲୀପାଣି ରସରାଜ ଚିନ୍ତାମଣି
ଦେଇ ନ ଗଲେ କି ଦଶା ଗୋ । ୧ ।
ଧନ୍ୟ ସେ ମଥୁରା ନାରୀ ମୋହିଲେ ସେ ଗିରିଧାରୀ
ତୁଟାଇ ଆମ୍ଭ ଭରସା ଗୋ । ୨ ।
କି ବୁଦ୍ଧି କରିବା ସହି ! ନାହାନ୍ତି ଆମ୍ଭ ମାଧୋଇ
ସହିଲାଇଁ ଲୋକହସା ଗୋ । ୩ ।
କବି ନଶାମଣି ବୋଲେ ଲେଖାଥିଲା ଏହା ଭାଲେ
ହୃଦେ ଦୁଃଖ କଲା ବସା ଗୋ । ୪ ।

( ଭଲ ଭୁଲାଇଲୁ ତା ପ୍ରୀତିରେ—ବୃତ୍ତେ )

—୦—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ସତେ ବାଜିବ ମୁରଲୀ ( ଗୋ )
ମଧୁର୍-ପଞ୍ଚମ-ସ୍ୱରେ ରାଧା ରାଧା ବୋଲି । ଘୋଷା ।
ଦେଲାବେଳେ ଅଙ୍ଗୁଳିକ ଚାଳି ।
ଅଜନ୍ମ'ଶୀଳା'-ପାଷାଣ ଯିବ କି ତରଳି ? । ୧ ।
ଧେନୁ ବତ୍ସା ସହିତେ ଯେ ବନ୍ୟ ପଶୁଗଣ ।
ଥକା ହୋଇ ରହିଯିବେ ନ ଚରିବେ ତୃଣ । ୨ ।
କୋକିଳା ମଉନେ ଲାଜେ ଲୁଚିବେ ଡାଳରେ ।
ଯୋଗୀ ଯୋଗ ଭାଙ୍ଗି ଯିବ ନାଦ ପ୍ରବଳରେ । ୩ ।

—✽—

ପୁଣ୍ୟ ସଲିଳା ଯମୁନା ବନ୍ଧବ ଜଜାଣି ।
ମୃତ ତରୁ ପଲ୍ଲବିବ ସେହି ତାନ ଶୁଣି । ୪ ।
ମଥୁରାରୁ ଗୋପବୃନ୍ଦ ଆସିବେ ଲେଉଟି ।
ମନ ପ୍ରାଣ ସମର୍ପିବା ଛନ୍ଦାପଦେ ଲୋଟି । ୫ ।
ବେଣୁଧର କବିଚନ୍ଦ୍ର ବୋଲେ ଗୋ ମିତଣି ।
କେବେ ଏ ସୁଭାଗ୍ୟ ହେବ କେମନ୍ତେ କି ଜାଣି । ୬ ।
( ମଣି ତୁମାନେ ଗୋବିନ୍ଦ—ବୃତ୍ତେ )

—o—

( ରାଗ—ଟଙ୍କାଭରଣ । ତାଳ—ଆଠତାଳୀ )

ସଖି ! କି ବୁଦ୍ଧି କରିବା ?
କୃଷ୍ଣ ବିନେ କେଉଁପରି ଜୀବନ ଧରିବା ? । ଘୋଷା ।
କାଳିଆ ଚନ୍ଦ୍ରବଦନା ଶୋଭା ଅଦର୍ଶନେ ।
ପାପ ପ୍ରାଣ ଏ ଘଟରେ ଥିବ ବା କେସନେ ? । ୧ ।
ଧିକ ଧିକ ମନ୍ଦବିଧି କେତେ କୃତ୍ୟ କଲା ।
ନେତ୍ର ପିତୁଳିଙ୍କ ସାହା ଦୂର କରାଇଲା । ୨ ।
ଗଲାଦିନୁ ମଥୁରାକୁ ଗୋକୁଳ ମଣ୍ଡନ ।
ଦଣ୍ଡ ଦଣ୍ଡକେ ପୀଡ଼ଇ ଦର୍ପିଷ୍ଟ ମଦନ । ୩ ।
*ନୃପରାଜସିଂହ ବୋଲେ ଶୁଣ ଗୋ ସଙ୍ଗାତ ।
ଏହା ଯା ହୋଇଲା ଶିରେ ନୋହୁ ବଜ୍ରାଘାତ । ୪ ।
( ଆରେ ପ୍ରାଣବନ୍ଧୁ ମୋର—ବୃତ୍ତେ )

—*—

( ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )

ମୋ ସଙ୍ଗରେ ଝୁରି ଝୁରି ଗଲୁ ସରି ।
ସେ ନନ୍ଦସୁତ ହରି ନିକୁଞ୍ଜ-ବିହାରୀ,
କରାଇଲେ ଏ ତ ସନ୍ଧି । ଘୋଷା ।

*—( ନୃପରାଜସିଂହ ) ଏ ଜଣେ ବେଣୁଧରଙ୍କର ପ୍ରିୟସଙ୍ଗୀ ଥିବାରୁ ତାଙ୍କ ନାମରେ ଏ ଗୀତଟି କବି ଭଣିଛନ୍ତି ।

ମଧୁପୁର ବଧୂ ନ ମନ୍ତ୍ର କର,
ମୋହିଲେ ମୁରଲୀଧାରୀ ।
କରମ ଆଦର କେତେ ବା ରହିବୁ,
ମନ କଥା ମନେ ମାରି । ୧ ।

ଜୀବନନାଥଙ୍କ ହୃଦୟୁ ହେଳିନେ,
କି ଗତି ଅଛି ତୋହର ?
ବିରହ ବେଦନା ରଖି ଦେବନି କି,
ମରମ ଭିତରେ ଘାରି । ୨ ।

ଦାରୁଣ ଦଇବ କି କଲାଟି ଅଣି,
ଅହା ନୃପତି କୁମାରୀ ।
ବନର ମାଳଞ୍ଚ ସୁମନ ପରସ୍ତେ,
ଫୁଟି ଝଡ଼ିଲା ସୁନ୍ଦରୀ । ୩ ।

ନୟନ ଲୋତକେ ବକ୍ଷ ଭିଜାଇଲ,
ଝରଟେ ଗୁଣ ସୁମରି ।
ଦରଦ୍ଧ ହଙ୍ଗାନ ଧେମ ରହିମାନ,
ଶ୍ରୀ ବୃନ୍ଦାବନ ଈଶ୍ୱରୀ । ୪ ।

ଘଟ ଭୂତମତି ଅହନ୍ତ ଶ୍ରୀମତି,
ଲକ୍ଷିଲେ ଚାଟେ ପାଟୋଈ । •
ସେ ବଧୂ ବଳଭ ତଣେ ଦୁଲିଲ,
ଦୋଳକୁ ନଇଲେ ଟେଫର । ୫ ।

ଦେବ ଭ ଦୃତନ ଅପିରେ ଲୋମାଦନ,
ଷଳ ଶୁଚିଲ ଗୋପପୁର ।
ବେଣୁଧର କଵ— ଚନ୍ଦ୍ର ଲେଖ ଗାରିର,
କଷି କଷର ଏପର । ୬ ।

( ରେ ସଜାତ, ମହାକୁ ବାଧିଲ ବ୍ୟଥା—କୁଣ୍ଡ )

—o—

( ରାଗ—ଗଉଡ଼ମାଳଶ୍ରୀ । ତାଳ—ଝୁଲା )

ଶତ୍ରୁ-ବନ୍ଧୁ ସ୍ୱପ୍ନର ଭ୍ରମ ।
( ଯେ ବନ୍ଧୁ ମଥୁରା ଗଲେ ବାହାରି, ସଜନି ରେ !
ସେହି ବନ୍ଧୁ ହେଲେ ଏବେ ପର । ୧ ।
ଜଳାଶ୍ରୁ ମୁକ୍ତିକି ।
ଝୁରି ଝୁରି ପୂର୍ଣ୍ଣ ନେତ୍ରଙ୍କ ଆଖି ସଜନି ରେ !
ମୋହପରି କେଏ ଅଛି ଦୁଃଖୀ । ୨ ।
ଏ ଦେହ ଜୀବନ ମନ ।
ବଳଥିଲ ଯାଙ୍କୁ ସେ କଲେ ଭିନ୍ନ, ସଜନି ରେ !
କହ କେମନ୍ତେ ସାରିବ ଦିନ ? । ୩ ।
ନୀଳକଣ୍ଠ ମର୍କତ ମାଳ ।
ଯଶୋଦା ନନ୍ଦନ ଗୋପ-ଝିଅଙ୍କ, ରେ !
ଦେଲେ ସବୁ ସୁଖ ଆଶା ଟାଳ । ୪ ।
କୃଷ୍ଣ କଳଙ୍କିନୀ ବୋଲି ।
ନିନ୍ଦା ଅପବାଦ କେତେ ସହିଲି, ସଜନି ରେ !
ମୁଁ ତ ଏବେ ଜାଣିଁରେ ନୋହିଲି । ୫ ।
ସୁଧା ବାଧା ବାଣୀ ଶୁଣି ।
ବୋଧେ ବେଣୁଧର ଏ ରସେ ଭଣି, କିଶୋରି ରେ !
ଚିନ୍ତା ହରିବେ ଶ୍ରୀ ଚିନ୍ତାମଣି । ୬ ।
( ଚନ୍ଦ୍ରମା ବଦନୀ ବାଇ—ବୃତ୍ତେ )

—※—

( ରାଗ—ଖମାଚବାଣୀ । ତାଳ—ଆଡ଼ତାଳୀ )

ଶ୍ୟାମ ସୁନ୍ଦର ଗୋ ! କି ନ କଲେ ସତେ ?
ରହିଲେ ସେ ମଧୁପୁରେ ମୁହଁଛି କେମନ୍ତେ ? । ଘୋଷା ।
କେତେ ଦିନ ପାଇଁ ସହି ! କି ସ୍ନେହ ସୁଖ ବଢ଼ାଇ,
ଶେଷେ ହେଲେ ଦୟା ମାୟା ନ ବହିଲେ ଚିତ୍ତେ । ୧ ।
ନିତି ପ୍ରତି ନାମ ଧରି ବଜାଉ ଥାନ୍ତି ବଂଶୀ,
ଜାଣଣା ହି ଭିଣଟୋଣି ଗୋପିଣୀଙ୍କୁ ସାଥେ । ୨ ।

ଖେଳ ଖେଳ ନାନା ରଙ୍ଗେ ଆସନ୍ତି ଗୋବତ୍ସ ସଙ୍ଗେ
କି ଆନନ୍ଦ ଚିତ୍ତ ଖେଳଯାଏ ଦ୍ରୁତଗତେ । ୩ ।
କୃଷ୍ଣ ବିଚ୍ଛେଦ କଷଣ ସହେ ଯା କଠିନ ପ୍ରାଣ
କ୍ଷଣେ ମାର ଶୂନ୍ୟ ଦିଶେ ବିନା ଚନ୍ଦ୍ର ନେତ୍ରେ । ୪ ।
( ମନେ ପଡ଼ୁଛି ମ ସେହି ଚନ୍ଦ୍ରମୁଖ—ବୃନ୍ଦେ )

—୦—

( ରାଗ—ଝିଂଝୋଟ । ତାଳ—ଆଠତାଳୀ )

ଏହି ତ ସେହି ଯମୁନାକୂଳ ।
କାହିଁଗଲେ ଆହା ପୀତଦୁକୂଳ ଗୋ । ଘୋଷା ।
ଏ ତ ସେହି କେଳି-କଦମ୍ବ ମୂଳ କେଣେ ଲୁଚିଛନ୍ତି ଶିଖଣ୍ଡଚୂଳ ? । ୧ ।
ଏ ତ ସେହି କେଶୀ ଘାଟ ସଜନ !
କହ କାହିଁଗଲେ ସେ ଚିନ୍ତାମଣି ? । ୨ ।
ଏହି ଯେ ତମାଳ କେଶରକୁଞ୍ଜ
ଲୁଚିଛନ୍ତି କାହିଁ ରସିକରାଜ ? । ୩ ।
ଏ ତ ସେହି ବଂଶୀବଟ ସଙ୍ଗାତ !
ନାହାନ୍ତି ଏଠାରେ ମୁରଲୀହାତ । ୪ ।
କି ବୁଦ୍ଧି କରିବା କେଣିକି ଯିବା ?
ବୋଲେ ବେଣୁଧର ଝୁରି ମରିବା । ୫ ।
( ମୁଁ ହେବି କି ଶ୍ୟାମବନ୍ଧୁ ଭଳି କି—ବୃନ୍ଦେ )

—✽—

( ରାଗ—ଦକ୍ଷିଣିସାରଙ୍ଗ । ତାଳ—ପହପଟ, ଆଢ

ବିଷ ପରି ହେଲଣି ସଦନ ।
କିସ କରିବୁ ରେ ସଖି ! ଶ୍ୟାମ କଲେ ଭିନ୍ନ । ପଦ ।
ବେଳକୁ ବେଳ ବିରହ— ଅନଳ ଦହେ ମୋ ଦେହ,
ଏଥିକି ଉପାୟ କହ ହେଲିଟି ଉଛିନ୍ନ । ୧ ।
କାନ୍ତ ବିନା କିବା ଗତି ଅଛି ଆଗୋ ପ୍ରିୟବୃନ୍ଦା
କି ଦୁଃଖ ଦେଲେ ଶ୍ରୀପତି ମୁରଲୀବଦନ । ୨ ।

ଧନ କୁସୁମ କମାନ ମାର ଭଟେ ପଞ୍ଚବାଣ,
ନିସ୍ତରୁଁ କେମନେ ପ୍ରାଣ ଯାହା ନାହିଁ ଆନ । ୩ ।
କଳୋଗଙ୍କ ଅର୍ଦ୍ଧବାଣୀ ଦୁଃଖୀ ବୈଷ୍ଣବର ଶୁଣି,
ବୋଲେ ଆଗୋ ଠାକୁରାଣୀ ସ୍ଥିର କର ମନ । ୪ ।
( ବ୍ରଜେ ଆଜନମ ସୁକୁମାରୀ—ବୃନ୍ଦେ )

—o—

( ରାଗିଣୀ – ଖମ୍ବାଜ । ତାଳ ଏକତାଳୀ )
କହିବା କାହାରେ ? ସଖି କହିବା କାହାରେ ?
କି ନ କଲେ ଶ୍ୟାମଚନ୍ଦ୍ର ରହି ମଧୁପୁରେ ମାଁ । ଘୋଷା ।
ବୃନ୍ଦାବନେ ଆସିବାକୁ କହି ଗୋ ଆମ୍ଭମାନଙ୍କୁ,
ପାଶୋରି ଦେଲେ ମନରୁ ଏବେ କି ଛଳରେ ମାଁ । ୧ ।
ସକଳ ଆଶା ଭରସା ନ ରଖିଲେ ଏକମଣା,
ଦାରୁଣ ବିରହ ଦଶା ଥିଲା କରମରେ ମାଁ । ୨ ।
ବଳ ଗଲାଣି ଗୋ କଣ୍ଠ ସେ ଶଠ ଏଡ଼ିକ ଖଣ୍ଡ,
ବାନ୍ଧି ଦେଲେ ସେ ମଥୁରାନାରୀ ପ୍ରେମ ଡୋରେ ମାଁ । ୩ ।
କହେ କବି ନିଶାପତି ସନ୍ତାପ ତେଜ ଶ୍ରୀମତୀ,
ଯିବେ ପର ବୃନ୍ଦାଦୂତୀ ସମ୍ବାଦ ଦେବାରେ ମାଁ । ୪ ।
( ମୁଁ ହେଲି ଅସାର, ହେବେ ସେ ସୁସାର— ବୃନ୍ଦେ )

—o—

( ରାଗ—କଳ୍ୟାଣଗୌଡ଼ା । ତାଳ—ଝୁଲା )
ଏହା ଥିଲା କପାଳେ ?
କି ସୁଖ ସ୍ନେହ ଶ୍ୟାମ ପାଶୋରି ଦେଲେ ଗୋ । ଘୋଷା ।
କି ପୁଣ୍ୟ କରିଥିଲେ ମଥୁରା ନାରୀ ।
ଗୋପର ଗୋପୀନାଥ ହେଲେ ତାଙ୍କର ଗୋ । ୧ ।
କି ଦୁରୁଯୋଗ ଆସି ଘୋଟିଲା ବ୍ରଜେ ।
ଝୁରିବା ସାର ହେଲା ସବାକୁଁ ସଞ୍ଜେ ଗୋ । ୨ ।
ମଦନ ମନମଥିଆଁ ମୋହନ ।
ଚନ୍ଦ୍ରହାନେ କରାଇଲେ ଦହନ ଗୋ । ୩ ।

କୃଷ୍ଣ ବିଚ୍ଛେଦ କଷ୍ଟ ସହ୍ୟ କି ହେବ ?
ହା କୃଷ୍ଣ କୃଷ୍ଣ ବୋଲି ଏ ଜୀବ ଯିବ ଗୋ । ୮ ।
ହେଲେଣି ବୃଷ୍ଟି ଯମ ଫୁଲ ଶାୟକ ।
କହଇ ବେଣୁଧର ପଞ୍ଚନାୟକ ଗୋ । ୯ ।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେ )

—୦—

( ରାଗ—କଳହଂସ କେଦାର । ତାଳ—ଝୁଳ )
ଆଗୋ ସଜନୀ । କି ନ କଲା ବିଧାତା ।
ଯିବକ ମନୁ କଲା କହ୍ନାଇ ଚିନ୍ତା ଗୋ ॥
ଦାରୁଣ କଂସ ମନେ ପାଞ୍ଚି ଅହନ୍ତା ।
ଧରାଇ ନେଲା ଆମ୍ଭ ଜଗତ କର୍ତ୍ତା ଗୋ । ୧ ।
କରମକୁ ଗୋ ମଧୁ ହୋଇଲା ପିତା ।
ମୂର୍ଚ୍ଛିଲେ ଯା ଅଶିତ-ଶିଖ ସହିତା ଗୋ ॥
ଶ୍ରୀ ବୃନ୍ଦାବନ ଚନ୍ଦ୍ର ପିଣ୍ଡକରତା ।
କାଟିଲେ ସମୂଳରୁ ପୀରତି ଲତା ଗୋ । ୨ ।
ସେ ମାଲୁଣୀ କୁବୁଜା ରତି ପଣ୍ଡିତା ।
ଜାଣେ କାଉଁଶ ମନ୍ତ୍ର ଚମକ୍ରାରତା ଗୋ ॥

—୦—

ଲଗାଇଲେ ମୋହନେ ମାୟା ମମତା ।
ଧନ୍ୟ ମଥୁରା ନ ସ୍ତ୍ରୀ ସୌଭାଗ୍ୟ ଯୁତା ଯେ । ୩ ।
କଶୋଷ୍ଣ ଦୁଃଖେ ଦୁଃଖୀ ସବୁ ବନିତା ।
ବୋଧି କହନ୍ତ ତାହାଙ୍କୁ ଏମନ୍ତ କଥା ଯେ ॥
ଧଇର୍ଯ୍ୟ ଧର ଆରେ ନୃପପତି ସୁତା ।
ଦୁଃଖେ କବି ଶଶାଙ୍କ ଲେଖେ କବିତା ଯେ । ୪ ।
( ଶ୍ରବଣେ ପାନକର ରସିକ ଭକ୍ତ—ବୃତ୍ତେ )

—୦—

## ସଖୀ ପ୍ରତି ରାଧା ଉକ୍ତି

( ରାଗ—ମାରୁଆ ।। ତାଳ—ଅଠତାଳି )

ଶ୍ୟାମ ପୀରତି ଗୋ ମନୁ ଟଳୁଚି ନାହିଁ ।
କି କରିବି କହ ସହି ! । ଘୋଷା ।
ଦିନ ଦିନକର ଭାବ ଭାବିଲେ ତା କିଏ ଦେବ,
ବେଳକୁ ବେଳ ମରମ ଦେଉଛି ଦହି । ୧ ।
ଦିନେ ଯମୁନା ପାଣିକି— ଯାନ୍ତେ ସେ ବେଣୁପାଣିଙ୍କି,
କେଉଁଟି ପଥୁର କେଣିକି ଚଳିଲ ନାହିଁ । ୨ ।
ଦିନେ ବନେ ବନମାଳୀ ଥିଲେ ଗଲି ଫୁଲ ତୋଳି
ଯାହା କହିଛି ଆହେଗୋ ଆଳି ! ଲଜ୍ଜ ନୁହଇ । ୩ ।
ଦିନେ ସଜନୀ ବେଶରେ ପ୍ରବେଶିଲେ ମୋ ଘରରେ,
କରକୁ ଧରିଣ କେତେ ଦେଲେ ଛନ୍ଦାୟୀ । ୪ ।
ବୋଲେ ବେଣୁଧର ଗିର ! ସେତୁମୁ ହୃଦୟୁ ତାର,
କି ଦୋଷେ ଛେଳି ମଥୁରା ରହିଲେ ଯାଇ ? । ୫ ।
( ଶ୍ୟାମନାଗର ହେ ବାମନପୁରୀ ଭୂଷ—ବୃତ୍ତେ

—୦—

( ରାଗ—ଭଟିଆରୀ । ତାଳ—ଏକତାଳୀ )

ଶ୍ୟାମଚନ୍ଦ୍ର ଭଜ ଗଲେ ଅନାଥିନୀ ଗୋ ସୁସଙ୍ଗିନି !
ଛଡ଼ା ରଜନୀ ହରିବା କାହା ସେବ ଗୋ । ଘୋଷା ।
ଧନ୍ୟ ଗୋ ନନ୍ଦ ମନ୍ଦିର ନାରୀ କେତେ ପୁଣ୍ୟ କାହିଁଥିଲେ କରି,
ଚତୁର୍ବେଦ ହରି ମୁଖାମ୍ବୁଜସଙ୍କି ପାଇଲେ ଅମୂଲ୍ୟନିଧି । ୧ ।
ଆମ୍ଭେମାନେ ସିନା କର୍ମହୀନା ଏଣୁ ଜୀବନ ଯାଉ ନାହିଁ
ସବୁ ଆଶା ସବୁ ଭରସା ଭୂତ ଭ ସାରିଛନ୍ତି ବ୍ରଜନାଗ ନନ୍ଦା । ୨ ।
ଯେତେଦିନ ସଙ୍ଗ୍ୟ କହିଥିଲ କୃଷ୍ଣଚନ୍ଦ୍ର ଭୁଲେ ଦିନଗଲା,
ଏବେ ହତାହର କଲେ ବଂଶୀଧର ଦୁଃଖ ସମ୍ବଳକୁ ବନ୍ଧନ । ୩ ।
ଦୀନ ହୀନ ବେଣୁଧର ଭଣି ଧ୍ୟାନେ ମର ଏତେ ଗୋପାଙ୍ଗଣୀ,
କି ସୁଖ ଲଭିଲେ ସେ ନଟନାଗର ମନ ମୋହନ ମୁରଲୀପାଣି । ୪ ।
( ଘାଟୋଇବାକୁ ଲଗାପୁ ଥିଲେ କହ—ବୃନ୍ଦେ )

( ରାଗ—ମାରୁଆ । ତାଳ—ଆଠତାଳୀ )

ଦେଖିବା ହେଲା ସ୍ୱପନ ।
କାହିଁ ଲୁଚିଗଲେ କଳାଚାନ୍ଦ ଲପନ । ଘୋଷା ।
ଆହା ସେ ମୁରଲୀ ପାଣି        ଲାବଣ୍ୟ ଲହରି ଠାଣି,
କରିଗଲେ ଅନାଥିନୀ ମନ ମୋହନ । ୧ ।
ଅନା ଗୋ ପ୍ରାଣ ଦୂତିକା        ଯେସନେ ବନ ମଲ୍ଲିକା,
ଫୁଟି ଝଡ଼ି ପଡ଼େ ନୋହେ ଗୁନ୍ଥା ଭାଜନ । ୨ ।
ସେହିପରି ହେଲି ମୁହିଁ        ଅବଳା ଭଜ ସଦାଇ,
ଏହାତ ଜାଣିଲେ ନାହିଁ ମୋ ଜୀବଧନ । ୩ ।
କେତେ ନଦାରୁଣ ରୀତି        ଧଇଲେ ନକୁଞ୍ଚି ହାଣି,
ଜଳି ପୋଡ଼ି ଯାଏ ଛାତି ଲଭେ କଦନ । ୪ ।
ଆଜନକ ବ୍ରଜପୁରୀ        ଆସିବେ ବ୍ରଜ ବିହାରୀ,
ବେଣୁଧ ବୋଲେ ରାଧେ ନୁହ ଉଛନ୍ନ । ୫ ।
( ପ୍ରାଣ ସଙ୍ଗିନୀରେ, ସେ ସହଜେ ବନେବାସୀ—ବୃତ୍ତେ )

—*—

( ରାଗ— ଶଙ୍କରାଭରଣ । ତାଳ—ଆଠତାଳୀ )

ଦୂତି ! କହ କି କରିବି ?
ପ୍ରାଣନାଥ ଲାଗି କେତେ ଜୀବନ ହାରିବି ଗୋ । ଘୋଷା ।

ଯେବେ ମଧୁପୁରୁ ନ ଆସିବେ ଶ୍ୟାମଘନ ।
ଛାର ପିଣ୍ଡ ରଖିବାର କିବା ପ୍ରୟୋଜନ । ୧ ।
କୃଷ୍ଣଚନ୍ଦ୍ର ମୁଖ ଶୋଭା ଦରଶନ ବିନା ।
ଆଶ୍ରୟ କେବଳ ଯମୁନା ଗର୍ଭେ ଯାଇଁ ପିନା । ୨ ।
ମଧୁହାସି ମଧୁପୁରୀ ନାରୀ ଭୁଲେ ମାତି ।
ସୁଖେ ରହିଥାନ୍ତୁ ତହିଁ ହେବି ଆତ୍ମଘାତୀ । ୩ ।
କେଉଁଠାରେ ଆଶା କର ଶଶା ହେଲା ଭଲ ।
ଦଶା ମୋର ଘଣ୍ଟୁ କିନା ଘଟି ଯାଉ ଟଳ । ୪ ।

କହ ସୁଧାନିଧି ବେଣୁଧର ବୋଧି ବୋଲେ ।
କପାଳ ଲିଖନ ଆନ କେ କରିବ ଭାଲେ ॥ ୫ ।
( ରୁଷ୍ଣି ଚମକ ପଡ଼ିଲା—ବୃତ୍ତେ )

—୦—

( ରାଗ—ମୁଖାରୀ । ତା—ଆଠତାଳୀ )

ମୋର ପ୍ରୀତି ଚନ୍ଦ୍ରାମଣିଙ୍କି ଗୋ, କିଏ ହରିନେଲା କେଣିକି ଗୋ ।
ହେଲି ଅନାଥିନୀ ମୁଁ ଅତି ଦୁଃଖିନୀ, କପର ବଞ୍ଚିବି ଏଣିକି ଗୋ । ଘୋଷା ।
ହଜାଇ ବସିଲି ଅମୂଲ୍ୟ ନିଧି କାମଦେଲା ଆସି ଦାରୁଣ ବଧି,
ଛନ୍ଦା ପଦ ବୃନ୍ଦାବନ କଳାନିଧି ଦିଆଇଲେ ଦୁଃଖଶ୍ରେଣୀକି ଗୋ । ୧ ।
ଘର ବର ଦୂର କରି ସଜନୀ ! ଭଜିଲି ଯାହାଙ୍କୁ ଦିବା ରଜନୀ,
ସେ ପୁଣି ଅନ୍ତର କରି ନେହ୍ନ ପାଣି ବୁହାଇଲେ ଜାଣି ଜାଣି ଗୋ । ୨ ।
ଯାହାଙ୍କ ମୁରଲୀ ସ୍ୱନକୁ ଶୁଣି ଯମୁନା ପାଣିକି ଥାଏ ଭରସି,
କେଉଁ ଦୋଷ ଦେଖି ସେ କାଳିଆ ଶଶୀ ଭାଙ୍ଗି ଦେଲେ ମୋର ଆଣିକି ଗୋ ॥
ବୋଧି ବେଣୁଧର କହେ ଗୋ ଧନି ! ଏ ସନ୍ତାପ ଗୁପ୍ତ ଚନ୍ଦ୍ର ବଦନୀ,
ଆସିବେ ଅଳପ ଦିନେ ବେଣୁପାଣି ଶୁଣ ମୋ ସାନ୍ତ୍ୱନା ବାଣୀ କି ଗୋ । ୪
( ମୁଁ ହାରିଲି ହେଉ ଏତିକି ଗୋ—ବୃତ୍ତେ )

—୦—

( ରାଗ—ମଙ୍ଗଳ । ତାଳ—ଝମ୍ପା, ଝୁଲା )

ଶ୍ୟାମବନ୍ଧୁ ଲାଗି ସଖି ! ଜୀବନ ଯିବ ଏଥର ।
କି ବୋଲି ସେହୁଡପୁକୁ ଝଲେ ମୁଗୁନ ପଥର । ଘୋଷା ।
କଳା ତନୁ ଭଲ ଭଲ ନେହ୍ନ ଲୁହ ଡାଳ ଡାଳ,
ଏତେସବୁ ହେଲା ଆଜ ! ବଡ଼ାର ଭୁଏ ଅନ୍ତର । ୧ ।
ଚନ୍ଦ୍ରା-ଚଣ୍ଡ ହୃଦେ ଜଳ ଦାହପଡ଼ୁଅଛି ବଳ,
ସ୍ପୃହା ହେଲ ନ ଥିଲା କଳ, ଝାଡୋଟଲେ ବଂଶୀଧର । ୨ ।
ଯାହା ହେଉଅଛି ମନ ତାହା କି ଜାଣିବ ଆନ,
ହୃଦୟ ଘୋର କହନ ସବୁ ଦିନ ମନ୍ଦଭାଗ୍ୟ ! ୩ !

ପିକ ଭୃଙ୍ଗ କେକାସ୍ୱନ          ଚନ୍ଦ୍ର ମଳୟ ପବନ,
ଆବର ବିଧୁ ଚନ୍ଦନ ମୋ ପକ୍ଷେ ହୋଇଛୁ ଗର ।' ୪ ।
ବେଣୁଧର ବୋଲେ ଧନ !          ନୂହ ଭରହେ ଦୁଃଖିନୀ,
ଆସିବେ ଅଳପ ଦିନେ ନନ୍ଦନ ଘନସୁନ୍ଦର । ୫ ।
( କଳାବନ୍ତି କଳାକର-ଲପନ କଳା ନ କର—ବୃତ୍ତେ )

—o—

( ରାଗ—ଝିଂଝୋଟ । ତାଳ—ଆଠତାଳୀ )
କେ ଜାଣିଥିଲା ଏ କଥାରେ ।
ଦେଇଯିବେ ଶ୍ୟାମ ଦାରୁଣ ବ୍ୟଥା ରେ । ଘୋଷା ।
ହୃଦୟେ ଲଗାଇ ପୀରତି ଲତା ।
କାଟିଦେବେ ବୋଲି ମନ ହଞ୍ଚିବା ରେ । ୧ ।
ନୀଳମଣି ରତ୍ନ ହସ୍ତୁ ଛଡ଼ାଇ ।
ନେବବୋଲି କଂସ କରି ବଡ଼ାଇ ରେ । ୨ ।
ବୃନ୍ଦାବନ କେଳି କଳ୍ପତରୁ କଥା ।
ପଥରୁ କରିବେ ବୋଲିଣ ଛୁଆ ରେ । ୩ ।
ଜନଚନ୍ଦ୍ର ହୃଦେ ବଢାଇ ଚିନ୍ତା ।
କରିବ ବୋଲି ଅକ୍ରୂର ଅହନ୍ତା ରେ । ୪ ।
( ପିବ ଏ ଜୀବନ ପିନାରେ—ବୃତ୍ତେ )

—✿—

( ରାଗ—ଚୋଢ଼ପରଜ । ତାଳ—ଆଠତାଳୀ
ସରିଲାଣି ସବୁ ସୁଖ ଗୋ, ପ୍ରିୟସଖି !
ତଳି ଗଲେ ଜନୁ          ଏ ଗୋପ ଭୁବନୁ
ଆନନ୍ଦକୁ କରି ନିରେଖ ଗୋ । ଘୋଷା ।
ନଟବର ଠାଣି          କୁଟିଳ ଚାହାଣି,
ଶିଖୀ ପୁଚ୍ଛ ଚୂଳ ବାଙ୍କ ଗୋ ।
ସେ ତ୍ରିଭଙ୍ଗ ଛବି —          ଦେଖିବା ସ୍ୱପନ,—
ହେଲା ଯେହ୍ନେ ଧନେ ରଙ୍କ ଗୋ । ୧ ।

ଯମୁନା ପୁଳିନ ମାଢ଼ ଉପବନ,
ଶୂନ୍ୟ ଦିଶୁଅଛି ଦେଖ ଲୋ ।
ସବୁ ଗୋପୀଙ୍କ ଚିତ୍ତ ସଙ୍ଗେ ନେଲେ ହରି,
ସମର୍ପି ଏ ମହାଦୁଃଖ ଲୋ । ୨ ।
ଗୋକୁଳ ଚନ୍ଦ୍ରମା ନୟନ ପ୍ରତିମା,
ହୃଦୟ ରତ୍ନ ପଦକ ଗୋ ।
ଲାବଣ୍ୟ ସାଗର [illegible] ଶେଖର,
ଲୁଚାଇଲେ କାହିଁ ମୁଖ ଲୋ । ୩ ।
ହୋଇ ନିରମାଖୀ କା କରିବା ସଖୀ !
ଛାତିହୁଏ ଧକ ଧକ ଗୋ ।
କହନ୍ତି ବେଣୁଧର ରାଧା ହୁଅ ସ୍ଥିର,
ଭେଟିବେ କଳାମାଣିକ ଗୋ ୪ ।
( ଯାହା ଇଚ୍ଛା ତାହା ହେଉ — ବୃନ୍ଦେ )

— ❀ —

( ରାଗ — ଚକ୍ରକେଳି । ତାଳ — ଆଠତାଳୀ )

ସଖି ! କେ ଦେଲା ଏ ଦଣ୍ଡ ଆଣି ରେ ।
କାହିଁ ରହିଲେ ମୁରଲୀପାଣି ରେ । ଘୋଷା ।
ମୋର ହୃଦୟ ହେଉଛି ହାଣି ରେ ।
ଏହା ହୋଇବ ନ ଥିଲା ଜାଣି ରେ । ୧ ।
ନବଲାବଣ୍ୟ [illegible] ଠାଣି ରେ ।
ଭୁଙ୍ଗିଦେଲେ ପର * ସବୁ ଆଣି ରେ । ୨ ।
ଗଲାବେଳେ (ବନ୍ଧୁ) ହୋଇଣ ମେଲାଣି ରେ ।
କି ବଚନରୁ ଭାଷିଥିଲେ ବାଣୀ ରେ । ୩ ।
କେତେ ପରାଇ ଲୋତକ ପାଣି ରେ ।
ରଥ ଆରୋହିଲେ ଗୁଣମଣି ରେ । ୪ ।
ଫେର ନ ବାହୁଡ଼ିଲେ ଆଜ ପୁଣି ରେ ।
ବେଣୁଧର ଦୁଃଖ କେବା ଗଣି ରେ । ୫ ।
( ସଖି କି ଦଶ କହିଲୁ ଆଣି — ବୃନ୍ଦେ )

* ସବୁ ଆଣି — ସବୁ ଠେକ, ବଢ଼ାଇ

( ରାଗ—ତୋଡ଼ିଭୈରବୀ । ତାଳ—ଆଠତାଳୀ )

ରେ ସଜନି ! ଶ୍ୟାମ ନଇଲେ ଫେରି ।
ରହିଲ କେ ମଣିମନ୍ତ୍ର କରି । ଘୋଷା ।
ବୃନ୍ଦାବନ ପାଇଁ ମଥୁରା ଗଲେ । ମୁରଲୀ ଛୁଇଁ ଆନ ଦେଇଥିଲେ । ୧ ।
ପାଶୋରି ଦେଲେ ତା କି ପାଞ୍ଚ ମନେ । ସନ୍ତାଇଲେ ବନ୍ଧୁ ମଦନ-ବାଣେ ।୨।
କୋଟିଯୁଗ ହେଲା ନିମିଷ କାଳ । କି କଲେ ସଂଗେ ନନ୍ଦ ଦୁଲାଳ । ୩ ।
ବେଣୁଧର କବିଚନ୍ଦ୍ର ବଦନ୍ତି । ଯାଉ ଏ ଜୀବନ ସେ ରୂପ ଚିନ୍ତି । ୪ ।
( ରେ ସଜନି ! ଶ୍ୟାମ ଶ୍ରୀଅଙ୍ଗଠାଣି—ବୃନ୍ଦେ )

—୦—

( ରାଗ—ବରାଡ଼ି, ଆଷାଢ଼ଶୁକ୍ଳବାଣୀ । ତାଳ—ଝୁଲା )

ମଥୁରା ଗଲେ ।
କି ବଶୁରି ବନ୍ଧୁ ଅନ୍ତର କଲେ ଗୋ । ଘୋଷା ।
ବୃନ୍ଦାବନ କଣ୍ଟ ବନାଳୀ ଆସି । ବ୍ରଜବଧୂ ହେଲେ ଦୂର ପ୍ରବାସୀ ॥
କିପରି ବଞ୍ଚିବା କହ ସଜନି ! ଅସରନ୍ତି ହେଲା ଛବା ରଜନୀ ଗୋ । ୧ ।
କେତେଦିନ ପାଇଁ ପୀରତି କରି । ମନ୍ଦ ମୁରୁଛିଲେ ମୁରଲୀଧାରୀ ॥
ଛାର ଜୀବନ ବାହାରି ନ ଗଲା । କଠିନ ହୃଦ ଯା ଏହା ସହିଲା ଗୋ । ୨ ।
ଘର ବର ତେଜିଲୁଇଁ ଯା ଲାଗି । ସେ ହେଲେ ଗୋ ଆନନାରୀ ସୁଆଗୀ ॥
କିଏ ଜାଣିଥିଲା ଏମନ୍ତ ହେବ । କି କଲା ସଂଗେ ଦାରୁଣ ଦଇବ ଗୋ । ୩ ।
ସବୁ ଶୁଭେ କଂସ ନଗରୁ ଫେରି । ଆସିବେ କି ଆମ୍ଭ କୁଞ୍ଜବିହାରୀ ॥
ଦେଖିବା ସେ କଳାଚନ୍ଦ୍ର ବଦନ । ବେଣୁଧର ଦୁଃଖ ହେବ ଦହନ ଗୋ ।୪।
( ସ୍ୱର୍ଗିଲତ ନାହିଁ—ବୃନ୍ଦେ )

—✽—

( ରାଗ—ଧାନେଶ୍ରୀ । ତାଳ—ଝିପୁଟା )

ସଜନି ରେ ! ସତେ କି ନ କଲେ ବେଣୁପାଣି ?
ବୃନ୍ଦାବନ କଣ୍ଟ ଦଳି, ନଇଲେ ବନ୍ଧୁ କିପାଇଁ ?
ମରମ ଭିତର ହୃଏ ହାଣି । ଘୋଷା ।

ଦାରୁଣ କଂସ ନୃପତି— ଉଗର ପଠାଇ ଏଥି,
ନେଇଗଲା ଆମ୍ଭ ଚିନ୍ତାମଣି ।
ଯାହା ମନେ ଥିଲା ଏହା ଲଳିତ ମୁରଲୀ ବାହା,
ଦୂରକରି ଦେବେ ଜାଣି ଜାଣି । ୧ ।
କେତେ ଉଷା ବ୍ରତ କରି ମାଇଥିଲୁଁ ଗିରିଧାରୀ,
ସେହି ସେହି ଜମା ଶୂଳପାଣି ।
ସବୁ ସୁଖ ସବୁ ଆଶା ଆକର ସବୁ ଭରସା,
ଛଡ଼ାଇ ଦେଲେ ତ୍ରିଭଙ୍ଗିଠାଣି । ୨ ।
ଗୋବର୍ଦ୍ଧନ ଗୋକୁଳଚନ୍ଦ୍ର ଗୋପିଙ୍କ ନୟନାନନ୍ଦ,—
ମୁରଲିଙ୍କି କିଏ ଦେବ ଆଣି ?
ଗଲା ମରକତ ମାଳ ଦୁଃଖୀଜନଙ୍କ ସମ୍ବାଳ,
ଭାଷିବେ କି ମୃଦୁ ମଞ୍ଜୁଳ ବାଣୀ । ୩ ।
ଧରି ଦୂତୀକାର ପାଣି ଦୁଃଖେ ଶ୍ରୀ ଯଶୋଦାମଣି !
ଭାଷିଲେ ନୟନେ ଭରି ପାଣି ।
ସେ କୁଞ୍ଜେଶ୍ୱରୀଙ୍କ ପାଦ— ନଳିନ ଯାର ସମ୍ପଦ,
ଭଣେ କବି ବନିଥିମା ମଣି । ୪ ।
( କି ଦେଲେରେ, କହିବ ନୁହଇ ସାରଣୀ ରେ—ବୁଝେ )

—❀—

( ରାଗ—ଜୟନ୍ତ ! ତାଳ—ଝୁଲ )

ପ୍ରାଣ ସଜନୀରେ ! ନଇଲେ ମଧୁଭୁବନୁ ମୋହନ କି ଘେନ । ଘୋଷା ।
ବୃନ୍ଦାବନେ ଆସିବାକୁ ଦେଇଥିଲେ କଣ୍ଠ ।
ତା ପାସୋରି ଦେଲେ କେଣେ ସେ ନାଗର ଖଣ୍ଡ । ୧ ।
କୃଷ୍ଣଚନ୍ଦ୍ରମାଙ୍କୁ ଯେଣୁ ଅକ୍ରୂର ଯେ ନେଲା ।
ଗୋପ ଗଗନଟି ଯାକ ଅନ୍ଧାର ଘୋଟିଲା । ୨ ।
ଛି ନ କଲେ ସତେ ବ୍ରଜ ମୋହନ କାଳିଆ ।
କେ ଜାଣିଥିଲା ତେଜିବେ ନନ୍ଦ ଦୁଲାଳିଆ । ୩ ।
ମନର ଯାତନା ମନେ ମଲାଣି ଏଣିକି ।
ଆଉ କି ଦେଖିବା ଶ୍ୟାମ ତ୍ରିଭଙ୍ଗି ଠାଣିକି । ୪ ।

ଶୋକ ମାରେ ଷସି ଭାଷେ ଦୁଃଖୀ ବେଣୁଧର ।
ଦୁଷ୍ଟ ବୃନ୍ଦାବନ ଯିବେ ମଥୁରା ନଗର । ୫ ।
( ରୂପ ଦେଖି ଅନଙ୍ଗ ବନ୍ଧଇ ପଞ୍ଚବାଣ—ବୃତ୍ତେ )

—୦—

( ରାଗ—ମୋହନା । ତାଳ—ଆଡ଼ତାଳୀ ) .
ଆଜି କ ଆସିବେ ଫେଶ, ମୁରଲୀଧାରୀ ।
ଯାଉଛନ୍ତି ମଧୁପୁରୀ । ଘୋଷା ।
ଥାଉଁ ଥାଉଁ ଘଟ ପ୍ରାଣ ଛଟ ପଟ—
ହୋଇ ସିନା ଯିବା ମଶ । ୧ ।
ଦାଉ ଲାଗି ଗୁଣ ହେଉଛୁ କରଣ
ଅକ୍ରୂର ନେବାରୁ ଧଶ । ୨ ।
ସାଉଁଟିଣ ଧୂଳ ଧରାରେ ଗଡ଼ିବା,
ଯୋଗ ଘଟିଲା ଆମ୍ଭର । ୩ ।
କାହିଁରୀ ମନରେ ଭେଲକ ଯନ୍ତରେ,
ମୋହିବେ ମଥୁରା ନାରୀ । ୪ ।
ବାଉଳା ଅଖିଚ ବେଣୁଧର ଭଉ,
ଭଡରେ ହେଉଛୁ ଘାଉ । ୫ ।
( ମୋ ମନରୁ ଯାଉ ନାହିଁରେ ସଙ୍ଗାତ—ବୃତ୍ତେ )

—❀—

( ରାଗ—କାମୋଦୀ । ତାଳ—ମିଶ୍ରରୂପ )
କସ ପଚ୍ଛନ୍ତୁ ସଖି ! ସୁଖ ମୋହର ଦେଗୋ ।
ସବୁ ଛଡ଼ାଇ ନେଇ ଅଛନ୍ତି ହର ଗୋ । ଘୋଷା ।
ଯେ ହନୁ କଂସ ଚର ଆସ ଗୋପନଗର,
ଆମ୍ଭ ନୀଳମଣିଟି ନେଇଛୁ ହର ଗୋ । ୧ ।
ସେହି ଦିନୁ ଗୋ ମିତ କଳ ପୋଡ଼ ଏ ଚଉ,
ଫାଇଁଶ ହୋଇଲାଣି ଲୋଚନ ଝୁର ଗୋ । ୨ ।

ଏଠାରେ ଅଛଦନ ମଧୁପୁରେ ଜୀବନ,
ରହିଛି ଯାଇଁ ଜାଣିଛି ମୁଁ ଯାମସ୍ତ ଗୋ । ୩ ।
ଶ୍ରୀରାଧା ବାଧା ବାଣୀ କହ ରଜନୀ ମଣି,
ଶୁଣି ପ୍ରବୋଧେ ବେନ ଚରଣ ଧରି ଗୋ । ୪ ।
( ରାଧା ରୁଷିଛି ମୋହନଙ୍କୁ ବୋଇଲେ—ବୃନ୍ଦା )

—o—

( ରାଗ—ଆନନ୍ଦ ଭୈରବୀ । ତାଳ—ଏକତାଳୀ )
ହୃଦବଲ୍ଲଭଙ୍କ ସଙ୍ଗ ପାଇବ କି ?
ଏ ବିରହା ତାପକୁ ଲିଭାଇବ କି ? ।ଘୋଷା ।
ଦେଖ ଶୁଭଦିନ ମୋର ଆସିବେ ବ୍ରଜ ସୁନ୍ଦର,
ଅଙ୍କ ଆସନରେ ଆଉଜାଇବ କି ?
ନଟନ ମୋହନ ବେଶ ବମ୍ବାଧରେ ସ୍ମିତ ହାସ,
ଦରି ତରଣେନ ସୁଖୀ ହୋଇବ କି ? । ୨ ।
ଲଳିତ ତ୍ରିଭଙ୍ଗ ଛବି ଶ୍ରୀ ଛନ୍ଦାଚରଣ ସେବି,
ନିକୁଞ୍ଜ ଶେଯେ ନିଶି ପୁହାଇବ କି । ୩ ।
ଭଣେ ବେଣୁଧର ଗାନ କରାଇଣ ମଧୁପାନ,
ସଖୀମେଳେ ଯୁଗ୍ମରୂପ ଧ୍ୟାଇବ କି ?
( ଅଳି କେଶର କୁଞ୍ଜରୁ ଅଇଲୁ କ—ବୃନ୍ଦେ )

—❀—

( ରାଗ—କାମୋଦୀ । ତାଳ—ଆଠତାଳୀ )
କେବେ କାଳିନ୍ଦୀତଟ,— ବନମୁରଲୀ ନଟ,
ପ୍ରସରିବ ଶ୍ରବଣ ସୀମାରେ ଗୋ । ଘୋଷା ।
ଚେଲ ମଧୁନଗର ବ୍ରଜନାଗର-ବର,
ଆସିବେ ବ୍ରଜେ ମୋଦ ମନରେ ଗୋ । ୧ ।
କରିବେ ଗୋଚାରଣ ଗାମ ଛନ୍ଦାଚରଣ,
ଯେବାଇଁ ସଙ୍ଗେ ବ୍ରଜକୁମାରେ ଗୋ । ୨ ।

କୋଟି ମଦନ ଜିଣି        ମୋହନ ଗିରିଧାରୀ,
ମଣ୍ଡିବେ ନିକୁଞ୍ଜ ବୃକ୍ଷମାନେ ଗୋ । ୩ ।
କହଇ ବେଣୁଧର        ସେ ଗୋ ପ୍ରେମସାଗର,
ଋଣୀ ସେତେ ଗୋପ ରାମାନେ ଗୋ । ୪ ।
( କହିଲେ ହେବ କେତେ କେନ୍ଦୁ—ବନ୍ଦେ )

—*—

( ରାଗ—ଗୁର୍ଜ୍ଜରୀ । ତାଳ—ଆଡ଼ )

କହ ଗୋ ଲଳିତେ କାହିଁ ଗଲେ ମୋ ମାଧାଇ ।
ସେ ନୀଳ ମୁରତି କେଉଁଣେ ଗଲେ ପ୍ରିୟସହି । ଘୋଷା ।
ସୁରେନ୍ଦ୍ରର ପରି ମଣିମୟ ରଥେ        ମୋତେ ବାଟ ଭୁଲାଇ ଏହି ରାଜପଥେ,
ରହିଥିଲେ କହୁଥିଲ କାହାନ୍ତି କହ୍ନାଇଁ । ୧ ।
ସେ ନବ ନୀରଦ ଶ୍ୟାମଳ ବରନ        ଧେନୁବୃନ୍ଦ ଯେନ ଚଳିଲେ ବନ,
ଯା ହୁଏ ମୋ ମନ ସଖି ନ ଜାଣୁ କି କହି । ୨ ।
ମନେ ହର ସେ ଶିଖଣ୍ଡ ଚନ୍ଦ୍ର ଚୂଳା        ବଙ୍କିମା କଟାକ୍ଷ ମଦନଟି ଭୋଳା,
ଅଦର୍ଶନେ ଏ ଜୀବନ ରହିବତ ନାହିଁ । ୩ ।
ଚଉଦିଗ ଦିଶି ଯାଏ ତ ଅନ୍ଧାର        ବସନ ଭୂଷଣ ଲାଗେ ମୋତେ ଭାର,
ରସ ରସିକଙ୍କ ବିନେ ବଞ୍ଚିବ ମୁଁ କେମନ୍ତ । ୪ ।
ଏ ବାଣୀ ଶ୍ରବଣେ ଭଣନ୍ତି ଲଳିତା        ନ ହୁଅ ଗୋ ଧନ୍ୟ ଆଉ ଆକୁଳିତା,
ମଥୁରା ଯିବେ କି ଶ୍ୟାମ ଆମ୍ଭଙ୍କୁ ନ କହି । ୫ ।
ଦୀନ ବେଣୁଧର କୋଟିଏ ଦୁଃଖମନେ        ଦିନ କି ସରିବ ଶ୍ୟାମବନ୍ଧୁ ବିନେ,
ଛାଡ଼ି ଗଲେ କହ୍ନାଇ ଗୋ ଜୀବନ ନ ରହଇ । ୬ ।
( ଜୟ ପ୍ରିୟସଖି ! ଶ୍ୟାମବନ୍ଧୁ—ବୃନ୍ଦେ )

—*—

ରାଗ—କଳସା । ତାଳ—ପଢ଼ତାଳ )
ଆହା ପ୍ରାଣନାଥ ମୋର ଛାଡ଼ିଗଲ କାହିଁ ।
ଦେଖାଅ ଚନ୍ଦ୍ରବଦନ ତ୍ରିଭଙ୍ଗିରେ ରହି । ୧ ।

—o—

ଆସ ହେ ଆସ ହେ ବନ୍ଧୁ ନ କର ନିରଶ ।
ଲୁବ୍ଧ ଶ୍ରୀମୁଖ ଦେଖି ଦାସୀର କ ଦୋଷ । ୨ ।
ପ୍ରାଣେଶ୍ୱରୀ ବୋଲି ଡାକଦେଲ ଯେତେବେଳେ ।
ଧାଇଁ ମୁଁ ଆସିଛି ଫୁଲହାର ଫିଙ୍ଗି ଛଳେ । ୩ ।
କଦମ୍ବ କୁଞ୍ଜରେ କେତେ ଆନ ଦେଇ ରସ ।
କହୁଥିଲ ଯାହା ଯାହା ହେ ମୁରଲୀଧର । ୪ ।
ତାହା କେମନ୍ତେ ପାଶୋରୁଛ ସର୍ବଜ୍ଞ ପୁରୁଷ ।
ତବ ଦରଶନେ ଦାସୀ ନୋହିବକ ନାଶ । ୫ ।
ବେଣୁଧର ବୋଲେ ମତ୍ତ କରିନ୍ଦ୍ର ଗମନା ।
ଉଦ୍ଭ୍ରମ ଦଶାରେ ଏବେ ସ୍ମରିଯିବେ ମିନା । ୬ ।
( ମରମ ସୂଚନା ସଖୀ ସମ୍ମୁଖରେ — ଦୂତୀ )

—❋—

( ରାଗ — ଭାଟିଆରି । ତାଳ — ଏକତାଳୀ ? )

ଆଗୋ ସଖୀଗଣ, ଦେଖ ଶ୍ୟାମବନ୍ଧୁ କେଡ଼େ ନିଦାରୁଣ । ଘୋଷା ।
ଏହୁ ଛନ୍ଦୀବର ବନେ ଏକା ଲୁଚି ରହିଛନ୍ତି ଗିରିଟେକା,
ମୋର ଦୁଃଖ ସହି ନ ପାରି ଗୋ ସେହି, ଡାକୁଛନ୍ତି ଅନା ଗୋ ଦୂତିକା ॥
ବାହୁଲତାକୁ ଖେଳାଇକରି ବଜାଆଇ ସେ ମୁରଲୀଧାରୀ,
ଠାରୁଛନ୍ତି ମୋତେ, ଦେଖ ଗୋ କେମନ୍ତେ, ଆଲିଙ୍ଗନ ଛଳେ ମୋଦଭରି ॥
ଆଗୋ ଲଳିତା ଚମ୍ପକଲତା ନ କରିବ ତୁମ୍ଭେ ମନେ ଶଙ୍କା
ତୁଚ୍ଛଗଲ ବୋଲି, ଏ ଘାନୁ ଦୁଲାଳୀ, ହୋଇବ ନାହିଁଟି ଆକୁଳତା । ୩ ।
ଏତିକ ମାତ୍ର କହୁଛି ସହି ଏ ବନକୁ ପାଶୋରିବ ନାହିଁ,
ପ୍ରଣିପାଲି ଥିବ, ରସାଳୀ କଦମ୍ବ, ବକୁଳ ଚମ୍ପକ, ଜାଇ ଯୂଥି । ୪ ।
ବୃନ୍ଦାବନେ ଯେତେ ଲତା ତରୁ ସଦା ଯେମନ୍ତେ ବଢୁଥିବେ ସ୍ୱରୁ
ଲାଗିଲ କୃଷ୍ଣଙ୍କୁ, ମୋ! ଉଛାଳ ପାଇଁ, ସାରମୂଳ ବଂଶୀବଟ ଠାରୁ । ୫ ।
ମୁଁ ଯାଉଛି ପ୍ରାଣବନ୍ଧୁ ପାଶେ ଚମ୍ପି ଚନ୍ଦ୍ରାନନ ଅତି ତୋଷେ,
ମୋର ମନୋରଥ କରିଇଁ ସାର୍ଥ, ନ ଭଜିବ କେହି ମୋ ସକାଶେ ॥
ଏମନ୍ତେ ସଖୀଙ୍କି କହି ରାଧା ଶ୍ୱାମ୍ୟ ଆଲିଙ୍ଗନକୁ ଶରଧା
ବଳାଇ ମାନସେ ମତ୍ତ ଭ୍ରମ ବଶେ, ପିନ୍ଧେ ରହିଛନ୍ତି ପ୍ରାଣଅଧା । ୬ ।

—o—

ଘନଶ୍ୟାମ ବଂଶୀଧର ବୋଲେ ସତେ ଶ୍ୟାମଚନ୍ଦ୍ର କି ନ କଲେ,
ଧରମଣ୍ଡନାଙ୍କ ମଥାମଣି ଟି ତ ଶୂନ୍ୟ ହେବ ଆଜ କ୍ଷଣେ ଗଲେ । ୮ ।
( ଶ୍ୟାମଚନ୍ଦ୍ର ପରି କେହି ଅଶ୍ରୁନାହିଁ—ବୃତ୍ତେ )

—✽—

## କୃଷ୍ଣ ଭକ୍ତ ।

( ରାଗ—ଭୂପାଳ । ତାଳ—ରୂପକ )

ଆହା ପ୍ରାଣେଶ୍ୱର ନନ୍ଦନ-କିଶୋର,
ବସି କି ଦୂରରୁ ଥିବୁ ଭୁଲି ।
ହୋଇଲୁ ବରଷେ ନ ଗଲୁ ତୋ ପାଶେ,
ଆସି ମଧୁକଣ୍ଠକରେ ରହି । ୧ ।
ରସିକା ସିଦ୍ଧାଣୀ ତୁ ଯେ ଗୁଣମଣି,
ପ୍ରେମମୟୀ ସର୍ବ ସୁଲକ୍ଷଣୀ ।
ଭାବଲେ ତୋ ଭାବ ପାଶୋର କି ଯିବ ?
ବୃଷଭାନୁ ନରେନ୍ଦ୍ର ଦୁଲଣୀ । ୨ ।
କେଳି କଲ୍ଲୋଳିନୀ ପ୍ରମୋଦ ବର୍ଦ୍ଧିନୀ,
ସନ୍ତାପହାରିଣୀ ସୁଖଦାନୀ ।
କୁନ୍ଦରା-ବଦନୀ ଚନ୍ଦନାଙ୍ଗୀ ଧନୀ,
ନ ହେବୁ ମୋ ଲାଗି ଚିନ୍ତାର୍ଥିନୀ । ୩ ।
ଉମା ସଦାଶିବ କଲେ ଜାଣ ଶିବ,
ଏଥୁଁ ଫେର ଯିବ ବ୍ରଜପୁରେ ।
ନ ଭାବବୁ ଆନ ତୋ ଭାନ ଧ୍ୟାନ,
କର ଦଣ୍ଡଗତ ଦାନ ହରେ । ୪ ।
ପ୍ରଣୟ ବଶ୍ୟ ତୋ ପ୍ରୀତି ପ୍ରକାଶ,
କୃଷ୍ଣଚନ୍ଦ୍ର ଅଳ ଏତେ ମାତ୍ର ।
ଭଣେ ବଂଶୀଧର ଲେଖି ଏପ୍ରକାର,
ପେଷିଲେ ମୋହନ ପ୍ରେମପତ୍ର । ୫ ।
( ଏକ୍କ ବନେ ହର ଚମ୍ପକ ଫାଳୁସ—ବୃତ୍ତେ )

—✽—

( ରାଗ—ବରାଡ଼ି । ତାଳ—ଆଠତାଳୀ )

କାହିଁକି ରବୁଛୁ ବସି କଳାପିକ ରେ ।
କୃଷ୍ଣ ଦେଇ ଯାଇଛନ୍ତି ଏତେ ଦୁଃଖ ରେ । ଘୋଷା ।
ତୋ ସ୍ୱନ ବାଜି ଶ୍ରବଣେ    ମରମ ଭିତର ଦାରୁଣ,
କୂଜନ ପରାଏ ମଣେ କୁହୁ ଡାକ ରେ । ୧ ।
ଯେ ଦିନୁ ଗଲେଣି ଦୂର    ସରିଛି ସକଳ ଶିରୀ,
ନିରବଧି ଝୁରି ବହୁଛି ଲୋତକ ରେ । ୨ ।
ଅଶନ ବେଶ ବଶନ    ହୋଇଛି ବିଷ ସମାନ,
ଭୁବନ ହୋଇଛି ବନ ପ୍ରାୟ ଦେଖ ରେ । ୩ ।
କାନ୍ତ ଲାଗି ନଷ୍ଟେଁ ଜୀବ    ଏ ଘଟୁ ବାହାରି ପିବ,
ଯାଅ ଯା କହିବୁ ଏହା ତାଙ୍କ ପାଖ ରେ । ୪ ।
ପିକେ ଏସନ ଭାରତୀ    ଶୋକେ ଭାଷନ୍ତି ଶ୍ରୀମତୀ,
ଶୁଣି ବେଣୁଧର ଦଶା ଅନ୍ତରେ କରେ । ୫ ।
( କାଳନ୍ଦୀ କୂଳକୁ ମୋ ସଙ୍ଗାଳି ନ ଯା—ବୃତ୍ତେ )

—୦—

( ରାଗ—ସାରଙ୍ଗ । ତାଳ—ଝୁଲ )

କାହିଁପାଇଁ କରୁଥିଲୁ ଆଜ ଏ ଝଙ୍କାର ?
ନାହାନ୍ତି ମଧୁସୂଦନ ରେ ମଧୁପ ! ଏ ଗୋପନଗର ରେ । ୧ ।
ଅଛି କରେ ମକରନ୍ଦ ଆଜ ଏ ସୁମନେ ?
ତରୁ ଲତା କାନ୍ଦୁଛନ୍ତି ରେ ମଧୁପ ! ଏବେ ବୃନ୍ଦାବନେ ରେ । ୨ ।
ଯେଉଁ ଦିନୁ କୃଷ୍ଣ ଯାଇଛନ୍ତି ମଧୁପୁରୀ ।
ସେ ଦିନୁ ଲୁଟିଛି ଜାଣରେ ମଧୁପ ! ବ୍ରଜପୁର ଶିରୀ ରେ । ୩ ।
କେଉଁ ସୁଖ ଅଛି ବୋଲି ଦେଉଛୁ ଏ ଭଳି ।
ସରିଛି ସବୁ ଆନନ୍ଦ ରେ ମଧୁପ ! ଦଶା ପାଞ୍ଚ ବଳି ରେ । ୪ ।
କହନ୍ତି କରୁଣସ୍ୱରେ ଶ୍ରୀ ନିକୁଞ୍ଜରାଣୀ ।
ସେ ଚରଣ ସେବା ଦାସୀରେ ମଧୁପ ! ବେଣୁଧର ଭଣି ରେ । ୫ ।
( ମୋର ଆଣି ଯାଇଥିଲ ଯମୁନାକୂଳକୁ—ବୃତ୍ତେ ]

—✱—

( ରାଗ—କାଳିଙ୍ଗଡ଼ାକେଦାର । ତାଳ—ଝୁଲା )

ଆରେ ମନ୍ଦ-କୁଞ୍ଜ କେକୀ ।
ମୋହନ ଘୁମୁରେ କର ଏବେକ । ଘୋଷା ।
ସେ କଂସ ଡାକର ଅକ୍ରୂର ହୂର ଭାବେ ବନ୍ଧୁଙ୍କୁ ମୋର
ଘେନିଗଲା କାଲେ ମଥୁରା ନଗର,
ଚଳିଲେ କାହ୍ନୁ ମୋତେ ଡାକ ଡାକ । ୧ ।
ଏହି ବାଲି ବାଟେ ମୁଁ ଗାଲି ଚୁଲି ଚୁଲି ତାଲୁଅ ହେଲି,
ଚୁହିଁ ନ ପାରିଲି ଝଲମଲ ତେଜ
ଶ୍ରୀମୁଖ ସୁଷମା ନଧ୍ୟାପତକ । ୨ ।
ଥରେ ତାଙ୍କୁ କହ ମୋ ପାଇଁ ଏହି ବୃକ୍ଷ ମୂଳରେ ମୁହିଁ
ଚୁହିଁ ଅଛି ତାଙ୍କ ପଥକୁ କେବଳ
ଦେଖା ଦେଇ ରଖନ୍ତୁ ଜୀବଣକ । ୩ ।
ଉଦ୍ଭ୍ରମ ବଶରେ ଏସନ କହୁଁ କହୁଁ ବାଳାରତନ,
ଉଡ଼ିଗଲା ଭୟ ଦେଇ ସେହି କେକୀ,
ଧ୍ୟାୟେ ବେଣୁଧର ସେ ଶ୍ରୀମତୀକି । ୪ ।
( ଶ୍ୟାମ ଜାଣେ ମୋହନ ବୁଝି—ବୁଝେ )

—o—

( ରାଗ—ଚନ୍ଦ୍ରାକେଦାର । ତାଳ—ଆଠତାଳୀ )

କାହିଁପାଇଁ ଭାବୁ ଏତେ କଳାପିକ ରେ ।
ଅଛିକ ଏ ବ୍ରଜେ ଆଜ କେତେ ସୁଖ ରେ ।
କୃଷ୍ଣ ଦେଇ ଯାଇଛନ୍ତି ମହାଦୁଃଖ ରେ । ପଦ ।
ଯେଉଁ ଦିନୁ କଂସ ଦୂତ ହରି ନେଲା ନେଇ ରଥ,
ସେ ଦିନୁ ସକଳେ ହୋଇଛୁଁ ଅଲେଖ ରେ । ୧ ।
ଗଲଣି ଗୋପ ସଙ୍ଗୀତ ନ ଫୁଟେ କୁସୁମ କଳି,
ମୂକ ହୋଇଛନ୍ତି ମଧୁକରେ ଦେଖ ରେ । ୨ ।
ଭ୍ରମଇ କେକୀ ନର୍ତ୍ତନ ଶୁକ ସାରୀ ମୃଦୁ ସ୍ୱନ
ହେଲଣି ସାତ ସପନ ଗୋଟି ଡାକ ରେ । ୩ ।

ବିରହାନଳ ପ୍ରବଳ ଜଳୁଛି ହୃଦୟସ୍ଥଳ,
ହଣି ଯାଉଛଲଣି ଗୋପିମାଙ୍କ ଛାଟକ ରେ । ୪ ।
ଦୁଃଖୀ ବେଣୁଧର ଭଣି ଯହିଁଛନ୍ତି ବେଣୁପାଣି,
ତହିଁ ଧାଇଁ ଗୋ ପଞ୍ଚମ ତାନ ଝାଙ୍କ ରେ । ୫ ।
( କେ ମୁରଲୀ ବଜାଉଛି ବୃନ୍ଦାବନେ—ବୁଲେ )

—*—

( ରାଗ—ଖଣ୍ଡକାମୋଦ । ତାଳ—ଅଠତାଳୀ )
ରେ କୋକିଳ ! ତୋତେ ହେଲି ଶରଣି ।
କୃଷ୍ଣ କର୍ଣ୍ଣେ କହ ମୋ ଦଶା ଯାଇଁ । ଘୋଷା ।
ବୋଲିବୁ ଏତିକ ପଞ୍ଚମ ତାନେ ।
ସରବ ଯଶୋଦା ଶ୍ୟାମ ଧିଆନେ । ୧ ।
ଭଷିବୁ ଅଦ୍ଭୁତ ସ୍ୱସ୍ୱର ବୃନ୍ଦ ।
ଝାସିବ ଶ୍ରୀମନ୍ତ କାଳନ୍ଦୀ ଗଣ୍ଡେ । ୨ ।
ଦେଖୁଛୁ ତ ମୋର ବିରହ ବ୍ୟାଧି ।
କୃଷ୍ଣ କୃପା ବିନେ କେବା ଔଷଧି । ୩ ।
ବହନ ଉଡ଼ି ଯା ନ ରହ ଏଥି ।
କୃଷ୍ଣ ଯହିଁଛନ୍ତି ଜଣାଅ ତଥି । ୪ ।
ଜଷଚନ୍ଦ୍ର ପଟ୍ଟନାୟକ ବୋଲେ ।
ଏଡ଼େ ନିଦାରୁଣ କାହିଁକି ହେଲେ । ୫ ।
( ମୁରଲୀ ! ତୋହର ଯଉଣ ଗଳା—ବୁଲେ )

—*—

( ରାଗ—ଶଙ୍କରାଭରଣ । ତାଳ—ଆଠତାଳି )
ସଖି ରେ ! କହିବୁ ମୋହନେ ।
ଅଭାଗିନୀ ରାଧା ନିକ ନ ପଡ଼େ ସେ ମନେ । ଘୋ ।
ବ୍ରଜବନ ପାଇଁ କହି ଗଲେ ମଧୁପୁରୀ ।
ସେ କଣ୍ଠ ବଚନ ଏବେ ରହିଲେ ପାଶୋରି । ୧ ।
ଯେଉଁ ବଂଶୀକଣ୍ଠି ରଟୁଥାଏ ରାଧା ରାଧା ।
ସେ ବଂଶୀର ମୋତେ ଆଜ ନାହିଁ କ ଶରଧା । ୨ ।

ଯେଉଁ ତ୍ରିଭଙ୍ଗି ମାଠାଣି ମନ୍ତ୍ର ମାଗମୂଳ ।
ସେ ଛବି ସ୍ୱପନ ହେଲା ନଇଲେ ଛଳକ । ୩ ।
କେତେ କେତେ ସୁଖ ଅବା ସେ ଦେଇ ନ ଥିଲେ ?
କେଳକୁ କ ବୋଲି ଏତେ ସର ଭର ଦେଲେ । ୪ ।
ଯାଅ ଯାଅ ବୃନ୍ଦ କଂସ କଟକକୁ ଅରେ ।
କେଉଁଣ ସେ ବସାଇ ଦେଇଲ ସନ୍ତାପ ପଥରେ । ୫ ।
ବନେଶ୍ୱସ୍ୱ ପାଣି ଧରି ହ୍ରଷନ୍ତ କଶୋସ୍ୱ ।
ଶୁଣି ବେଣୁଧର ନେତ୍ରୁ ଗୋଟେ ଅଶ୍ରୁ ବାର । ୬ :
( କହ ଗୋ କି ବୁଝି କରିବ—ତୁମ୍ଭେ )

—o—

( ରାଗ—କେଦାରଗଡ଼ା । ତାଳ—ଆଠତାଳୀ )

ମନ ମୋହନ ରେ ଜୀବନ ସଙ୍ଗିନ! କେଉଁପରି ବଞ୍ଚୁଥିବୁ ଧନ ।
ଜବାଧର ଧରାମଣ୍ଡନା ସୁଧୀର ଏକାଳେ ଯା ପାଶୁ ହେଲି ଭିନ୍ନ । ପଦ ।
ଆସିବାର ବେଳେ ଆରେ ଚନ୍ଦ୍ରମୁଖି !
ନଯା କହ୍ନୁ ବୋଲି କହୁଥିଲୁ ନାହିଁ,
ସେ ନିଷେଧ ବାଣୀ ନ ଶୁଣି ଯା ମୁହିଁ,
ବଦେଶୀ ହୋଇଲି ପ୍ରାଣଧନ । ୧ ।
ବ୍ରଜନାରୀ ହାର ମୋ ପ୍ରୀତି ପସର,
ମରାଳଗମନା ମୃଦୁ ଦନ୍ତଧର,
ଲବଣି ପିତୁଳା ତୁ ମୋ ରଙ୍ଗସାର,
କି ହୋଇଥିବଟି ତୋର ମନ । ୨ ।
ସଖୀଙ୍କ ଆଗରେ ମରମ ଭାବିଣୀ,
ଗିଠାଇବ କହୁ ନ ଥିବୁ ମିଳଣି ;
ଆହା ମୁଁ କ ଜଣ ଆରେ ସୁଣମଣି !
ଝୁରି ଝୁରି ହେଉଥିବ ଖିନ୍ନ । ୩ ।
ଅନାସ୍ୱଭେ ମଧୁ- ବ୍ରତକେ ଭରିଲ,
ଦାରୁଣ ବିଚ୍ଛେଦ ଯାତନା ସହିଲ,

ଘୁମୁଁକୁ ଯିବାରେ ବ୍ରଜନ ନୋହିଲ,
ମାରଦରେ ହେଉଥିବୁ ଛନ୍ନ । ୪ ।
ଭଲ ବନମାଳୀ ଶ୍ରୀମନ୍ତଙ୍କ ଗୁଣ,
ଲୋଚନେ ନସୁନ କଲେ ଥନ ଥନ,
ଦୁଃଖୀ ବେଣୁଧର ସନ୍ତାପ ବର୍ଦ୍ଧନ,
ସେହୁ ଛଡ ଜନ ବଳ୍ଲଭନ । ୫ ।
( କହରେ ଜୀବନସଙ୍ଗିନ ! ତୋ ମନ—ବୃତ୍ତି )

—❋—

( ରାଗ—କାଉବାଣୀ । ତାଳ—ଆଠତାଳୀ )
ମାର ମାରନା ହେ ! ପଞ୍ଚ ଫୁଲବାଣ ।
କରନା ଦଗଦହନ ଏ ପଞ୍ଚ-ପରାଣ । ଘୋଷା ।
ପଞ୍ଚାନନ କୋପାନଳେ, ଜାଳି ଦେଇଥିଲେ ହେଲେ,
ନସ ଜଗତ ଶାନ୍ତି ପାଇ ପୁଣି ଏ ଦାରୁଣ । ୧ ।
ଅବଳା ବଧିବା ଲାଗି, ଆତୁର ହୁଅ ସରାଗୀ,
ଲଜ୍ଜା ନାହିଁକି ମୁଖରେ ମନମଥ ଗୁଣ । ୨ ।
ଯା ହେଉ ଯେଉଁ ବନତ, ରକ୍ଷାକର ରତିପତ,
ଜାଣି ଜାଣି ଏତେ ଦୁଃଖ ଦିଅ କି କାରଣ । ୩ ।
ଆମ୍ଭରେ ଲୁହ ନିର୍ଦ୍ଦୟ, ବେଳକେ ହୁଅ ସହାୟ,
ତୁମ୍ଭ କୃପା ବିନା ଆଉ ନାହିଁ ପରିତ୍ରାଣ । ୪ ।
ଯହିଁ ଛନ୍ତି ବଂଶୀଧାରୀ ଯାଅ ଯା ସେ ମଧୁପୁରୀ,
କରଯୋଡ଼ି ବେଣୁଧର କରୁଛି ଜଣାଣ । ୫ ।
ମନେ ପଡ଼ୁଛି ମା, ସେହୁ ଚନ୍ଦ୍ରମୁଖୀ—ବୃତ୍ତି )

—o—

( ରାଗ—ସାବେରୀ । ତାଳ—ଆଠତାଳୀ )
ମଧୁକର ରେ !
କହ ଯାଇଁ ଆମ୍ଭ ଦୁଃଖ ଶ୍ରୀକୃଷ୍ଣ ଆଗର । ଘୋଷା ।
ନାନା ଫୁଲେ ତୋର ପ୍ରୀତି ସତ, ମଧୁପାନ କରୁ ଆଦରେ ତ,
ଏକ ଗୁଣ ଆନେ କସ୍ତୁ ନିତ୍ୟ,
ମଧୁ ସରିଲେ ସୁମନୁ ଛାଡ଼ୁ ଆଦର । ୧ ।

ତୋର ସ୍ୱଭାବ ଅଟେ ଯେସନ, ସେହି ପ୍ରାପ୍ତ ଆମ୍ଭ ଗିରିଧାରୀ,
ପ୍ରାଣେ ବଧି ଏତେ ଗୋପନାରୀ,
ଅବଶେଷେ ଛାଡ଼ିଗଲେ ସେ କଂସନଗର । ୨ ।
ବୃଥା କାହିଁପାଇଁ ଆମ୍ଭ ଆଗେ, ବୁଲି ମରୁଛୁ କେଉଁ ସରାଗେ ?
ଲଜ୍ଜା ଥାଏ ଯେବେ ହୃଦଭାଗେ,
ଏ ସ୍ଥାନକୁ ଛାଡ଼ି ବେଗେ ଚଳ ମଧୁପୁର । ୩ ।
ତୁ ଯେ କୃଷ୍ଣସଖା ନାମ ବହୁ ଆମ୍ଭ ଛଳବାଣୀ କେତେ ସହୁ ?
କରି ଝଙ୍କାର କି କଥା କହୁ,
ବୁଝି ପାରୁନାହୁଁ ଆମ୍ଭେ ଗୋପିକା ନିକର । ୪ ।
ତୋ ପଦ୍ମା କାହିଁ ଏତେବେଳେ, ଅବଲମ୍ବେ ଯା ତୁ ସେହି ସ୍ଥଳେ
ତୋର ଅଚ୍ଛେଦ୍ୟ ପୀରତିଟାରେ,
କେଉଁ ସୁଖ ଆଶେ ଭ୍ରମୁଁ ମାଳତୀ ପାଶର । ୫ ।
ଦେଖି ପଦ୍ମା ଏ ତୋ ସ୍ୱଭାବ, ଅବିଶ୍ୱାସୀ ବୋଲି ଚଳିଥିବ
ଏଥୁଁ ହେବ ଅବା କେଉଁ ଲାଭ,
କିବା ନ ଜାଣୁ ଅଧିକ କହିବୁଁ ବୋଟର । ୬ ।
ଅବମାନନାରେ ଏତେ ଛଳି, କହିଲେଣି ଯେତେ ବ୍ରଜବାଳୀ,
ଥିଲେ ଷଟପଦ ପାଶରୁ ଚଳି,
କହେ ଦୀନ ହୀନ କବିଚନ୍ଦ୍ର ବେଣୁଧର । ୭ ।
( ବିଚକ୍ଷଣା ରେ, ବିନା ତୋ ପ୍ରୀତି କେ—ବୁଝେ )

—o—

( ରାଗ—ଭଟିଆରୀ । ତାଳ—ଏକତାଳୀ )
ଆରେ ଅଳିବର ! ନୁହେଁ ନଳିନ କଳି ଏ ପୟୋଧର
କ୍ଷମା କରିଲ ତୁ ଏଥି ହୁଅ ଦୂର । ଘୋଷା ।
ପଦ୍ମ ଭ୍ରମେ ହୋଇ ଛନ ଛନ, କରିବାକୁ କରେ ମଧୁପାନ ?
କାହୁଁ ଉଡ଼ି ଆସି ଏ ସ୍ତନ ଧରିଲୁ,
ଶୁଣ ଏବେ ମୋର ନିବେଦନ । ୧ ।
କୁଞ୍ଜେ କୁଞ୍ଜେ ପରା ତୋ ବିହାର ? କି ହେତୁ ଅଇଲୁଁ ପାଶେ ମୋର,
ବିରଲେ ବସିଛୁ ମୁଁ ଅପରାଧିନୀ,
ବୃନ୍ଦାବନ ସୁଧାନିଧିଙ୍କର । ୨ ।

ଏବେ ମେ ଦ୍ୱାରେ ଶଙ୍ଖ ବୋଲେ, ଏଣେ ତେଣେ ଭ୍ରମୁଁ କି ନିମନ୍ତେ ?
ନେଇ ମୋ ଖବର ଯାଅ ମଧୁପୁର,
ଜଣାଅ କୃଷ୍ଣଙ୍କ ଅଗ୍ରତେ । ୩ ।
ପୁଣି ତାହାଙ୍କ ବାରତା ଆଣି, ମୋତେ କହ ଶୁଭ କେଉଁ ଜାଣି,
କର ଦୟାକର ନ ସହେ ବିଳମ୍ବ,
ସନ୍ତାପେ ଦହୁଛି ହୃଦ ହାଣି । ୪ ।
ତୋ'ର ବଚନକୁ ନେତ୍ରେ ଚାହିଁ, ବିରହ ବେଦନା ସୀମା ନାହିଁ,
କାନ୍ତ ମତ ଗତ ସମ ବୋଲି ଅତି,
ଆକୁଳିତ ପ୍ରାଣ ମୋର ଏବେହି । ୫ ।
ଏମନ୍ତ ଶ୍ରୀ ବୃନ୍ଦାବନ ରାଣୀ ପୁଷ୍ପଲମ୍ପଟିଆ ଭୃଙ୍ଗେ ଭଣି,
କହନ୍ତେ ବେଣୁ— ଧର ତାଙ୍କ ଦୁଃଖେ,
ଦୁଃଖୀ ହୋଇ ନେତ୍ରେ ଗୋଟେ ପାଣି । ୬ ।
( ପ୍ରିୟସଖି ! ଗୁପ୍ତ ପଥର କାଳଣି ସଖି ସଖି—ବୃନ୍ଦେ )

—*—

( ରାଗ—ଝିଂଝୋଟ । ତାଳ—ଆଠତାଳୀ )

ଯାଉ ଏ ଜୀବନ କଣା ରେ ।
ଶ୍ୟାମବନ୍ଧୁ ଗୁଣ କର ଭାବନା । ଘୋଷା ।
କେତେ ଧନ ପାଇଁ ସ୍ନେହ ଲଗାଇ
ମଥୁରାଭୁବନେ ରହିଲେ ଯାଇଁ ରେ । ୧ ।
ଥିଲା ଏ ବସ୍ତୁ ତାହାଙ୍କ ମନେ ।
ବେଳକୁ ସତାଇଲେ ଯା ମଦନରେ । ୨ ।
କାହାକୁ କହିବା ମରମ ଦୁଃଖ ।
କି ନ କଲେ ସତେ କଳାଶ୍ରୀମୁଖ ରେ । ୩ ।
ଗୋପୀ ଗୋବିନ୍ଦଙ୍କ ଗାଢ଼ ପୀରତି ।
ଦାରୁଣ ଦଇବ ଦେଲା କରତି ରେ । ୪ ।
ବୋଲେ ବେଣୁଧର ମୋ କର୍ମ ହୀନ ।
ସେବି ନ ପାରିଲି ପଦ-ନଳିନ ରେ । ୫ ।
( କି କଲି କି ମୁଁ ରୁଷିଲି ରେ—ବୃନ୍ଦେ

—o—

( ରାଗିଣୀ—ଆଶାବରୀ  ତାଳ—ଝୁଲା )

ଏହି ସେହି ବୃନ୍ଦାବନ । ଦେଖିଥିଲି ଦେଖୁଛି ନୟନ । ଘୋଷା ।
ଏହି ନୀପମୂଳ, ଏ ଯମୁନା କୂଳ, ଏହି ଗିରି ଗୋବର୍ଦ୍ଧନ ।
ଏହି କେଶୀଘାଟ, ଏହି ବଂଶୀବଟ ଧୀର ସମୀର ପ୍ରାଙ୍ଗଣ । ୧ ।
ଏହି ରାଧାଶ୍ୟାମ କୁଣ୍ଡ ମନୋରମ, ଏ କ୍ରୀଡ଼ା ବିନୋଦ ସ୍ଥାନ ।
ଶ୍ରୀ ନନ୍ଦନନ୍ଦନ ମୁରଲୀବଦନ, କହ୍ନୁ କରେଶ ଅଶୋଭନ । ୨ ।
ରାଧା ରାଧା ଗାନ ମୃଦୁ ବଂଶୀସ୍ୱନ, ନ ଶୁଣିଲି ଆଉ କାନ ।
କପଟ ମୂର୍ଚ୍ଛା ଦେଇ ନନ୍ଦବହ୍ନି, ରହିଲେ ମଧୁଭୁବନ । ୩ ।
ଚନ୍ଦ୍ରକଚଳିଆ ପୀତଦୁକୁଳିଆ, ନଟବରର ବରନ ।
ଗୋକୁଳ-ଚନ୍ଦ୍ରମା ଲାବଣ୍ୟ ପ୍ରତିମା, କଣ୍ଠେଦୋଳେ ଯାହା ଭଲ । ୪ ।
ଦେଖିବାର ଆଉ କୁଶଳ ତାଙ୍କର, ଶୁଣିବା ହେଲା ସ୍ୱପନ ।
କେଣୁଧର କହେ ଚନ୍ଦ୍ର ସେ ଶ୍ରୀମୁଖ, ସତେ କରିବ ଦର୍ଶନ । ୫ ।
( ପ୍ରୀତି ଯେତିକ ସୁଆଦ ସଖି ତେତିକ ତା ପରମାଦ—ବ୍ରୁ ତ୍ର )



( ରାଗ—ପୂରବୀ । ତାଳ—ଅଦ୍ଧତାଳ )

ତୋ ବଂଶୀନେ ଗଲା ସତ ରେ କଂଶାରି ' ଘୋଷା ।
କାହିଁ ବ୍ରଜପୁରୀ   ସୁଖମୟ ଚିରି,
କାହିଁ ମଧୁ ନଗରୀ ରେ । ୧ ।
ବୃନ୍ଦାବନ ପାଇଁ   ଆସିଥିଲ କହି,
ସେ କଥା ଦେଲା ପାଶୋରି ରେ । ୨ ।
ଅନାସ୍ଥରେ ପଡ଼ି   ଯାଇଅଛୁ ଧଡ଼,
ପରିଣତ-ବିମ୍ବାଧରୀ ରେ । ୩ ।
ନାହିଁ ଗୋପ ବେଶ   ନିକୁଞ୍ଜ ରହସ୍ୟ,
ଚିନ୍ତା ହୃଦ ହୁଏ ଘାରି ରେ । ୪ ।
ମୋହନ ମୁରଲୀ   କାହିଁ ବଜାଇଲ,
ଯେ ଡାକେ ତୋ ନାମ ଧରି ରେ । ୫ ।
ବୃନ୍ଦାବନ ଲୀଳା   କଉତୁକ ଖେଳା,
ଆସିଛୁ ତ ଦୂରକରି ରେ । ୬ ।

ସତେ ଯୋଗମାୟା କରିବେ ସୁଦୟା,
ଭେଟିବ ପାଶେ ତୋହର ରେ । ୭ ।
ବରଦେ ଶ୍ରୀହରି କହନ୍ତି ଏପରି,
ବେଣୁଧର ଦୁଃଖ ହର ରେ । ୭ ।
( କ ଦେଖିଲ ବେଣୁପାଣି ରେ—ବୃତ୍ତ )

—❊—

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲ )

କହ ଗୋ ସୁନ୍ଦରି ମଥୁରା-ବାସିନୀ,
ବହନ ସଂଶୟ ଫେଡ଼ି ।
ଏ ମଧୁନଗରେ ଆସିଅଛୁ ମୁହିଁ,
ଯେ କାରଣେ ଲୋଡ଼ି ଲୋଡ଼ି । ୧ ।
ନୂତନ ରାଜାଙ୍କ ଶ୍ରୀମୁଖ ଭେଟିବା-
ପାଇଁ ବଡ଼ଆଶା ମୋର ।
କପରି ତାହାଙ୍କ ଦର୍ଶନ ମିଳିବ,
ବତାଇ ଦିଅ ଉତ୍ତର । ୨ ।
ନୂଆ ରାଣୀଙ୍କର ଜାଣଚି କିସ ଗୋ,
କେଡ଼େ ରୂପବନ୍ତୀ ସେହି ।
ରାଜ୍ୟ ଦାନ ଲଭ କେମନ୍ତ ଧରିଲି,
ଜାଣ କି ଗୋ ଚନ୍ଦ୍ରମୁହିଁ । ୩ ।
ମୁଁ ଯେ ବ୍ରଜପୁର କୃଷ୍ଣ କାଙ୍ଗାଳିନୀ,
ଅଟେ କର୍ମ ଅଭାଗିନୀ ।
କେତେ ଦିନୁ ସହି ! ହରାଇ ବସିଛୁ,
ଅମୂଲ୍ୟ ମର୍କତ ମଣି । ୪ ।
ସେହି ମଣିଟିକି ହରି ଆଣି ଅଛୁ,
ଏହି ରାଜ୍ୟେଶ୍ୱର ଏକ ।
ଅପୂର୍ବ କ୍ରୂର ସେ ପୂର୍ବ ରାଜାସୁତ,
ବଡ଼ ନୃଶଂସ ମୂରୁଖ । ୫ ।

ଦୟାକର ମୋରେ କହ୍ନଦନ୍ଦ ବାରେ,
ତୁମ୍ଭ ରଜାଙ୍କ ସନ୍ଦେଶ ।
କହଚନ୍ଦ୍ର ଭଣେ ବାଧା ଦେଇ ପ୍ରାଣେ,
ଆସିଛୁ ମଥୁରା ଦେଶ । ୭ ।
( କଦମ୍ବ କାନନେ କେ ଥାଇ ନନ୍ତ ଗୋ—ବୃତ୍ତେ )

—o—

## ଶ୍ରୀକୃଷ୍ଣଙ୍କ ପ୍ରତି—ବୃନ୍ଦାଦୂତି ଉକ୍ତି ।

( ରାଗ—କଳସା । ତାଳ ଆଢ଼ )

ଆହେ ମଥୁରା ନୃପତି ଠକ ଶିରୋମଣି ।
କି ହେବଟି ଚକ୍ଷୁ ମଳ କଲେ ଏ ଭୁଲେଣି ? । ୧ ।
ଯେବେ ରାଇ ପାଶେ ବ୍ରଜେ ନ ଯିବ କହ୍ନାଇ ।
ସହଜରେ ତୁମ୍ଭଙ୍କୁ ତ ଛାଡ଼ିଦେବ ନାହିଁ । ୨ ।
ଆମ୍ଭ ବୃନ୍ଦାବନେଶ୍ୱରୀ ଧନୀ ରାଧା ରାଣୀ ।
ଦେଇଛନ୍ତି ଏହି ଆଜ୍ଞା ହେ ମୁରଲିପାଣି । ୩ ।
ଅଞ୍ଚଳେ ତୁମ୍ଭଙ୍କୁ ନଷ୍ଟେ ବାନ୍ଧି ନେଇ ଯିବ ।
ମଧୁପୁରୀ ରଜା ବୋଲି ଦୟା ନ କରିବ । ୪ ।
ବୃନ୍ଦା ବାଣୀ ଶୁଣି ଶ୍ୟାମ ହୃଦୟ ଅସ୍ଥିର ।
ବେଣୁଧର ବୋଲେ ବ୍ରଜପୁରେ ଇଚ୍ଛେ ଫେର । ୫ ।
( କ କଲି କ କଲ ଆହା ପରାଣ ଈଶ୍ୱରୀ—ବୃତ୍ତେ )

—✱—

## ନିରାଶା ।

( ରାଗ—ମଙ୍ଗଳ । ତାଳ—ଝିପଟା )

ଦେଖୁଛୁ ଏ ବୃନ୍ଦାବନ ଶୂନ୍ୟମୟ ପୁରୀ ।
କାହାନ୍ତି ମୋ ପ୍ରେମମୟୀ ରାଧା ବଂଶୀଧାରୀ । ଘୋଷା ।
ଶ୍ୟାମଳ ତମାଳ ଡାଳେ ଶୁକ ପିକ ସ୍ୱନ ।
ଶୁଭୁନାହିଁ କାହିଁ ସେହି ମୁରଲୀର ତାନ । ୧ ।
ବହୁନାହିଁ କପାଇଁ ସ୍ନେହେ ମଳୟ-ପବନ ।
ତରୁ ଲତା ଦିଶୁଛନ୍ତି କମ୍ପା ଜ୍ୟୋତି ହୀନ । ୨ ।

କାହିଁଗଲେ ବୋଲ ମୋର ଉନ୍ମାଦ ଲାଗଇ ।
କାହାକୁ ପୁଚ୍ଛିବି କିଏ ଦେବ ଏ ଉତ୍ତର । ୩ ।
ଗୁରୁକୃପା ସଖୀ ଏକା ସିନା ମୋ ଭରସା ।
ଦେଖାଇବେ ଉଦ୍ୟାନରେ ବେଣୁଧର ଆଶା । ୪ ।
( ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି—ବୃନ୍ଦେ )
ଇତି ବ୍ରଜଲୀଳା ସମାପ୍ତ ।

—❀—

# ଗ୍ରାମ୍ୟରସ

## ନାୟକ ଉକ୍ତି

( ରାଗ—ଚୋଡ଼ି ପରଜ । ତାଳ—ଝୁଲ )
ଛଇରୁ ଯାଉଛୁ ଜଣା ଏ ରସିକା ।
ଧୈର୍ଯ୍ୟ ତରୁ କି ସମ୍ଭାଳି ରହିବ ହୋଇ ତା କଟାକ୍ଷେ ହଣା । ଘୋଷା ।
ବୁଝିଲି ମାନବେ ଯତି ବ୍ରହ୍ମଚର୍ଯ୍ୟ ମତି କରିଦେବ ବଣା ।
କାହିଁ ଯିବେ ଗୁରୁ, ଯୁବକ ଗୁଆଁର ନାହିଁ ତାହାଙ୍କ ଠିକଣା । ୧ ।
ଦଣ୍ଡି ଦୋହଲଇ ମୁଣ୍ଡି ଦିଏ ମନ୍ତ୍ରୀ ପଣ୍ଡିତା ଚତୁର ପ୍ରାଣା ।
ଭୁଲି ନାହିଁ ଫଳ କୋମଳାର ସୁଲଭ ଯା ଝୁଲି ନକରଣା । ୨ ।
ଧରିତ ଟିକଲି କରିବାକୁ କଳି ବଳି ପୁରୁଷ ଲଳଣା ।
ଗରିମାକୁ ସାରିଦିଏ ଭ୍ରୂରୁ ଠାରି ନାଗବର ଜଗଜ୍ଜିଣା । ୩ ।
ମନ୍ଦ ହସି ଛନ୍ଦେ ବନ୍ଦେ ଗୀତ ପଦେ ଗାଇଲି ଯା ସୁଲକ୍ଷଣା ।
ସନ୍ଦେହ ତୁ  ଲି ବେଣୁଧର ମନୁ କାଢ଼ି କହିବାକୁ ସିନା । ୪ ।
( ଜ ବ  ବ ତାହା କହ, ହେ ପଣ୍ଡିତେ—ବୃନ୍ଦେ )

—❀—

( ରାଗ—ସାବେଶ୍ୱ । ତାଳ—ଆଠତାଳୀ )
ରସ ରଙ୍ଗିରେ, ରସା ମଧ୍ୟରେ ନାହିଁଟି ତୋ ଭାବ ଭଙ୍ଗିରେ ! । ଘୋଷା ।
ଋଷିମୋହନ ରମଣୀମଣି    ରସାଳଧା ମଞ୍ଜୁ ପିକବାଣୀ,
ରଙ୍ଗିମାଧୁରୀ ବାଳା ସିଂହାଣି, ରତି ପଣ୍ଡିତା ଛଇଳା ମୋ ପରାଣ ସଙ୍ଗି । ୧ ।
ରାକା ପତି-ବଦନା ତନୁଶ୍ରୀ    ରାଗ ଲତା ସୁନା ଚମ୍ପାତୋଷୀ,
ରମ୍ଭୋରୁ ମୋ କଣ୍ଠ ତଟମାଳୀ ରୂପ ରସିଆ କନା ଭୁ ନେତ୍ର କୁରଙ୍ଗୀ ରେ ।

ରଙ୍କନିଧି ଅଙ୍କ ସୁମଣ୍ଡନା    କଙ୍କତିକାଧର ହାସେ ଅନା,
ପଙ୍କଜବାସୀ ନବ ବଷାନା ଟଙ୍କଧର ପଡ଼ ମର-ତାପ ଦଅ ଗର୍ଜି । ୩ ।
ଭାଷେ କବିଚନ୍ଦ୍ର ବେଣୁଧର    ପାଦେ ଏତିକ ଦସ୍ତିମା ମୋର,
ହାସେ ମଣ୍ଡିଏ କେଳ ମନ୍ଦର, ଦୋଷେ ଦାନବର ଧନ ଯା ଅଛୁ ମାଗି ରେ ॥
(ବଚକ୍ଷଣରେ, ଧନା ତୋ ପ୍ରୀତି କେ ଗତି ଅଛୁ ଜଗତରେ-ବୃତ୍ତେ)

—୦—

(ରାଗ—ପରଜ । ତାଳ—ଝୁମ୍ପା)

ବାରିଜାକ୍ଷୀ ଠାରି ଧାଇଁଦେଲ ମୋ ବମ୍ଭକୁ ଯା ।
ଗାରିମାନ୍ଦ ଲୁଚି ହାରିଗଲି ଦେଖୁ ଦେଖୁ ଯା । ଘୋଷା ।
ମାରି ନୟନ କଟାରି    ନାଶ ଦେଲ ମର୍ମେ ଘାରି
ହରାରି ଭଗାରି ଶୁଣ୍ଡ ଭରଜ କୁମ୍ଭକୁ ଯା । ୧ ।
ପାରିନ୍ଦ୍ର ମଧ୍ୟା ନବୀନା    ହାରିଦ୍ର ଜିତ ବରନା,
ବାରିଦକୁନ୍ତଳା କଲ ଯେତେ ଆରମ୍ଭକୁ ଯା । ୨ ।
କରୀନ୍ଦ୍ରବର-ଗମନା    ହରିକଣା ସୁବଚନା
ସରି ହେବ କି ଅପ୍ସରା ତା ପ୍ରତିବିମ୍ବକୁ ଯା । ୩ ।
ଶିରୀଷ କୁସୁମ ଅଙ୍ଗୀ    ଗିରିଶ ମୋହିନୀ ସଙ୍ଗୀ
ଆରି ଦେଲ କବିଚନ୍ଦ୍ରେ ସ୍ମରରି ରମ୍ଭକୁ ଯା । ୪ ।
(ଏ ବୟସେ ତେଜି ଧନ ବଦେଶେ ରହିଲି—ବୃତ୍ତେ)

—୦—

(ରାଗ—ମାଳବ ଗୌଡ଼ା । ତାଳ—ଝୁଲ)

ରମା ନୂଆ ନାତୁଆଣି ! ଦେଖି ପଥର ହୋଇବ ପାଣିରେ । ଘୋଷା ।
ତୋ ଯେଉଁ ନାସିକା ଫୁଲ ରେ ରମା ଯୋଗେଶ୍ୱର ଚିତ୍ତ ଭୁଲ ।
ମଣିକି ନଗ୍ନଇ ନଗ୍ନଇ ଯା ସ୍ତନ୍ତୁ ମନମଥ ନାଥ ଝୁଲ ରେ । ୧ ।
ତୋ ଯେଉଁ କୁନ୍ତଳ ବେଣୀ ରେ ରମା କି ଦେବି ଉପମା ପୁଣି ।
ଜମ୍ବୁନଦ ଶୃଙ୍ଗ ସ୍ୱବର୍ଣ୍ଣ ମଧ୍ୟରେ ଖେଳେ କି କଳା ନାଗୁଣୀ । ୨ ।
ତୋ ଯେଉଁ ଭ୍ରୂଲତା ଗତି ରେ ରମା କି ଶୁର ଇନ୍ଦ୍ର ସମ୍ପତ୍ତି ।
ଠାରିଦେଲ ବେଳେ ଟାଳି ଦେଇ ହେଲେ ବ୍ରହ୍ମବ୍ରତ ଯତିମତି । ୩ ।
ତୋ ଯେଉଁ ମୁରୁକ ହସାରେ ରମା ନାହିଁ ନ ଥିବ ଏ ରସା ।
ଉପମା ଗୁଣରେ କର୍ପୂର ସୁଧା କି ସରିହେବ ଏକମସା ? । ୪ ।

ତୋ ଯେଉଁ ସ୍ଖଳିବା ଭଙ୍ଗୀରେ ଗମ ଗଜଦର୍ପ ହରେ ଭଙ୍ଗି ।
ମନ୍ଥର ଗମନେ ନିନ୍ଦୁ ଯୁବାଗଣେ ମନ୍ଥାଇ ମତ୍ତ କୃଶାଙ୍ଗୀ । ୫ ।
ତୋ ଯେଉଁ ମଧୁର ବାଣୀରେ ଗମା ସଚେତ କି ପୀୟୂଷ-ପାଣି ।
ଶୁଣନ୍ତେ ଶ୍ରବଣେ କି ସୁଖ ଲଭଇ କେ କହି ପାରେ କେ ଜାଣି । ୬ ।
ତୋ ଯେଉଁ ସଙ୍ଗୀତ ଗାନରେ ଗମା ନର୍ତ୍ତନ ବାଦନ ତାନ ।
ବୋଲେ ବେଣୁଧର ମଘବା-ପଦକୁ ଶିରେ କରେ ପାଦ ଦାନ । ୭ ।
( ଧନ ! ଘନ ରସଦାନ—ବୃନ୍ଦେ )

—*—

( ରାଗ—ମଙ୍ଗଳଆଶା । ତାଳ—ଝୁଲ )
ଆଜ ଗଜରାଜଗମନା କି ଯତନେ ଡାକି ରୁହାଁ ଦେଲା ରେ ।
ରୁହାଁ ଦେଲା ମନ ମୋହିନେଲା ରେ । ଘୋଷା ।
ଭଲ ତା ମୁରୁଛ ଦଶା ଲହ୍ମସା କଟାକ୍ଷ ଭଙ୍ଗିମା କାମ କରୁଷା,
ଧୀରେ ଧୀରେ ଭୁରୁ ନଚ୍ଚଇ ଚଳୁଥି ଦନ୍ତ ଆଲମ୍ବ ମୋ ସରି ଦେଲାରେ ।୧।
ତା ଯେଉଁ ମଧୁର କଥା ପଦନ, ମଧୁସର ପଣା ଲଙ୍ଗ ମାଦକ ।
ଅଖଣ୍ଡ ଗୀରତେ ରସ ବର୍ଷିକ, ତାର ନଥ ନାକଚଣା ଝୁଲାରେ । ୨ ।
ଧନ୍ୟ ଧନ୍ୟ ସେହି ବହି ହଜାଣି, ଚଢ଼ିଥିଲା କେଉଁ ଶ୍ରମେ କେ ଜାଣି ।
ନଗନା ଲଜିତ ସୁଲବଣ୍ୟଠାଣି ହାଲିକଲି ଉତ୍କଳିକା ମେଲାରେ । ୩ ।
*ରସେସ ଗୁଣେଷିକ ମଧୁସୂଦନ, ମନ୍ତ୍ରଣା ଯୋଗେ ମୋ ଉଙ୍କ ସଦନ ।
କକଣ ପାରନ୍ତା ସୁର ମଦନ, ଭଳି ମରିବାକୁ ବହି କଲାରେ । ୪ ।
( ଆଜ ଦ୍ୱିଜରାଜ ବଦନା ସ୍ୱପନରେ ଧରେ—ବୃନ୍ଦେ )

—*—

## ନାୟକ ଉକ୍ତି ।

( ରାଗ—ପରଜ । ତାଳ—ଝୁଲ )
କି ଯତନେ ରସିକା ରତନ ମୋ ଅଙ୍ଗକୁ ଠାରି ରୁହାଁ ଗଲାରେ ।
ରୁହାଁ ଦେଲା ମନ ମୋହି ନେଲା ରେ । ଘୋଷା ।
ଭଲ ତାର ମୁରୁଛ ଦଶା ଛଣା ସୁଧା ପଣା ବରଷା,
ଯାହା ଜଣା ବାଣୀ ମରମ ସିହାଣୀ ମାଣିକ୍ୟ ଅଧର ସ୍ୱଚ୍ଛଳା ରେ । ୧ ।

---

* ମଧୁସୂଦନ ମିଶ୍ର କବିଙ୍କର ଜଣେ ସଖା ଥିଲେ କବିର ପିଲାଦିନଅ ଗୀତ ସମୂହ ଯାହାକ ୧୦ ବର୍ଷଠାରୁ ରଚନା ହୋଇଛି ।

ଶଶୀହାସୀ ହାସିକା ଫୁଲ୍ଲ    ଶ୍ରେଷ୍ଠ ଚିତ୍ତ ମାନସ ଭୁଲ,
ବୁଲ୍ଲକ ଦଣ୍ଡିକ ଯା ମଣ୍ଡି ହୋଇଛୁ ଭଣ୍ଡିବାକୁ ପୁଁସ କୁଳ ବାଳାରେ । ୨ ।
ଜ ମୋହିନୀ ବେଲ ଲଗାଇ    ଈଶ୍ୱରତେ ହୋଇଲ ବାଇ,
ପଥାରେ ଓଢ଼ଣା ତାଙ୍କ ସୁଲକ୍ଷଣା କର୍ଣ୍ଣଚାଟଙ୍କ ଯା' ଝୁଲିଇଲ ରେ । ୩ ।
କାହାର ସେ ନବଅବଳା    ସୁକୁମାରୀ ମଦନ କଳା,
ବେଣୁଧର ପଟ୍ଟନାୟକ ତାହାର ବୁକର ପଣକୁ ଲେଖିଇଲ ରେ । ୪ ।
( କ ରଙ୍ଗରେ କୁରଙ୍ଗୀନୟନା—ବୁଝେ )



( ରାଗ—କଳ୍ୟାଣଗୌଡ଼ା । ତାଳ—ଝୁଲ )
ସେବୁଛୁ ହୃଅନ୍ତ ତୋ ପାଦ ଅଳତା ।
ଆରେ କନକଲତା ! । ଘୋଷା ।
ତ୍ରିପଦେ ହୋନ୍ତ ଅବା ଝୁଣ୍ଟିଆ ମୁଦ ।
କଲେ ତୁ ଅନୁକମ୍ପା କରୁଣାହୃଦ । ୧ ।
ଭଗ୍ନରୁ ଅଛୁ ମନେ ଏତେ ମାତର ।
ପାଲଟା ବୁହା ପଦେ ପକାନ୍ତୁ ଗାର । ୨ ।
ଲାଳସା ଅଛୁ ତୋର ଅଧର ପାନେ ।
ନକଟ ହୋଇଥିଲେ କହନ୍ତ କାନେ । ୩ ।
ବଦନ୍ତି ବେଣୁଧର ପଟ୍ଟନାୟକ ।
କସ ଉଗନ୍ତା ଅବା ଫୁଲସାୟକ ? । ୪ ।
( ପଲକ ପଡ଼ନାହିଁ ରଜନୀ ଯାକ—ବୁଝେ )



( ରାଗ—କଳ୍ୟାଣଗୌଡ଼ା । ତାଳ—ଝୁଲ )
କଳ-କୋକିଳଭାଷି !
କଳସ ମୃଦୁବାଣୀ ମୋ ପାଶେ ଆସି । ଘୋଷା ।
ରସିକା-ରତନରେ ଶଶୀବଦନ ! ହସି ବୁଝିଁପାଅ ରେ ପରାଣଧନ । ୧ ।
ମନକୁ ନଇଲେ ତୋ ବୁକର ପଣେ । ଅନବରତେ ଖଟିଥିବ ଗହଣେ । ୨ ।
ନବୀନାମଣି ଆରେ ଛବ ମଞ୍ଜୁଳା । କନକ ଲେଖା ମୂର୍ତ୍ତି ଲବଣୀ ତୁଲା । ୩ ।
କରୀଗମନା ହରମଧ୍ୟମା ଗୋରୀ । ହରିଣୀନେତ୍ରୀ କଲୁ ମୋ ଚିତ୍ତଚୋରୀ । ୪ ।

ସୁଖରାଶି ଦେଖାଇଛୁ ଯେପରି ମେଳ । ବାଣବଦନଣୀ ଭୂରୁ ଭ୍ରୂଭଙ୍ଗୀଶେଳ । ୭ ।
ଯେଉଁବନ ହେଲୁ ତୋ ବଣିବାଜନ । ଏ ସ୍ୱାନ ବେଣୁଧର ସେବା ଭଜନ ।୮।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେଶ )

—୦—

ରାଗ—ଜୟନ୍ତ । ତାଳ—ଝୁଲ )
କଳାପିକ-ବଚନା ରେ ! ଚଳାପାଙ୍ଗି ଗୋପୀ ।
ଝୁଲାଇଛୁ ତୋରେ ମନ ଏ ଦାସ ତୋଫେଇ ॥
ଉପରଙ୍ଗିଣୀ ରେ । ୧ ।
ଅକଳଙ୍କ ଶଶୀହାସୀ ଆନନ୍ଦ ପ୍ରୁଲ୍ଲନଣୀ ।
ମନର ପାଖା ଲେଉଛନା ଦେଖେ ପା ଯତନୀ । ॥
ଉପରଙ୍ଗିଣୀ ରେ । ୨ ।
ଯେଉଁ ସବୁକଥା ମନୁ ଶିବ ନ ପାରେପାର ?
ଦେଇକୁ ନ ଜାଣନ୍ତୁ ଦାବ ଗ୍ରହ ତୋର ମୋର ॥
ଉପରଙ୍ଗିଣୀ ରେ । ୩ ।
ଝୁଣଗିର ଗ୍ରାମେ ଗଲ ଦର୍ଶନ ଲାଳସେ ।
ରଣପୁର ବାସୀ ବେଣୁଧର ଗୀତେ ଭାଷେ ॥
ଉପରଙ୍ଗିଣୀ ରେ । ୪ ।
( ଧୀରେ ସେନ କାନନରେ କୃଷ୍ଣ ଚଳନ୍ତି—ବୃତ୍ତେଶ )

—❁—

ରାଗ—ମାରୁଆ । ତାଳ—ଆଠତାଳୀ )
ଏଣୁ ସ୍ନେହ ଥାଉ ମୋରେ ।
ଉପ ଜନନ୍ୟା ରେ ! ଏତେ କହୁଛୁ ତୋରେ । ଯୋଷା ।
ଯେତେବେଳେ ହେବ ଦେଖା ଦେଇ ମୋ ଜନମ ଲେଖା,
କୃପା କଣା ନ କରବୁ କଙ୍କରଠାରେ । ୧ ।
କେଉଁ ସୁକୃତରୁ ତୋତେ ଲଭିଛୁ ଧନ ମୁଁ ଏଥେ,
ପୁଣି ଏହା କ କରିବ ଦେବ ଗଣ୍ଡପାରେ ? । ୨ ।
ତୁ ମୋର ପ୍ରାଣ ସଙ୍ଗାଳି ତଳାର ଭାଜନ ମାଳ,
ଧନ ଜନ ସମ୍ବୋଧନ ନାହିଁ ସଂସାରେ । ୩ ।

ବୋଲେ ବେଣୁଧର କବି ତୋ ଚାରୁ ମୁରଲୀ ଛବି,
ରଖିଛୁ ଯତନେ ହୃଦେ ସଦା ଟଙ୍କେରେ । ୮ ।
( କାହିଁଗଲ ସେ ସରଗ— ବୃନ୍ଦା )

— ❋ —

( ରାଗ—ତୋଡ଼ିଫଳକ । ତାଳ— ଅଠତାଳୀ )
ଝସକେଶୀ ଗୃହାଁ ନେଫରେ ଚତୁରୀ !
ଝିନବସନା ମୁଁ ତୋ କୁଟା ଭିଖାରୀ,
ଝଳ ଜମ୍ବୁନଦ ଗୋରୀ ରେ । ଘୋଷା
ଝମକ ଝୁଣ୍ଟିଆ ମଦନ ଖୁଣ୍ଟିଆ,
କଲଣି ପାଗଳ ସର ।
ଝରଫୁଲ ଗନ୍ଧ ମଞ୍ଜୁଳା ତୋ ଶୋଭା,
ଦ୍ୱାରେ ଚନ୍ଦନ ମୋହନ ରେ । ୧ ।
ଝୁଲ ନାସା ମୋତି ବୁଲ ଖାଇ ଜ୍ୟୋତି,
ଯୁବାମତି ବଶକାରୀ ।
ଝଲସାଇ ଦେଲ ମୋର ମରମକୁ,
ସ୍ୱଚ୍ଛ ପଲ୍ଲବ ଅଧରୀ ରେ । ୨ ।
ଝିମିଟେ ତୋ ସଙ୍ଗ ଲଭିଲେ ଅନଙ୍ଗ,
ସରକୁଁ ହୁଅନ୍ତ ପାର ।
ଝଟକ ଦଶନା ଦୃକୁନ୍ଦ ଭଣନା,
ମନୁ ଲଜ ଦଅ ବାର ରେ । ୩ ।
ଝଲକା ଅଳକା ସାଜିବାକୁ ଏକା,
ଦେବ ମୁଁ ତୋ ବେଶଦାସୀ ।
ଝୁରେ ବେଣୁଧର କବି ନଶାକର,
ତୋ ଭାବ ଗତି ବନ୍ଧୁର ନେଇ । ୪ ।
( କୁମାର କୋଟ ଦେଖାଇ ଲେ ମଦନ—ବୃନ୍ଦେ )

— ❋ —

( ରାଗ—ମଙ୍ଗଳମଙ୍ଗୀତା । ତାଳ—ଝୁଲ )
ଆରେ ବାରଣଗତି !
ପିନା ମୁଁ ତୋର କଣା ବନ୍ଧୁର ମତି । ଘୋଷା ।
ମୋତି ଦଶନା ଯତ ମତ ମୋହନା ।
ଲଶାକର ଲପନା ଲଜ୍ଜ ରଦନା । ୧ ।

କମ୍ବୁକଣ୍ଠୀ ନୟନା ମେଘୁ ଜରଜା ।
ଟେଗ ବାଡ଼ିକୁ ଟପି ମୋ ମନମଙ୍କା । ୨ ।
ବଧୂଲି ଅଧର ରେ ମଧୁର-ହାସୀ ।
ଚଳାଇ ଭ୍ରୂନୁ-ବଲ୍ଲୀ ରସେ ଯା ହସି । ୩ ।
ନୟନ ପ୍ରାନ୍ତେ ଠାର ଦଣ୍ଡ ରେ ବନ୍ଧିଁ ।
ହବଭେଳୀ ରସିକା ନ କର ନାହିଁ । ୪ ।
ଷଟପଦ କୁନ୍ତଳା ଚତୁରମଣି !
ତୁଟାଅ ବେଣୁଧର ଭାବନାଶ୍ରେଣୀ । ୫ ।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେ )

—o—

( ରାଗ—ଖଇରବାଣୀ । ତାଳ—ଆଠତାଳୀ )
ଏତେକ ମାଗୁଣି ମୋର ରେ ।
ଏଡ଼େ ଦେବୁ ନାହିଁ ରମଣୀବର ରେ । ପଦ ।
ଏକାନ୍ତେ ବସନ୍ତ ପତି ତ ରସ ।
ଏକା ଯାଶ ଦେବୁ ନାଗଯାଣ୍ଟଶ ରେ । ୧ ।
ଏଣୀ-ନୟନା ରେ ବେଣୀ-ମଞ୍ଜୁଳ ।
ଏକାଦଶ ସ୍ତନା ରତି ପିତୁଳା ରେ । ୨ ।
ଏକଦା ପରିରମ୍ଭଣେ ମୋ ଭୁଲେ ।
ଏ କି ଗୋ ମାଁ ବୋଲି ଭାଷିଲୁ ଗେଲେ ରେ । ୩ ।
ଏକାଙ୍ଗ ତୋର ମୋର ହେଲୁ ଅନ୍ତେ ।
ଏଡ଼େ କଥା ତୁମ୍ଭ କହିକୁ ପ୍ରୀତେ ରେ । ୪ ।
ଏବେ ସେହି କୃପା ଭିକ୍ଷା ମୋ ସିନା ।
ଏ ବେଣୁଧରକୁ ରଖ ନୟନା ରେ । ୫ ।
( କି କଲି କି ମୁ ଚୁଛିଲି ରେ—ବୃତ୍ତେ )

—❀—

( ରାଗ—ତୋଡ଼ି । ତାଳ—ଆଠତାଳୀ )
ଟଳାଇ ଦେଲୁ ମୋ ଦମ୍ଭ ଚଳାପାଙ୍ଗୀ ବାଳାମଣୀ ।
ଦଳା ହରିତାଳ ଅଙ୍ଗୀ କର କଟାକ୍ଷେ ବନ୍ଧାଁଣୀ । ପଦ ।
କଳାକୁଣଳା ଛଇଳା ବଜାଇ ବାଜେଣୀ ବଳା,
ଆଳାପ ସଙ୍ଗିରେ କସ ହୃଦେ ନବେଶିଲୁ ପାଣି । ୧ ।

ଲୀଳାଚଳପ୍ରିୟା ଦୃଷ୍ଟି    ଉ ସ୍ୱଜନଙ୍କରେ ଧ ନେଇ,
ପଳାଇ ଗଲ ସତେନ ଯତନେ ନେତ୍ରାଇ ଠାଣି । ୨ ।
ସେ ଲାବଣ୍ୟ କଧି ଜଗ    ନ ଥିବ ଏ ଜଗତ୍ରୟ,
ଟୁଙ୍ଗଳ ନାମା ନେତ୍ରର ଭୁବଳ ଜାଣେ ସିଦ୍ଧାଣୀ । ୩ ।
ଜଳାଜର ଲମନାକୁ    ଜଳାଇ ମୁଁ ଉଲ୍ଲ ନାକୁ,
ବୋଲାଇ ନେଉ ଉ ଧରେ ଭରସ ବେଣୁଧର ଭଣି । ୪ ।
( ଦେଖିଲେ ଦେଖିବ ପଦ—ଚୂଡ଼ା )

—※—

( ରାଗ—ଚେଉଁପରଜ । ତାଳ—ଝୁଲା ।
ଏ ବାଳା ସମ ନାହିଁ ଜଗତେ ରେ ସଙ୍ଗାତ !
କୋଟି ବ୍ରହ୍ମାଣ୍ଡର    ସୁନ୍ଦରୀ ହୋଇବ,
ପର ମୋର ମନେ ମଣେ ରେ । ପଦ ।
ଯେତେବେଳେ ମନ୍ଦେ    ମନ୍ଦ ହସି ଦେଇ
ଗୃହିଁଗଲ ନେତ୍ର ଠାର ।
ସରଗ ଭୁବନୁ    ଖସାଇ ଦେଲା କି,
ସୁରପତି ଶୋଭଶିଖ ରେ । ୧ ।
ଅଧରେ ଚଦନ    ଲୁପି ଯେତେବେଳେ,
ସଖୀକାନେ କି କହିଲା ।
ସେକାଳେ ମଣିଲ    ମଦନ ବିଜୟ,
ମନ୍ତ୍ରର କି ଫୁଙ୍କି ଦେଲା ରେ । ୨ ।
ଯେତେବେଳେ ନାସା    ପୁଷ୍ପାକୁ ଫୁଲାଇ,
ଭାଷା ଉଚ୍ଚାରିଲା ଧୀରେ ।
ସେକାଳେ ମଣିଲ    ବିପଞ୍ଚୀ ଗୁଣା କି,
ନ ଉଚ୍ଚବ ଦେସ୍ୱାକରେ ରେ । ୩ ।
ଯେତେବେଳେ ଗମାଁ    ଗେଲାଇ ଗେଲାଇ,
ସଖୀ କନ୍ଧେ ହସ୍ତ ଦେଇ ।
ଚଳ କଲା ଅଙ୍ଗ    ମନ୍ଥରେ ସୁମନ୍ଦା,
ମତ୍ତଗଜଙ୍କୁ ବଳ ଛଳ ରେ । ୪ ।

ବୋଲେ ବେଣୁଧର ଜଡ ନଶାକର,
କରିଥିଲେ ବହୁ ଚଟ ।
ତାହା ଭୁଲେ ଥରେ ମିଳନ ହୋଇବ,
ଘୁଞ୍ଚିଯିବ ମାର ତାପରେ ।୫।
( ତୁଷି ମୁଁ ବସିଲି ଗେଲେ—ବୃତ୍ତେ )

—❋—

( ରାଗ—ଭଟିଆରୀ । ତାଳ—ଏକତାଳୀ )
ଆରେ ଗୁଣମଣି ! ଆରେ ପ୍ରାଣମଣି !!
ମୋର ମନ-ରତନକୁ ନେଲୁ କିଣି । ଘୋଷା ।
ଆଖି ଆଖି ମେଳ ହେବାଠାରୁ ହକାହେଲି ତୋରେଟି ଉମ୍ଭୋରୁ,
ପ୍ରୀତ ବଚକ୍ଷଣା ସୁରସନପୁଣା ବଚସ୍ କ ବଚନେ ନ କରୁ ? ।୧।
ଝୁମ୍ମୁଁ ଝୁମ୍ମୁଁ ହୋଇ ଚାଲିବାର ପ୍ରେମ ମାଦକରେ ଫୁଲିବାର,
ବୃଲକ୍ଷା ବସଣୀ ଝୁଲାଇବା ଠାଣି ତିନ ଭୁବନେ ନଥିବ କାର ।୨।
ମୁ ଚୁକ ମୁ ଚୁକ ହସିବାର ଅଧରେ ଦଶନ ଦଂଶିବାର,
ଟେଲିଇ ଗେଲଇ କଟି ଦେହଲାଇ ସଖୀରେ ମୋ ଅଙ୍ଗେ ବସିବାର ।୩।
ଏ ପିଣ୍ଡରେ ଥିବା ଯାଏଁ ଜୀବ ତୋ ଭାବ କ ମୋ ପାଶୋରିଯିବ,
ଗାନ ବେଣୁଧର ଜଡ ନଶାକର କେତେ ବା ସେ ଶୋଭା ବରନିବ ? ।୪।
( ଆଗୋ ଶ୍ୟାମ ସ୍ନେହ—ବୃତ୍ତେ )

—❋—

( ରାଗ—କାଫିବାଣୀ । ତାଳ—ଆଠତାଳୀ )
କ୍ଷମା ଦୟିମାରେ ! ଜଣାଉଛି ଏତେ ।
କ୍ଷୀର ମାର ଢାଳେ ଚିର ସୁଖୀ କର ମୋତେ । ଘୋଷା ।
କ୍ଷମାକରମୁଖୀ ତୁ ମୋ ସକଳ ସମ୍ପତ୍ତି ।
କ୍ଷୟକର ମାର ଦର ମଞ୍ଜୁଳାଚିତ୍ତ ! ।୧।
ଦଣ୍ଡଦ୍ୟୁଷ୍ଟ ବରନା ରେ ! ନକର ବିରାଗ ।
କ୍ଷାମ ହେଲିଣି ତୋ ବିନେ ନେଖ ଚମାଇଣ ।୨।
କ୍ଷିପ୍ର ଆଦେଶିଲେ ଧନ ସାଜଦେବ ବେଶ ।
କ୍ଷାଳ ମୃଦୁ ଚରଣେ ମୁଁ ଦେବ ଲାକ୍ଷାରସ ।୩।

କ୍ଷୁଧାର୍ତ୍ତୀଙ୍କ ସୁଧା ଚଖାଅ ତୋ ଜଳାଧରୁ ।
କ୍ଷେପଣକ ପର ଶର ଶରଚାପ ସରୁ । ୪ ।
କ୍ଷୋଭଦବ କ୍ଷୁଭିତ ମୁଁ କ୍ଷୀଣଜୀବୀ ପିନା ?
କ୍ଷୀଣ ମଧ୍ୟା ବୈଷ୍ଣବଧର ହୃଦଦ୍ୱାର କନା । ୫ ।
( ଜଣା ପଡ଼ଲ୍ ମାଁ ଏ କପଟ ଗିର—ବୃନ୍ଦେ )

—୦—

( ରାଗ—ବସନ୍ତ କେଦାର । ତାଳ—ଝୁଲ )

ତୋ ଶଶି ମୋତେ କସ ଜଣା ରେ ପ୍ରୀତି ପ୍ରବୀଣା ।
ତୋ ଭଙ୍ଗି ପିନା ଜଗଜ୍ଜିଣା! ରେ । ଘୋଷା ।
ଠାରି ଦେଇ ନେତ୍ରାନ୍ତ, ପ୍ରହାରୁ କାମ କୁନ୍ତ
ହରାଇ ମାଳା-ନାକରଣା ରେ । ୧ ।
ନାସା ପୁଡ଼ା ଫୁଲାଇ, ଚଷ୍ଟ ନଥ ଝୁଲାଇ,
କରାଇ ଦେଉ ବୃଷ୍ଟି କଣା ରେ । ୨ ।
ତୋ ମୃଦୁ ମନ୍ଦ ହାସ, ସୁଷ୍ଠାକ୍ଷଣ ଚନ୍ଦ୍ରହାସ,
ଯୁବା ପୁଂସଙ୍କ ଦମ୍ଭ ହଣା ରେ । ୩ ।
କହ ଶଶାଙ୍କ ବୋଲେ, ବୈଷ୍ଣବର ପଣେ ହେଲେ,
ତୋ ଶ୍ରୀସ୍ମମୁଖ ଥରେ ଅଣାରେ । ୪ ।
( ଆଜନ ଅଜ ଇଶି ନୂଆ ରେ—ବୃନ୍ଦେ )

—※—

( ରାଗ—ଲଳିତ କେଦାର । ତାଳ—ଝୁଲା । )

ନବ ଛଇଳୀମଣୀ ! ଆହା ଧନ୍ୟ ତୋ ଆଉ ବୃଦ୍ଧିଣୀ ରେ । ଘୋଷା ।
ଧନ ମନ ଭୁଲା ଛଇ ରେ, ରମା ! ନାହିଁ ନ ଥିବ ଏ ମହୀ ।
କନକ ଗୋଷକ ଭୃତ୍ୟେ ମୁଁ ସକଳ ମାନସକୁ ନ ଯୋଗାଇ । ୧ ।
କ · ଯାରେ ଦେଖିଲି ଆଜ ରେ, ରମା ! ତୋ ଗଣ୍ଡଦର୍ପଣ ମାଜ ।
ମୃଗମଦପଙ୍କେ ଶଷ ମୁଁ ଲେଖନ୍ତି ହୁଅନ୍ତି ଯେବେ ବୁ ରାଜ । ୨ ।
ନିତ ନୂଆ ନୂଆ ବେଶରେ, ରମା ! ସଜାଉଥାନ୍ତି ଅବଶ୍ୟ ।
ଏହି ସ୍ୱକରରେ ମୋ ହନ ଯାଆନ୍ତା ସେହି ଯୁଗଳ ମହେଶ । ୩ ।

ହୀନ ବେଣୁଧର ଭଣେ ନେ, ସ୍ୱାମୀ ! ରଖ ନେମ ନେହ ନେତା ଗହଣେ ।
ମନ ଜାଣି ସଦା ପାଦେ ଛନ୍ଦିଥିବ ଯାବତ ଜୀବନ ପବନେ । ୪ ।

( ନୂଆ ନାଗର ଛନ୍ଦ—ବୃତ୍ତେ )

—❀—

( ରାଗ—ଦେଶ ଖ ପରଜ । ତାଳ—ଏକତାଳୀ )

କେ ସେ କି ରସିକରେ ସାର ହେ, ସୁଜନେ ! ( ସେକ )
ପକ୍ୱଚୂତପନସ ବରନାରି ମାଂସ ନୂଆ କେବେ ନାହିଁ ଯାର । ଘୋଷା ।
କର୍ପୂର ଚନ୍ଦନ ଅଗୁର ମନ୍ଦ ନ ସୁବାସ କୁସୁମ ହାର ।
ଶୟନ କାଳରେ ଅଳ୍ପୁଲା କୋମଳା ନ ଦେଲେଟି ଉପହାର ହେ । ୧ ।
ବାସ ଗୁଜୁରାଟ ଲବଙ୍ଗ ମିଶାଇ ଖିଲକ ଭାଙ୍ଗି ଦେବାର ।
ଏମନ୍ତ ମନ୍ଥର ଗମନା ସୁମନା ଅନ୍ତର ହୋଇଥିବାର ହେ । ୨ ।
ଚତୁରକାର ମାର ମୃଦୁବାଣୀ ଭଣି କଟାକ୍ଷେ ଅନାଇଁବାର ।
ଚରଡସାମୁଖୀ ପରିହାସୀ ବାଳା କୋଳରେ ନାହିଁ ଯାହାର ହେ । ୩ ।
ଆଉ ସୁମଧୁର ଲଳିତ ଭାଷାରେ ଚଟାଣ୍ଡ ଦେବା ନେବାର ।
ଏ ଭାବ ପୀରତି ଜାଣିଥିବା ଜନ ଥିବା ନ ଥିବା ପ୍ରକାର ହେ । ୪ ।
ସଙ୍ଗୀତ ଇଙ୍ଗିତ ଗୀତ ଗାନେ ରତ ହୋଇ କାଳବଞ୍ଚିବାର ।
ଏଥିରୁ ବଞ୍ଚିତ ଯୁବକ ଯେ ହେଲା ଜୀବନରେ ନାରଖାର ହେ । ୫ ।
ବାହୁ ଶିକୁଳିରେ ବନ୍ଧାବନ୍ଧ ଦଣ୍ଡ ନ ଲଭିଛି ଅଙ୍ଗ ଯାର ।
ବେଣୁ କବିଚନ୍ଦ୍ର କହେ ସେ ଅଧମ କାହିଁରେ ନ ପଡ଼େ ଗାର ହେ । ୬ ।

( ଗଣିତ ଗଲ୍ପ ଇଥା ରେ ସଙ୍ଗୀତ—ବୃତ୍ତେ )

—୦—

( ରାଗ—ଆନନ୍ଦ ଭୈରବୀ । ତାଳ—ଏକତାଳୀ )

ହସି ଚାହିଁ ଯାରେ ଧନ ! ରସିକା ରତନ ।
ବଶୀକରଣ ମନ୍ତ୍ର ତୋ ମୃଦୁ ବଚନ । ଘୋଷା ।
ଅସିତ କୁଞ୍ଚିତ କେଶୀ ଶଶୀହାସୀ ମୃଦୁଭାଷୀ,
କେଶୀ ଙ୍କ କଦମ୍ବ ନ ଜାଣୁ କ ମୋର ମନ । ୧ ।
ସୁଶୀଳା ଅତି ପଣ୍ଡିତା ଋଷିମୋହ୍ନା ପ୍ରେମଲତା,
ତୁ ବିନା ମୋ କଣ୍ଠଭୂଷା ହେମମାଳ ଯେନ । ୨ ।
ଅଶୀତଲଉଠ କପୂସୀ ସବୁଙ୍କୁ ଆସିଛୁ ଖସି,
ସଞ୍ଚିତ ଅଧରାମୃତ ରଙ୍କ ମୁହିଁ ଦାନ । ୩ ।

ଭଷିଲ୍ଲ ଏ ବେଣୁଧର ଦାସୀ ଭୁଲିଲ ଜଣେ କର
ନାଶି ମୋ ଅଙ୍ଗୁ ଅନଙ୍ଗ-ତାଡ଼ନ ବନ୍ଧନ । ୪ ।
( ମୋଟେ ଲଗାନାରେ ସଖି, ବ୍ରଜ ବଧୂ ଲଟ—ବୃତ୍ତେ )

—❋—

( ରାଗ—ଝିଂଝୋଟ । ତାଳ—ଆଠତାଳୀ )
ତୋ ରୀତି ଆଜ ନ ପାରେ ଜାଣି ମୁଁ ।
କାହୁଁ ଶିଖିଲୁ ଏ ଗୁମାନ ଠାଣି । ଘୋଷା ।
ପରାଣ ସଙ୍ଗାତ ଆରେ ନବୀନା, ସବୁଗେ କାହିଁତେ ବଡ଼େଇକ ଅନା । ୧ ।
ଲଳବଙ୍ଗ ରାଜ ହଂସ ଗମନା, ଝର ପୀରତିକି କେ କଲା ମନା ! । ୨ ।
ପ୍ରେମ ଧେନା ଆରେ କୁନ୍ଦଦଶନା, କିଣା ଜନେ ପିଠି କରି ବସନା । ୩ ।
ଛବି ମଞ୍ଜୁଳାରେ ସୁରସଦାୟୀ, କବିଚନ୍ଦ୍ର ଦାଅ ଚରଣ ଗୁହରେ । ୪ ।
( ଯାହାର ଯେତୁ ପରାଣ ଧନ—ବୃତ୍ତେ )

—❋—

( ରାତ କଳାବେଲ୍ଲି ! ତୋ ସୁଦୟା ଯୋହ୍ନଲେ କଣ୍ଟସୂ ମଳ । ପଦ ।
ଜାଣରେ ସୁକୁମାରୀ ନୂଆ ଛଇଳା ।
ଆଣନା ମନେ ଏହା ସାର-ମହୁଲା । ୧ ।
ରସ ହୃଦୟା ଆରେ ଜୀବନ ଧନ ।
ତୁ ମୋର ପରା କଣ୍ଠ ତଟ ରତନ । ୨ ।
କାହିଁକେ ଏ ଗୁମାନ ମାନେ କି ତୋତେ ।
ବିବେକୀ ବର ବୁଝ ଆପଣା ଚିତ୍ତେ । ୩ ।
ନ ଜାଣି ଯେବେ ତୋର କରିଛୁ ଦୋଷ ।
ଏହି ଗୁହାରକୁ ନକର ଏଡ଼କ ରୋଷ । ୪ ।
କହଇ ବେଣୁଧର ପଟ୍ଟନାୟକ ।
ମଣ୍ଡିଦେ ହସି ମୋର ଅଙ୍କ ପଲଙ୍କ । ୫ ।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେ )

—o—

( ରାଗ—ଖଣ୍ଡ କାମୋଦୀ । ତାଳ—ଆଠତାଳୀ )
ଏ ନୂଆ ଚୁଷାଣୀ କେ ଶିଖାଇଲା ରେ,
କହ୍ନୁଆ ! ବର ନବ ଛଇଳା ରେ । ଘୋଷା ।

ତମେ କି କାଳେ ତ ନ ଥିଲ ଦେଖି ।
ଚନ୍ଦ୍ରମୁଖ ଗୋଟି ଯିବାର ଶୁଖି ରେ । ୧ ।
ଶୁଣି ଥିଲୁ କାନ ନାୟିକା ମାନ ।
ଏବେ ଅନୁଭବ କଲ ସେମାନ ରେ । ୨ ।
ଲାଜରେ ତଳକୁ ମଥା କଲରେ ।
ମଣିଥିଲ ଆଜ ସେହ୍ବ ପ୍ରକାର ରେ । ୩ ।
ହାସ ଭିନ୍ନ ବେଷ ବଦନେ ଗୃହ୍ନିଁ ।
କି ବିପରୀତ ଏ ବୋଲ ମଣଇଁ ରେ । ୪ ।
କହେ ବେଣୁଧର ପଣନ୍ତ ଧରି ।
ଶୁଣା ଗୁଣା ବାଣୀ ଜବା ଅଧରୀ ରେ । ୫ ।
( ବଳା ନା ସ୍ନେହ କଳା ନାଗରେ—ବୃତ୍ତେ )

—o—

( ରାଗ—ଖଣ୍ଡ କାମୋଦ । ତାଳ—ଆଠତାଳୀ )

ମୋଠାରେ କାହିଁକି ଏତେ ଗୁମାନରେ ।
ଜୀବନ ଧନ କହ ବହନ । ଘୋଷା ।
ନିରତେ ନୟନୁ ଝରାଉ ବନ, ଶୁଣିଛୁ ଶ୍ରୀ ମୁଖ-ପୂନଅଁ ଜହ୍ନ ରେ । ୧ ।
ମୋ ନାମେ କେ କହି ଛଳ ବଚନ, ବଦଳାଇ ଦେଲା ତୋହର ମନ ରେ ॥
ଗଣ୍ଡି ମଣ୍ଡି ବାରୁ କର ନଳନ, ମୋ ହୃଦ ଭିତର ଦଗଧ ଧନ ରେ । ୩ ।
କଣା ପରଜନେ ନ ଭାବ ଆନ, କହେ ବେଣୁଧର ଦୟିମା ଦେନ ରେ । ୪ ।
( ସଜନ ! ଶ୍ୟାମ ଶ୍ରୀଅଙ୍ଗ ଠାଣି—ବୃତ୍ତେ )

—o—

( ରାଗ—ଝିଂଝୋଟ । ତାଳ—ଝୁଲା )

ପ୍ରାଣ ବାନ୍ଧବ । ଆଜିତ ଭିନ୍ନେ ମୁଖ ଛବ । ଘୋଷା ।
କହୁଛୁ କେଉଁଦୋଷ    ମୋଠାରେ ଏତେ ରୋଷ,
ବହୁଛୁ କସ ମନେ ଭାବ । ୧ ।
ନୟନୁ ମାର ଧାର    ବହି ଅଜ୍ଞାନ ଗାର
ଯାଉଛୁ ପରା ଧନ ଲଭ । ୨ ।

ଦାସ ଜନ ମୁଁ ତୋର ପାଶେ ଅଛୁ ହାଜର,
ଆଜ ମୁଁ ବଦେଶୀ ହୋଇବ । ୩ ।
ଏଣିକ ବାଳାମଣି ତୋହର ମନ ଜାଣି,
ତୁମ୍ଭଙ୍କରେ ଅନୁସର ଥିବ । ୪ ।
ମାନ ତେଜ ନବୀନା ଆନ କେ ମୋତେ ଵନା,
କହଇ ବେଣୁଧର କବ । ୫ ।
( ଆଜତ ବେଗ କେତେ ତେଗ—ବୃତ୍ତ )

—o—

( ରାଗ—ଙ୍ଖର ବାଣୀ । ତାଳ—ଏକତାଳୀ

ମୁଁ କ ଦେଖିଲ ଆଜ ନୂଆ ସ୍ତରେ ।
ଶଶୀହାସି ବସିବାର ମୁଖ ପୋଛରେ । ଘୋଷା ।
ଗଣ୍ଡ ମଣ୍ଡଳେ ପାଣିକ ମଣ୍ଡି ନୟନୁ ପାଣିକ,
ମୁଞ୍ଚିବାର ବନଜାକ୍ଷୀ ମୁଖ ପୋଛ ରେ । ୧ ।
କରରୁହେ ସହଚରୀ ଦାରୁଣ ସ୍ତର ଆଚରି,
ବନସ୍ତ ଯା ନ ବେଳଲ ମୁଖ ପୋଛ ରେ । ୨ ।
ଗୃତୁକ କଣ୍ଠୁ ମଣି ରମଣୀ ଶିରୋମଣି,
ପଦେ ବାଣୀ ନ ଭାଷିଲ ମୁଖ ପୋଛ ରେ । ୩ ।
କବ ଚନ୍ଦ୍ର ବେଣୁଧର ଭାଷଇ କ ଦୋଷେ ମୋର,
ତେଜଲ ନାହିଁ ଗୁମାନ ମୁଖ ପୋଛ ରେ । ୪ ।
( ମୁଁ କ ଶୁଣିଲ ଆଜ ନୂଆ କଥ ରେ—ବୃତ୍ତେ )

—※—

( ରାଗ—ଝିଂଝୋଟ । ତାଳ—.ଏକତାଳୀ )

ବନାଦୋଷେ ରୁଷି ବସନା, କୁନ୍ଦଦଶନା ! ଘୋଷା ।
ଅନା ରେ ମୀନନୟନା ସରଗଲଟି ତୋ ବନା,
ଏକ ସ୍ତ ଗଜଗମନ । ୧ ।
ଆସ ରେ ରଙ୍କ ରତନ ଦାସରେ ଏକ ଗୁମାନ,
ଶରଦ ଚନ୍ଦ୍ରମା ବଦନା । ୨ ।

ଯେବେ ମୋ ଶବସୁ ଗିର କହୁଛୁ ଧରି ତୋ କର,
ମଞ୍ଜୁ କଳକଣ୍ଠ ବଚନା । ୩ ।
ଗୀତେ ବେଣୁଧର ଭଣି ରସିକ ବଚନ ଶୁଣି,
ଗୁମାନ ତେଜଲ ନବୀନା । ୪ ।
( ଭଲ ଭୁଲଲୁ ତା ପ୍ରୀତିରେ—ବୃତ୍ତ )

—※—

( ରାଗ—ନଟକୁରଙ୍ଗ । ତାଳ—ଖେମଟା )
ରେ ମତ୍ତଗଜଗତି କମା ଏ ଗୁମାନରେ । ପଦ ।
ଆସରେ ରଙ୍ଗରଚନ, ଦାସରେ କାହିଁକି ମାନ,
ପାଶରେ ଜଣାଉଛୁ ଭାଷ ମୃଦୁ ବଚନରେ । ୧ ।
ହେଉ ମଧ୍ୟମା ନବୀନା, ଧରଉଛି ମୁଁ ତୋ ଚରଣା,
ହରିଣୀନେତ୍ରୀ ଅନା ପ୍ରସନ୍ନ ନୟନାରେ । ୨ ।
କାହିଁକରେ ଗୁଣମଣି, ରୁହିଁ ବସିଛୁ ଧରଣୀ,
ନାହିଁତ କାଳି ପରି ଆଜ ମୁଖ ପ୍ରସନ୍ନରେ । ୩ ।
କବିଚନ୍ଦ୍ର ବେଣୁଧର, ଭାବ କହେ ଏଥୁ ଗିର,
ଛନ୍ଦିତ ହସ ହସେ ତୋ ଚନ୍ଦ୍ର ବଦନରେ । ୪ ।
( ଏ କଞ୍ଜ ଖଞ୍ଜନାକ୍ଷୀ କୁଞ୍ଜର ଗମନା ରେ—ବୃତ୍ତ )

—※—

( ରାଗ—ତୋଡ଼ି । ତାଳ—ଏକତାଳି )
ରଙ୍ଗରଚନ ପଲଙ୍କେ ବସ ଶଙ୍କର ଧୂର୍ତ୍ତନାଶିନୀ ।
ପଙ୍କଜାକ୍ଷୀ ତୁ କଙ୍କର ଜନେ କାହିଁକି ହେଉ ଗୁମାନୀ । ୧ ।
ମୁଁ କର ଧରି କହୁଛି ରୋଷ ନ କର ତୁ ନବରସରେ ।
ସୁକରଜରେ ମଣ୍ଡି ନ ଛର ଆସରେ ଧନ ପାଶରେ । ୨ ।
ବାସକଭୂଷିତଦାୟିନୀ ଆସ ଆସ ମୋ କୃଦନାଙ୍ଗୀରେ ।
ମଞ୍ଜୁଳ ମୃଦୁହାସ ଦର୍ଶନ କରାଅ ରସ ରଙ୍ଗିରେ । ୩ ।
ଶ୍ରୀ ବେଣୁଧର ପଟ୍ଟନାୟକ ଭାଷଇ ଏଥୁ ଭାବରେ ।
ମହୀମଣ୍ଡନା ମୋତେ ଦଣ୍ଡନା ଦାରୁଣ ମନ କ୍ଳେଶରେ । ୪ ।
( ଆଜ କି ଶ୍ୟାମ ଆସିବେ ସତ୍ୱରେ—ବୃତ୍ତ )

—※—

( ରାଗ—ମାରୁଆ । ତାଳ—ଆଠତାଳି )

କ୍ଷମାନିଧାନ ରେ ରମା ସୁଷମାନନ !
କାହିଁକି ହେଲୁ ଗୁମାନ ? । ଘୋଷା ।
କ୍ଷଣଦାକାନ୍ତ ନୟନା, କ୍ଷୀଣୋଦରୀ ପୀନସ୍ତନା,
କ୍ଷିତିମଣ୍ଡନା ମଞ୍ଜୁଳା ମଥାର ମଣି । ୧ ।
କ୍ଷଣେ ନ ଦେଖିଲେ ମୋତେ, କ୍ଷୋଭ କରୁଥାଉ କେତେ
କ୍ଷପାକୁ ତୁ ଯୁଗସମ ମଣୁ ସଜନ । ୨ ।
କ୍ଷିତିମଣ୍ଡନା ତୁ ଦେଖ, କ୍ଷିତିକି ନ ଚୀର ଦୁଃଖେ,
କ୍ଷୀରୋଦର ମୁଖ ତାକୁ ବସନ ଘେନ । ୩ ।
କ୍ଷିପ୍ରେ ଘେନ ମୋ ବଚନ, କ୍ଷାନ୍ତ କର ଦୋଷଚତ୍ତ,
କ୍ଷୁଧିତ ବେଣୁଧରକୁ ଦୟା ତୋ କନ୍ତ । ୪ ।
( ଶ୍ୟାମ ନାଗର ହେ ବାମନୟନା ଭୁଲ—ବୁଲେ )



( ରାଗିଣୀ—ଝିଂଝୋଟ । ତାଳ— ଏକତାଳୀ )

ସାରଙ୍ଗ ଗୋରି !
ସାରଙ୍ଗେ ଯାଉଛୁ ସତରେ । ଘୋଷା ।
ସାରଙ୍ଗ ନୟନା ଆସ, ସାରଙ୍ଗକେଶୀ ନ ରୁଷ,
ସାରଙ୍ଗଗଣ୍ଡି ମୁଁ ତୋରିରେ । ୧ ।
ସାରଙ୍ଗହାସୀ ସାରଙ୍ଗେ, ବସ ନା ସାରଙ୍ଗ ରଙ୍ଗେ
ସାରଙ୍ଗ ହର ଚତୁରରେ । ୨ ।
ସାରଙ୍ଗ ମୁଖୀ ସାରଙ୍ଗ ଅଙ୍ଗୀ ସାରଙ୍ଗ ସାରଙ୍ଗ
ଶୁଣା ଥରେ ସାରଙ୍ଗାରି ରେ । ୩ ।
ସାରଙ୍ଗେ ଭୁରୁ ନଚାଇ ସାରଙ୍ଗେ ରଖ ବଞ୍ଚାଇ,
ବେଣୁଧରକୁ ବର୍ବର ରେ । ୪ ।
( ପ୍ରାଣସଙ୍ଗିନ ! ଏହା ଲେଖା ଥିଲା ଭାଲରେ—ବୁଲେ )



( ରାଗ—ହର ହର ପ୍ରିୟା । ତାଳ—ଆଠତାଳୀ )

ଶରଦ ଶଶୀବାସି କାର୍ତ୍ତିକ ଅଛୁ ରୁଷି,
କହ ଜନା ମୋ ଧନ ଜୀବନ ରେ । ଘୋଷା ।
ବର ବରନା ଗୋଷ୍ଠ କରନା ପର ପଶ,
ତେଜ ତୁ ମନ୍ଦ ଏବେ ଗୁମାନ ରେ । ୧ ।
ଧରସିଜ ଲପନା କର ବନନ୍ତ ଘେନା,
ହର ପର ପରମ କଷଣ ରେ । ୨ ।
ଧରମଣ୍ଡନା ନର— ଖିଲେ ତୋ ପଶକର,
କାହାର ହେବ ବୁଝ ସୁମନ ରେ । ୩ ।
କହଇ ବେଣୁଧର ପଞ୍ଚନାୟକ ଅର-,
ଜନା ଅଙ୍ଗୀ ଗ୍ରମାରଚନ ରେ । ୪ ।

( କହ୍ନିଲେ ହେଲେ କେତେ—ବୃତ୍ତେ )

— ❋ —

( ରାଗିଣୀ - ହିଂଝ୍ଝଟ । ତାଳ—ଏକତାଳୀ )

ରମଣୀମଣି ! ତୁ ମୋର ପ୍ରୀତି ସାରଣି ରେ । ଘୋଷା ।
ନସୁଇ ଭୂରୁ ଲତିକା ନାଶ ମୋ ମନର ଢକା,
ନବ ରସିକା ସିହାଣି ରେ । ୧ ।
ନକଟେ ତୋର ମୁଁ ବନ୍ଧା ନ ମଣ ଆନ କୋଦ୍ଧଦା,
ନର୍ଦ୍ଧ'ପ୍ସା ନୂତ ମିତଣି ରେ । ୨ ।
ନାସିକା ପୁଞ୍ଜା ଫୁଲଇ ନଅ ମୋ ମନ ମୁଲଇ
ନଖେ ନ ଚର ଧରଣି ରେ । ୩ ।
ନୟନ ଭର କହୁଛ ନ ପିଙ୍ଗ ଦୁନ୍ଦୁ ମୁରୁଛୁ,
ନଶି ବଞ୍ଚ'ସୁ ଖ ପୂଣି ରେ । ୪ ।
ନାୟକ ବଚନ ଶୁଣି ନେହାନ୍ତେ ରାଜ ତରୁଣୀ,
ମର୍ମେ ବେଣୁଧର ଭଣି ରେ । ୫ ।

( ଭଜ ଭୂଲଲୁ ତା ପ୍ରୀତରେ—ବୃତ୍ତେ )

— ❋ —

( ରାଗ—ଦକ୍ଷିଣ ବରାଡ଼ି । ତାଳ—ଝୁଲା )

ଜାଣିଲି ଜାଣିଲି ଧନ ଆଜ ତୋ ଚରିତ୍ର କି ମୁଁ ।
କେତେ ବେଗେ ପାଶୋରି ଦେଲୁ ତୁ ପୀରତିକି । ପଦ ।
ତୋ ଚରଣ ସେବା ବିନେ ମୁଁ ତ ନ ଜାଣଇଁ ଆନେ,
ଦେଖି ନେତ୍ର ତେଜି ଥାଇ ଶୋଭା ମୂରତିକି ମୁଁ । ୧ ।
ମନ୍ଦହାସୀ କୁନ୍ଦଦନ୍ତୀ ବସିଲୁ ଯା ମୁଖ ପୋତି,
ଶୁଣାଇଲୁ ନାହିଁ ପଦେ ବାଣୀ ଭାରତୀକି ମୁଁ । ୨ ।
ବିଲୋକି ତୋ ଚନ୍ଦ୍ରାନନ ବାସବ ପଦ ନିନ୍ଦନ,
ମଣିଥାଇ ଜୀବଧନ ସାମାନ୍ୟ ରତିକି ମୁଁ । ୩ ।
ଗୀତେ ଭଣେ ବେଣୁଧର ମୁଁ ପରା ତୋ ପରିକର,
କି ଦୋଷ ଦେଖି ପଥର କଲୁ ତୋ ଛାତିକି ମୁଁ । ୪ ।

( ଏ ବୟସେ ତେଜି ଧନ ବିଦେଶେ ରହିଲ—ବୃନ୍ଦେ )

—୦—

( ରାଗ—ହରପ୍ରିୟା । ତାଳ—ଆଠତାଳି )

ତୁଷିବସୁ କାହିଁକି ଆରେ ନବନଗୀନା ।
ମୃଦୁହାସେ ବାଣୀ ଭଣି କଣ୍ଠେ ଥରେ ଅନା । ଘୋଷା ।
ଚନ୍ଦ୍ର ବଦନ ମ୍ଳାନ ଦେଖି ମୋ ମନ ଛନ୍ନ,
ପ୍ରତିକାର କେ ଧନ ଅଛୁ ମୋ ତୋହ ବିନା । ୧ ।
ଲଗାଇ ପ୍ରୀତି ତରୁ ନ ଫଳୁ ସମୂଳରୁ,
କି ପାଞ୍ଚି ନାଶ କରୁ ଗୁରୁ କୁନ୍ଦଦଶନା । ୨ ।
ଦାସର କିବା ରୋଷ ଅର୍ଜିବୁ କେଉଁ ଯଶ,
ଜଗତେ ପଞ୍ଚବାଣ ହେବ କରେ ସୁମନା । ୩ ।
ମତ୍ତ ବାରଣ ଗତି ଶୁଣ୍ଠି ନ ବସ କ୍ଷତି,
ବେଣୁଧର ବିନତି—ଧରଣି କର ଘେନା । ୪ ।

( ପତ୍ନୀର ପ୍ରିୟ ରୁଷି ! ସଖୀ ଦରପଣ କି —ବୃନ୍ଦେ )

—*—

( ରାଗ—ଦକ୍ଷିଣୀ ସାରଙ୍ଗ । ତାଳ—ଏକତାଳୀ )
ଆରେ କୁଞ୍ଚିତକେଶୀ ତୁ ପଞ୍ଚ ବଦନା ମୋ ଧନ—
ମୁଞ୍ଚ ପ୍ରୀତିକି ରେ । ଘୋଷା ।
କାଞ୍ଚନ ଗୋରୀ ହେଲା ଜନା    ମଞ୍ଜୀର ହେଲେ ରେ ନୟନା,
ପାଞ୍ଚ ହେଲା ମଦନ ଅଞ୍ଚଳ ବନ୍ଧା ମୁଁ ସିନା ।
ବାରଣ ଗତି ଶରଣ—    ଜନ କର ପରିତ୍ରାଣ,
କାରଣ କରୁ କି ରୋଷେ ରାଜୀବଦଳନୟନା । ୧ ।
କଣାଜନ ରୋଷ ବନ୍ଧ    ଜଣା ହେବ କରେ ସନ୍ଧି,
ପାଣାପାଣି ଶୁଣା ଥରେ ଚନ୍ଦ୍ରଆନନା ।
ମଗଣୁ ଅଧିକ ବୋଲି    ଧରାଭୂଷା ମଣିଥିଲି,
ସରାଗ ନୋହିଲେ ଗଲି ଅଂଶୁ ଭାସି ହେ ସୁମନା । ୨ ।
ବଧିଲୁ ଅଧରୁ ବନ୍ଧ    ବିଧୁମୁଖୀ ଦିଅ ମଧୁ,
ବନ୍ଧୁ ତୁ ମରମେ ପାପ ଅନଙ୍ଗଶର ।
ପାରସାକ୍ଷି ନ ରଖିଲେ    କାର ହେବଟି ମୁଁ ଭଲେ,
ତାରକାପତି-ଲପନା ନାରଖାର ତୁ ନ କର । ୩ ।
ରସିକ ବଚନ ଶୁଣି    ମାନ ତେଜିଲା ରମଣୀ,
ସୁରସ ରଙ୍ଗେ ନିଶା ନେଲେ ହରଷେ ।
କବିଚନ୍ଦ୍ର ବେଣୁଧର    ଭାବ କହେ ଏତୁ ଗୀର,
ସୁରପତି ଶିଖି ସମ ହେବ କି ସେ କାଳେ ଲେଶେ ।
( ଆରେ କୁଟିଳହୃଦ ତୋ ବୁଦ୍ଧି ଜାଣିଲଣି—ବୃନ୍ଦେ )

—*—

( ରାଗ—ସୁରଟ । ତାଳ—ଖେମଟା )
କାଞ୍ଚନ ଗୋରୀ, କଲି କି ଦୋଷ ତୋ ହରି ଲୋ । ପଦ ।
ଯେବେକାଳେ ବହୁଁ ଧନ ଭୁରୁଭଙ୍ଗୀ ଠାରି ।
ସେ କାଳେ ମୁଁ ନ ଗଣଇ ସୁରପତି ଶିରୀ ରେ । ୧ ।
ଦଣ୍ଡେ ପର ଧନମଣି ନ ପାରୁ ବିସ୍ମରି ।
ଏବେ କେଉଁ ଦୋଷ ଦେଖି ଦେଲୁ ତୁ ପାଶୋରି ରେ ।୨।
ପ୍ରୀତିଧନ ପରିଶୋଧ ନୋହୁ ସୁକୁମାରୀ ।
ସ୍ୱହସ୍ତରେ ପ୍ରେମ-ତମସୁକ ଦେଲୁ ଚିରି ରେ । ୩ ।

ପାପିଷ୍ଟ ଭଗାଣ କାମଗଣକୁ ନ ମାର ।
ତା ହସ୍ତେ ଦଆଉ ଦଣ୍ଡ କି ମନେ ବିଚାର ରେ । ୪ ।
ଗୁଣମଣି ତୋର ଗୁଣ ସ୍ମରି ସୁମରି ।
ଜଗଚନ୍ଦ୍ର ବେଣୁଧର ଯାଉଅଛି ସରି ରେ । ୫ ।
( ମୁରଲୀଧାରୀ, ସତେ ଯିବେ କି ବାହାରି ବୃତ୍ତେ )

—o—

( ରାଗ—ଝିଂଝୋଟ । ତାଳ—ଏକତାଳୀ )

କାହିଁକି କରୁଣା ଊଣା ରେ, କେଳିପ୍ରବୀଣା । ପଦ ।
କରି ତ ନାହିଁ ମୁଁ ଦୋଷ କି ଦେଖି ମୋଠାରେ ରୋଷ,
ବନ୍ଧୁ ଏକ ବୃଷ୍ଟାମନା ରେ । ୧ ।
ପାଦେ କି ନ ଦେଲି ଲକ୍ଷ! କହ ଆରେ କୁଟିଳାକ୍ଷୀ,
ଘୁମୁରେ କରୁଛୁ ଜଣା ରେ । ୨ ।
ତୋ ଝର କୁସୁମ ତଳ୍ପ ସଜାଡ଼ି ନ ଦେଲି ଅବା,
ସେଥିପାଇଁ ଏ ଦୂଷଣା ରେ । ୩ ।
ସୁଷ୍ଠୀନ ବସନ କୁଞ୍ଜ ନ ଦେଲି ବୋଲି କି ପୁଞ୍ଜ,
ବସିଅଛୁ ଅବା ପିନା ରେ । ୪ ।
ଭଣେ ବେଣୁଧର କବି କି ଦୋଷ କଲି ବାଛବି
କହ ବିମଷ୍ଟବଚନା ରେ । ୫ ।
( ନାହିଁ ମୋ ଗତି ତୋ ବିନା ରେ କୁନ୍ଦରଦନା—ବୃତ୍ତେ )

—✻—

## ମାନଭଙ୍ଗେ ନାୟକର ଉକ୍ତି

( ରାଗ—ପୁନ୍ନାଗ । ତାଳ—ଝୁଲା )

ଆସ ମୋ ରଙ୍ଗପସର, କାଣୀଦାସୀ ମୋ କଣ୍ଠରତନହାର । ପଦ ।
ବାସଅଙ୍ଗି ମୋ ସଙ୍ଗିନି ! ବାସବଭୂତ ଦାମିନୀ,
ହସ ଥରେ ମୃଦୁବାଣୀ ସୁଧାଧାର । ୧ ।
ରସରଙ୍ଗିଣୀ ନ ବସ ହାଏ ନାଶ ଦୃଷ୍ଟୁ ହସ,
ପାଶ ଦାଣେରେ ଏ କି ମନ୍ଦରସର ? । ୨ ।
ଶରଦ ଚନ୍ଦ୍ରବଦନ ଅଞ୍ଜିତ ଦଶଇ ଭଲ,
କାହିଁପାଇଁ ଏ ଗୁମାନ ଜଳଧର ! । ୩ ।

ଧର ଭୂଷ ତୋ ସଙ୍ଗତ ହେନା ଅଛୁ କେ ମୋ ଗତ
ଜଗତରେ ଆନ କେର ଧୀର ସ୍ଥିର ! । ୪ ।
ରଣପୂରେଣ ନନ୍ଦନ ଶ୍ରୀ ହରଞ୍ଜନାରପୂଣ,
ସିଂହ ତେଜ ତୋ ମନରେ ନାହିଁ ପର ? । ୫ ।
( ସେ ମୋହନେ ପ୍ରୀତିକର – ବୃତ୍ତେ )

—o—

## ନାୟକ ଭାବନା

( ରାଗ – ଭୂପାଳ । ତାଳ – ଆଠତାଳୀ
ମୋ ରମା କାହିଁକି ରୁଷିଲା, ଶରଚନ୍ଦ୍ରମୁଖି ।
ଧରଣୀକି ଚାହିଁକି ଗୁମାନରେ ବସିଲା ରେ । ଘୋଷା
କଳକଣ୍ଠ ବୀଣା ସୁଜଣା ବଚନା ପଡେ ବାଣୀ ନ ଭାଷିଲା !
କୁନ୍ଦନାଙ୍ଗୀ କୁନ୍ଦ ହାସୀକି ବସ୍ତ୍ରରେ ଗଣ୍ଡେ ପାଣି ନବେଶିଲା । ୧ ।
ନୀଳକେଶୀ ନୀଳ ଉତ୍ପଳ ନୟନୁ ନୀରଧାର ବରଷିଲା ।
ଧୀରଗତି ପୀରତିକି ଦୂରକରି ହରସକୁ ତ ରସିଲା । । ୨ ।
ବଳଶୋଭି ହଳ ଅନୁଜଜ ବାଣେ ତନୁକୁ ମୋର ଭୂଷିଲା ।
ନବୀନା ନବୀନ ଅରୁଣାଧାରର ମନକୁ ଏହା ଆସିଲା । ୩ ।
ବେନଷଠ ବେନ ବୟସୀକି ଯେନ ଅବଗୁଣ ହଲସିଲା ।
ଏଣୁ ବେଣୁଧର ଧନ ଚରଣର ପରି ପାଶେ ନ ବଶିଲା । ୪ ।
( ମଦନ ମୋହନ, କସ୍ତ୍ରୀନ୍ଦ୍ର ଦନ୍ତପଲଙ୍କ ଭେକ ବୃତ୍ତେ )

—o—

( ରାଗ—ଝିଂଝୋଟ । ତାଳ— ଝୁଲା )
ମୋ ରଙ୍କ ରତନ !
ଆସ ଆସ ଅଙ୍କେ ବସ ପଙ୍କଜାକ୍ଷୀ ଭେଜ ମାନ । ଘୋଷା ।
ମହୀକି ଲପନ ପୋଛି ନ ବସ କାରଣଗତି,
ବନଜ ନୟନୁ ନୀର ମୁଞ୍ଚ ମୋ ପରାଣ ଧନ । ୧ ।
ଧରୁଛୁ ତୋର ପାଣିକି ଶୁଣା ହପଞ୍ଚୀ ବାଣୀକି,
ଗୁନ୍ଦବଦନ ଠାଣିକି ଟେକ ଛୁ ନକର ଭିନ୍ନ । ୨ ।

ଆରେ ସଙ୍ଗୀତ ପ୍ରବୀଣା ବାରେ ନ କଲେ କରୁଣା,
କାରେ ମୋ ଚିତ୍ତ ବେଦନା ଜଣାଇବ ମନେ ଧେନ । ୩ ।
ମଲ୍ଲୀହାସି ! ଗଳ ଛନ୍ଦି ମାନେ ବସିବାରୁ ତୁଷ,
ମରମ ଦେଶେ ଆକର୍ଷି ବନ୍ଧୁଛି ମୀନକେତନ । ୪ ।
*ସମର ପୁର ନିବାସୀ ବେଣୁଧର ଗୀତେ ଭାଷି,
ଅମର ଭୂତଦାୟିନି ମୁଁ ପଦ ତୋ କଣାଜନ । ୫ ।
( କୁଞ୍ଚିତ କୁନ୍ତଳା, ଆସରେ ରସରଙ୍ଗିଣି—ପ୍ରଭ )

—୦—

( ରାଗ—ବେହାଗଡ଼ା । ତାଳ—ଅଠତାଳୀ )
ମନସିଜ କଳା କେଳିକୁଶଳା ରେ ଧନ ମୁଁ ନୋ ପଚ୍ଚେଜନ ପରା ?
ଉଚିତ ହେଲୀକ ତୁଷି ବସିବାର ଆରେ ସତ୍ୟପଣା ଜବ ଧରା । ପଦ ।
ନେତ୍ରୁ ଅଶ୍ରୁ ଧାରା ବକ୍ଷୋଜ କେତେ କାହିଁକ ରେ ମୋର ଗଳାହାରା ।
ରସିକା ରଚନ ସୁଶୀଳା ସୁନ୍ଦରୀ ତୁ ସିନା ମୋ ହୃଦକାଶ ତାରା । ୧ ।
ହର ଉମା ସେବ ପାଉଛି ବଲ୍ଲଭାମଣି ତୋତେ ଆଦ୍ୟ ନେମୋହରା ।
ନାଗରୀ ରସସାଗରୀ କୁଚୋଦରୀ ବ୍ରହ୍ମର୍ଷି ମୁନି ଧୈର୍ଯ୍ୟହରା । ୨ ।
ଧରଣୀ ମଣ୍ଡନା ସନ୍ତାପ ଖଣ୍ଡନା ଅତି ପଣ୍ଡିତା ମୋ ସୁଖକରା ।
ନବରସବର୍ଷି ତୋ ବିନା ଗତରନ୍ତି ଏ ଜଗତ ବୃଥା ସାରା । ୩ ।
ହଂସ ମଧ୍ୟମା ମୋ କରିଗମନା ରେ ଦନ୍ତିଦ୍ଵନ୍ଦ୍ଵି ପ୍ରେମପସରା ।
ସିଂହାଣିକର ନ କର ଏ ବଶୁର କଣା କଙ୍କରର ଦାନସରା । ୪ ।
କଉତୁକେ ଆସି ଅଙ୍କତଳେ ବସି ପରକାଶ ଭୁଚ୍ଛ ନେତ୍ରଠରା ।
ହଟିଯାଉ ଘୁର ମନର ବିକାର କଟିଯାଉ ଚିର ଦୁଃଖଭାରା । ୫ ।
କହେ କବଚନ୍ଦ୍ର ବେଣୁଧର ପଚ୍ଚେନାୟକ ରହୁ ମୋ ହୃଦଥରା ।
ଆଳ ତୁ ମୋହର ମୁହିଁ ଯୋଗୀବର ରହିଛି ଏ କଥା ପରମ୍ପରା । ୬ ।
( ଦେଖିଲେ କାହିଁକ ଲଜ ମାଡ଼େ ସଖି — ବୃତ୍ତ )

—*—

* ସମରପୁର ରଣପୁର ।

( ରାଗ—ଭୂପାଳ । ତାଳ—ଏକତାଳୀ )

( ଆଦ୍ୟ ଯମକ )

ବରବରନାରେ ମୋର ଚମ୍ପକ ଗୋରୀ ।
କରକରଦନା କାମରସ-ସାଗରୀ । ଘୋଷା ।
ଦର ଦର ମୋ ବେଦନା, ଡର ଡଡଡାସୀ ଅନା;
ଧର ଧର ସୁଖ ସିନା ହେଲ ଉଗାରୀ । ୧ ।
ପର ପରବଶ ସ୍ତନା, ରଖ ରଖ ଭୁ କରନା,
ଥର ଥର ହୁଏ ହୃଦ ତୋ ଲାଗିକରି । ୨ ।
ସାର ସାର ସାକ୍ଷୀ ଭୁଞ୍ଜି, ମାର ମାରୁଣେରୁ ଖାଞ୍ଜି;
କର କର ନଶ୍ରେଁ ଏବେ ଗଲାଟି ସରି । ୩ ।
ମରମର କଷ୍ଟଧନ, ବାର ବାର ତେଜ ମାନ,
ବାର ବାର ବେଣୁଧର କରେ ଗୁହାରି । ୪ ।
( ମୋର ପ୍ରତି କୃପାକର ନନ୍ଦର କହ୍ନା—ବୃତ୍ତେ )

—❁—

( ରାଗ—ବଙ୍ଗଳାମୋଦା । ତାଳ—ଏକତାଳୀ )

ଖଞ୍ଜନାକ୍ଷୀ ସ୍ମିତ ମଣ୍ଡନା ରେ ! କୋକିଳ କଳବଚନା । ।
କାହିଁକରେ ଧନମଣି ଏ ଗୁମାନ କରି ମୋଠାରେ ରହିଛୁ ବରଙ୍ଗନା ଘୋଷା
କରିଛୁ କି ଦୋଷ, କହ ରେ ନାଗରି,
ବାସଈଙ୍ଗୀବାସ ପଣ୍ଡେର ଦାସ !
ଅଟେ ତୋର ପାଶ, ନ କର ନରାଶ,
ଶରଦ୍ଚନ୍ଦ୍ର ହାସ, କଞ୍ଚୁକେତ ପ୍ରକାଶ । ୧ ।
ଗଣ୍ଡୟୁଗେ ପାଣି, ମଣ୍ଡନା ସିହାଣୀ,
କରଜେ ଧରଣୀ ଚିରୁ କସ ମଣି ।
ଶିଶୁକଣ'ଏଣୀ, ନୟନରୁ ପାଣି,
ମୁଞ୍ଚ ଶୂଳପାଣି ମିହ ଶିରେ ଆଣି । ୨ ।
ମତ୍ତକରୀ ଗତି, ନୂତନା ସୁମତି,
ରେ ରତି-ମୂରତି ତୋ ଭନା କେ ଗତି ?
ଆରେ ରସବତୀ, ମୋ ନେହ ସମ୍ପତ୍ତି,
ଆସ ଆସ ଯତି ମୋହିନୀ ମୋର କତି । ୩ ।

ଜଣାଉଛୁ ଧନ, ମୋ ତପ୍ତିନ ଘେନ,
ରମଣୀ ରତନ ତେଜ ଅଭିମାନ ।
ବେଣୁଧର ଗାନ, ନବ ନଟାଙ୍କନ,
ଜନସ୍ତ ବଚନ ନ କର ତୁ ଆନ । ୪ ।
( ସାରସାକ୍ଷୀ ମାନ କୁନ୍ତଳାରେ—ବୃତ୍ତ

—❁—

( ରାଗ—ରସପୋଇ । ତାଳ—ଏକତାଳି )

ଗୁଣମଣି ଏ କରେ ! ଧନମଣି ଏ କରେ ?
ଗୁମାନେ ବସିଛୁ ଗୃହିଁ ଧରଣୀକ ରେ । ଘୋଷା ।

ସମ୍ପୂର୍ଣ୍ଣ ସୁଧାକର,— ଲପନା ପଟକର,
ଜନରେ ଝନକର ବନ୍ଧୁ ବାସି ମୋହର,
କତବରନାପର-ପରମ କଷ୍ଟହର ମାରଜାକ୍ଷୀ ରେ । ୧ ।
ଜୀବନଦ ଭଣ୍ଡାର ·ଜୀବନଜ ଶ୍ରୀକର
ମଣ୍ଡନେ ରମାବର କୁନ୍ଦହାସୀ ସୁନ୍ଦର,
ହେଲା କରେ ପଦର ବପୁସୀ ମୋ ମନ୍ଦରସ୍ତନା ନକରେ । ୨ ।
ଆଜ କ ଵପରାତ ଦେଖିଲ ନର କୁଞ୍ଚିତ—
କେଶୀ ବସ୍ତୁ ଧୁଞ୍ଚିତ ଅନୁରାଗ ମୁଞ୍ଚିତ,
ବସ୍ତ୍ରର ତୋ ସୁଚଉରେ ଭୂଷଣା ଉଚତ ହେଲାଣି କରେ ? । ୩ ।
ବାରଣଗଣ୍ଡ ମାର ମାରଣ ଦରୁ ଚାରୁ
ଚାରଣ ତୋ ଝନା କେ ? କାରଣ ଅଛୁବାର,
ବାରଣ କରୁ କେଉଁ ଅପ୍ରାଧ ଦେଖି ମୋର ଶଶୀମୁଖୀରେ । ୪ ।
ସ୍ୱଜଧାମ ସମର, ପୁରବାସୀ ଅମର-
ପଣ୍ଡ ପାଟକୁମର କଦେ ମାରେ ନ ମାରୁ,
ମାନମୀ ମାନ ଗିର ଆସ ତୁ ଧନ ମୋର, ନୁହ ଦୁଃଖୀରେ । ୫ ।
( କ ଗୁମାନେ ବସିଲ—ବୃତ୍ତେ )

—❁—

( ରାଗ—ମାଳବଗୌଡ଼ା । ତାଳ—ଏକତାଳୀ )

ପରାଣଧନ ଏ ରୀତ କାହୁଁ ଶିଖିଥିଲ କି ?
କେଉଁ ଦୋଷ କଲି ବୋଲି ରୁମାଣେ ବସିଲ କି ? ଘୋଷା ।

ଉଦିତଚନ୍ଦ୍ର ବଦନ, ଦଶଇ ଅତି ମଳିନ,
ଘନକେଶୀ ମନ ପ୍ରତି ଦୂରକରି ଦେଲକି ? । ୧ ।
ଚଣ୍ଡ ମଣ୍ଡିଅଛ ପାଣି, ହସି ନ କହୁଛ ବାଣୀ,
ମୋ ମାଙ୍କି ଦାରୁଣ ଭାବ କାହିଁକି ଧଇଲ କି ? ୨ ।
ମଣିମଣ୍ଡନା ସୁକୁନ୍ଦ,— ଦାସୀ ତୋତେ କି ପସନ୍ଦ,—
ହେଲି ବୋଲି ମୋ ଛଡ଼ଇ ମଣିକି ରହିଲ କି ? । ୩ ।
ଘାନ ବେଣୁଧର ଭାଷେ, ଦିନ ରାତି ତୋର ପାଶେ,
ଦନପୃୀ ଦାସ ମୁଁ ପର ନ ଜାଣୁ ପଚ୍ଛିଲ କି ? । ୪ ।

( ବରଜ ରାଜନନ୍ଦନ ବରଜ ଏ ରୀତିକି—ବୃତ୍ତେ )

—✻—

( ରାଗ—ଦକ୍ଷିଣବେଗଡ଼ା । ତାଳ—ଝୁଲ )

ଉଙ୍କନିଧି ଅଙ୍କେ ବସ ପଙ୍କଜନୟନା ରେ ।
ଶଙ୍କର ମୋହିନୀ ମୋରେ ରୁମାଣି ହୁଅନାରେ । ଘୋଷା ।

ଆସ ମୋ କୁଞ୍ଚିତ କେଶୀ, ଆଶ ନାଶନା ପ୍ରେୟସୀ,
ହପଞ୍ଚ କୋକିଳଭାଷୀ କୃନ୍ଦନ କରନାରେ । ୧ ।
ଗଣ୍ଡରେ ନ ମଣ୍ଡ ପାଣି, ପଣ୍ଡିତାମଣି ସିହାଣୀ,
ଖଞ୍ଜନ ଚଞ୍ଚଳେକ୍ଷଣୀ କଞ୍ଚୁକ ଅନାରେ । ୨ ।
ନବ ସପତ ବୟସୀ, ନ ବସ ତୁ ଆଉ ରୁଷି,
ଅବଧାନ କର ମୋରେ ଅବନୀ ମଣ୍ଡନାରେ । ୩ ।
ଦରମଧ୍ୟମା ତୋ କର,— ଧରି କହୁଛି ନକର,
ସରିଛତି କଳାକର କ୍ଷ୍ୟପନା ତୋ ବନାରେ । ୪ ।

ମାନବନ୍ତ ମାନ ତେଜ, ଆନନ୍ଦଦାୟିନ ତେଜ,
ସାନନ୍ଦନ୍ତୁ ବେଣୁଧର ତୋର କଣା ସିନାରେ । ୫ ।
( ଏ ବସ୍ତୁସ ତେଜ ଧନ ଝଟତଣେ ଉଜ୍ଜ୍ୱଳ—ଭୁଲେ )

—*—

( ରାଗ—ମାଠକାମୋଦୀ । ତାଳ—ଏକତାଳୀ )

ଜୀବନବନ୍ଧୁ ଏତେ ମାନ କାହିଁକ ଚାଣ୍ଡ, ସୁରସବନ୍ତି ଆଜରେ । ଘୋ.ଷା ।
କମଳଜନନ୍ଦନ-ସୁତାପାଣି ରଞ୍ଜନ
ଜଡବଚନା ବନଧର ଚକୁର ଘେନ ।
(ପଡ଼) ସିନ୍ଧୁତନୟଧାସ୍ୱ ନାସ୍ୱପାନ ମଧ୍ୟମା
ବନ୍ଧୁକାଧର ବନ୍ଧୁ ଆସ ମୋ ପ୍ରିୟତମା ।
ବଡସୋତ ନାଗସ୍ୱ ଇନ୍ଦ୍ର ହରନି ଯାମା
ଜଣାଉଛୁ ପାର୍ଶ୍ୱରେ ସୁକୁନ୍ଦନ ପ୍ରତିମା । ୧ ।
ଦ୍ୱାପଞ୍ଚାନନ ପଗନାସ୍ୱ-ସ୍ତୁତେ ଭ୍ରୁ ଘର
କରନା ପରଘର ପଞ୍ଚଶରୁ ଉଦ୍ଧର ।
(ପଡ଼) ପ୍ରାଣବଲ୍ଲଭି ମୋର ଶ୍ରଣିରେ ପୀବର—
ସ୍ତନା ପୀନଜଘନା ମାନ ବନନ୍ତ ଗିର ।
ଗିରିଶ ମୋହିନୀ ରେ ଶାରଙ୍ଗିଧାବର
ଧରଣୀ ପତି-ସୁତା ମୋ ଅପରାଧ ହର । ୨ ।
ବନପତି-ଈଶ୍ୱର ଦପର୍ଣ୍ଣଙ୍କ ଗୋସ୍ୱ
ମୁଞ୍ଜ ମୋ ସୁଖଶାସ୍ୱ ବସିକୁ ଗଣ୍ଡ ଧର ।
(ପଡ଼) ଏ କସ ବପସ୍ୱତ ଦେଖିଲ ଆରେ ମିତ
ସ୍ୱକା ସମ୍ପୂର୍ଣ୍ଣଜତ ବରାଙ୍ଗ ଅଶୋଭିତ ।
ତୋ ବିମ୍ବାଧରେ ସ୍ମିତ ହାସନାହିଁ କଞ୍ଚିତ
କହ ମୋ ନବମୀତ କୋମଳା ନୋହି ଖ୍ରିତ । ୩ ।
ନବରଙ୍ଗି ସଙ୍ଗୀତ, ବନୋଦମା ଇଙ୍ଗିତ,
ବଚନା ତୋ ଭଙ୍ଗିତ ନିଜନ ହରେଣ ମତ ।
(ପଡ଼) ପ୍ରବାଳ ସିନ୍ଧଫଳ ସ୍ୱର୍ଣ୍ଣାଦ୍ଧ ଯୁକ୍ତମାଳ
ଗଳାରୁ କାଢି ତଳ ଥୋଇଛୁ ମଣ୍ଡଳ—
କଣ୍ଠ ବଚନା ମାଳ କଣ୍ଣ ପୁଞ୍ଜ କୁନ୍ତଳ
ଫିଟି ଚରମ ପତ୍ର ଲୋଟଇ ସମାବର । ୪ ।

ଅମ୍ବୁଜ ନେତ୍ର ମୀର ଧାର ପାବନ୍ତି ବର
    ମିଶ ମସ୍ତକ ପର ଝଣଇ ଜର ଜର । ( ପଢ଼ )
ଆସ ମୋ ଗୁଣବନ୍ତି ନୁହ ବିରସ ମତି
    ପାମର ବଣ ପତି ଦଣ୍ଡରୁ ଯତି ମତି—
ମୋହନୀ ଇନ୍ଦ୍ରଭୂତ ଦାନେ ରଖ ସୁଗତି—
    ଦାୟ୍ୟୀ କେଳ ଜଗନ୍ତି ମଣ୍ଡ ସୁଗଜଗତି । ୫ ।
ଝଳ ମୋତିଦଶନା ମାଳ ଝିନବସନା
    ଅବଗୁଣେ ରସନା ଗ୍ରଳ କଟି ରସନା ।
(ପଢ଼) ବରଚ ଛତି ରଣ ନାହିଁ ଆନେ ଶରଣ
    ପାମର ରଣ ରଣ ମାରଣୁ ପରିତ୍ରାଣ ।
କର ବଦନ୍ତି ରଣ ପୁର ମାନବ ଗଣ
    ପାଠ କୁମର ଶ୍ରୀ ଶ୍ରୀ ବରଞ୍ଜ ନାଗପ୍ପଣ । ୬ ।

( ଶ୍ୟାମରେ ମାନ କେଣେ କରନ୍ତୁ ଅକାରଣ—ବୃତ୍ତ )

—o—

*( ରାଗ—ଭୂଟିଅଣ୍ଡ । ତାଳ—ଏକତାଳୀ )

ଆରେ ସ୍ନେହ-ଲତା !
ମୋ କରମକୁ ତୋ ଫଳ ହେଲା ପିତା (ଆରେ) । ଘୋଷା ।
କେ ଜାଣିଥିଲା ଏମନ୍ତ ହେବ          ସୁଧାବୃକ୍ଷେ ବିଷ ଉପୁଜିବ,
ଦାରୁଣ ଦଇବ କ ନକରେ ସବେ
ଲଗାଇ ଛଡ଼ାଏ ନୂଆ ଭାବ (ଆରେ) । ୧ ।

ପ୍ରୀତିରେ ବିଚ୍ଛେଦ ଅଛୁ ବୋଲି          ଆଗରୁ ମୁଁ ଜାଣିନ ନ ଥିଲି,
କେତେ ସୁଟେଶିଷ          ଛୁଟିଗଲା ଧନ !
ଏବେ ସବୁ ଅନୁଭବ କଲି ( ଆରେ ) । ୨ ।

* ରଣପୁର ଯୁବରାଜଙ୍କ ନାମେ ଏ ଗୀତ ଭଣିତ ।

ଧୂନ୍ଥି ଦେଖି ମୋତେ ରଙ୍କପରି ମୁରୁକ ମୁରୁକ ହସୁ ଗୋରା,
ପୂରୁବର ଭଙ୍ଗୀ କେଣେ ଗଲା ତୋର,
ଭୁରୁ ଖେଳା ବୁଦ୍ଧାଣି ଗୁରୁଭୁସା (ଆରେ) । ୩ ।
ପିକ ଗଣ୍ଡା ଜଣା ମୃଦୁବାଣୀ ଟିକକ ପାରିଲା ନାହିଁ ଶୁଣି,
ଧିକ ଧିକ ମୋ ଧଇର୍ଯ୍ୟ ବବେକ,
କେଳ ଦେଉଛୁ ଗୁଣି ଗୁଣି (ଆରେ) । ୪ ।
ଧାଉ କଟିସ୍ଥଳ ତୋ ସଙ୍ଗତି ବାରଣ ଗମନା ରସବନ୍ତି,
କାର କ ବଚନ ଶୁଣି ଜୀବଧନ !
ଧାର ଲୁଟି ଜର ଜଗ ଗୁଣ୍ଡ (ଆରେ) । ୫ ।
ଭିନ୍ନ କରିଦେଲ କ ବରୂନ ମୀନନୟନା ମୋ ମନହାସ;
ଦନ ବେଣୁଧର ପଦେ ନାୟକର,
ଢନ କ ସରବ ଝଙ୍କୃତ (ଆରେ) । ୬ ।
( ଆରେ ପ୍ରିୟସଖି ! ଗୁଣ୍ଡ ପଥର କଲିଣି—ବୃତ୍ତେ )

—✽—

( ରାଗ—ମୁଖାବରୀ । ତାଳ—ଆଠତାଳୀ )

ଆରେ ମନ୍ଦଲା ହୀରା !
ମୁଁ ତୋ କଣା ନଉକର ପରା ରେ । ଘୋଷା ।
କହୁଚ କାଳରୁ ଅନୁସରି ଅଛୁ ଧରାମଣ୍ଡନା ସ୍ବଧୀରାରେ ।
ବ୍ୟାଜରେ ଏ ମାନ କରିଅଛୁ ଧନ କ ଦୋଷକୁ ଜବାଧରାରେ । ୧ ।
ପ୍ରେମ ଡୋରେ ବାନ୍ଧି ରଖିଛୁ ସୁନ୍ଦରୀ ଆଜ ଏପରି ନ କରରେ ।
ଦାସନାଶରେ କ ଯଶ ହେବ ସଖି ! କହ କନା ଗଳାହାରରେ । ୨ ।
ତୁ ଅତି ପଣ୍ଡିତା ନ ହୁଅ ଖଣ୍ଡିତା ପ୍ରେମ ବାଣିଜ୍ୟ ପସରାରେ ।
ଦେଖିଣ ଏକାନ୍ତ ତୋର ସୁଦନ୍ତି ହୋଇଯାଏ ମୁଁ ଘାବରାରେ । ୩ ।
ବୀଣା ଜଣା ବାଣୀ ମଣ୍ଡନା ସିଦ୍ଧାଣୀ ନ ବୁଝା ଲେତକ ଧରାରେ ।
ଦେ.ଷୀ ବେଣୁଧର ଧରୁଛୁ ତୋ କର ଭଗାର ହାତେ ନ ମରାରେ । ୪ ।
( ଆ ହ ନାଗର ବର, ସଖୀ ସଦ୍ବଦକ—ବୃତ୍ତେ )

—✽—

( ନାୟକ ଉକ୍ତି )

( ରାଗ—ଶଙ୍କରା ଭରଣ । ତାଳ—ଆଠତାଳୀ )
ଆରେ ଆରେ ଯୋଷା ବର ।
ବର ବରନା ତୁ ସନା ମୋ ଗଳାର ହାର । ଘୋଷା ।
ହା ରମଣୀ ମଣି କ ମଣିରେ ଏ ଦରର ?
ସ୍ମରଣ ମୁଁ ତୋର ବାର ବାରଣେ ନ ସାର । ୧ ।
ସାରସ ଗମନା ଶୋଭା ନୂତନ ଭୂଷିବାର ।
ବାର କେନ କସ୍ତୂରୀ ତୁ ଏ ଭବ ବସ୍ତୁର । ୨ ।
"ସର-ଶର-ଦର ହର ରେ ରସାର ସାର ।
ସାର ସର ସର ସାର କର କାର ବାର" । ୩ ।



ବାରଣ ନକର ମାର ଦଣ୍ଡ ଖାନ୍ତ କର ।
କର ଧନ୍ୟ ମାଗୁଅଛୁ ଏତେ ବେଣୁଧର । ୪ ।



✽ ଶୃଙ୍ଖଳା ଛନ୍ଦ ସପ୍ତଦଳ ପଦ୍ମବନ୍ଧ ଚକ୍ରପଙ୍କର ଚତୁର୍ଥ ପାଦନ୍ୟାସ

( ରାଗ—ଭୈରବୀ । ତାଳ—ଏକତାଳୀ )

ସାରସାକ୍ଷୀ ମୋରେ ମାନ କାହିଁକ ଏତେ ।
ବାର ବାର ମୋ ବଚନ ଘେନ ସୁଚିତ୍ତେ । ଘୋଷା ।

(ଧ୍ରୁବ) ଶରଦଚନ୍ଦ୍ର ଲପନା    ହର ମୋର ବେଦନା,
ଦର କଣ୍ଠି ଲପନା    କର ଋଜନ୍ତ ଘେନା,
ବରଜିତ ବରନା    ବରଜି ଗଜ ଅନା,
କରକ ଦନ୍ତୀ ଦନ୍ତଗତ ଆସରେ ।
ଧରଣୀ ଭୂଷ ନକର ତୁ ନିରାଶ ରେ । ୧ ।

ବାଶଦ କୁନ୍ତଳା ରେ    ଚଶକ କୁ ମଣ୍ଡିରେ,
ତୋ ବିନା ମୋର ଆଜ୍ଞ    କେ ଅଛି କହ ବାରେ,
ଋଷି ମୋହିନୀ ଋଷି    ବସିଛୁ ଯା ବୃଥାରେ,
ପଲ୍ୟଙ୍କ ଅଙ୍କ ଶୂନ୍ୟ ହେଲେ ତୋ ବିନେ ।
ଆସ ଆସ ମୋ ପାଶକୁ ଚନ୍ଦ୍ର ଆନନେ । ୨ ।

ନବାରୁଣ ରଞ୍ଜିତ    ଅଧରୁ ରସାମୃତ,
ଦାନରେ ତୋଷ ଚିତ୍ତ    ଆରେ ଦରଶମିତ,
ସୁମନା ନବନୀତ    ଅଙ୍ଗୀ ତୁ ଅଙ୍ଗୀକୃତ,
କର ଶ୍ରୀକର ଧନ୍ୟ କହୁଛି ଧନ !
ଦାରୁଣ ଦର୍ପକ ଦର୍ପେ ଛିନ୍ନ ମୋ ମନ । ୩ ।

ଶମ୍ଭୁ ମୋହିନୀ ବର—    ଜମ୍ଭୁ ନଦାଙ୍ଗି ହର,
କମ୍ବୁ ଧର କୁମର    ଦହୁଛି ମରମର,
ଅମ୍ବୁ ରୁହ ସୁକର—    ଜରେ ମଣ୍ଡି ନ ଜର,
ମୋର ମାଗୁଣି ଏତେ ଆରେ ନବୀନା ।
ଏହି ବେଣୁଧର କବିଚନ୍ଦ୍ର କୁ ଅନା । ୪ ।

—*—

( ରାଗ—କାମୋଦୀ । ତାଳ—ଝୁଲ )

ହରିଣନେତ୍ରୀ ଗଲା ସରି ତୋତେ ଆଶା କରି କରି ।
ହରି କୁନ୍ତଳା ତୋ ଲବ ନାଚ୍ୟ ସୁମରି ସୁମରି । ଘୋଷା ।
ହରି ଚାଳ ଜିତ ଗୋରି !    ହରିକ ତ ହରି କରି,
ହରିସୁମଧ୍ୟମା ହରି ବଶ ଦୁର୍ଦ୍ଦଶା ମୋହରି । ୧ ।

ବର୍ଷାକାଳ ବରଷର ହେଲାଣି ବର ଅଇର,—
ପର ଗ୍ରାସୁଛୁ ସେ ବର ସୁତରେ ବନ୍ଧ ଅବସ୍ଥା । ୨ ।
ବରତ ବସନା ଧାର ବେଶୁଛୁ ବରଜ ମାଣ—
ବାକୁ ବର ସଜ କର କର ମିଷ ବର । ୩ ।
ଧାନ କଦ ନଗାମଣି ବର ଶବଦରେ ଭଣି,
ବରଙ୍କି କର ଛାଡ଼ିଲେଣି ନ ସରେ ବ୍ୟବା ଶବସ୍ଥା । ୪ ।
( ନିଷେଧ କରୁଛୁ ଧନ, ମନ ତହିଁ ମଜାନା—ବୃତ୍ତେ )

—*—

( ରାଗ—ପାନ୍ଥ ବରାଡ଼ି । ତାଳ—ଆଠତାଳୀ )
ସଜ ପଙ୍କଜ ମୁଖୀ ତୁ ନୁହ ଦୁଃଖୀ ରେ ।
ମଜ୍ଜ ପ୍ରେମ ସୁଧାମାନରେ ହୋଇ ସୁଖୀରେ । ପଦ ।
ରାଜହଂସ ଗଣ୍ଡ ଯେନ ହାକର ତୋ ପାଶେ ଧନ
ଆଜ ଜାଣି ପକ୍କେ ରୁହ ପଦ୍ମ ମୁଖୀ ରେ । ୧ ।
ତାନ ମାନ ସୁକଳସୀ ମାନ ତେଜ ରସାଳସୀ,
ଗାନ ଚଣ୍ଡିତା ତୋଷ ତୁ ପଙ୍କଜାକ୍ଷୀ ରେ । ୨ ।
ବାସକ ଭୂତ ଉପୃଗ୍ନ କାଣ ହାସ ଉକାସିଣୀ,
ଆସ ଆସ ସୁଲୋଚନା ପ୍ରୀତିଶାଖୀ ରେ । ୩ ।
ଭକ୍ଷେ ରସେ ବେଣୁଧର ହାସେ ମଣ୍ଡି କେଳପୁର,
ପାଶେ ବସ ଜନା ଗୁମାନ ଉପେକ୍ଷୀରେ । ୪ !
( କାଳନ୍ଦୀ କୂଳକୁ ମୋ ଦଣ୍ଡୋଳ ନ ଯା—ବୃତ୍ତେ )

—o—

( ରାଗ—କଳ୍ପମ ଗୌଡ଼ା । ତାଳ—ଝୁଲ୍ଲ )
ଆରେ ପରାଣ ଧନ ! କାହିଁରେ ଯେନ ମୋହର ଗ୍ରନ୍ଥ ବଚନ । ଘୋଷା ।
ମୁଖାରବନ୍ଦ ଟେକ ନୁହ ବମନ । ଶୁଖାଇ ବଦନା ତୁ ନାଶ୍ୱରତନ । ୧ ।
କାଞ୍ଚନଗୋଷ୍ଠ କର କାଞ୍ଚି ବାଦନ । ପାଞ୍ଚ ନା ମାନସରେ କେବେହେଁ ଅନ ।୨।
କାରଣ ଗମନାରେ ସାର ତୁ ମାନ । କାରଣ କର ମୋତେ ଦେଖୁଛୁ ଆନ ।୩
କରକମ୍ବୁନେ ଧରୁ ଚକ୍ର ଗୁମାନ । କରଜ ଜନା ବେଣୁଧର ରଚନ । ୪ । ।
( ଶ୍ୟାମ ଶିଖଣ୍ଡ ଚୂଳ—ବୃତ୍ତେ ),

—*—

( ରାଗ—ଦକ୍ଷିଣବରାଡ଼ି । ତାଳ—ଝୁଲା )

ରଙ୍କନାଥ ଅଙ୍କେ ବସ ପଙ୍କଜନୟନାରେ ।
ଶଙ୍କର ମୋହିନୀ ମୋରେ ଗୁମାନୀ ହୁଅନାରେ । ଘୋଷା ।
ଆସ ମୋ କୁଞ୍ଚିତକେଶୀ, ଆଶ ନାଶନା ପ୍ରେୟସୀ,
ବିପଞ୍ଚି କୋକିଳଭାଷୀ କ୍ରନ୍ଦନ କରନାରେ । ୧ ।
ଗଣ୍ଡରେ ନ ମଣ୍ଡ ପାଣି, ପଣ୍ଡିତାମଣି ସିହାଣି,
ଖଞ୍ଜନ ଗଞ୍ଜନେକ୍ଷଣୀ କଞ୍ଚୁକେ ତୁ ଅନାରେ । ୨ ।
ନବ ସମତ ବୟସୀ, ନ ବସ ତୁ ଆଜ ରୁଷି,
ଅବଧାନ କର ମୋର ଅବସ୍ଥା ମଣ୍ଡନାରେ । ୩ ।
ହତମଧ୍ୟମା ତୋ କର,— ଧରି କହୁଛି ନାଗର,
ସରଳଟି କଳାକର ଲପନା ତୋ ହନାରେ । ୪ ।
ମାନବତି ମାନ ତେଜ, ଆନନ୍ଦଦାୟିନ ହେଜ
ସାନନ୍ଦନୁ ବେଣୁଧର ତୋର କଣା ସିନାରେ । ୫ ।
( ଏ ବୟସ ତେଜ ଧନ ବଢ଼େ ଭାଗେ ରଙ୍ଗିଲା—ବୁଢ଼େ )

—❋—

( ରାଗ—ଚୋଡ଼ ପରଜ । ତାଳ—ଆଠତାଳୀ )

ଶୁଣି ଭଲକରେ ! ଏତକ ମ ଶୁଣି ମୋର ।
ତୁନୀ ହୋଇଥିବ ଜାଣିଥିବା ପାକ ଥିଲେ ଅନୁକମ୍ପା ତୋର । ଘୋଷା ।
ରୁଷିମୋହିନୀ ତୁ ରୁଷି ନ ବସିବୁ ପୁଣି ଆଜ ହେବେ ନ ହେଲେ ।
ମାଗିବା ପଦାର୍ଥ ଯାଚି ଦେଉଥିବୁ ମୋତେ ଯଥା ସମୟରେ । ୧ ।
ବୀଣାକଣା ବାଣୀ ଶୁଣାଉ ଥିବୁଟି କଣାକନେ ଦୟାବନ୍ତ ।
ବାଳାମଣି ଅଣିମାଦ୍ୟ ସୁଖଦାମା ମୋ ଗଣ ପରଗଣ ସଖୀ । ୨ ।
କନକ କାନ୍ତରେ ମନକଥା ଫେଡ଼ି କହିଲଟି ଆଜ ତୋରେ ।
ଧନ ଦରପଣ ବଦନା ସୁକୁନ୍ଦ ରଦନା ଛଇଳା ଆରେ । ୩ ।
ରଙ୍କ ପସର ପଲଙ୍କ କଗଣ୍ଠିକ ମଣ୍ଡି ବୁ ନ କର ହେଳା ।
ଶଙ୍କରଙ୍କୁ ସେବ ପାଇଅଛୁ ତୋତେ ସୁରସିକା ପ୍ରେମକଳା । ୪ ।
ଧନ୍ୟମନାରେ ମୁଁ ଘରବାସୀ ହେଲେ କରିବୁ ନାହିଁଟି ମାନ ।
ଦରକଣ୍ଠୀ ସରବସ୍ୱ ତୁ ମୋହର ବେଣୁଧର ନିବେଦନ । ୫ ।
( ଭର ନାହିଁକ ହେ ପର ତରୁଣୀ ହରଣୁ—ବୁଢ଼େ )

—❋—

( ରାଗ—ନଳମା ଗୌଡ଼ା । ତାଳ - ଝୁଳା )

ଆରେ ବନ୍ଧୁ ଆବର !

ଅଛୁ କେ ତୋ ଝନା ମୋ ବନ୍ଧୁ ଆବର । ଘୋଷା ।

ତୁ ଯେ ମୋ ହୃଦରନ୍ଧ୍ର-ପିଞ୍ଜଗ ସାରୀ । ଗୁମାନେ ଧୃତ ବୃତ୍ତି ବଅନା ସାର । ୧ ।

ତୁ ଯେ ମୋ ଶୀର ଗନ୍ଧ ସୁମନା-ଗୁଚ୍ଛ । ସତ କ ମିଛ ଏହା ସଖୀଙ୍କି ପୁଚ୍ଛ । ୨ ।

ତୁ ଯେ ମୋ କଣ୍ଠତଟ-ରତନ-ମାଳା । କ ବୋଲ ଭନ୍ନକରୁ ପ୍ରୀତି ଅଭନ୍ନା ୩ ।

କହଇ ବେଣୁଧର କବ ଶଶାଙ୍କ । ବଇନ ଘେନ ମଣ୍ଡ ଅଙ୍କପଲଙ୍କ । ୪ ।

( ଶ୍ୟାମ ଶିଖଣ୍ଡ-ଚୂଳ—ବୃତ୍ତେ )

—✻✻—

( ରାଗ—ନଳମା ଗୌଡ଼ା । ତାଳ—ଏକତାଳୀ )

ରସ କଳପ ବଲ୍ଲି ! କହ କହ ତୋର ମୁଁ କ ଦୋଷ କଲି । ଘୋଷା ।

ଗୁମାନେ ବସିଅଛୁ ଗୃହୀଁ ମଥାକ । ଗଣ୍ଡ ମଣ୍ଡଳେ ପାଣି ମଣ୍ଡୁ କହ୍ନିକ ? । ୧ ।

ସେବାରେ ଅଣଦେଖା କରୁଛୁ ଯେବେ । ବାନ୍ଧ ବାହୁପାଶରେ ଦଣ୍ଡ ତୁ ଏବେ । ୨ ।

ଯାବକ ଲେଖା ପଦ୍ମଜନେ ଏପର । ରୋଷ କହିବା ସୁନ୍ଦର କ ସୁନ୍ଦରୀ । ୩ ।

କହଇ ବେଣୁଧର ପଞ୍ଚନାୟକ । ତୁ ଧନମଣି ସିନା ମୁଁ ଧନରଙ୍କ । ୪ ।

( ଆରେ ବନ୍ଧୁ ଆବର—ବୃତ୍ତେ )

—✻—

( ରାଗ—ପୂରବୀ । ତାଳ—ଆଠତାଳୀ )

ପଥର କରନା ଗୁନ୍ତ ରେ, ସୁମନ୍ତ ! । ଘୋଷା ।

ପରାଣ ହଙ୍କାଳ ଗଳା ହେମ-ମାଳ,
ପଦେ ଶୁଣା ତୋ ଭାରଣ୍ଡ ରେ । ୧ ।

ଚନ୍ଦନ କସ୍ତୁରୀ ମନ୍ଦ ମନ୍ଦ ଭଙ୍ଗି,
ଆଡ଼େ ଗୃହାଁ ରସବନ୍ତ ରେ । ୨ ।

ପଛକର ମୋତେ ବସନା ତୁ ଏଥେଁ,
ପୀନସ୍ତନା ଗଜଗନ୍ତ ରେ । ୩ ।

ପର ପରତାପ ଦେଲକୁ ଅମାପ,
ପିଣ୍ଡ ଦେଉଛୁ କରନ୍ତ ରେ । ୪ ।

ପରମ ପଣ୍ଡିତା ସଦ୍‌ଗୁଣ ମଣ୍ଡିତା,
ଉଷାକର ଭଜ କନ୍ତ ରେ । ୫ ।

ଙଣତରେ ରଣା- ନୋହିଲେହେଁ କଣା,
ବେଣୁ ଭଣେ ଜଣାପଡ଼ ରେ । ୭ ।
( ହୁରଭଲୁ କ ବସ୍ୱର—ବୃତ୍ତ )

—✽—

( ରାଗ—ରାଜହଂସ କେଦାର । ତାଳ—ଝୁଲା )
ଉମ୍ଭ ତୁ ମଧ୍ୟା ଅରେ ନବୀନବୀନା !
ଉଦଏ ମାର ମର୍ମେ ଧନ ! ତୋ ବନାରେ ।
ଉଜମ୍ଭ-ଗଜଦନ୍ତୀ ମନ୍ଥଗମନା ।
ଉଡ଼ାଇ ନଦେ ଦୁଃଖ ନଦେ ସୁମନା ରେ । ୧ ।
ଉଙ୍କମୋଡ଼ା ହୋଇଲି ବରଦେ ଅନା ।
ଉବାଳି ଫେଡ଼ି ଲୁହ ନ ସୁନ୍ଦ ସିନା ରେ ।
ଉହଜ-ଘଟକୁମ୍ଭ ଜଡ ବରନା ।
ଉତ୍ତରବାକୁ ଶ୍ରବଣ କେ କଲା ମନା ରେ । ୨ ।
ଉଠୋଜା ପିନ୍ଧୁନା ଭୁ ମୋ ମୀନନୟନା ।
ଉଠାଇଲେ ଟେଲେ ଟେକେଲେ ଧରୁଣ ତୋ ନା ନେ ।
ଉମଂଶ ମୂଳ ପ୍ରାପ୍ତ କଟାକ୍ଷ ଯା ନା ।
ଉଆଇଁ ଭୁରୁ ନ ପକାଇ ଲଳନା ନେ । ୩ ।
ଉଗ୍ର ପିକସ୍ୱର ହଏ ଯାଚନା ।
ଉଙ୍କଣା ଟେକ ବାଣୀକ ନେଣୁ ମୁଁ କନା ରେ ।
ଉଢ଼ ଉଢ଼ ନଂବାଜୁ ଝଲା ବାଜଣା ।
ଉଦାସ କଣ୍ଠ ବେଣୁଧରେ ରଚନା ରେ । ୪ ।
( ଦ୍ୱିଖସ୍ୱା ଯାମିନରେ ମୋ ପ୍ରାଣ ସଖୀ—ବୃତ୍ତ )

—✽—

( ରାଗ—ଚୋଡ଼ ଝଲକ । ତାଳ—ଆଠତାଳୀ )
ଠଣ ସୁଧାକର ମୁଖୀରେ; ପ୍ରିୟଦର୍ଶୀ ! ( ଠଣ ସୁଧାକର ମୁଖି )
ଠକଣ୍ଡ ଲ ଫନ୍ଦପ୍ରାଧର ଜବାଧର ଧର୍ମସ୍ତନା ତୋ ଏକ । ଯୋଷା
ଠିକ ମୁଁ ଜଣେଇଁ କଣ୍ଟକ ମଣାଇଁ ସୁଣୀକା କଣ ମୃଗାକ୍ଷୀ ।
ଠକେଟକୁ କେଳଣ ନ ବୃନ୍ଦିଲୁ ଷଣେ କ ଲଗିଛି ମଥାଟେକ । ୧ ।
ଠଉରବ କେତ୍ର ନେତା ଭନ୍ଦ୍ରନେ ମୂର୍ଚ୍ଛି କଦଳ ଥରେ ଜରେଖି ।
ଠାଣି ଭୁରୁଯୁଗ କଡ଼ାଣ ସେହାଗ ହୃଦୟ ପଟରେ ଲେଖି । ୨ ।

ଠାଣି ମଞ୍ଜୁ ଲାଜେ ଜାଣି ଜାଣି ସେଷ ବଦନା ମୁଁ ହେଲି ଦୁଃଖୀ ।
ଠିକଣା ସ୍ଥାନକୁ ଶୁଭେ ଗଣ୍ଡ କର ଦେବ ପଦ ବଳୀ ଲେଖି । ୩ ।
ଠିଆହୋଇ ତୋ ସମ୍ମୁଖେ ବେଣୁଧର ମାଗୁଛି ପିନା ଏତିକ ।
ଠଣା ମାରନା ମୋ ଧଇର୍ଯ୍ୟ ମୁଣ୍ଡରେ ଆଶାକଛି ଟିକ ଟିକ । ୪ ।
( ଯାହା ଇଚ୍ଛା ତାହା ଦେଇ ଗୋ—କୁଞ୍ଜେ )

— ❀ —

( ରାଗିଣୀ ଭୈରବୀ । ତାଳ—ଝୁଲ )
ଜଳାଧରୀ କଣ୍ଟାର୍ଦ୍ର ଗଣ୍ଡ ସୁମଦାରେ ।
ଜଗତରେ କେ ମୋ ସାହା ତୋ ବନାରେ । ଘୋଷା ।

ଜଳଜ ନୟନା ଅନା     ଅନାସ୍ଥିର ହେଲି ପିନା,
ଜମ୍ବୁନଦ ଅଙ୍ଗୀ ଝୁଲ ଦଣେନା, ବାସନା; ଋଷନା ମୋ ପରେ । ୧ ।
ଜଡ଼ାଇ ହୃଦେ ହୃଦ     ଜଳଦ ସୁଖ ପ୍ରଦ,
ମଧୁର ଝଣଝଣା, ବାଣୀକ, ଏତୀକ; ଜାଣିକ ଚତୁରେ । ୨ ।
ଜଣାଣ କର ଘେନା     ବର୍ତ୍ତୁଳ ପୀନସ୍ତନା,
ଯୋଗଭଞ୍ଜନା ମନା, କରନା ଭରନା; ଲୋଚନକୋନଶରେ । ୩ ।
ଜାଣେ ମୁଁ ତୋର ଦାସ     ଚର ଆଶା ନ ନାଶ,
ଯଶଜଡ଼ା ସୁହାସ, ପ୍ରକାଶ, ତୋ ବାସ; ଜଦାସ ବେଣୁରେ । ୪ ।
( ଗଜରାଜ ଗମନୀ ଆଜ କରେ—କୁଞ୍ଜେ )

— ❀ —

( ରାଗ—ନଳିନୀଗୌଡ଼ା । ତାଳ—ଏକତାଳୀ )
ଥରେ ଯା ନ ଶୁଣୁ ମୋ କୁଞ୍ଜୁ ଭରଙ୍ଗ । ଥିରଦାମିନୀ-କାନ୍ତି । ପଦ ।
ଥଳ କମଳ ମୃଦୁ ଚରଣେ ତୋର ।
ଥାପିଲି ଲକ୍ଷ୍ମୀ ରସ ଏ ଆଶା ମୋ ରେ । ୧ ।
ଥଟା ନ ମଣ ଧନ ଦେଉଛି ରଣ ।
ଥଗଇ ବଏ ହୃଦ ମଦନ-ବାଣ ରେ । ୨ ।
ଥକାନା ପଦ୍ମ ପାଣି ଚନ୍ଦ୍ରମା ଗଣ୍ଡେ ।
ଥାଇ ପିନା ଲୁ ମୋର ଏକା ବ୍ରହ୍ମାଣ୍ଡେ ରେ । ୩ ।
ଥାଉ କନା ଏ ସାର ତାରୁଣ ମାନ ।
ଥୋଇଦେ ବେଣୁଧର ଠାରୁ ଗୁମାନ ରେ । ୪ ।
( ଶ୍ୟାମ ଶିଖଣ୍ଡ ଚୂଳ—କୁଞ୍ଜେ )

— ❀ —

( ରାଗ—ତୋଡ଼ିପରଜ । ତାଳ—ଆଠତାଳୀ )

ଛଇଳ ! ଚନ୍ଦ୍ର-ବଦନା ଆଜ ଲୋ ।
ଛାଡ଼ ମନୁ ମାନ ନାଗରୀ ରାଜ ରେ । ଘୋଷା ।
ଛାଇ ପରାଏ ସେବୁଛି ତୋ ପାଶ । ଛଟକ ନେନଦି ନ କର ନିରାଶ ରେ । ୧ ।
ଛାର ମାନରେ ମୁଁ ଯାଉଛି ସରି । ଛୁଆଁ ମୃଗାକ୍ଷୀ ନ କର ଏପରି ରେ । ୨ ।
ଛିଣ୍ଡାଇ ନ ଦେ ମୋ ଆଶା-ଲତିକା । ଛଦ୍ମେ ନ ବାଙ୍କ ନେତ୍ର ନଳିକା ରେ ॥
ଛଳ ବସନା ରେ ଝଳ-ବସନା । ଛାମୁରେ ଜଣ ଜଣାଉଛି ନବୀନା ରେ । ୪ ।
ଛତାଙ୍ଗ ମୂର୍ତ୍ତି ଛପୀବର ସୁନା । ଛୁଦ୍ର ବୁଦ୍ଧି କରିତ ଦ୍ରୁ ଧରନା ରେ । ୫ ।
( ଝଗଡ଼ ମାନ ହେଲ ନେଇ ଶ୍ୟାମ—ପ୍ରଭୃ )

— ❀ —

( ରାଗ—ଢିଟିଆଶ୍ରୀ । ତାଳ—ଏକତାଳୀ )

ଅବଗୁର ମାନ ମନୁ କର ଦୂର । ଆରେ ରମାବର । ପଦ ।
ଅନୁଗତ ଜନେ ଏ କ ସ୍ୱତ, ଅଳକ ଛୁ ନେତ୍ର କୁମ୍ଭଗତ,
ଅତନୁ ଶାୟକେ ପିତ ମୁଁ ଯାଉଛି,
କେମନ୍ତେ ସହୁଛି ତୋର ଚିତ୍ତ । ୧ ।
ଅଲ୍ପକରେ ଯଦ୍ଭ ମୋର ଦୋଷ ଅଛି କରୁ ନଜ ଗୁଣେ ନାଶ,
ଅନୁରାଗେ ହସି ବାହୁ ପାଶେ କଷି,
ଦଣ୍ଡ ଦିଅ ଯଥା ରୁ ସନ୍ତୋଷ । ୨ ।
ଅବର ଅଧର ଗୁଣବନ୍ତ ଅନା ଅନା ଅବେଳ କୁନ୍ଦଦନ୍ତୀ,
ଅନ୍ୟ ମନେ ଆଉ ମଣନା କଷ୍ଟରେ,
ଅଙ୍କ ଚଳୁ ଚଣ୍ଡେ ରୁ ଝଟିତ । ୩ ।
ଅଞ୍ଜନ ଗଞ୍ଜନ ଗୁଚ୍ଛକେଶା, ଅନୁମତି ଦେଲେ ମୃଦୁଭାଷା,
ଅଲକ୍ତ ରସରେ ଚରଣ ସେବିବ,
ଟାଳି ନ ଦେ କବିଚନ୍ଦ୍ର ଆଶା । ୪ ।
( ଆରେ ବନମାଳି ! ପଥ ଛାଡ଼ ଦେ—ବୃନ୍ଦେ )

—❀—

( ରାଗ—ଚୋଡ଼ମରଜ । ତାଳ—ଆଡ଼ତାଳୀ )
ରୁଷି ମୋହ୍ନମା ରେ ! ତୁ ପିନା ସର୍ବସ୍ୱ ମୋର ।
ରୁଷି ମୁଁ ବସିଲେ କାହାର ହୋଇବ,
ସ୍ନେହ ଓ ଚଗ୍ଧର କର । ଘୋଷା ।
ରୁଚଳ ବଷରେ ପତ୍ରାବଳୀ ଲେଖି ଦେବ ପଗ୍ ଆରେ ଧନ !
ରୁଚ୍ନାକ୍ଷି କାହିଁ ପାଇଁ ଏତେବେଳେ ତୋତେ ମୋ ଗୃହୁବଚନ । ୧ ।
ରୂପେ ଗୁଣେ ମୋତେ ବଶ କଲୁ ଅଛୁ କିଣିଲ୍ଲ ଭୃତ୍ୟ ମୁଁ ତୋର ।
ରୁତୁବାଜ ଦୂତ ଜଣା ସ୍ୱରଷରେ ଦୁଃଖ ଦୁର୍ଦ୍ଦଶା ମୋ ହର । ୨ ।
ରୁକ୍ମିଣୀ ବଲ୍ଲଭ ନନ୍ଦନର ତାଜ ସମ୍ଭାଳ ନ ପାରେ ଆଜ ।
ରୁଦ୍ଧ ମାରର ମର୍ମେ ବଷମ ଶାୟକ ବାଜ ଅନାଉଁ ଅନାଉଁ । ୩ ।
ରୁଣୀ ହୋଇଛୁ ମୁଁ ତୋ ଠାରେ ସର୍ବଦା ତୋ ସ୍ନେହ ପ୍ରେମ ବଚନେ ।୪।
ଋତୁ ସ୍ନାନାନ୍ତରେ ନଷ୍ଟପ୍ରେ ସ୍ୱଚ୍ଛିବ ବେଣୁଧର କହେ ଗାନେ । ୪ ।
( ଜଣା ପଡ଼ିଲ ରେ ! ବଣାମୃଗାକ୍ଷୀ ତୋ ଗୃଲ—ବୃତ୍ତେ )

—❋—

( ରାଗ — ଖଣ୍ଡକାମୋଦ । ତାଳ — ଏକତାଳୀ )
ଅନୁଚର ଜନ ମୁଁ ତୋ ପିନା ରେ ।
ଅରୁଣ ଧୱ ରୁଷି ବସନା ରେ । ଘୋଷା ।
ଅପାରକାନ୍ତି ତୋତେ ଅନୁସର ସନ୍ତତେ,
ଲଭନ୍ତି ପଗ୍ ନବ ନର୍ତ୍ତନ ତେ । ୧ ।
ଅଞ୍ଜନବଳା କେଶୀ ଆରେ ପ୍ରୀତି ଲାଳସୀ,
ଅଧୋବଦନେ ଛଳେ ରସନା ରେ । ୨ ।
ଅଙ୍କତନ୍ତୁ ମଣ୍ଡନା ମାର ଦର ଖଣ୍ଡନା;
ଅଭଳ୍ଲ ମଣି କୁନ୍ଦ-ରଦନା ରେ । ୩ ।
ଅମ୍ବୁ ରୁହ ଲପନା ମୋ ପରେ ତୁ କୋପନା,
ଅରକ୍ଷ ବେଣୁଧର ରଚନା ରେ । ୪ ।
( ସ୍ନେହକୁ ଏ କେମନ୍ତ ହଣିଲ୍ଲ ରେ—ବୃତ୍ତେ )

—❋—

( ରାଗ—ଭାଟିଆରୀ । ତାଳ—ଏକତାଳୀ )

ଭୂମଣ୍ଡନା ରେ !
ଭୁଲିଲୁକି ପ୍ରୀତି ମନୁ କୁନ୍ଦନ-ବରନା । ଘୋଷା ।
ଭରସା ମୁଁ କରିଥିଲି ତୋତେ   ଭିନ୍ନ କରୁ କପା ଧନ ମୋତେ
ଭାନୁ କର ବସି ଅନ୍ତର୍ଗତେ,
ଭବଦାଗ୍ନି ଏ କି ଶାନ୍ତି କରକଦଶନା । ୧ ।
ଭସି ଯାଉଛି କାମ ସାଗରେ,   ଭେଳା ଜାନୁରେ ବସାଇ ବାରେ,
ଭୃଙ୍ଗକେଶୀ ରକ୍ଷାକର ମୋରେ,
ଭକ୍ତି ନିବାରଣ କର ବାରଣଗମନା । ୨ ।
ଭ୍ରୁକୁଶୋଭି ହେଲି ଯେବେ ଦୋଷୀ,   ଭୁଜ ପାଶେ ବାନ୍ଧ ମଦାଳସୀ,
ଭୂଷି କର ରୁଦ୍ଧ ମୁନି ନାଶି,
ପଳା ଭୃତ୍ୟକୁ କାହିଁକି ଦେଉ ଏ ବେଦନା । ୩ ।
ଭଣେ କବିଚନ୍ଦ୍ର ବେଣୁଧର,   ଭଷ କି ମନେ ଅଛି ତୋହର
ଭୂତପତି ଉରଜା ନିକର ।
ଜଣାଉଛି ଜୀବଧନ ନୁହ ତୁ ଭମନା । ୪ ।
( ଭଚକ୍ଷଣା ରେ ! ଭଜା ତୋ ପ୍ରୀତି କେ ଗତି — ପ୍ରଭୃତି )

—*—

( ରାଗ—ହିଂଡୋଳ । ତାଳ — ଆଠତାଳୀ )

ତମାଳକେଶୀ ତୁଟି ବସନା ।
ତରୁଣୀ ତିଳକ ମୋହିତଦଶନା ରେ । ଘୋଷା ।
ତପୀ ମୋହିନୀ କୁନ୍ଦନ ବରନା ।
ତଳପ ତଳେ ନ ରହ ସ୍ୱମନା ରେ । ୧ ।
ତରଳାକ୍ଷୀ କୃପା କଟାକ୍ଷେ ଅନା ।
ତନୁ ମୋ ସହଇ କେତେ ଯାତନା ରେ । ୨ ।
ତଡ଼ିତାଙ୍ଗୀ ତୋ ଅଙ୍ଗୀକାର ବିନା ।
ତପତି ହୃଦରେ ବଢ଼ଇ ସିନା ରେ । ୩ ।
ତପନ-ବନ୍ଧୁ-ବଦନା ନବୀନା ।
ତରିବା ଜାନୁ ଭେଳା ଦିଅ କନା ରେ । ୪ ।

ଛଡ଼ି ଦେ ହୃଦୟରୁ କାମ ବେଦନା ।
ଚିରବାଞ୍ଛା ଲଙ୍ଘି ତା ହେଉ ଚୂନା ରେ । ୫ ।
ଛଳନା ଛଳ ଦାସେ ଦୁଃଖ ଦେ ନା ।
ଛଟସ୍ଥେ ବେଣୁଧର କରେ ଜଣା ରେ । ୬ ।
( ସଙ୍ଗିନ ! ମୁ କି ଦେଖିଲି ଆଜ—ବୃତ୍ତେ )

—*—

( ରାଗ — ଜୟନ୍ତ । ତାଳ — ଝୁଲ )
ଔଷଧୀଶାନନା ଆରେ ସୁରସରଙ୍ଗିଣି !
ଏ ଗୁମାନ ପରିହର ପରାଣ ସଙ୍ଗିନି । ଯୋଗଭଙ୍ଗିନି ରେ । ୧ ।
ଦାସ ନାଶରେ କି ଯଶ ଅରଜିବୁ ଧନ !
କାଟି ହାସ ପରକାଶ ନାଗସ୍ତ-ରତନ । ଜୀବଜୀବନ ରେ । ୨ ।
ଯାବକ ଲେଖା ସ୍ୱକର ମୁଁ ପଦ୍ମ ତୋହର ।
ଶୀବକ ବଦନରୁ ପାପେ ଅଛୁ ଅନୁସର । ଜବା ଅଧର ରେ । ୩ ।
ଦୋଷ ଥିଲେ ଦଣ୍ଡ ଦିଅ ବାହୁ-ଦଣ୍ଡେ କଷି ।
କର ଧରି ମାଗେ ବେଣୁଧର କବି ଶଶୀ । ପ୍ରୀତି ଲାଳସୀ ରେ । ୪ ।
( ଧୀରେ ଯେବେ କାନନରେ କୃଷ୍ଣ ବିଳମ୍ବିତ — ବୃତ୍ତେ )

—*—

( ରାଗ — କେଦାରଗଡ଼ା । ତାଳ—ଝୁଲ, ଆଠତାଳୀ )
ଟାଣ ପତ୍ରାଧର ପ୍ରାଣ ସଙ୍ଗାତରେ, ଆଣ ନା ମନେ ଏ ଭାବ ଚୋର ।
ମାଣବକ ମୃଗନୟନା ଏବାଗ ବନ୍ଧୁ ବୃହାଁ ଅଟେର ମୁଁ କି ପର ? । ଘୋଷା ।
ଘ୍ରାଣ ଯେବେ ମୋର, ହାଣ ନାହିଁ ଆଉ, ଶାଣଦିଅ ଶର ବଚନ ସ୍ୱର ।
ସାଣ ପରିତାପ, ଜାଣେର ଅମାପ, ପ୍ରାଣ ତାର ଦର୍ପ ଗମାବଢ । ୧ ।
ବାଣସୁତା କାଳ, ହେଲା ଆସି ଭାଳ, ଗ୍ରାଣ ପାର୍ଶ୍ୱଶ୍ୱାସ ପଛଖଛ ।
କାଣେ ପଦ ଯୁଥ ରଚି'ଲିଣି ଅଟୋ ବଦନ ହେବା ନୋହିଲ ଦୂର । ୨ ।
ଷଣ ସ୍ୱନଦେହା, ସୁନ୍ଦର କି ଏହା, ଠଣେମୁଖୀ ଭ୍ରୂ ବିସ୍ତର କର ।
ଷଣ କରେ ଯାହା, ନ ଗୁଣ ସୁଟସ୍ନେହା, ଝଣହେଲା କଲେ ହେବ କାର ? । ୩ ।
ଷଣଦା ବଇନା, ଷଣେ ନ କରନା, କଣ ନେହେ ଅନା ମୁଁ ଅସ୍ଥିର ।
ଭଣଇ ପାମର, ଦୁଃଖୀ ବେଣୁଧର, ଭଣକ ମୁଁ କଷ୍ଟି ଏସଂସାର । ୪ ।
( କହରେ ସଜନି ! ଅଜ ଏଉଜନ୍ମ — ବୃତ୍ତେ )

—*—

( ରାଗ—ଭଇରବ । ତାଳ—ଆଠତାଳୀ )

ଆରେ ଗୁଣ ସାଗରେ ବର ନବଘନ ଶ୍ୟାମ,
ପରିଜନେ-ଏପରି ଦୂଷନା କରେ । ଘୋଷା ।
ତୁ ଜାଣିବାରେ ଦୋଷ ମୋର ଥିଲେ ନାସ୍ତି,
କ୍ଷମ ଅନଙ୍ଗ ଶରେ ଭୂଷନା କରେ । ୧ ।
ବାହୁ ପାଶରେ ବାନ୍ଧ ଦନ୍ତ ସୁରସ ଦିଅ,
ଗଣ୍ଡେ ପଦ୍ମପାଣି ନଟବେଶନା ରେ । ୨ ।
ଅନା ମୁଁ ଅନାଥଭାବେ ପଡ଼ିଛି ଧନ ଚରଣେ,—
କରୁଣା କର ଦୁଃଖ ବଇନା ରେ । ୩ ।
କରଣ ବେଣୁଧର ଏବେ ଧରୁଛି କର,
ଆସ ଆସ କରକ ଦର୍ଶନା ରେ । ୪ ।
( ନନ୍ଦ ନନ୍ଦନ ହୃଦପଦ୍ମ ଚନ୍ଦନଙ୍କୁ—ଭୃତ୍ୟ )

—❀—

( ରାଗ—ପୁରବୀ । ତାଳ—ଆଠତାଳୀ )

ରେ ଗୋବର୍ଦ୍ଧନ ! କଣାପରିଜନେ କାହିଁକି ଏମାନ । ଘୋଷା ।
ନକର କରୁଣା ଭଣା ସାଣା ଜଣା ବାଣୀ ଶୁଣା,
ଆରେ ସୁରସ ନିପୁଣା ତୋ ସ୍ନେହ ସାଜକୁ ଭୁଣା,
ମାରଣରେ ହଜୁଛି ମୋ ଜ୍ଞାନ ରେ । ୧ ।
ତୋ ମଧୁରାଧର ପାନ ହରଷରେ କର ଦାନ,
ଶ୍ରୀମୁଖ କରନା ମ୍ଲାନ ଏ ମୋର ଦଇନ ମାନ,
କରଯୋଡ଼ି ମାଗୁଅଛି ଅଧୀନ ରେ । ୨ ।
ଘନବେଣୀ ମନ୍ଦାଳସୀ ବସନ୍ତ କୋକିଳ ଭାଷୀ,
ଖେଦ ନାରେ ଚଳ ହସି ଏ ଦଣ୍ଡ ଭଞ୍ଜର ଆସି,
ଜୀବ ଯିବା ହୋଇଲା ନିଦାନ ରେ । ୩ ।
କବିଚନ୍ଦ୍ର ବେଣୁଧର ଅବରତେ ତୋ ପସ୍ପର,
ଯାଚକ ହୋଅ ସ୍ୱୀକର ବହ ନା ଏ ଅନାଦର,
ତୋ ବିନା କେ ସାହା ଅଛି ଆନରେ । ୪ ।
( ବଂଶୀଧାରି ! ସର ସିନ୍ଧନ ଜୀବନେ କଣୋଗ୍ରି ହେ—ଭୃତ୍ୟେ )

—❀—

( ରାଗ—ଭାଟିଆରୀ । ତାଳ—ଏକତାଳୀ )

ଆଲୋ ସୁଲୋଚନା ! କେଉଁ ଦୋଷୁଁ ହେଲ ମୋତେ ସେବା ମନା ? ଘୋଷା ।
ବାଲ୍ୟକାଳୁଁ ତୋତେ କବାଧରି କେତେ ଭରସା ମୁଁ ଥିଲି କରି,
ସମୂଳେ ସେ ଆଶା ତରୁ ଛେଦିଦେଲୁ ଆପଣା ମାନସେ ନ ବିଚାରି । ୧ ।
ଏମନ୍ତ କରିବୁ ବୋଲି ଧନ, ଜାଣି ନ ଥିଲି ମୁଁ କଦାଚନ ।
ବନ୍ଧୁ ସମ୍ବନ୍ଧ ତୁଟା ପଣକୁ ବିଶେଷେ ଅନୁଚିତ ଗଣିଲୁ ନ ନିଦାନ । ୨ ।
କାହାଠାରୁ କି କୁଶିକ୍ଷା ବାଣୀ, ଶୁଣି ଅବା କି କଲୁ ପୋଷାଣି ।
ଘୋଷା ହୋଇ ମୋ ସାଥିଟି ନ ରୁଚିଲା, ତାହା ମୁଁ ତ ପାରୁ ନାହିଁ ଜାଣି ।
ଅନ୍ତରେ କପଟ ଥିଲା ଏତେ, ମନ୍ତର ଅବା କେ କଲା ତୋତେ !
ସନ୍ତାପିତ ହେଉଅଛି ବେଣୁଧର ହୃଦୟ ଭିତରେ ଏ ନିମନ୍ତେ ।। ୪ ।

( ଆରେ, ପ୍ରାଣସଙ୍ଗି । ମନ ମୋହନ ମନ୍ତର—ବୃତ୍ତେ )

—❋—

( ରାଗ—ମାଳବଗୌଡ଼ା । ତାଳ—ଆଠତାଳୀ )

ମାଗୁଛି ସିନା ଏତିକ ।
ଆଜ ମୋ ଗୁଣବନ୍ତିକ । ଘୋଷା ।
ଶରଦଚନ୍ଦ୍ର ବଦନା ସରବସ୍ୱ ତୁ ମୋ ଧନା,
ଶରବତ ସୁଗନ୍ଧନା ମାରି ଗର୍ବ କରି ଚୂନା । ୧ ।
କଳକଣ୍ଠ ଜିଣାବାଣୀ ଅଳପ ହସ ସିହାଣି
ଚଳ ଅପାଙ୍ଗୀ ସଙ୍ଗିମା ଜଳଜଦଳ ଲୋଚମା । ୨ ।
କାର କି ଶିକ୍ଷାରେ ଧନ ସାର କରିଛୁ ଗୁମାନ
ଛାର ଏହି ଅବଗୁଣ ଗାର ହେବ କେତେ ଦିନ । ୩ ।
ବେଣୁଧର କହଣୀ ରେଣୁ ଏ ନୁହଇ ଦୋଷୀ
ଯେଣୁ ବସିଅଛୁ ରୁଷି ଏଣୁ ଯାଉଛିଟି ଭାସି । ୪ ।

( ବାଜୁଛି ସନ୍ଧ !ବାଜାରେ—ବୃତ୍ତେ )

—❋—

( ରାଗ—ଖମ୍ବାଜ । ତାଳ—ଆଡ଼ )

ଆଜ ରାଜ ହୋଇପାରେ ମୋ ଜୀବନ ସଙ୍ଗିମା ।
ପାକସ୍ମରଶରଦର ହର ଭ୍ରୂରୁ ଭଙ୍ଗିମା । ଘୋଷା ।
ନକର ବିରସ ମତି ସୁକରିକା ଗଜଗତି ।
ନକର ମୁଁ କଣାଉଁଛି ସୁରସ ତରଙ୍ଗିଣୀ । ୧ ।

ତାପଜନେ କଲେ ପର ଭଷ ମୁଁ ହେବ କାହାର
ନାଶ ଏ ବପୁଶ୍ରୀଭର ଆସ ରସରଙ୍ଗିମା । ୨ ।
ଖଞ୍ଜନନେତ୍ରୀ ସୁମନା, ଗଞ୍ଜ ମୋ ହୃଦ-ବେଦନା ।
କଞ୍ଜ-ପ୍ରିୟକେଶୀ ଅନା ମୋ ଦଶା କ ହେଲାଣି । ୩ ।
କବିଚନ୍ଦ୍ର ବେଣୁଧର ଅବିରତେ ତୋ କିଙ୍କର ।
ନବୀନା ବନ୍ଧୁର କର ଛବି ବନ୍ଧୁବଦନା । ୪ ।
( ଶ୍ୟାମହସ୍ତ ବଂଶୀ ମୋର ହୋଇଲା ସ୍ୱାଧୀନ—ବୃତ୍ତେ )

—o—

( ରାଗ—ଖମ୍ବାଜ । ତାଳ—ଆଡ଼ତାଳ )
ତୋପରି ଆଜ ମୁଁ କାହିଁ ପାଇବି ଜଗତରେ ।
ମୋ ପରାଣ ବନ୍ଧା ନେଇଛୁ ତ ଗଜଗତିରେ । ଘୋଷା ।
ଦେଖିଲି ଯହୁଁ ତୋ ଛବି    ଲେଖିଛୁ ହୃଦେ ବାନ୍ଧବୀ,
ସୁଖୀ କରାଇଛୁ ମୋତେ ମଧୁର ଭାରତୀ ରେ । ୧ ।
ଶରଦ ବିଧୁବଦନା    ଦରକଣ୍ଠୀ ସ୍ନେହାଧୀନା
ଗରବେଣୁ ପଦେ ହାଜ ହର ଭୃଙ୍ଗ ଠଣ ରେ । ୨ ।
ଘନକେଶୀ ଯେନ ଅଳି    ଧନ ତୋର ପଦ ତଳି,
ମନ ଅନୁରୂପେ ମଞ୍ଜୁଳବ ନଖ ନଖ ରେ । ୩ ।
ଧୀର ବେଣୁଧର ଭଣେ    କ୍ଷୀଣମଧ୍ୟା ତୋ ଗହଣେ,
ଯନକାଳ ଯାଉ ଏକା ଏକ୍ଷ ମୋ ବନନ୍ତ ରେ । ୪ ।
( ଜୀବନ ବନ୍ଧୁ ମାଗୁଣି ମାଗୁଣି ରେ ଏଣିକ—ବୃତ୍ତେ )

—❀—

( ରାଗ—ଖମ୍ବାଜ । ତାଳ—ଆଡ଼ତାଳ )
ଏକ ସ୍ୱପନରେ ଆଜ ମୋ ବରନା ରେ ।
କେ କସ କନ୍ଥ ଦେଇଛି ଲଗାଇ ମୋ ନା ରେ । ଘୋଷା ।
ରସିକା ମଣ୍ଡଳ ମଣି    ହସିତ ନକଳ୍ପ ବାଣୀ,
ଶଶିମୁଖୀ ଖଞ୍ଜନାକ୍ଷୀ ପିକ ବଚନ୍ମା ରେ । ୧ ।
ଯାର କର ଗୁର ମାନ    ଯା ରଚ୍ଛୁ ଜୀବଧନ,
ବାର ସୁଚଶୈ ସୁନ୍ଦର ହୋଇଲା ଏ କ ନା ରେ । ୨ ।
ଦରଦ୍ର ନଖି ଛଇଲ    କର ନ ଦେ ଆନ ଭଳି,
ଦରଜନେ ମୁଞ୍ଜ ଶେଷ ଧରଣୀ ମଣ୍ଡନାରେ । ୩ ।

ବେଣୁଧର ବଦନରେ ଦେଖୁ ନ ନେତ୍ର ଶ୍ରୁତିକ,
ତେଣୁ କଦନ ଲଭୁଛୁ ମାନଶରେ ସିଧା ନେ । ୫ ।
( ଶ୍ୟାମଳ ପଙ୍କଜ ନେତ୍ର ଆନନ୍ଦ ବର୍ଦ୍ଧନ— ବୃତ୍ତେ )

— o —

( ରାଗ— ଦକ୍ଷିଣ କେଦାର । (ଝମ୍ପ) ତାଳ—ଅଡ଼ତାଳ )

ଛଟେଞ୍ଚ ଗିରି ମୋ ଦମ୍ଭ ଧରି ଯେ ।
କସ ରାଞ୍ଚ ମନେ କରୁ ମଦନ ସରି ମୋ-ଦମ୍ଭଧରି । ଘୋଷା ।
ଚର କର ନା କୁନ୍ଦରଦନା । ହର ସ୍ମର ସାୟକ ବେଦନା,
ଧରି ଉରଜା ସ୍ୱଖ ସଦନା ଝର ଝର ନେତ୍ରମାନ ଧାର ନ ଝୁରି ! ୧ ।
କାର ଖଚ ବଚନକୁ ଶୁଣି ସାର କରନ୍ତୁ ରମଣୀ ମଣି,
ଗାର କରନ୍ତେ କାଟି ଧରଣୀ ଚାର-ପଞ୍ଚ-ଲପନକୁ ଶୁଖା ନା ଧୀର ।୨।
ଆସ ଆସ ମୋ ଅଙ୍କ ମଣ୍ଡନା ଦାସ ବସ୍ତ୍ରଳା ଦୁଃଖ ଖଣ୍ଡନା;
ଦାସ ବଭୂତି ଦାସ୍ତି ଦଣ୍ଡ ନା ମାସ ଉପବାସୀ ସମ ହେଲଣି ପରି ।୩।
ଯେଣୁ କରୁଛ ଦୁର୍କ୍ଷ୍ୟମନ ତେଣୁ ଲଭୁଛୁ ମୁଁ ଅପମାନ,
ବେଣୁଧର ସାନ କଥା ମାନ ଜାଣୁମଣି ମହାଣିର ଚମକ ଝୁରି । ୪ ।
( ସୁ ଜବାଧରି ମୁଁ ତୋର ପରି—ବୃତ୍ତେ )

— o —

( ରାଗ – ଭୈରବୀ । ତାଳ – ଆଠତାଳ )

ମତାଲସି ! ମୃଦୁବାଣୀ ପଦେ କହ ହସିରେ । ଘୋଷା ।
ତୁ ଯେବେ ତୁଷିବୁ ନଜ କଣାଜନେ,
ସଂସାର ମଧ୍ୟରେ କ ବୋଲିବେ ଜନେ ।
ଇନ୍ଦ୍ରିକାରୁ ଧନ ଏ ଅଧୋବଦନେ,
ମୋ ଧୃତି ଯାଉଛି ଲସି ରେ । ୧ ।
ଜରନ୍ତେ ଧରଣୀ ଶରବାରୁ ମହ୍ଣୀ,
ମରମର ବ୍ୟଥା ହେଉନାହିଁ କହି ।
କୃପା କଟାକ୍ଷରେ ଚାହିଁ ସୁନା ଦେହୀ,
ଅମିୟରସ ବରଷି ରେ । ୨ ।
ଶଙ୍କର ଧଇର୍ଯ୍ୟ ଧ୍ୱଂସିନୀ ଚଳୁସି,
ଯୁବା ପୁରନ୍ଦର ସୁରସ ଆଲୁସି ।
ଦଣ୍ଡ ନା ମଦନେ ମଣ୍ଡ କେଳିପୁସି
ମୋ ଗୁଣ୍ଠ ପଡ଼ ଉଲ୍ଲସିରେ । ୩ ।

ବେଣୁଧର କଣ୍ଠଚନ୍ଦ୍ରର ଦସ୍ପିନ,
ଘେନ ଘେନ ସୁଖ ଆନନ୍ଦ ଦସ୍ପିନ ।
ସାଜ ହେ ସୁବେଶ ହେଜ ପୀନସ୍ତନ,
ନବ ପ୍ରେମ ରସେ ରସି ରେ ୪ ।
( ଘନକୁନ୍ତ, ମାର ମୂର୍ଖଁ ଏ ବାଳକ ବଞ୍ଚା—ବୃତ୍ତ )

— ❊ —

( ରାଗ—ଝିଂଝୋଟ । ତାଳ—ଆଠତାଳୀ )
ରସିକା ମଞ୍ଜୁଳ ଭୂଷାରେ ।
ପରଜନେ କେଣେ ଆଜ ଏ ତୃଷା ରେ । ଘୋଷା ।
ବାଞ୍ଛିତ କାଞ୍ଛିତ ମୁଁ ଅନୁସର । ପାଇଅଛୁ ତୋତେ ଜବା ଅଧରେ ରେ । ୧ ।
ପ୍ରାଣବନ୍ଧୁ ରାଣ ଘେନ ମୋହର । ଆଣ ନା ମାନସେ ଆନ ବଧୂର ରେ । ୨ ।
ଶରଣ କହିଲା ନବନଗରୀ । ଚରଣ ଅଳତା ବଢ଼ି ମୁଁ ସିନାରେ । ୩ ।
ଆସ ଅଙ୍କେ ବସ କାଶବାସିନ । ନାଶ ମାର ଶର ଦର ସଙ୍ଗିନ ରେ । ୪ ।
ବେଣୁଧର ପଟ୍ଟନାୟକ ଭଣି । ତୁ ମୋ କଣ୍ଠତଟ ରତନ ମଣି ରେ । ୫ ।
( କି କଲୁ କି ମୁରୁଛୁଲ ରେ—ବୃତ୍ତ )

— ❊ —

## ଅନ୍ତର୍ଲିପି
### ( ନାୟକ ଉକ୍ତି )

( ରାଗ—ମଙ୍ଗଳ । ତାଳ—ତ୍ରିପୁଟା )

ପିତା ସତ୍ୟପାଳ କେହୁ ବନବାସୀ ହେଲେ ?— ରାମ
ପିଞ୍ଜରେ ଶୁକର ମନ କାହିଁଥାଏ ଭଲେ ?— ବନ
ଅନ୍ଧକାର ନାଶ ହୁଏ ଲଗାଇଲେ କିସ ?— ଦୀପ
ନରସ ସିନ୍ଦୂର ନାମ କି ବୋଲି ପ୍ରକାଶ ?— ଫିକା
କେଉଁଫଳେ ଯୋଗୀମାନଙ୍କର ହୁଏ ଥାଳ ?— ଲାଉ
ତାଳପତ୍ର ଗ୍ରନ୍ଥକୁ କି କହୁଥାନ୍ତି ଭଲ ?— ପୋଥି
ଯବନ ଭାଷାରେ ସାମନ୍ତଙ୍କୁ କିସ କହ ?— ବାବୁ
ଦରିଦ୍ର କବାଟ ବନେ ଦ୍ୱାରେ କି ବସାଇ ?— ତାଟି
ମଙ୍ଗଳ ଅନ୍ତେ ପ୍ରବେଶ ହୁଏ କେଉଁ ବାର ?— ବୁଧ
ବଢ଼ିଆ ଯୋଗ୍ୟ ହୁଅଇ କେବଳ ପତ୍ରର ?— ପାନ

କେଉଁ କେଉଁ ବର୍ଣ୍ଣ ଲେଖ ଆରେ ଗୁଣମଣି ।
ବୋଲେ ବେଣୁଧର ପ୍ରାନ୍ତ ବର୍ଣ୍ଣେ ମୋ ମାଗୁଣି ॥
( ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାବର—ବୃ ଉ )

—✲—

( ରାଗ—ବଙ୍ଗଳାଶ୍ରୀ । ତାଳ—ଝୁଲା )
ନବ ରସିକାକୁ ମାଗିଲା ରସିକ ଭାବରେ ଅପର୍ବ ବୋଧି ।
ନବ ରସିକାକୁ କରତାଳ ପର୍ଯ୍ୟନ୍ତ ଅଛି ଲେଉଟେ ସେ ବୋଧି । ୧ । ( ସନ୍ତ )
ତାପରେ କୃଷ୍ଣପ୍ରୁ ଚତୁର୍ଥ ଅକ୍ଷର ଭବାନନ୍ଦ ପାର କାସ (ତସ)
ପଞ୍ଚମ ଷଷ୍ଠ ଯେ ବର୍ଣ୍ଣ ସୁରପତି କରାୟୁଧକୁ ବଚନ । ୨ । (ପବ)
ଦିନନାମ ଷଡ଼ ଅକ୍ଷର ଗୁପତ ଜାଣିପାର ତା ସୁମୁହିଁ ।
ଅନ୍ତରେ ସମ୍ମତି ରଙ୍ଗିଣ ଝଟତି ବୋଲେ ମୁଁ ତା ଜାଣେ ନାହିଁ । ୩ ।
କ ପରମାସିଲା ନାୟିକାକୁ ଭଲ ଚତୁର ନାୟକ ମଣି ।
ଥିଲେ ଅନୁଭବୀ କହିବ ଦେବ ଧ୍ୟାନ କର ବେଣୁଧର ଭଣି । ୪ ।
( ଟଭଜଣା ସ୍ତନା ନଖାନା ମୋ ବନା—ବୃତ୍ତେ )

—✲—

( ରାଗ—ଚକ୍ରକେଳି । ତାଳ—ଝୁଲା )
କହେ କେ ରସିକ ବାଳାକୁ ଗୃହିଁ ।
ମାଗିବା ଦ୍ରବ୍ୟ ଦେବୁ ଚନ୍ଦ୍ରମୁହିଁ । ଘୋଷା ।
ମାତା ଆଗେ ଶିଶୁ କସ କରଇ ?— ଅଳି
କ ଭାଙ୍ଗିଲେ ରାମ ମିଥିଳା ଯାଇଁ ?— ଧନୁ
କ ଯେଉଁ ଅନ୍ତରେ ମଥୁରା ଗଲା ?— ରଥ
ଜଗାଇ ମାଧାଇ ପୂର୍ବେ କ ଥିଲେ ?— ପାପୀ
କେଉଁ ଶିବଙ୍କ ଶ୍ରେଷ୍ଠ ଅନୁଚର ?— ନନ୍ଦୀ
କ ଥିଲେ କେଉଁ କର୍ଣ୍ଣ ନୃପବର ?— ଦାତା
ମାର ଉରଗରେ କ ନାମ ଧରେ ?— ରମା
କ ନାମ ବହଇ ନଟ ଘରଣୀ ?— ନଟୀ
କବିତା ଯେ ଲେଖେ ତାକୁ କ ଭଣି ?— କବି
ମାର ଉପରେ କ ନାମ ଧରେ ?— ରମା
କେଉଁ କେଉଁ ବର୍ଣ୍ଣ ଲେଖ ସନ୍ତରେ ॥

ଭ୍ରାନ୍ତ ଭନାଣି ଆଦ୍ୟ ପାଠ କର ।
ଯା ହେବ ତାହା ଲେଂଡ଼ ବେଣୁଧର ॥
( କୃଷ୍ଣ କଥା ଭଜ ରେ ଜୀ ସକଳ – ବୃତ୍ତେ )

— ❋ —

## ବିଦେଶ ଯାତ୍ରା ନାୟକ ଉକ୍ତି

( ରାଗ—ଜୟନ୍ତ କାମୋଦୀ । ତାଳ—ଏକତାଳୀ )
କଳାମଣି ଥାଅ ରେ, ଯାଉଛୁ ବିଦେଶରେ । ଘୋଷା ।
ତୋ ପାଶୁଁ ହେଉଛୁ ଭିନ୍ନ ଆରେ ରଙ୍ଗରଞ୍ଜନ ।
ମାନ କରି ନବସିବୁ ମୋ ଜୀବର ଜୀବନ । ୧ ।
ବରଙ୍ଗୀ ମୋ ନବରଙ୍ଗୀ ସଙ୍ଗୀତ ବିନେ ଦମ ।
ଭଙ୍ଗି ଦେବୁ ନାହିଁ ମନୁ ଅନୁରାଗ ସଙ୍ଗିନ ! । ୨ ।
ଯେତେଦୂରେ ଥିଲେ ପାଶେ ଥିଲପରି ସିନାରେ ।
ପ୍ରୀତି କେବେ ଦୂର ହୋଇ ପାରେ କି ଅଭିନ୍ନା ରେ । ୩ ।
ଗଗନେ ଚନ୍ଦ୍ର ତପନ ଜଳେ କଇଁ ପଦ୍ମା ।
ଶୂନ୍ୟେ ଘନ ବନେ କେକୀ କି ଜାଣୁକ ମୋ ଧମା । ୪ ।
ତୋ ଅଧୀନ ବେଣୁଧର ତେବ ନଣାମଣିକ ।
ହରଷେ ମେଲଣି ଦିଅ କହି ମୃଦୁ ବାଣୀକି । ୫ ।
( ଗୁଣମଣି କହ ରେ, କି ଦୋଷ ମୋହରରେ—ବୃତ୍ତେ )

— ❋ —

( ରାଗ—ସୁରଟ । ତାଳ—ଝମ୍ପ )
ମୋର କରୁଣା-କଳପଲ୍ଲୀ ଟି ।
ପ୍ରୀତି-ବିଚକ୍ଷଣା ଯୁବା-ମଲ୍ଲି ଟି । ଘୋଷା ।
ନ କରିବୁ ମାନ • ଆରେ ଜୀବଧନ
ଘୁମୁରୁ ମେଲଣି ହେଲେଟି । ୧ ।
ଏତ୍ତ ସ୍ନେହ, ଥାଉ ତେବେ ଭଙ୍ଗ ନୋହୁ,
ସଜ୍ଜନରେ କଣା କଲଟି । ୨ ।
ସରଳ ହୃଦୟା ଜଣା ହେଲେ ଦୟା,
ଜାଣ ମୁଁ ପରାଣେ ମଲଟି । ୩ ।

ବୋଲେ ବେଣୁଧର— କର ଜଣାକର,
ଥାଅ ବଦେଶକୁ ଗଲଟି : । ୪ ।
( ଶ୍ୟାମବନ୍ଧୁଙ୍କୁ ନଇତେ ଦେଖିବ—ବୃତ୍ତ )

— ❋ —

( ରାଗ—ଭାଟିଆରୀ । ତାଳ—ଏକତାଳୀ )

ଆରେ ଚନ୍ଦ୍ରମୁଖି ! ଗୁଞ୍ଜରିବାକୁ ଶଙ୍କ୍ରିନ ବଲ୍ଲିଶି । ପଦ ।
ପଡ଼ିଲୁ ଆସି କ ଦଶା ଧନ ସୁବାକାଳେ ବନ୍ଧୁ କଲ ଭନ୍ନ,
ନବ ରସବଶ ନବୀନ ପୀରତି,
ବୃଥା ହେଲା ନବ ଯଉବନ ରେ । ୧ ।
କୋଟି ଜନ୍ମେ ଶିବା ହର ସେବ ପାଇଥିଲି ତୋତେ ରେ ବାନ୍ଧବ,
କେଉଁ ଅଭାଗ୍ୟରୁ ନ ଦେଖିବ ଅଉ
ତୋର ଦରଦସା ହାସ ଛବି ରେ । ୨ ।
ଯେତେବେଳେ ଧନ ଥିଲ ପାଶେ ତୋଷୁଥାନ୍ତି ତଉ ମୃଦୁଭାଷେ,
ସେ କଲେ ମଣଇ ଶଚୀପତି ପଦ,
ଲଭିବାର ଥିଲ ମଦତଳେ ରେ । ୩
ରହିଁ ଧନ ତୋ ଶ୍ରୀମୁଖ ଟେକ ଥରେ ହେଲେ ଥାଏ କଳା ଦେଖି,
ବେଣୁଧର ପଡ଼- ନାଥକ ବଦେଶୀ-
ହେବାର କରମେ ଥିଲଟିକ ରେ । ୪ ।
( ଶ୍ୟାମବନ୍ଧୁ ପର କେଳୁ ବଣୁନାହିଁ—ବୃତ୍ତ )

—❋—

## ନାୟକର-ପତ୍ର

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

❋ ଧନ, ଆହା ମୁଁ କ କଲି ।
ନବନାଗରୀ ତା ତୋତେ ଏତେ ଦୁଃଖ ଦେଲି । ଘୋଷା ।
ଆଜନମ ସୁକୁମାରୀ ଲଜ୍ଜାଳୀ ବପୃସୀ ।
ହାତ ଧରି ନାହିଁ କରୁଥିଲୁ ଘନକେଶୀ । ୧ ।
ମୁଁ ତାହା ହେଜି ନ ପାରି ବଦେଶେ ଅଇଲି ।
କଲି ବଲି ହୋଇ ଏବେ ସିନା ସରିଗଲି । ୨ ।

---

❋ ଏହି ଗୀତରେ ପ୍ରତିଆଡ଼ି ପ୍ରଥମ ଅକ୍ଷର ପାଠକଲେ ଘୋଷା ପଦଟି ବାହାରିବ ।

ଭଳା କୁଶଳା ତୁ ଅଛ ପଣ୍ଡିତା ଛଇଳ ।
ଲିତାଏ ଅନ୍ତର ହେଲେ ବସୁ ବସୁ ଲୁହ ଢାଳ । ୩ ।
ନ ସରେ ଏବେ ମୋ ଦିନ ସେତ୍ତ ଭାବ ଭାବ ।
ବନ୍ଧୁ ତୋ ବିନା ମୁଁ ଖିନ୍ନ ହେଲି କି କହିବ ? । ୪ ।
ନାମ ଧରି ଡାକୁଛୁ ତ ପାଶେ ନାହୁଁ ଗୋସ୍ଥ ।
ଗଞ୍ଜୁଛି ଚଞ୍ଚବଶିଖେ ମଦନ ବଇସ୍ଥ । ୫ ।
ଘଣ୍ଟି ତା ବିଷମ ଯାତ୍ନା କରିବ ଦଢିହୀଙ୍କି ।
ଯାତନା ସହୁଛି ଯେତେ ନ ପାରେ ତା ଲେଖି । ୬ ।
ତୋ ପାଶେ ଯିବାକୁ ଯେଣୁ ଅକ୍ଷମ ହୋଇଛି ।
ତେଣୁ ବେଣୁଧର ଏହି ପଦ ପଠାଇଛି । ୭ ।
( କୁଞ୍ଜେ ମୁରଲୀ ବାଜଇ—ବଡ଼ିଉ )



( ରାଗ--କାସ୍ମିର । ତାଳ – ଏକତାଳୀ )
ଆହା ପ୍ରାଣଧନ ମୋ ଜୀବ ଜୀବନ,
କାହିଁ ଗୁପ୍ତ ଅଇଲ ରେ ମୋ ରଙ୍କ ରତନ । ଘୋଷା ।
ତୋ ସୁଧା ମୟୁଖ ଅକଳଙ୍କ ମୁଖ,
ନ ଦେଖି ନେତ୍ରେ ଧନ ହୋଇଲି ନାରଖି । ୧ ।
ତୋ ଛଟକ ଛବି ଆହା ରେ ବାନ୍ଧବ,
ସଚେତନ ଏଥି ଯାଇ ନୟନେ ଦେଖିବ । ୨ ।
ସୁଧାକଣା ବାଣୀ ସତେ କର୍ଣ୍ଣେ ଶୁଣି,
ଲଭିବ ଇନ୍ଦ୍ର ସମ୍ପତ୍ତି ଆରେ ଗୁଣମଣି । ୩ ।
ଦଣ୍ଡେ ଦଣ୍ଡେ ବଶୁ ପାଶକୁ ନ ଆସୁ,
ମୁକୁର ବିମ୍ବ ପରାୟେ ବଚନ ନ ଭାସୁ । ୪ ।
ଧାନ ବେଣୁଧର ପଞ୍ଚନାପୁକର,
କେଉଁ ଅପରାଧେ ଛିନ୍ନ କଲୁଟି ଅନ୍ତର । ୫ ।
( ଦେଖ ଦେଖ ସଖି ! କାଳି ବଂଶୀଧର—ବୁଭେ )



( ରାଗ - ଖରବାଣୀ । ତାଳ—ଅଠତାଳୀ )

ଆହା ମୁଁ କ ବୁଝି କଲି ରେ ।

ଆଜନ୍ମ ସୁଖୀକ ଗୃହୁ ଯା ଅଇଲି । ଘୋଷା ।

ଆଖି ଆଗୁଁ ହେଲେ ନିମିଷେ ଦୂର, ଆଳୀକି ମୋ କଷ୍ଟ ଲାଗଇ ପୂର ରେ ।୧।
ଆଶା ଭରସା ମୋ ନାହିଁ ତା ବିନା, ଆନନ୍ଦଦାୟିନୀ ନବ-ନବୀନା ରେ । ୨ ।
ଆଲିଙ୍କ ଦେଇଣ ସରେ ତା ମୁଖ, ଆର ପାଶରେ ଯିବ ମୋ ସବୁ ଦୁଃଖ ରେ । ୩ ।
ଅଶ୍ରୁ ବନ୍ଧୁ ମୁଁ ପ୍ରୀତି-ଲତାର, ଆଜ୍ଞା ତ ଅବଜ୍ଞା କରିଛୁ ତାର ରେ । ୪ ।
ଆସି ହେଲା ଘୋର-ବରଷା କାଳ, ଆଉରେ ଧନ ହେବନି ଅକାଳ ରେ । ୫ ।
ଅଠନେଶ ସଙ୍ଗେ କି କଲି ଆଣି, ଆକୁଠ ଚିନ୍ତେ ବେଣୁଧର ଭଣି ରେ । ୬ ।

( କି କଲି କି ମୂରୁଛିଲା—ବୁଝେ )

—*—

( ରାଗ—ହରପ୍ରିୟା । ତାଳ—ଆଠତାଳୀ )

ଧନ ଦଗ୍ଧ ବସିଥିବୁ ମଥା ପୋତି ରେ, ଲୟବନ୍ତ । ଘୋଷା ।

ସରୋଜନୟନୁ ବହ୍ନି ଅଶ୍ରୁଜଳ । ଉରଜରେ ପଡ଼ି ପଡ଼ୁଥିବ ଢଳ ॥
ବରଜି ନ ଥିବୁ ମୋ ଭାବ ସକଳ । କରଜରେ ଚିରି ଷତ୍ତ ରେ । ୧ ।
ଅଙ୍ଗକୁ ଅଙ୍ଗନା କରିବୁନି ହେଳା । ଭ୍ରୂଭଙ୍ଗୀରୁ ଅନଙ୍ଗ ରଙ୍ଗ ନବବାଳା ।
ରଙ୍ଗିମ ଅଧର ଦଶିବନି କଳା । ସଙ୍ଗ ନୋହିବାରୁ ପତି ରେ । ୨ ।
ଆଳିଙ୍କ ବଚନ ନ ପାଳିଣ ବାଳୀ । ଗାଳି ଦେଉଥିବୁ ବିଧାତାକୁ ବଳି ॥
ବଳପୂର୍ବେ ବଳୀଦେଇ ଶୂଳମାରି । କରେ କହୁଥିବୁ ସ୍ମୃତି ରେ । ୩ ।
ଆଶାକରି ରହିଁ ବସିଥିବୁ ମୋତେ । ଭାଷା କହୁଥିବୁ ଧଳା ଯିବ ପତେ ॥
କଷା ନୋହୁଥିବୁ ନସାରେ ତ ମନେ । ବେଣୁଧର କହେ ଚିନ୍ତରେ । ୪ ।

( ରାଧେ ତୋହଲାଗି ଶ୍ୟାମକ ବଞ୍ଚିବ—ବୁଝେ )

—*—

( ରାଗ—ତୋଡ଼ି । ତାଳ—ଝୁଲା )

ମୋ ବନ୍ଧୁ, ଗୀତ ବଚନାଦିନୀ ।

ଗେଲ ଗେଲ ହୋଇ, କଥା ଯା କହଇ,
ଛଣା ପୀୟୁଷକୁ ଜିଣି । ଘୋଷା ।

ଗୁପତ ମନ୍ଦିରେ ବୁଲୁ ଧୀରେ ଧୀରେ,
ବାଜିବା ଛଳେ ବାଜେଣୀ ।

ଗରବେ ସେ କାଳେ ଏମନ୍ତ ସେ ବୋଲେ,
ପୁଂସ ମନ କିଣି କିଣି । ୧ ।

ଗଣକଣା-ଏଣୀ ନୟନା ସୁବେଣୀ,
ନାଗ ଶ୍ରେଣୀ ମଥାମଣି ।
ଗତି କଲା କାଳେ ପଡି ମତି ଟାଳେ,
ଲୀଳାବତୀ ସୁଲକ୍ଷଣୀ । ୨ ।
ଗଣନାରେ ତାର— ସମକେ ସଂସାର,
ମଧ୍ୟେ ନ ଥିବେ ତରୁଣୀ ।
ଗତ-ଦାସ୍ୟିମାର, କଣା ପରକର,
ପଣେ ମୁଁ ବାନ୍ଧଇ ବେଣୀ । ୩ ।
ଚନ୍ଦ ଚନ୍ଦନରେ ମୃଗମଦମାନେ,
ଟହାବଳୀ ସେବା କରି ।
ଗବାଉରକେ ତା ଲେଖିଛୁ କବିତା,
ବେଣୁଧର ଚୋର ଭଣି । ୪ ।
( ରସିକା, ଜଣେ ଏକା ଏକ୍ଷ—ବୁଝେ )

—o—

( ରାଗ—ଚୋଖ ପରଜ । ତାଳ—ଆଠତାଳୀ )
ରେ ସଙ୍ଗିନ ! ତୋ ନୟନ ଭ୍ରୂଭଙ୍ଗୀ ।
ଚୋରେ ଗୁରୁକର ଶିଖିବ ଆଦର,
ଛମାସେ କଣା କୁରଙ୍ଗୀ ରେ । ଘୋଷା ।
ଧନେ କଲ ସ୍ପୃହି ମାନସ ମୋହର, କବା ଶିବାର କୋଦଣ୍ଡ ।
ପ୍ରେମ ଚଣେ ରଣ ରଣ କ ଟେକେ ଟଳ କଶ ବେଢ ଖଣ୍ଡରେ । ୧ ।
ଧନେ କଲ ପାଞ୍ଚ ଦେଖିଣ ସୁପଞ୍ଚ, ଇମ୍ଭୋରୁ ତୋ ଭ୍ରୂରୁନଗ୍ଣ ।
ଗରୁଡ଼ର ଶିରେ ଖେଳୁଛନ୍ତ କରେ, କେକ କଳା-ନାଗ ବସ୍ତ ରେ । ୨ ।
ପୁଣି ଭବ୍ରଲ ସେ କ ପ୍ରେମ ବଲ୍ଲୀ, ଯୁଗଳ ଜଠ ଅଙ୍କର ।
ବଢ଼ି ବୋହଲେ ରଖିବକ ଭଲେ ଦନ୍ତ-ତରୁ କର ଗାଢ ରେ । ୩ ।
ଲେଖି ମୃଗମଦ ରେଖି ଦେବା ମୋଦ-ମଧୁ ସୃଷ୍ଟି ଖଣ୍ଡିକାରେ ।
ବେଣୁଧର ସାକ୍ଷୀ ସେ ଶୋଭ ତ ଲେଖି ନ ପାରବେ ଖଡ଼ିକାରେ ରେ । ୪ ।
( ସଙ୍ଗାତ; ଏ ଗବ ରତ୍ନବଟି କ—ବୁଝେ )

—✻—

( ରାଗ—କାଫିବାଣୀ । ତାଳ—ଆଠତାଳି )

ଟେକ ମୁ ରୁକ ଦାସୀ ରେ ।

ଟେକପ୍ରଣା ମୋର କୋକନଇଷ୍ଟି ଲେ । ଘୋଷା ।

ଟଣା ଚନ୍ଦ୍ରାନନ ଚନ୍ଦନ ନୟନା । ଟାକ ଥାଇଁ ପ୍ରେମବଚନେ ପିଆ ରେ । ୧ ।
ଟିକେ ଗୁପ୍ତ ଗୁପ୍ତ ହେଲେ ଅନ୍ତର । ଟିକ ଟିକ ହୋଇଯାଏ ଅନ୍ତର ରେ । ୨ ।
ଟେର ବାଡ଼ ଆର ପାଖରେ ଥାଇ । ଟେଲିବା ଚୋର କ ଶୋଷ ଛଇ ଲେ ।
ଟାପର ଛଳେ ଯା ବଚନ କହୁ । ଟପ ଟପ ସୁଧା ତ ବରଷାଉ ରେ । ୪ ।
ଟଳଗଲ କଣ୍ଠ ନ ଗଲ ପାଶେ । ଟେକର ଏଣୁ ବେଣୁଧର ହସେ ରେ । ୫ ।

( କ କଲ କ ମୁ ରୁଛଲ ରେ – ବୃ · ଭ )

—❀—

( ରାଗ—ସାରଙ୍ଗ । ତାଳ—ଆଠତାଳି )

ଧରମଣ୍ଡନା ମୋ ରମା । ଧୀରାଗ୍ରିବ ସୁଖଧାମା ।
ଧବସୁଆଗିମ ବାମା । ଧଇର୍ଯ୍ୟହର ସୁଷମା । ୧ ।



"ଧନ ମନ ଛନ ଛନ । ଘନ ଘନ ଆନ ଆନ ।
ଧ୍ୟାନ ଜାନ ଗାନ ତାନ । ମାନ ମାନଇ ନୟନ" । ୨ ।

( ଷୋଡ଼ଶ ଦଳ ପଦ୍ମବନ୍ଧେ ଗୀତର ଦ୍ୱିତୀୟ ପାଦ ନ୍ୟାସ )

ଧୀରେ ଆସି ମୋ ପାଶରେ । ଧର ପାନ ବୋଲକାର ।
ଧ୍ୟାନେ ନ ଶୁଣିଲ ତାର । ଧିକ ଏ ଜୀବନ ମୋର । ୩ ।
ଧାଇଁ ଧାଇଁ ଅନୁକ୍ଷଣ । ଧକା ମାରୁଛି ମଦନ ।
ଧାରୁଆ ଶରମା ଘେନ । ଧସର ମୁଁ ତ ନିଦାନ । ୪ ।
ଧାଡ଼ିକାରେ ଏଥି ପିତ । ଧର କର ଜଣାଇତ ।
ଧାର ଲୁହକୁ ପୋଛିତ । ଧାଏ ବେଣୁଧର କବି । ୫ ।
( କୃଷ୍ଣ ଯିବେ ମଥୁପୁର—ଦୂତୀ )

—※—

## ନାୟକ ଅନୁଚିନ୍ତା

( ରାଗ—ରସମନ୍ଦାର । ତାଳ – ଏକତାଳୀ )

ଗୁଣନିଧି ନିରବଧି ମନରୁ ନ ଟଳୁ ରେ ।
ଗୁଣ ଗୁଣିବାକୁ ସିନା ବଚ୍ଛନ୍ଦ ହୋଇଲୁ ରେ । ଘୋଷା ।
ରାଜଗଞ୍ଜ ମୁଁ ମେଲାଣି          ମାଗିବାକାଳେ ରମଣୀ,
କେତେ କଣ ଧନ ମୋତେ ମନା କରୁଥିଲୁ ରେ । ୧ ।
ଗଳାମାଳ ଛାଡ଼ ବନା          ସରି ଯାଉଛି ନୟନା,
ଏବେ ଗୁରୁ ଚନ୍ଦ୍ରାନନ କାହିଁ ଲୁଚାଇଲୁ ରେ । ୨ ।
ଗୋପ୍ୟ ତୋ ପୀରତି ଭାବ          ସହେ ନ ମନରୁ ଯିବ,
ଗଞ୍ଜି ଅଛୁ ରତିଧବ ପାଞ୍ଚଶର ନୋହିଲୁ ରେ । ୩ ।
ଗୁପତେ ମନ୍ଦିରେ ଯାହା          କହିଛୁ ମୋର ଦରଦେହା,
ଗଣ୍ଡମଣ୍ଡଳକୁ ସ୍ନେହେ ଚୁମ୍ବନେ ପରିଲୁ ରେ । ୪ ।
ଗୀତେ ବେଣୁଧର ଭଣି          କାମ ଶରଚାପେ ଭଣି,
ବାମନପୁରା ସୁକେଶୀ ନୟନେ ମାରିଲୁ ରେ । ୫ ।
( ଏ କାଳରେ ଘନ ଘୋଟି କି ଅଛନ୍ନ ଚନ୍ଦ୍ର – ବୃ ଉ )

—※—

( ରାଗ – ସିନ୍ଧୁ କେଦାର । ତାଳ – ଝୁଲା )

ଲୁଚି ଦେଖିଥିଲି ଯେବେ ତୋ କେଶ ବନ୍ଧାନ ।
ଲଜ୍ଜାବତୀ ପ୍ରେମକଳା ମୋ ଲଳନ ! ଜୀବର ଜୀବନ ରେ । ୧ ।
ଲପନ-ଚନ୍ଦ୍ରକୁ ଚୋରି ଦେଇ ଚନ୍ଦନ ବିନ୍ଦି ।
ଲଗିଥିଲୁ ମୃଗମଦ ରେ ଲଳନା ! ଲଲାଟରେ ନେଇ ରେ । ୨ ।

ଲଜ୍ଜାଶୀଳା ରୂପସୀ ରମା ଲାବଣ୍ୟ ପ୍ରତିମା
ନବ୍ୟା ବିଚକ୍ଷଣା ବାଳା ମୋ ଲଳନା ! ସୁକୁମାରୀ ବାମା ରେ । ୩ ।
ନୀଳ କଟାକ୍ଷ ଅଧର ସୁଖ ଚମ୍ପା ଗୋରୀ ।
ଲୋଚନେ ରଞ୍ଜି ବାଳାକେ ମୋ ଲଳନା ! କଜ୍ଜ୍ୱଳର ଶିଖା ରେ । ୪ ।
ଲେଖି ଫିଙ୍ଗି ଦେଲ ଖଣ୍ଡେ ପତ୍ର ଏତେ ବୋଲି ।
ଲକ୍ଷ ଦେବ କି ଚରଣେ ରେ ଲଳନା ! ଫୁଟୁକି ମାଇଲ ରେ । ୫ ।
ଲେଖିଛି ଅନାଇଁ ଯାହା ବୋଇଲୁ ରେ ଧନ !
ଲକ୍ଷେଥର କଲ୍ପ ହେଲେ କି ଶୁଣିବ ଆଉ ସେ ବଚନ ରେ । ୬ ।
ଲଭିବ କି ଏତେ ତୋତେ ଗ୍ଳାନି ବିଳାସିନି !
ଲଗାଇ ରଖିବ ହୃଦେ ମୋ ଲଳନା ! ବେଣୁଧର ଭଣି ରେ । ୭ ।
( ମଦାଳା ମଣିକି କେବେ ଜାନୁରେ ବସାଇ—ବୁଝେ )

—❀—

( ରାଗ—କନଡ଼ା । ତାଳ—ଏକତାଳୀ )

ପଞ୍ଜର ପାଖରେ କେବେ ବସିଥିଲୁ ବିଚିତ୍ର ବେଣୀଟି ପିଠାଇ ।
ପଣତଟି ମସ୍ତୀପରେ ଲୋଟାଇ ।
ପଡ଼ିଥିଲ କେଶ କପୋଳ ଉପରେ କେବଅଙ୍କେ ବାନ୍ଧି ହୋଇ ରେ,
ପ୍ରେୟସି ! ପନ୍ତ ପନ୍ତ ତୋ ଅଳକ ଝଟେଇ, ପଦ୍ମକରେ ମଠୁଥିଲୁ ସୁମୁଖୀ
ପଣ୍ଡିତାମଣି ଦରପଣ ଆଗରେ ଥୋଇ ହୋଇ ଅତି ସୁଖୀରେ । ୧ ।
ପଞ୍ଚ କମ୍ବାଧର ପଲଙ୍କରେ ପର ଶୋଇଥିଲ ମୁହିଁ ସେକାଳେ ।
ଭଞ୍ଜବର୍ଣ୍ଣି ସୁଚିତ୍ର ପଙ୍କ୍ତାତଳେ ।
ପଦଣ୍ଡା ମଞ୍ଜୁଳା ଚକ୍ଷୁସ ମତ୍ତଳା ମୋ ନିଦ୍ରାଙ୍କୁ ଚଞ୍ଚଳେ ରେ ।
ପ୍ରେୟସି ! ପଛୁଁ ଗୁପତେ ହୋଇ ଚରଚର, ପୀନଉରଜେ ମଣ୍ଡିଲ ମୋତର
ପରମଞ୍ଜ କଥା ଏକ ବୋଲିକର ଭାଷିଲୁ ପ୍ରୀତି ମନ୍ତ୍ରରେ । ୨ ।
ପକ୍ଷିବଳ ହସି ତେତେ ସେପୁରତେ ପରପର କର ଦେଉଛ ?
ପଦାବଳୀରେ ପର ତୋ ସଉଛ ?
ପତଣ ଝକା ସେଦକଠାରେ ଏତେ ଝଦ୍ଧ ପୃ ଭାବ ଭାଣ୍ଟିକ ରେ ।
ପ୍ରେୟସି ! ପ୍ରଶ୍ନ ଶୁଣି ଧନମଣି ମୋହର, ପଟେ ବଡ଼ିଲୁ ଯେବଣ ଉତ୍ତର
ପଥରଗାର ପସଦ୍ୟେ ରହିଅଛି ପଥର ହୃଦେ ସେ ଗିରରେ । ୩ ।

ପଣାଖେଳ ହଣାହଣିରେ ପ୍ରମଦା ପଞ୍ଜରେ ତାଙ୍କ ଖଣ୍ଡନା ।
ପ୍ରେମଲତା ମଗ୍ନମଣ୍ଡନା ।
ପଙ୍କିଳ ନୟନେ ବହିଥିବୁ ନୀର ପ୍ରେମର କର ଭାବନା ।
ପ୍ରେୟସି ! ପଞ୍ଚାନନ ସାହାନେବେ ସଂଗତ,ପଦ୍ମଶ୍ରୀ ପାଇଁ ତୋର ଭଜନ
ପଞ୍ଚନାପୂଜ ବେଣୁଧର ବଦେଶୀ ପଡ଼େ ଲେଖଇ ଏତିକ ରେ । ୪ ।
ଭଜନ୍ତା ( ନବୀନା ଯୁବତୀ ମଧୁ ସମୟରେ – ବୃତ୍ତ )

—❀—

( ରାଗ – କାନ୍ଦବାଣୀ । ତ୍ରିପୁଟ—ଏକତାଳୀ )

ତପୋବଳ ମଗ୍ନ ମୋ ଝର ରେ ।
ଦୁଃଖର ଭୁ ମୋ ପାନ ସର ରେ ।
ଉଳର ଅଞ୍ଜନା କୁନ୍ତଳା ଛନ୍ଦିକା,
ତରଫୁଟା ରଙ୍ଗଜବାଧର ରେ । ଘୋଷା ।
ବନ ବନକର ଗତ ତୋର ବୃନ୍ଦାସୀରେ ମନେ ମନ୍ଦ ମୋର,
ଦର୍ପକ ଚାମର ଟରେ କବନ୍ଦର,
ଦେଖୁଛି ବନର ହୃଦୟର ରେ । ୧ ।
ଭଗନଶୋଭ ରେ ଧାଳାମଣି ତନ୍ଦ୍ରବନ୍ଧୀ ତା ଗୁଣ ଗୁଣି,
ବନକ ଟି ଫୁଟ ମଣ ଲାଗେ ମୋତେ
ଦେଖି ନ ପାରି ତା ନେଷ ଠବ ରେ ।  ।
ତାପ ବହୁଳା ରେ ଉପଦାନ, ହଣିପାଏ ତାର ବୃନ୍ଦପାଣି,
ତମ୍ବୁଳ ଭାଙ୍ଗିକ ଶୀରେ ନ ପଡ଼ଲା,
ଡୋଇଲ ଯା ଦୂର ଦେଶ ପେର ରେ । ୩ ।
ତାମିସ ଭାନ୍ତ ରେ କଳତାପୀ, ଦେଖିବ ସତେ କ ଏଥୁ ପାଇ
ଘନ ବେଣୁଧର ଭକ୍ତର ସାଗର,
ଚଖାଇବୁ ତୋ ଚୁମ୍ବକୁ ନେଇ । ୪ ।
( କ ଶୁଣିଲ ଆଜି ନୂଆ ଭଗରେ—ବୃତ୍ତ )

—❀—

( ରାଗ—ଦ୍ରାବଡ଼ୀ । ତାଳ—ଏକତାଳୀ )

ବସନ୍ତକାଳ ହୋଇଲା ଆସି ମଳୟାନିଳ ବହିଲା ।
ଚୂତ ବକୁଳ ହେଲେ ମୁକୁଳ ଲତାଏ ପଲ୍ଲବାଇଲା । ଘୋଷା ।
ଋତୁରାଜନ ବିଜୟ ଜାଣି ପିକ ପଞ୍ଚମେ ଗାଇଲା ।
ଭୃଙ୍ଗ ମଙ୍ଗଳକାଳକୁ ଜାଣି ଝଙ୍କାର ଶଙ୍ଖ ବାଇଲା । ୧ ।
ଜାତି ଯୂଥିକା ଗୋଲାପ ମଲ୍ଲୀ କୁସୁମ ବିକସାଇଲା ।
ଯୁବତି ଯୁବାମାନଙ୍କୁ କାମ ଆଲିଙ୍ଗନେ ଉତ୍ସାହିଲା । ୨ ।
ନୂତନ ପ୍ରୀତି ନିତି କ ନିତି ଅତିଯତ୍ନେ ବଢ଼ାଇଲା ।
ଅନୁରାଗରୁ ଅଗ୍ରରୁ ପାଠ ଏକାନ୍ତେ ସେ ପଢ଼ାଇଲା । ୩ ।
ଏକା ବିଚ୍ଛେଦିଜନଙ୍କୁ ଫୁଲଶାୟକ ପେଶି ମାଇଲା ।
ଏ ବେଣୁଧର ପଞ୍ଚନାୟକ ଚିନ୍ତାରେ କ୍ଷିନ୍ନ ହୋଇଲା । ୪ ।
( ଆଉ କି ଶ୍ୟାମ ଆସିବେ ସଖି—ବୃନ୍ଦେ )

—o—

( ରାଗ—କେଦାର । ତାଳ—ଝୁଲା )

ଶ୍ରୀକେ ରସିକବର ବିଦେଶେ ରହି ।
ଏ ଘନକାଳେ ପ୍ରିୟା କୋଳରେ ନାହିଁ ହେ ॥
ଆହାରେ ପ୍ରାଣଧନ ରହିଲ କାହିଁ ।
ଚମ୍ପା ବରନା ଝୁରୁ ଚନ୍ଦ୍ରମା ମୁହିଁ ଯେ । ୧ ।
ଶୁଣିଲେ ସରବଣ୍ଣ ଏ ଘଡ଼ ଘଡ଼ ।
ଚମକ ପଡୁଥିବୁ ଘଡ଼କ ଘଡ଼ ଯେ ॥
ପିଣ୍ଡ ପରାଣ ଯାଉଥିବତ ଗ୍ଲଡ଼ ।
ଏକାଳେ ଯାହା ନିତାନ୍ତେ ଅଇଲ ଗୁଡ଼ ଯେ । ୨ ।
କରିଗମନା ଆରେ କୁନ୍ଦରଦନା ।
ସାହିତ ଦେଉଥିବ କାମ ବେଦନା ଯେ ॥
ସରିତ ଯାଇଥିବୁ ଆରେ ନଗନା ।
ଧରିଥିବୁକ ଗାବ ଧନ ଜମା ବନା ଯେ । ୩ ।
ଥିଲାବେଳେ କୋଳରେ ଭଙ୍ଗିଛନ
କଲାବେଳେ ନୟନ ପଞ୍ଚଜଛନ ଯେ ॥

ପୁଣି କାମ କୋଦଣ୍ଡ ଭ୍ରୂରୁ ନର୍ତ୍ତନ ।
ନାସିକାଫୁଲ୍ଲ ଶୋଭା କେତେ ସତନ ଯେ । ୪ ।
ତୋର ବଚନ ସବୁ ପଦପଦକ ।
ତାହା ମୁଁ ହୃଦେ କରୁଥାଇଁ ପଦକ ଯେ ॥
ପଦନୂପୁର ଝମକ ଝମନାଦକ ।
ଶୁଣିବାକୁ ଲାଗଇ କେତେ ମାଦକ ଯେ । ୫ ।
ଗୀତେ ଭାଷଇ ବେଣୁଧର ଅଜ୍ଞାନ ।
ସତେ ଦେଖିବ ତୋର ଶୁଦ୍ଧବଦନ ଯେ ॥
ପ୍ରୀତି ତ ନାହିଁ ମୋର ମନେ ରେ ଧନ ।
ସତେ ତୋଷିବୁନକ ଆଜ ମୋ ମନ ଯେ । ୬ ।
( ଦ୍ୱିଶାଖା ଯାମିନୀରେ ମୋ ପ୍ରାଣସବୁ—ବୃତ୍ତେ )

—*—

( ରାଗ—ରସକେଦାର । ତାଳ—ଏକତାଳୀ )

ଘନକାଳ ହୋଇଲା ପ୍ରବେଶ
ଧନମଣି କରୁଥିବ କସ ? । ଘୋଷା ।

ଘଡ଼ଘଡ଼ ରଡ଼ ଶୁଣି ରମଣୀମଣି    ଚମକ ପଡ଼ଣ ଲେଉଟୁଥିବ ଧରଣୀ
ରଖିଥିବ ନକ ପ୍ରାଣେ ଆଶ । ୧ ।
ଭେକ ଡାହୁକ ଶାମୁକ ଶବଦ ଶୁଣି    ନବରସବନ୍ତ ମୋ ସୁବଧ ହେବଣି,
ଝର ଝର ରଜନୀ ଦିବସ । ୨ ।
ଶିଖଣ୍ଡି ଶିଖରେ ଶିଖୀ ନର୍ତ୍ତନ ଦେଖି    ସଖୀ ମୋର ମନେ ହେବଣି ଦୁଃଖୀ
ବନସମ ମଣୁଥିବ ବାସ । ୩ ।
ଗୁଣୁଗୁଣୁ ରବକର ମାଳତୀଫୁଲେ    ମଧୁବ୍ରତ ମଧୁପାନ କରିବାବେଳେ,
ଚାଲୁଥିବ ବପଗତ ରଏ । ୪ ।
ଅଶନ ବସନ କରି ହେବଣି ଦୂର    ଭୁଜଗ ପ୍ରାପ୍ତ ହେବଣି ଗଳାହାର,
ଆଜ ଥିବକ ଶ୍ରୀମୁଖେ ହାସ । ୫ ।
କହେ କବି ବେଣୁଧର ଚକ୍ରନାୟକ    ଶିରଷାଙ୍ଗୀ ମୋର ସବୁ ସୁଖଦାୟକ,
ଗୁଡ଼ ଏ କାଳେ କଲା ବିଦେଶ । ୬ ।
( ସେତ ଦେଇଛି ଜୀବନ ଭିକ—ବୃତ୍ତେ )

—*—

( ରାଗ—ଚୋଡ଼ପରଜ । ତାଳ—ଏକତାଳୀ )

କେତେ ତୁ ଗରଜ ହେଉଛରେ ଜଳଦ, କେତେ ତୁ ଗରଜ ହେଉ ।
କୋଳେ ନାହିଁ ବୋଲି ମୋ ନୂଆ ଛଇଳ ସିନା ଗରବ ଦେଖାଉ ॥ ଘୋଷା
କଳା ଶାର୍ଦ୍ଦୂଳ ରୂପକୁ ଧରି ଘୋଟିଆସୁ କି ଗ୍ରାସିବା ପାଇଁ ।
କଳା କୁନ୍ତଳକୁ ଦେଖିଲେ ବାଳାର ଏ ଦମ୍ଭ ରଖନ୍ତୁ ନାହିଁ । ୧ ।
ବିଦ୍ୟୁ ଛଟକରେ ଦନ୍ତ ଦେଖାଉଛୁ ସଣକାନ୍ତି ଅଟେ ସେ ତ ।
ସୁନ୍ଦରୀର ବଜ୍ରକ କାନ୍ତି ମୋର ବାଳୀ ଥିଲେ ଲୁଚନ୍ତୁ ଏମନ୍ତ । ୨ ।
ଘଟମଟ କରି ଦନ୍ତ ରଗଡ଼ୁଛୁ ଘଡ଼ ଘଡ଼ ନାଦେ ଚୋର ।
ମୋ ବନ୍ଧୁ କିଙ୍କିଣୀ ନାଦ ଶୁଣିଲେ କି ଗୁମାନ ଲୁହନ୍ତା ତୋର । ୩ ।
କରକା ବରଷି ପକାଉଛୁ ଯାହା ମୋ ମନେ ଦେବାକୁ ଦକା ।
ପରାଣ ବାନ୍ଧବୀ ଦନ୍ତପନ୍ତୀ ଦେଖି ଲଜନ୍ତୁ ନାହିଁକି ଶଙ୍କା । ୪ ।
ମୁଷଳ ଧାରାରେ ନୀର ଢାଳୁଅଛୁ ଚୋର ବଡ଼ିମା ଦେଖାଇ ।
ମୋ ମନ କୁଶଳା ସୁଶୀଳା ନୟନ ପ୍ରେମନୀରେ ଥାନ୍ତୁ କାହିଁ । ୫ ।
ଥାଉ ଥାଉ ଚୋର ବୃଥା ଆଡ଼ମ୍ବର ଆଉ ନ କର ବୃଚର ।
କୋଲେ ବେଣୁଧର ଧନ ପାଣେ ଯାଇଁ ବସ ମୋ ପ୍ରୀତି ପଟର । ୬ ।

( ଉକ୍ତିବାର ସିନା ଜାଣୁରେ କଣୋଗ—ବୃତ୍ତେ )

—❋—

## ଷଡେଶାନୁଚନ୍ତା—ହେମକାଳ ।

( ରାଗ—ସାବେରୀ । ତାଳ—ଆଠତାଳୀ

ହେମକାଳରେ ।

ହେମବରଣୀ ବଞ୍ଚିବ କେମନ୍ତେ ଏ କାଳରେ । ଘୋଷା ।

ପ୍ରେମ ପସରା ନବଚତୁରା, ଭ୍ରମ ହେବଣି ଦେଖି କରି,
ଶ୍ରମ ସାରି ବସିବଣି ରୋଷୀ,
ରମଣୀର ନ ଥିବ କୁଶଳରେ । ୧ ।

କେମନ୍ତେ ମଣ୍ଡିଲା ଆନନ, ସମ ଲୁଚଇ ବଷ ପ୍ରସୂନ,
ଯମ ପରି ଏ ଋତୁ ବର୍ଦ୍ଧନ,
ତମ ବଢ଼ି ବଢ଼ିଠାରେ ଥିବ ନବଳରେ । ୨ ।

ସେ ମନ୍ଦୁରୁ ଗମନ ଅଶନ, କାମ ହେବନ ବେଶ ବସନ,
ରମଣୀପୁ ଶ୍ରୀଅଙ୍ଗ ଲବଣ୍ୟ,
କ୍ଷମ ନ ଥିବ ଅବଧି ହେବାରୁ ଟାଳରେ । ୩ ।

ଏମନ୍ତ ଭଳି ରସିକବର, କେମନ୍ତ ଲଭିବ ସଙ୍ଗ ତାର,
କର୍ମ ନିନ୍ଦା କରିଚନ୍ଦ୍ର ଗିର,
ନ ମରି ଯା କଲି ବିଦେଶ ଅନୁକୂଳରେ । ୮ ।
( ବିଚକ୍ଷଣା ଲୋ ବନା ତୋ ପ୍ରୀତି କେ ଗତି—ବୃତ୍ତେ )

—❀—

## ନାୟକର ଅନୁଚିନ୍ତ—ଶୀତକାଳ ।

( ରାଗ—ଝିଂଝୋଟି । ତାଳ - ଏକତାଳୀ )

ଶୀତକାଳେ ସ୍ମିତହାସୀ କାହାକୋଳେ ବଞ୍ଚୁଥିବ ।
ନିତମ୍ବିକି ତ ଭିନ୍ନକରଇ ଦେଲା ଦଇବ । ଘୋଷା ।
ଗୁପତ ମନ୍ଦିରେ ସଖୀ ଅଙ୍କେ ମୋର ଆଉଜଇ,
ଏବେ ଏକାକିନୀ କେହ୍ନେ ଧନ ! ଜୀବନେ ରହିବ । ୧ ।
ବିଦେଶ ଗମନକାଳେ ନ ଯାଅ ବୋଲି ଆକୁଳେ,
ମନା କରୁଥିଲା ବନେ ଅଇଲି ତା ଭାବୁ ଥିବ । ୨ ।
କି ବନିତା ଧରି କର କହୁଥିଲା ସମାଦର,
ରହିବ ନାହିଁଟି ଦୂରଦେଶେ କେଶି ଦିନ ଧବ । ୩ ।
ଏବେ କଣ୍ଠ ବଳୟିନୀ ସତେ କି ମୋ ଗୁଣମଣି,
କଷ୍ଟଥିବ ନିକି ବେଣୁଧର ନୟନେ ଦେଖିବ । ୪ ।
( କାହାମନେ ଥିଲା କହ—ବୃତ୍ତେ )

—❀—

( ରାଗ— ମଙ୍ଗଳଗୁର୍ଜରି । ତାଳ – ଆଠତାଳୀ )

ଜୀବଧନ ! ଶୀଘ୍ର କରିବେକି ହୋଇ ମିଳନ ରେ । ଘୋଷା ।
ହେବୁ ବୋଲି ମୋର କଣ୍ଠ କମ୍ବୁନିଭ ହାର ।
ଦେଲୁ ଲେଖି ପ୍ରେମ ପତ୍ରାବଳୀ ଉପହାର ରେ । ୧ ।
ସନ୍ତତରେ ତୋ ଛଇ ଛଟକ ଭଳି ଭଳି ।
ଅନ୍ତର୍ଲିପି ଗୀତେ ଲେଖି ଦେଇଛୁ ମୁଁ ଭୁଲି ରେ । ୨ ।
ପଢ଼ି ବୁଝିଥିବୁ ତୁ ତ ସଙ୍ଗୀତ ପ୍ରବୀଣା ।
କଠିନଜନ ଉଚିତା ମୁଁ ତୋର କାଳେ କାଳେ କିଣା ରେ । ୩ ।
କହେ ବେଣୁଧର କର ଯମିନୀବଲ୍ଲଭ ।
ଦେହେ ମରମ ଭିତର ତୋର ହାବଭାବ ରେ । ୪ ।
( ପ୍ରିୟସଖି ! ଦେଖ ଶ୍ୟାମବନ୍ଧୁ—ବୃତ୍ତେ )

—❀—

## ନାୟକ ଚଟାଉ

( ରାଗ—ବସନ୍ତ ଆଷାଢ଼ଶୁକ୍ଳ ବାଣୀ । ତାଳ—ଝୁଳ )

କନକକଟେମ୍ବୁ ଚରଣେ ଶରଣ । ଖଞ୍ଜନ ନେତ୍ରୀ ଗ୍ରାମୂଳୁ ଜଣାଣ ।
ଗଜଗତି ଆରେ ନବୀନା । ଘନକୁନ୍ତଳା ମୋ ସ୍ନେହଅଧୀନା ।
ଙତ୍ତମାଙ୍ଗୀ ବାଳା । ଚନ୍ଦ୍ରବଦନା ସ୍ମର ପ୍ରେମଶୀଳା । ୧ ।
ଛଇଳ ନେତା ଛନ୍ଦ ନ ସହେ ଧନ । ଜପୁଅଛି ମାଳା କରି ତୋ ଗୁଣ ।
ଝୁରୁଛି ନୟନ୍ତୁ ନନ୍ଦେ ମାର । ଞସୁମ ଲଙ୍ଘି ଯା ଅନ୍ତର ।
ଟହଳ ଦାସିମା । ଠଣ ଉରଜା ମୋ ପିକଭାଷିଣୀ । ୨ ।
ଡମ୍ବରୁମଧ୍ୟା ରେ କୁନ୍ଦରଦନା । ଢଳ ତମାଳ ସଙ୍ଗୀତ ପ୍ରବୀଣା ।
ଣଙ୍ଆଦ୍ୟବର୍ଣ୍ଣେ ପଡ଼ିଛି ଆସି । ତନୁ ପାଳନି ମୋ ଅଳ୍ପ ବୟସୀ ।
ଥୟ ନୁହେ ମନ । ଦମ୍ଭହର ନ ଦେଖି ତୋ ଲପନ । ୩ ।
ଧରିଅଛି ପିନା କଷ୍ଟେ ଜୀବନ । ନ ରୁଚେ ମୋତେ ଅଶନ ବସନ ।
ପଣ ରଖିବାକୁ ତୋହର ନିକଟେ । ଫଗୁଅଧରୀ ମୁଁ ଅକ୍ଷମ ଅଟେ ।
ବଳ ବୁଦ୍ଧି ହୀନ । ଭଗାଇ ଯେଣୁ ଦର୍ପିଷ୍ଟ ମଦନ । ୪ ।
ମଧୁରବଚନା ଆରେ ସିହାଣୀ । ଯତ୍ନ ମତ୍ତଭୃଙ୍ଗ ସ୍ୱନ୍ଦଗାମିଣୀ ।
ରଙ୍କ ରତନ ମୋ ଅଙ୍କ ମଣ୍ଡନା । ଲଳନା ହୀରା ସନ୍ତାପ ଖଣ୍ଡନା ।
ବନ୍ଧୁ ମୁଁ ତୋ ଋଣୀ । ଶରଣ ବତ୍ସଳା ନବତରୁଣୀ । ୫ ।
ଷଟପଦ ମାଳ କୁଞ୍ଚିତବେଣୀ । ସବୁ କଳ୍ପନ୍ଦ ସଖାରେ ମିଳଣି !
ହର ଉମାଙ୍କ ସୁତପୂଜାରେ ଧନ । କ୍ଷେମ ଭେଟିବ ତୋହର ସନ୍ନିଧାନ ।
କ୍ଷପାକରମୁଖୀ । କ୍ଷୀଣ ବେଣୁଧର ଲେଖେ ଏତକ । ୬ ।
( ଧୀର ହୃଦଚନ୍ଦ୍ର ପଦ୍ମ—ବୃନ୍ଦ )

— ❊ —

( ରାଗିଣୀ—ଆଶାବରୀ । ତାଳ—ଝୁଲ )

ବନ୍ଧୁଆ ! ମୋ ପରାଣ ସୁନା ।
( ଆଦ )ଲଭିଲୁ କେତେ ବେଦନା ରେ । ଘୋଷା ।
ପରବାସୀ ହେଲ ତୋତେ ଗୁଡ଼ ବନ୍ଧୁ ଦୂରେ ।
ଏକାକିନୀ ବସି ମୋ ଧନା ନବୀନା କେମନ୍ତେ ବଞ୍ଚିବୁ ସ୍ୱପୁରେ ରେ । ୧ ।
ନାହିଁ ନାହିଁ କରୁଥିଲୁ ମୋ ଆସିବା କାଳେ ।
କେତେ ପରକାରେ ଆନ ଦେଇ ସଖି ! ପାଣି ଧରିଲୁ ଚପଳେ ରେ । ୨ ।

ସେହି କଥା ତୋର ଏଡ଼େ ହେଲ ଆରେ ଧନ ।
ଆସିଅଛୁ ଏଥି ଷାର ମନମଥ ଶରେ କର ପରଦାନ ରେ । ୩ ।
ଗଲେ ଜଣା କର ଦୋଷ ମାଗିନେବ ମୁହିଁ ।
ବେଣୁଧର କବିଚନ୍ଦ୍ରଙ୍କୁ ସେ ବେଳେ ଟିକେ ତୁ ରୁଷିବୁ ନାହିଁ ରେ । ୪ ।
( ବନ୍ଧୁଆ ! ବନଜାକ୍ଷୀ ମୋର—ବୃତ୍ତେ )

—*—

( ରାଗ—ଚୋଡ଼ପରଜ ତାଳ—ଆଠତାଳୀ )

ପ୍ରାଣବନ୍ଧୁ ଆରେ ! ତୁ ମୋ'ର ରସାଣ ସୁନା ।
ଯେଉଁ ଦିନୁ ଧନ ଅନ୍ତର ହୋଇଛୁ
ସେ ଦିନୁ ଏକା ଭାବନା । ଘୋଷା ।
ଆହା କି ସୁନ୍ଦର ଅପୂର୍ବ ସୁନ୍ଦର, ସୁହାଣି ଛଟକ ତୋର ।
ମନ୍ଦହାସ କନ୍ଦପଣାରୁ ମଧୁର ପିକଜିଣା ମୃଦୁସ୍ବର । ୧ ।
ମୁଁ ବୋଇଲି ତୋତେ ଯେହ୍ବ ନ ଦିଶନ୍ତୁ, କଳିଛୁ ଅନ୍ତରଗତେ ।
କାହିଁ ତୋହପରି ଏହି ବସୁନ୍ଧରା ମଧ୍ୟେ ଦେଖୁନାହିଁ ନେତ୍ରେ । ୨ ।
ଛବିଟିକ ତୋର ଶହ କାଗଜର ଲେଖି ପାରିବ କ ନାହିଁ ।
ଅଙ୍ଗ ଦାଉ ଦାଉ କି ବର୍ତ୍ତିବ ଆଜ୍ଞ ମୋ ମନ ସିନା ଜାଣଇଁ । ୩ ।
କହେ କବିଚନ୍ଦ୍ର ଧ୍ୟାନ ବେଣୁଧର ଯେତେବେଳେ ଗଲା ଯେଣେ ।
ସନ୍ତତେ ତୁ ମୋର ନୟନେ ନାଚିଲୁ ପାସୋରି ନୋହିଲୁ କ୍ଷଣେ । ୪ ।
( ଉରନାହିଁ କି ହେ ପର ତରୁଣୀ ହରଣୁ—ବୃତ୍ତେ )

—○—

( ରାଗ—ଚୋଡ଼ପରଜ । ତାଳ—ଝୂଲା, ଉଠତାଳୀ )

ରସିକେ ! କସି ଯେମ ମନେ ।
ହସି ମୋ ବନ୍ଧୁଟି କଥା କହିବାର,
ନ ଥିବ ତ୍ରିଭୁବନେ । ପଦ ।
ଫୁଲ କୋମଳାର ‚ ତୁଲ କେ ହୋଇବ,
ଅମୂଲ ମୂଲ ତା ଭାବ ।
ଜଳଟ କଦଳୀ ଜାମୁ କାନ୍ତ ଝଳ,
ଦର୍ଶନ ସୁଖୁଁ ଯା ଲଭ । ୧ ।
କୁନ୍ଦ କଳଦନ୍ତୀ ସୁନ୍ଦରମଣି ମୋ,
ହୃଦର ଜାଣ ଯେତେ ।

ଖଡ଼କାରେ ଖୁଡ଼ ଯିବେ ସଂଖ୍ୟାକଣ,
ନ ପାରିବେ କଦାଚିତ । ୨ ।
ଅଳ୍ପ ବୟସୀ ମୋ ରସ କଳ୍ପବଲ୍ଲୀ,
ବବଧ କେଳି ଲାଳସୀ ।
କାଞ୍ଚନ କେତ ସାର ପଞ୍ଚମ ସୁସ୍ୱର,
ଗୀତେ ଝଳପିବ ଋଷି । ୩ ।
ଅମଳ କମଳ ପଦଧାରେ ତାର,
ମୁଁ ଲକ୍ଷା ଲେଖା ସେବକ ।
ଯାମଳ ପର୍ବତ ଜିତ ପୟୋଧର,
ଧରିବା ଅଯୋଗ୍ୟ ଲୋକ । ୪ ।
ଦ୍ୱେଷେ ବେଣୁଧର ଯାଣେ ନାହିଁ ଆଜ,
ସେ ଚତୁର ରସବନ୍ତ ।
ତା ଶେଷ ପଣନ୍ତ ପବନ ଲୋଡ଼ିଲେ,
କଏ ଦେବ ମୋର କନ୍ତ । ୫ ।
(ମୋ ବନ୍ଧୁ ! ନୂଆ ନାହୁଆଣୀ—ବୃତ୍ତେ )

—✽—

( ରାଗ—ଶଙ୍କରାକେଦାର । ତାଳ—ଆଠତାଳୀ )
ପ୍ରାଣବନ୍ଧୁ ବନେ ହେଲ ଏବେ ସର ଆଗୋ ସହଚରି ! । ଘୋଷା ।
ଆଜ କି ପାଇବ ଏ ଜନମେ ଆନନ୍ଦ ହୋଇବ ବନ୍ଧୁ ନାମେ,
ଦେତେ ଭାଗ୍ୟବଳ ମୋ ଯାଇଛୁ ସରି । ୧ ।
ଛି ଛି ଏ ଜୀବନ ଧିକ ଧିକ ବନ୍ଧୁ ଛଡ଼ା ମୁଁ ତ ନିଆଶ୍ରିକ
ଆହା କି ନ ଜାଣିଲି ଲୀଳାମୟ ହରି । ୨ ।
ବନ୍ଧୁରେ ବନ୍ଧୁରେ ଡାକବାର- ଛାଡ ଇନ୍ଦ୍ରପଦେ ଚାହେଁ ଗାର,
ସଙ୍ଗେ ରଙ୍ଗ କରିବା ରକତଧରି । ୩ ।
କହେ କବିଚନ୍ଦ୍ର ବେଣୁଧର ଯାଉ ଏ ଅସାର କଳେବର
କାହୁଁ ପାଇବଟି ଆଉ ବନ୍ଧୁ ପରି । ୪ ।
( ଆଗୋ ଦୁଃଖ ଅନା—ବୃତ୍ତେ )

—✽—

( ରାଗ—କମ୍ବୋଜ । ତାଳ—ଝୁଲ )

ଯେଉଁ ବନ୍ଧୁ ପ୍ରାଣବନ୍ଧୁ ଯାଶୁଁ ହେଲ ଭିନ୍ନ ।
ସେହିନୁ ଏ କଳେବରେ ମୁଁ ଚିନ୍ତାରେ କରଦେଲା ଚିହ୍ନ ।
ମୁଁ ଚିନ୍ତାରେ । ୧ ।
ତା ମୁଖ ସରସ ହେବା ଦେଖିନାହିଁ ଦିନେ ।
ହସ କଥା କହୁଥାଏ ମୋ ବନ୍ଧୁ ଆ !
ପ୍ରସନ୍ନବଦନେ ମୋ ବନ୍ଧୁ ଆ । ୨ ।
ପାଶୋରିବୁ ନାହିଁ ମୋତେ ବୋଲି ଦେଲା ରାଣ ।
କାହିଁକି ଏ କଥା କହ ସେ ବୋଇଲା,
ଅଗାଇ ନସୁନ ସେ ବୋଇଲା । ୩ ।
ମନ କଥା ଫେଡ଼ି ମୋତେ କହିଛୁ ଏକାନ୍ତେ ।
ହଜିବା ଯାଏଁ ଭଜନ୍ତ ସେ ଚରିତ ଗୁଣାବଳୀ
ଯେତେ ସେ ଚରିତ । ୪ ।
କାହୁଁ ବା ପାଇବ ଆଜ ପ୍ରାଣବନ୍ଧୁ ଆକୁ ।
ଝୁରୁଅଛି ବେଣୁଧର ଯେ ନିରତେ,
କୃପାସିନ୍ଧୁ ଆକୁ ଯେ । ୫ ।
( ମହ୍ଲାମଣିଙ୍କ ବିନେ—ବୃତ୍ତେ )

—❋—

( ରାଗ—କାଫି । ଆଡ଼ତାଳ )

ଆହା କି କଲ ମୋ ରସନାଥକ ରେ ।
ହେଇ ଅଇଲ ବିଚ୍ଛେଦ ସିନ୍ଧି କରେ ଘୋଷା ।
ଏକାକିନୀ ଧନମଣି କି ବଞ୍ଚିରୁ ଥିବ ?
ଆଜନ୍ମ ସୁଖୀ କି ଭିନ୍ନ କଲ ଯା ଦଇବ । ୧ ।
ନିମିଷେ ଅନ୍ତର ହେଲେ ମଣେ କୋଟିଯୁଗ ।
ଘୋର ଅନ୍ଧକାର ଦେଖୁଥିବ ଚଉଦିଗ । ୨ ।
ଏ ବୟସେ ପ୍ରିୟା ଗୃହେ ହେଲ ପରବାସୀ ।
କପଟ ଧଇର୍ଯ୍ୟ ଧରି ଦିଶିବ ସୁହାସୀ । ୩ ।
କବିଚନ୍ଦ୍ର ବୋଲେ ନବ ନଗନାର ସ୍ତବ ।
ସ୍ମରିଲେ ଏ ଜନମରେ ଆଉ କଏ ଦେବ ? । ୪ ।
( ଶଠ ଲମ୍ପଟ କାନ୍ତା ତୁ ଯା ନାରେ—ବୃତ୍ତେ )

—❋—

( ରାଗ—କାମୋଦୀ । ତାଳ—ଆଠତାଳୀ )

ମନୁପିବ କି ରେ, ସେହ୍ନ ଭାବ ତୋର ?
ଅନୁଭବ କରିଛୁ ଯା ଏ ଜନମେ ମୋର । ଘୋଷା ।
ମୁଁଖ ଝିନବାସ ଦେଇ ଆରେ ଗଳାହାର ।
ଅଳପ ଅନାଇଁ ଲାଜେ ହସି ଘୁଞ୍ଚିବାର । ୧ ।
ଏଣୀନେତ୍ରୀ ବେଣୀ ବାନ୍ଧି ଦେଉଁ ଦ୍ୱନକର ।
ଯାହା କହିଛୁ ସୁନ୍ଦରୀମଣି ଧରି କର । ୨ ।
ବଦନେ ଦରପଟେଣ ଭୃଙ୍ଗୀ କି ପାଞ୍ଚ ଅନ୍ତର ।
ଚୁମ୍ବିବନ୍ଦେ ଚୁମ୍ବନ ମଣ୍ଡିଲୁ ଧାରିକାର । ୩ ।
ଆନନ୍ଦନେ ସୁରତାନ୍ତେ ହୋଇ ସ୍ୱେଦଭର ।
ବାଞ୍ଛିଲୁ ପଣନ୍ତେ ମୋତେ ପୋଛୁ ସ୍ୱେଦନୀର । ୪ ।
ଏହିପରି କେତେ ଗୁଣ ବର୍ଣ୍ଣିବି ଆବର ।
ଲେଖି ବସିଲେତ ପାଠ ପୋଥି ଗୋଟାକର । ୫ ।
କନ୍ଦର୍ପ-ଦର୍ପ ହରିରେ ତୋ କଣା କଙ୍କର ।
କବିଚନ୍ଦ୍ର ବେଣୁଧର କରନ୍ତେ କାତର । ୬ ।
( ଜଣା ପଡ଼ିଲୁ ମା, ଏ କପଟ ଗିର -- ବୃନ୍ଦେ )

—❀—

( ରାଗ—କେଦାର । ତାଳ—ଆଠତାଳୀ )

ଧନ ସଙ୍ଗାଳ ମୋର ।
ମନ ମୋହିନୀ ଲଳନାବର ରେ । ପଦ ।

ଛନ ଛନ ଶରୁ ହୋଇ ପ୍ରାଣମିତ !
କରୁଥିବୁ କି ବହୁର ରେ ।
ବନ ଧାଇ ଧାଇ ନେଇ ତାଳ ତୋର,
ହେବୁନ ପରା ଝଙ୍କିର ରେ । ୧ ।
କନକ ବଲ୍ଲରୀ ଢଳା ଢଳାବସା,
ହେଉଥିବ ତ ଅସର ରେ ।
ଘନକୁନ୍ତଳା ମୋ ବହ୍ନିନେ କି ଦଶା,
ଲାଗିଲୁଟି ହୃଦଦ୍ୱାର ରେ ।୨ ।
ଅନଳ ସମାନ ଅନିଳ ଚନ୍ଦନ,
ମଣୁଥିବୁ ତ ଅସାର ରେ ।
ବଚନ ନମ୍ରନା ଘନ ପୀନସ୍ତନା,
ହେଲୁ କେଉଁ ମାରଖାର ରେ । ୩ ।

ବନ ତ ହେବନି ଭୁବନ ତୋ ପକ୍ଷେ,
ଝୁରୁଛୁ ମନେ ମୋର ରେ ।
ଅନଶନ ବ୍ରତ ଆଚରି ଥିବୁତ,
ଲକ୍ଷେ ଦୁଃଖେ ବେଣୁଧର ରେ । ୪ ।
( ନୟନରେ ନାଚୁଛୁ ତୋ ରୂପ ଚନ୍ଦ୍ରମାମୂର୍ତ୍ତି—ବୃତ୍ତେ )

—❋—

( ରାଗ—ଚୋଡ଼ପରଜ । ତାଳ—ଆଠତାଳୀ )

ରେ ବନ୍ଧୁଆ ! କି ବର୍ଣ୍ଣିବି ତୋର ଗୁଣ ?
ପୀବର ସ୍ତନୀ ମୋ ଜୀବର ଜୀବନ,
ସୁଝି ନୋହିବ ସେ ଋଣ । ଘୋଷା ।
ଦସ ମିଶା ଭିକ୍ଷା ଭଇଲ ଚୋଳା ଖୋସା,
ଲୁହାଁଣି ଭଙ୍ଗି ଛଟକ ।
ନ ଥିବ ତ ଭୂରେ କନକ ଶମ୍ଭୂରେ,
ମୋ ଚିତ୍ତ ଦ୍ରବଏ ଅଟକ । ୧ ।
ଗେଲାଇ ଗେଲାଇ କଟି ଦୋହଲାଇ,
ଚାଲିବା ଛଇ ଚଉଷି ।
ପ୍ରମତ୍ତ କୁଞ୍ଜର କାହୁଁ ତା' ପାଇବ,
ପଳାଇବ ଲାଜେ ହାରି । ୨ ।
ଉପମା ସୃଷ୍ଟିକି ଲୁଟି କରୁଅଛୁ,
ତୋ କୋଟି ଠୂଳା ଚରଣ ।
ଗୋଟି ଗୋଟି କରି ଲେଖି ବସିଲେଣି,
ହୋଇବ କୋଟି ପୁରାଣ । ୩ ।
କେ ଅବା ପର ତ ଯାଉ କି ନ ଯାଉ,
ମୋ ମନ ତ ମୋର ସାକ୍ଷୀ ।
ଧନ ଧନକର ଲାଜ ଯା ତୋହର,
ଆଖିରେ ରହିଛୁ ଲାଖି । ୪ ।
କବିଚନ୍ଦ୍ର କୋଲେ ନ ବସ୍ତ୍ରେ ଭଲେ,
ତୋ ସଙ୍ଖୋଳା ସନମାନ ।
ଏଥୁଁ ଯାଇ ନାକ ଆଉ ଥରେ ସତେ,
ସେମାନ ଶୁଣିବ କାନ । ୫ ।
( ରେ ରମଣି ! ଗୁରୁଜନେ ଯେବେ ଭୀତ—ବୃତ୍ତେ )

—❋—

( ରାଗ—ବରାଡ଼ି, ଆଷାଢ଼ଶୁକ୍ଳ । ତାଳ—ଝୁଲା )

ଏ ଜୀବନେ ଆଜ ।

ତା ଧନମାନ ମୁଁ ପାଇବି କାହିଁ ? । ଘୋଷା ।

ବନ ବନକର ଭାବ ତା ଯୋଗେ । ଭିନ୍ନ ଭିନ୍ନ କରି କହିବି କେତେ ?
କ୍ଷୀଣ ମଧ୍ୟା ମୀନନେତ୍ରୀ ଅବଳା । କି ନ କରିଛି ଭାବେ ହୋଇ ଭୋଳା । ୧ ।
ରସଜାଣି ଦରେଶ ବୟସୀ । ବସନ୍ତ ସମସ୍ତ କୋକିଳ ଭାଷୀ ।
ଝଷଧ୍ୱଜ ବାଣୀ ଚାପ ଖଣ୍ଡନା । ଭ୍ରମଲ କୁନ୍ତଳା ମହୀମଣ୍ଡନା । ୨ ।
ପାନଶୀଳ ଭାଙ୍ଗି ଶରଧା ମନେ । ଆନନ୍ଦଦାୟିନୀ କେଳି ସଦନେ ।
ପାନ ଚୂନ ଛଳେ ଖୁଆଇ ଦେବା । ଗାନ ପଣ୍ଡିତା ପୁଣି ଘୁଞ୍ଚିବା । ୩ ।
ବେଣୁଧର ପଟ୍ଟନାୟକ ଭାଷେ । ରେଣୁ ତା ଚରଣୁ ଲଭିବା ଆଶେ ।
ଯେଣୁ ହୋଇଛି ମୁଁ ବିରହଦେଶୀ । ତେଣୁ ନିରତେ ବାଳାଠାରେ ଦୋଷୀ ॥

( ବୁଝିଲି ତ ନାହିଁ—ବୁଝେ )

—※—

## ନାୟକ ଉକ୍ତି ।



( ରାଗ—ବରାଡ଼ି ଆଷାଢ଼ଶୁକ୍ଳ । ତାଳ—ଝୁଲା )

କେ କସ କହିଲି ?

ଟେକ ଲପନ ବାଦେ ନ ବୁଝିଲି । ଘୋଷା ।

ଚନ୍ଦର ବୟସୀ ମନ୍ଦର ସ୍ତନା । କନ୍ଦର୍ପ କେଳି ଶିଖାଇଲି ସୁମନା ।
ଛନ୍ଦ ମନ୍ଦ ବାଣୀ କାହୁଁ ଶିଖିଲି ? ଦ୍ୱନ୍ଦ ଭୁଆଇ କି ସୁଖ ଅର୍ଜିଲି । ୧ ।
ଶରଧା ବଳାଇ ଯାଉଁ ତା ପାଶେ । ପର ପର ମଣି ଭଣିଲି ଯା ସେ ।
ଅରକ୍ଷ ପରସ୍ପେ ଅଇଲ ଫେରି । ଝର ଝର ନେତ୍ର ବୁହାଇ ବାରି । ୨ ।
ଗୀତ କରି ପୂର୍ବ ଚରିତପାକ । ଚିତ୍ରକଥା ଲେଖି ପେଷିଲି ଠିକ ।
ଇତର ପରସ୍ପେ ଭୀତ ଦେଖାଇ । ମିତ ଶତ୍ରୁ ଭାବ ଧଇଲି ଚହିଁ । ୩ ।
ଅପମାନକୁ ଶୋଚନା ନ କରି । ଝପଟିଲି ପୁଣି ପାଶେ ତାହାରି ।
କୋପନା ଛଳ ପଣିଦେଲି ଗାଳି । ଜପଇ ବେଣୁଧର ଚନ୍ଦ୍ରାମାଳି । ୪ ।

( କାହୁଁ କି ଶୁଣିଲି—ବୁଝେ )

— ※ —

( ରାଗ—ଚଳମାଳଗୌଡ଼ା । ତାଳ—ଝୁଲା )

ସତେ କି ଲଭିବ ତୋତେ !

ମନରେ ଭାବେ ମୋର ନାହିଁ ପରତେ । ଘୋଷା ।

ସୁଷ ପଦକ ତୋର ଶୁଣିବ ପାଇଁ । ଆଶା କରୁଛୁ ବହୁ ଚନ୍ଦ୍ରମାମୁହିଁ । ୧ ।

ସୁନ୍ଦରୀମଣି ଆରେ କୁନ୍ଦଦଶନା ! ହୃଦରେ ଲଗାଇଲୁ ଭଲ ସ୍ୱପନା । ୨ ।

କି ରଙ୍ଗେ ନେହ ତାଳ ଦେଉଛୁ ରୁହି । ଶ୍ରୀ ଅଙ୍ଗେ ଜଡ଼ିବାକୁ ଚିତ୍ତ ବଳାଉ । ୩ ।

କହଇ ବେଣୁଧର ପଟ୍ଟନାୟକ । ଦହଇ ମରମେ ରତିପତି ଶାୟକ । ୪ ।

( ଶ୍ୟାମ ଶିଖଣ୍ଡଚୂଳ—ବୃନ୍ଦେ )

— ❀ —

( ରାଗ—ଝିଂଝୋଟ । ତାଳ—ଝୁଲା )

ଧନ ମୋର ରୁଷିଲୁ କେଣେ ?

କେଉଁ ଦୋଷ ଦେଖି ଖଞ୍ଜନେକ୍ଷଣେ ? ଘୋଷା ।

ପରିକର ଜନ ମୁଁ ତୋର ଲକ୍ଷ ଲେଖା ଖଟଣି ସାର,

ଭ୍ରମ ଉଞ୍ଜି ନାହିଁ କୋଲି ଅବା ସେହି—

କଥାକୁ ଛଳୁଛୁ ଗୁମାଣୀ ପଣେ । ୧ ।

କି ଅବା ମୁଁ ତୋର ମକସ୍ତ ପଣ୍ଡାବଳୀ ଚିହ୍ନବଚ,

ଖଟିବାଟର ଦେଲା କଳା କୋଳ ବାଳା—

ନୂଆ ସେବାକାରୀ ଓଳକବ ମନେ । ୨ ।

ଅବା ଫଳ ଚାହିଁଆ ଦେନ ସାଜ ନାହିଁ ଚକୁର ବେଣୀ,

ସେଥିକି ବ୍ୟଥିତ ହୋଇ ନବମୀତ—

କୋମଳା କ ମୋତେ ଚାହିଁ ନ ଆଣେ । ୩ ।

ଅଧୋମୁଖେ ଚାହିଁଲ ଧନ୍ୟ ନେହ ତାଳ ଲୋଚନ ଧାର,

ବେଣୁଧର କବିଚନ୍ଦ୍ର ଭଣନ୍ତି—

ହେବ କି ପ୍ରକାରେ ଅନୁସରଣେ । ୪ ।

( ନବଘନ କାଳିଆ ବୃନ୍ଦ—ବୃନ୍ଦେ )

— ❀ —

( ରାଗ—ରେଗୁପ୍ତ । ତାଳ—ଝିପତା )

ମୋ ଛାତିରେ ଧନ କେହ୍ନେ ଦମ୍ଭ ଧରି ରହିବ ?

ଧିକ ଧିକ ଏ ଜୀବନ କି କଲି ଦଇବ । ଘୋଷା ।

ମାରିଜ ନୟନୁ ତୋର ମୀନ ବନ୍ଧୁ ଚାର ଧାର,

ଝରନ୍ତରେ ସୁନାଚନ୍ଦ୍ର ସୁଗ ପର ଧୋଇବ । ୧ ।

ଖରଶ୍ୱାସ ବହି ଖରେ    ପଡ଼ି ତା ପଲ୍ଲବାଧରେ,
ଝଞ୍ଜି ଲଗା ଜବାଫୁଲ ପରି ତ ଶୁଖାଇବ । ୨ ।
ତଳକେ ଥରକୁ ଥର    ଲେଟି ଅବନୀ ଉପର,
ହା ହା ପ୍ରାଣନାଥ ବୋଲି କୋହ ଉଠାଇବ । ୩ ।
ଜଣି ଜନ ନେନ କଷ୍ଟା    ନକର ହରିଣୀଦୃଶା,
କାପନେ ସ୍ୱସ୍ତି ରହସା ସାତସ୍ୱପ୍ନ ହୋଇବ । ୪ ।
ଲଳିତାଙ୍ଗୀ ଚନ୍ଦ୍ର ମୁଖ    ହାଦେ ପିବଣି ମଣ୍ଡନ,
ଆହା! ମୁଁ କ ବୁଦ୍ଧି କଲି, କେ ତାକୁ ବୁଝାଇବ । ୫ ।
ଭାଷେ ବେଣୁଧର ଶୁର    କପାଳ ଲିଖନ ଗାର
କେ ଆନ କରିପାରିବ ଯେବେ ଯାହା ହୋଇବ । ୬ ।
( କାହା ମନେ ଥିଲା କହ ଏହା କ ସେ କରିବ—ବୃତ୍ତେ )

—❀—

## ସ୍ୱଦେଶାନୁଚିନ୍ତା

( ରାଗ—ବଙ୍ଗଳାଶ୍ରୀ । ତାଳ ଆଠତାଳୀ )

ଉତ୍କଳଶ୍ରୀସୁନା ନମ୍ରନା ମୋ ଜନନୀ କସ କ ବସ୍ତ୍ରରୁ ଥିବ ।
ଉତ୍କର ମଦନ ଶାସ୍ତ୍ରକ ମୋଧନ ଦେଶର କଦନ ଲଭିବ । ୧ ।
ଉଣ ଧୃଷ୍ଟ ତାର ହୋଇବନ ଚଲ ଆହା ମୁଁ କ ବୁଦ୍ଧି କଲି ।
ଉହ୍ନକହାସୀକ ଅଳ୍ପବୟସୀକ ଏକାକୀ ଗୁଡ଼ି ଅଇଲି । ୨ ।
ଉାଙ୍ଗଣେ କନକ ସ୍ୱକଳ ଭଳି ମୁଁ ତା ଅଙ୍ଗରେ ଥାଏ ମିଶି ।
ଉିକାଏ ଅନ୍ତର ହେଲେ ଯୋଷାବର ଦୁଃଖମାରେ ଯାଏ ଭାସି । ୩ ।
ଉଳ ପଡ଼ିଥିବ ଅବନୀରେ ଏବେ କ୍ଷଣକୁ କ୍ଷଣ ବଢ଼ିବେ ।
ଉଙ୍କ ଧନଙ୍କୁ ସ୍ମରୁଥିବ ବାଳୀ ହୃଦୟୁ ଶନ୍ତାଇ ଲୁହେ । ୪ ।
ଉାଶ୍ୱଆ ଗୁନ୍ଥା ସେବକ ମୁଁ ତାହାର ବୋଲି ଦେଖାଏ ଗୁମାନ ।
ଉିକ ଟିକ ହୋଇ ଯାଉଛି ମୋ ଆଶ୍ୱା ନ ପାଇ ସନ୍ଧ୍ୟା ସମ୍ମାନ । ୫ ।
ଉାପର ଇଙ୍ଗିତ ବାଣୀ ପଦେ ତାର ନ ଶୁଣିଲି ଯା ମୋ କର୍ଣ୍ଣ ।
ଉୋକାଇ ଥିଲି ଚପଳ ବୃନ୍ଦେ ଛଳ ଲଭି ତ ପ୍ରୀତି ରତନ । ୬ ।
ଉଣା ଚନ୍ଦ୍ରଚପ ଛଳେ ସତେ ଆଉଜାଇଛି ମୋ ଉରେ ତାକୁ ।
ଉାଉକଆ ବେଣୁଧର ବୋଲେ ଶାନ୍ତ ଶଷ୍ଠେ ରକ୍ଷପଣ୍ଡିତାକୁ । ୭ ।
( କରକା ହୃଦୟ ରାଧାଙ୍କୁ କୋଳେ ଘେନ ଶବୁକରେ ଦେଇକର—ବୃତ୍ତେ )

—❀—

( ରାଗ—ମାଳ୍ପା ମାଳବଗୌଡ଼ା ତାଳ—ଗୌଡ଼ା )

ମୋ ନବୀନା ବନା ମୁଁ ଏତେ ସର୍ ରେ । ଘୋଷା ।

ଆସିବାର ବେଳେ କର ଧରି ବଳେ,
ନିଷେଧି ଥିଲି ସେ କୃଶୋଦରୀ ରେ । ୧ ।

ନ ମାନି ତା ବାଣୀ ଆପେ ଜାଣି ଜାଣି,
ହୋଇଲି ବଶଂବଦ ନ ବସ୍ତୁରି ରେ । ୨ ।

ନୟନେ ଲୋତକ ଝରି ଥକ ଥକ,
ବିଷାଦେ କାନ୍ଦଣା ହେବ ଝୁରି ରେ । ୩ ।

ମୁଁ ତାର ସର୍ବସ୍ୱ ସେ ମୋ କଣ୍ଠ ଦେଶ,
ରତନ ମାଳିକା ଅମୂଲ୍ୟ ଶିରୀ ରେ । ୪ ।

କି କଲି କି କଲି କେତେ ଦୁଃଖ ଦେଲି,
ଭଣେ ବେଣୁଧର ଚିନ୍ତା କରି ରେ । ୫ ।

( ତୋ ପୀରତି ଲାଗି ରେ ହେବି ଯୋଗୀ—ବୃତ୍ତେ )



## ନାୟକ ଉକ୍ତି

( ରାଗ—ମାରୁଆ । ତାଳ—ଆଠତାଳୀ )

କାହିଁକି ରୁଷିଲି ନାହିଁ ?

ତଣା କରୁଣା କି ମୋରେ କଲି ସୁମୁହିଁ । ଘୋଷା ।

ଯାଇଁ ମୁଁ ମତ୍ତ ହରଷେ ବସିଲି ବାନ୍ଧବ ପାଶେ,
ଘୁଞ୍ଚି ବସିଲି ସେ କେଣେ କଥା ନ କହି । ୧ ।

ଲାଜକରି ଅଛି ବୋଲି ପ୍ରଥମେ ମୁଁ ଜାଣିଥିଲି,
ଶ୍ରୀମୁଖ ବରସୁଁ ଆଚମ୍ବିତ ମଣଇଁ । ୨ ।

ରଖ ମୋ ଶରଣାଧନ ବୋଲୁଁ ରମଣୀ ରତନ,
ଚରଣେ ଯା ଠେଲିଦେଲି ସ୍ନେହ ଛଡ଼ାଇ । ୩ ।

ସ୍ଥଇପର ଅନୁସରି ଥାଇଁ ତ ହବା ବେଶ,
ମୁହିଁ ଜାଣିବାରେ ତଳେ ଦୋଷୀ ନୁହଇ । ୪ ।

ଭଣେ ବେଣୁଧର ଦୀନ ଯେଣୁ ମୋ କରମ ହୀନ,
ତେଣୁକରି ବାମା ବାମ ହେଲି କୋପାଇ । ୫ ।

( ଏହି ରୀତି କଲି ପଦ—ବୃତ୍ତେ )



( ରାଗ—ଆହାରି । ତାଳ—ଆଡ଼ତାଳୀ )

କେ ଜାଣେ ମୋ ଧନ କାହିଁକି ରୁଷିଲା ।
କେ କହିବ ମାର ଶର ମୁନ ମରମେ ଭୂଷିଲା । ଘୋଷା ।
ଯେତେ ହସାଇଲି ତିଳେ ନ ହସିଲା ।
କୋଳେ ଧରୁଁ ଟଳ ଖସିତ ବସିଲା । ୧ ।
ନିଜବକ୍ଷ ଗୁମାନକୁ ଭରଷିଲା ।
ମୋତେ ତ ଏଥିକି ବୁଦ୍ଧି ନ ଦଶିଲା । ୨ ।
ଜନନି ହୋଇଲି ଶତ୍ରୁ ନ କହିଲା ।
ନେତ୍ରଯୁଗ୍ମଁ ଧାରଧାର ବରଷିଲା । ୩ ।
ପଦତଳେ ଲୋଟିଁ କଣ୍ଠୁ ତ ଘଷିଲା ।
ଅବା କାର ଶିକ୍ଷା ବଚନେ ରସିଲା ? । ୪ ।
ଏହା ନକ ତା ମରଣକ ଆସିଲା ?
ବୈଷ୍ଣବଧର ଚନ୍ଦ୍ରା-ସଙ୍ଗେ ହସିଲା । ୫ ।

( କାହିଁକି ଏ କୁଞ୍ଜବନକୁ ଆସିଲି—ବୃତ୍ତେ )

—❁—

## ସ୍ୱଦେଶାନୁଚନ୍ତା

( ରାଗ—ଶଙ୍କରାଭରଣ । ତାଳ—ଆଠତାଳୀ )

ସଖି ! ସେହି ସୁଖ କେତେ ।
ଦଣ୍ଡେ କ ନମିଷେ ମନୁ ନ ଗଲା ପାଶୋର । ଘୋଷା ।
ରଜନୀଶ ସମୟେ ବନେ ଥିଲୁ ଅଙ୍କେ ଶୋଇ ।
ଚନ୍ଦ୍ର ରଙ୍କାବାସ ଚେତ କଲୁ ଯାହା ଚାହିଁ । ୧ ।
ବନେ ବୀଣା ଧରି ଗାଉଥିଲୁ ଗୁଢ ଗୀତ ।
ମିଳନ୍ତେ ମୁଁ ପାଶେ ଲକେ ରହିଲୁ ଯେମନ୍ତ । ୨ ।
ଆନନ୍ଦେ ଫୁଲହାର ଗୁନ୍ଥୁଥିଲି ମୋଦେ ।
କୋଇଲି କାହାକୁ ଦେବୁ ରହିଲୁ ବନ୍ଦେ । ୩ ।
ଜାନକୀଙ୍କେ ସର୍ଜି ବନେ ଦେଉଁ ମୋର କରେ ।
କସ ପାଖ ଆଜକାଲୁ ମୋ ହୃଦୟ ପରେ । ୪ ।
ଭଣେ ବୈଷ୍ଣବଧର ଚନ୍ଦ୍ରନାୟକ ଏ ରସେ ।
କହିକୁ ଯାହା କୁ ବନେ ନଧୁବନ ଶେଷେ । ୫ ।

( ଆରେ ପ୍ରାଣବନ୍ଧୁ ମୋର—ବୃତ୍ତେ )

—❁—

( ରାଗ—କାମୋଦୀ । ତାଳ—ଝମ୍ପା )

ଋତୁ ବସନ୍ତ ହେଲା ଗୋ ମିତ ! ଆସି ପ୍ରବେଶ ।
ଏକାଳେ ଯା କାନ୍ତ ଛାଡ଼ିଗଲେ ବିଦେଶ । ପଦ ।
ପଲ୍ଲବ ଚୂତ ବକୁଳେ       ରାବ ହେଲେଣି କୋକିଳେ,
ବଞ୍ଚି ଥିବେ କାହାକୋଳେ ପରାଣ ଈଶ । ୧ ।
ଏ ମଳୟ ସମୀରଣ       ଅଙ୍ଗେ ବାଜି ନେବ ପ୍ରାଣ,
କରାଇଲେ ଅକାରଣ ନବବୟସ । ୨ ।
ମଲ୍ଲୀରେ ଭ୍ରମର ଦେଖି       ମନରେ ପରାଣ ସଖି !
ସମ୍ଭବ କପଟ ପାପ ଅନଙ୍ଗ ହାସ । ୩ ।
ଦୀନ ବେଣୁଧର ବୋଲେ       ଧନିକ ସରବ ଭଲେ
ଭିନ୍ନକର ଯାହା ଗଲେ ନ ଦେଇ ବାସ । ୪ ।
( ଏ ଯୁବା ବୟସେ କାନ୍ତ ନ ଯାଅ ଛାଡ଼ି — ବୃତ୍ତେ )

—*—

## ନାୟିକାର ନିଷେଧ ଉକ୍ତି

ଏ ବୟସେ ପ୍ରାଣନାଥ ନଯା ବିଦେଶ !
ଯେବେ ଛାଡ଼ିଯିବ ମୋତେ ଦେଇ ଯା ବିଷ — ଘୋଷା ।
ଏକେତ ବସନ୍ତକାଳ       କରିବ ଚିତ୍ତ ଆକୁଳ,
ଝୁରି ବସିବ କେବଳ ନିଶିଦିବସ । ୧ ।
କଳକଣ୍ଠ ବାଣୀ ବାଣୀ       କର୍ଣ୍ଣେ ବାଜି ନେବ ପ୍ରାଣ
ଏ ମଳୟ ସମୀରଣ ହେବ ହୁତାଶ । ୨ ।
ମଲ୍ଲିକାକୁସୁମେ ଅଳି       ଚୁମ୍ବି କରୁଥିବ କେଳି,
ତା ଦେଖି ପ୍ରୀତିକି ଭଲ ହେବ ଅବଶ । ୩ ।
ଏ ବାଣୀ ଶୁଣି ରସିକ       ପ୍ରବୋଧେ ଧରି ଚିବୁକ,
ଭାଷନ୍ତି ସମର ପୂର ମାନସ ଈଷ । ୪ ।
( ଝୁଲ ଝୁଲ ଆସେ କାହା ନନ୍ଦନ ବାମା — ପ୍ରତି )

—*—

( ରାଗ — ବସନ୍ତ । ତାଳ — ଆଠତାଳୀ )

ଏ ନବ ଯଉବନ କାଳେ ମୋ ଜୀବଧନ ।
ପାଶୋରୁ କଲେ ଯାହା ଅନ୍ତର ଗୋ । ଘୋଷା ।
କେଉଁ ଦୂର ବିଦେଶେ       ରହିଲେ କେଉଁ ଦୋଷେ,
କେଉଁନାରୀ କଲା କି ମନ୍ତର ଗୋ । ୧ ।

ନା ମନେ ଥିଲା ଏତା          ଭଣ୍ଡିବେ ବୋଲି ନାଥା,
ସ୍ୱପନେ ଚମକୁଅଛି ଅନ୍ତର ଗୋ । ୨ ।
ନ ଦେଖିଲେ ଦଣ୍ଡ ଲେଖ          ହେଲା କେତେ ନିମେଷ,
ଠିକଣା ନ ପାଇଣ କାନ୍ତର । ଗୋ । ୩ ।
କହଇ ବେଣୁଧର          ଆସିବାକୁ ନାଗର,
କର ଉପାଶ ଭୁଟି ଜନ୍ତ୍ର ଗୋ । ୪ ।
( ଭଣ୍ଡିଲେ ଛାଡ଼ିଲେ କେତେ—ବୃନ୍ଦେ )

—*—

## ନାୟିକା ଅନୁଚିନ୍ତା

( ରାଗ—ଝିଂଝୋଟି । ତାଳ—ଆଠତାଳୀ )

ଯୁବାକାଳେ ପ୍ରାଣନାଥ ଗଲେ ପର ଗୋ ।
କହ ସଖି ! ଦିନ ନେବି କି ପ୍ରକାର ଗୋ ଘୋଷା ।
ଉଗାର ହୋଇ ମଦନ          ଦେଉଅଛି ମର୍ମେ ଦହନ,
ଜେଷ୍ଠ ମାସେ ହୃଦ ହେଲା ଜର ଜର ଗୋ । ୧ ।
ଏବେକତ ବସନ୍ତ ଆସି          ପ୍ରବେଶିଲାଣି ବନେଶି,
ଉତ୍ତ ଚଳ ସମ ପିକ-ଭୃଙ୍ଗ ସ୍ୱର ଗୋ । ୨ ।
କର୍ଣ୍ଣେଁ ଏ ମଳୟ ବାତ          ପବନ ନେବ ସଙ୍ଗାତ,
ସର୍ପମୁଖେଁ ପ୍ରସରୁଛୁ ଧୀରେ ଧୀରେ ଗୋ । ୩ ।
କେ ଧି କହେ ବେଣୁଧର          ଲୁଡ଼ ବ୍ୟଥିତ ଅନ୍ତର,
ପ୍ରବାସୁଁ ଫେରିବେ କାନ୍ତ ଦମ୍ଭ ଧର ଗୋ । ୪ ।
[ କେ ମୁରଲି ବଜାଉଛି ବୃନ୍ଦାବନେ ଗୋ—ବୃନ୍ଦେ )

—*—

( ରାଗ—ମୋହନା । ତାଳ—ଝୁଲା )

ଜଦେଶ ଗଲ ବନ୍ଧୁ ଧ୍ରାଣନାସୁକ ସଗା ।
ସରିଛୁ ଚୈକ । ଘୋଷା ।
ସାବନକଳା ମାସୀ ପ୍ରାତଃରୁ ଉଠି ।
ହାତ ଧରି ଉଚ୍ଚେ ପିକା କଥାଛି ଗୋ । ୧ ।
ଛା ଶୁଣି ଶିଖେ ବକୁ ଭଜନ ଦରେ ।
ମଣିଲି ଦୁବଦୁରୁ ଚେତନା ହାର ଗୋ । ୨ ।

ଏମନ୍ତ ଅବସ୍ଥା ମୋ ଦେଖି ନାଗର ।
କେତେ ପ୍ରବୋଧ ବାଣୀ ଭାଷିଲେ ଧୀର ଗୋ । ୩ ।
ନୟନୁ ନୀର ଧାର ପୋଛି ଅଞ୍ଚଳେ ।
ଘଡ଼ିଏ ଯାଏଁ ସ୍ନେହେ ଧଇଲେ କୋଳେ ଗୋ । ୪ ।
ପୁଣି ଚିବୁକେ ମୋର ନବେଣି ପାଣି ।
ମାଗିଲେ ବନ୍ଧୁ ମୃଦୁସ୍ୱରେ ମେଲାଣି ଗୋ । ୫ ।
ଆହା ସେହି ମଧୁର ବାଣୀ ପଦକ ।
ନଶୁଣି ଚିତ୍ତ ହୁଏ କି ଦକ ଦକ ଗୋ । ୬ ।
କହଇ ବେଣୁଧର ପଞ୍ଚନାୟକ ।
ଆସିବେ ଜୀବନେଶ ସମ୍ଭାଳ ଶୋକ ଗୋ । ୭ ।
( ପଲକ ପଡ଼ନାହିଁ ରଜନୀ ଯାକରେ କନାମାଣିକ—ବୃତ୍ତେ )

—*—

## ନାୟିକା ଉକ୍ତି

( ରାଗ—ଭୈରବୀ । ତାଳ—ଏକତାଳୀ )

କି ଦୋଷରେ ପ୍ରାଣନାଥ କଲେ ନିରାଶ ।
ଧିକ ଧିକ ଏ ଜୀବନେ ନାହିଁ ମୋ ଆଶ । ଘୋଷା ।
ମୁହିଁ ଯେ ଚିର ଦୁଃଖିନୀ    ଅଭାଗିନୀ ଅନାଥିନୀ
ସହିବି କିପରି ସହି ! ମଦନ ତ୍ରାସ । ୧ ।
ଫୁଲ ଉପବନେ ଦେଖ    ପ୍ରମତ୍ତ ଭୃଙ୍ଗ ଛଟକ
ଚୁମ୍ବଇ ମଲ୍ଲୀ ସୁମନୁ ମରନ୍ଦ-ରସ । ୨ ।
ଥିଲେ ପାଶେ ମୋ ବଲ୍ଲଭ    ନୂତନ୍ତା କେତେ ସୁଲଭ
ହାସ ରସେ କଟିଯାନ୍ତା ମାଧବୀ ବସ । ୩ ।
ଏହା କି ଥିଲା କରମେ    ବ୍ୟଥା ଲଭିଲି ମରମେ
ଏ ଜନ୍ମ ହାଏ ହୋଇଛି ଗଳାକୁ ଫାଶ । ୪ ।
ଅଶନ ବାସ ଭୂଷଣ    ବିଷ ପରି ହେଲା ଜାଣ
ଏତେ ସବୁ କରି ଅରଜିଲେ କି ଯଶ । ୫ ।
କହେ ବେଣୁଧର ହୀନ    ନ କର ମୁଖ ମଳିନ
ଆସିବେ ଅଳପ ଦିନେ ଜୀବନଈଶ । ୬ ।
( ଏ ଯୁବା କାଳରେ କାନ୍ତ ନ ଯାଅ ଛାଡ଼ି—ବୃତ୍ତେ )

—*—

( ରାଗ—କଳହଂସ କେଦାର । ତାଳ—ଝୂଲା )

ମଧୁ ସମୟ ଆସି ହେଲା ପ୍ରବେଶ ।
ମନ୍ଦ ପାଶୋର ଦେଲେ କେଶେ ଶାବେଶ ଗୋ । ଘୋଷା ।
ମନ୍ଦ ଅନଳ ମୋତେ ହେଲା ହୁତାଶ ।
ମନ୍ଦି ପକାଏ ମର୍ମେ କୋକିଳ ଈଶ ଗୋ । ୧ ।
ମଞ୍ଜୁ ମଲ୍ଲିକା ନଆଳୀ ସୁମନସ ।
ମଦ୍ଦାନନ୍ଦେ ବସିନେ ହେଲେ ବିକାଶ ଗୋ ॥
ମଧୁପ ଚୟ ଦେଖି ହୋଇ ଉଲ୍ଲାସ ।
ମଜ୍ଜି କରନ୍ତି ପାନ ମରନ୍ଦ ରସ ଗୋ । ୨ ।
ମଧୁକଣ୍ଠର କୁହୁ ତାନ ବିଶେଷ ।
ମଘବା ଅସ୍ତ୍ର ସମ ଜନ୍ମାଏ ତ୍ରାସ ଗୋ ॥
ମନ୍ଦ ବିଧାତା ଲଞ୍ଜି ଥିଲା ଏ କେଶ ;
ମଥାରେ ଚନ୍ଦନ ଯା ନୁହେ କୁଳଶ ଗୋ । ୩ ।
ମହୀରେ କେବା ଦୁଃଖିମା ମୋ ସଦୃଶ ।
ମଣ୍ଡିଛୁ ଗଣ୍ଡେ ପାଣି କଣି ଦିବସ ଗୋ ॥
ମରଣ ଶ୍ରେୟ ଏକା ନାହିଁଟି ଯଶ ।
ମହେଶ ଚନ୍ଦ୍ର ବେଣୁ ଧାରଣ ଭିଷ ଗୋ । ୪ ।
( ହିଞ୍ଚସ୍ତା ଯାମିନୀରେ ମୋ ପ୍ରାଣ ସଙ୍ଗୀ—ବୁଦ୍ଧେ )

—❋—

( ରାଗ—ସୁରଠ । ତାଳ—ଏକତାଳୀ )

ଉଡ଼ଯା କଳା କୋକିଳ କାହିଁକି ରସୁଛୁ ବସି ?
କୁହୁ କୁହୁ ସ୍ୱନ ଛୋଡ଼ି ଶ୍ରବଣେ ଦେଉଛୁ କାଣି । ଘୋଷା ।
ମୂର୍ଚ୍ଛିତ ଅଭାଗୀ ନାରୀ ଛୋଡ଼ି ନୂତନ କଇଷ୍ଟ
ତେଜ ଧବ ଏକା କରି ଏକାଳେ ହେଲେ ବିଦେଶୀ । ୧ ।
କାମ ପଞ୍ଚଶର ମାରେ ନରତେ ହେଲା ଭଗାରି
ଏ ପଣ୍ଡୁ ପରାଣ ଜବ ଝୁରି ଝୁରି ଦିବାନିଶି । ୨ ।
ଯେବେ ଅଛନ୍ତି ମୋ କାନ୍ତ ତହିଁ ନାହିଁକି ବସନ୍ତ
କେମନ୍ତେ ବନ୍ଦିଲା ଶଦ ଗଲେ ମୋତେ ପ୍ରାଣେ ନାଶି । ୩ ।

ମଧୁଯୋଗା କାଳେ ସେତ                 କର ଯ ଇଥିଲେ ସତ୍ୟ
କପାଳେ ପାଶୋରିଲେ ତ ବେଣୁଧର ଗୀତେ ଭଣି । ୪ ।
( ଅଭିଲ ବସନ୍ତ ମିତ ! ପାଶେ ନାହିଁ ଚନ୍ଦ୍ରେନ୍ଦ୍ର—ପ୍ରଭ

—※—

ରାଗ—ମାରୁଆ । ତାଳ—ଆଠତାଳି )

କାହିଁକି ବିଳମ୍ବ କଲେ ।
ଦୂର ଦେଶବାସୁଁ କାନ୍ତ କିମ୍ପା ନଇଲେ ? । ଘୋଷା ।
କି ଅବା କେଉଁ ଚତୁରୀ                 ରଖିଲା ଧୂଳି ମନ୍ତ୍ରରି,
ପଡ଼ିଗଲେ ଜୀବଧନ ତାହାର ପାଲେ । ୧ ।
କହୁ ତ ନୋହୁଛୁ ଜାଣି                 କହ ରେ ପ୍ରାଣ ମିତଣି !
କି ବସୁଛୁ ତୋତେ ମୋତେ ବୁଝାଅ ଭଲେ ।
ବରଷା ହୋଇଲା ଶେଷ                 ଶରତ ଋତୁ ପ୍ରବେଶ,
ଚନ୍ଦ୍ରନଶାରେ ଖେଳୁଛୁ ପର୍ଶ ମୋ ଭୁଲେ
ରସେ ବୋଲେ ବେଣୁଧର                 ଆସିବେ ଚିନ୍ତା ନ କର;
ଗଲେ ଦେବେ ରତ୍ନହାର ହଜାର ମୂଲେ । ୪ ।
( ପ୍ରାଣସଙ୍ଗିନୀ ରେ ନେସାନନ୍ଦପସରା—ବୃନ୍ଦେ )

—※—

( ରାଗ—ଚୋଖି ପରଜ । ତାଳ—ଆଡ଼ତାଳୀ )
ସଜନି ! କେ ଦେଲା କି ମନ୍ତ୍ରର ? ଏ କାନ୍ତ କଲେ ଅନ୍ତର ଯେ ॥
କାହାକୁ କହିବି କପାଳ ଦଶା, ରସ ରେ ମୋ କେହି ନାହିଁ ଭରସା ରେ । ୧
କହିଥିଲେ ଗୃହଦ୍ୱାରେ ଆସିବି; କଣ ତ ବଳିଲା କସ କରିବ ରେ । ୨ ।
କେଳି-ପ୍ରିୟ ବଣେ କି ଅସୁନ୍ଦର, କାହିଁ ରହିଲେ ମୋ ହୃଦୟ ହାର ରେ । ୩
କବିଚନ୍ଦ୍ର ପଟ୍ଟନାୟକ ଭଣି, କାତର ନ ଭଜ ରମଣି ମଣି ରେ । ୪ ।
( ସଜନି ! ଶ୍ୟାମ ଶ୍ରୀଅଙ୍ଗ ଠାଣି—ବୃନ୍ଦେ )

— ସମାପ୍ତ —

ମୁଦ୍ରଣ—ସ୍ୱରାଜ୍ୟ ପ୍ରେସ, ତେଲେଙ୍ଗା ବଜାର, କଟକ—୯